# ସାରଳା ମହାଭାରତ

# ବନପର୍ବ

## [ ଦ୍ୱିତୀୟ ଖଣ୍ଡ ]

ମୁଖ୍ୟ ସଂକଳକ, ସଂଗ୍ରାହକ ଓ ସଂପାଦକ :

ଡକ୍‌ଟର ୬ଆର୍ତ୍ତବଲ୍ଲଭ ମହାନ୍ତ

ଏମ୍. ଏ, ଡି. ଲିଟ୍., ପଦ୍ମଶ୍ରୀ

ପ୍ରଥମ ମୁଦ୍ରଣ
୧୯୭୦

ଓଡ଼ିଶା ସରକାରଙ୍କର
ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ

ମୁଦ୍ରାକର
ଶ୍ରୀ ବଳଦେବ ଦାସ
ଜନକଲ୍ୟାଣ ପ୍ରକାଶନୀ
କଟକ

# ସୂଚୀପତ୍ର

# ବନପର୍ବ

## [ ଦ୍ୱିତୀୟ ଖଣ୍ଡ ]

| ବିଷୟ | | ପୃଷ୍ଠାଙ୍କ |
|---|---|---|

# ସାରଳା ମହାଭାରତ

## ବନପର୍ବ

[ ଦ୍ୱିତୀୟ ଖଣ୍ଡ ]

---

### ସଚଳା ହରଣ

ବଦୟନ୍ତ ଅଗସ୍ତି ଶୁଣ ବଇବସ୍ୱତ ମନୁ
ଚିତ୍ରସେନ ଗନ୍ଧର୍ବ ଯାଇଥିଲା ମଧ ସେ ଭୁବନୁ । ୧ ।
ପୂଜାବିଧି କରି ବଇବସ୍ୱତ ମନୁ ସେ ବୋଇଲା
ବାସବର ପୁତ୍ର କର୍ମ୍ମେ ମୃତ୍ତୁ ମଣ୍ଡଳେ ଥିଲା । ୨ ।
ଅଗସ୍ତି ପ୍ୱେ ବୋଇଲେ ଶୁଣ ପୂର୍ବର ସେ କଥା
କହିବା ସଞ୍ଜପି ତୋତେ ସତ୍ୟଯୁଗର ବାରତା । ୩ ।
ଆହୋ ସତ୍ୟଯୁଗେ ବଇଶାଖ ମାସ ଶୁକ୍ଳପକ୍ଷ ତୃତୀୟାର ତିଥି
ରୋହିଣୀ ନକ୍ଷତ୍ର ସେ ବାର ଅଟଇ ବୃହସ୍ପତି । ୪ ।
ଯୁଗାଦ୍ୟ ତିଥି ଯେ ସେ ବସନ୍ତ ଉତ୍ସବ ଯାତ
ଇନ୍ଦ୍ର ସହ ଦେବତାଦି ବିଜୟ ସମସ୍ତ । ୫ ।
ଚଉଷଠୀ କୋଟି ଯେ ଅମର ବିଳାସୁଣୀ
ତାଣ୍ଡବ ଭରହରଷେ ଲାଗିଛନ୍ତି ଖଟଣୀ । ୬ ।
ତିଲୋତ୍ତମାର ପୁତ୍ର ଚିତ୍ର ସେ ବାହନ
ଚିରଗୁଣା ବାଦ୍ୟ ଯେନଣ ସେ କରୁଛନ୍ତି ଗାୟନ । ୭ ।

---

୭।୧ ତ୍ରିଲୋଚନର ପୁତ୍ର ସେ ଚିତ୍ର ଯେ ବାହନ ।—ଡ, ଘ

ଭରହରଷ ତାଣ୍ଡବ ସେ ମହାରସ ଖେଳେ
ହରଷେ ଇନ୍ଦ୍ର ଦେବତା ତାହାକଇଂ ଦଲେକ ତାମ୍ବୋଳେ । ୮ ।
ବିଶେଷେ ଗ୍ରୀଷ୍ମକାଳ ଆଉ ଭରହ ସଂଗୀତା
ଅଧରେ ସୁଖନ୍ତେ ସେ କଲା ତାମ୍ବୋଳ ଭୁକତା । ୯ ।
ଆହେ ଚଇତନ ପ୍ରିୟରସ ଖେଳେ ବିଦ୍ୟାଧର ତାମ୍ବୋଳ ଭୁଞ୍ଜି
ଅବଶ୍ରାମେ ପ୍ରିୟରସେ ବ୍ରହ୍ମାଅଙ୍କେ ଭଜ । ୧୦ ।
ଗହ ଗହ ଶବଦ ତମ୍ବୁରୁ ରସ ବାଣୀ
ସୁରସିଦ୍ଧ ମୁନ ଲାଗିଅଛନ୍ତି ଖଟଣି । ୧୧ ।
ପଦବନ୍ଧ ସାର ଉଭା ହୋଇଲା ବ୍ରହ୍ମାଙ୍କ ଛାମୁରେ
ତାମ୍ବୂଳକ ପଡିଲା ଯାଇ ବ୍ରହ୍ମାଙ୍କ ଅଂଗରେ । ୧୨ ।
ଭପ୍ୟେଣ ବିଦ୍ୟାଧର ରସଭଗ୍ନ କଲା
ଅମାତ ଦେଖିଣ ପିତାମହ ନ ସହିଲା । ୧୩ ।
କୋପେଣ ଶାପ ତାକୁ ଦଲକ ଜଗଦ୍ଧାତା
ଦେବସ୍ଥାନେ ପିକ ପକାଇ କଲୁ ଅପ୍ରତିଷ୍ଠା । ୧୪ ।
ଆରେ ଯେତେଡେ ମତ୍ତଗର୍ବ ଅଛୁରେ ମହାଦୁଷ୍ଟ
ଯେ ଦେବ ଆସ୍ଥାନେ ମୋତେ ପକାଇଲୁ ଉଚ୍ଛିଷ୍ଟ । ୧୫ ।
ଯାଅ ତୁ ମୃତ୍ୟୁ ମଣ୍ଡଳେ ଜାତ ହୁଅସି ଶୂକର
ଯେଉଁ ମୁଖରେ ତୁରେ ବିଷ୍ଠା କରସି ଆହାର । ୧୬ ।
ଶୁଣିଣ ବିସରିଲା ଅମର ରେଖାର ନାତ
କଅଁତ ଦୋଷକୁ ଧାତା ଦେଲୁ ବହୁତ ଶାସ୍ତି । ୧୭ ।
ତୋହୋର ବଚନେ କର ମୁଂ ପାଇବ ବହୁତ ଦୁଖ
କାରଣ କହିବା ମୋତେ କେତେ ଦିନେ ହୋଇବ ମୋକ୍ଷ । ୧୮ ।
ଆରେ ସତ୍ୟଯୁଗ ସତର ଲକ୍ଷ ଅଠାଇଶି ସହସ୍ର ବରଷ
ତ୍ରେତୟା ଯୁଗ ବାରଲକ୍ଷ ଛୟାଣୋଇ ସହସ୍ର ବରଷ । ୧୯ ।

---

୧୧।୨ ସୁରସିଦ୍ଧ ମୋହବଶେ ଲଗିଛନ୍ତି ଖଟଣି ।—ଊ, ଦ, କ, ତ, ଥ, ଙ
୧୧।୨ ସୁରସିଦ୍ଧ ମୋହମୀ ଯେ ଲଗିଛନ୍ତି ଖଟଣି ।—ଚ, ଛ, ଘ
୧୨।୧ ନାଦଘାତ ମାରିଦେଲା ବ୍ରହ୍ମାଙ୍କ ଛାମୁରେ ।—ନ, ଚ, ଛ, ଖ

ଦ୍ୱାପର ଯୁଗେ ଆଠଲକ୍ଷ ନବସହସ୍ର ପରିଯନ୍ତେ
ମୁକତ ହୋଇବୁ ତୁ ଯୁଧିଷ୍ଠିରଙ୍କୁ ଦେଖନ୍ତେ । ୨୦ ।
ବ୍ରହ୍ମାଯେ ବୋଇଲେ ସେ ବିଦ୍ୟାଧର ପାଶେ
ହୋଇବୁ ମୋକ୍ଷ ତୁହି ଚଉବିଂଶ ଲକ୍ଷ ଚଉବିଂଶ ସହସ୍ର ବରଷେ । ୨୧ ।
ଶୁଣ ହୋ ମନୁପୁରୁଷ ସତ୍ୟଯୁଗେ ପିତାମହର ଶାପେ
ସେ ଶବବାହାନ ମୃତ୍ୟୁ ମଣ୍ଡଳେ ଉପୁଜିଲା ଶୂକର ରୂପେ । ୨୨ ।
କାଳନ୍ଦୀ ନାମେ ନଗ୍ରେ କାଳେବର ନାମେ ବନ
ତହିଂ ଯାଇଂ ଶୂକର ରୂପେ ହୋଇଲା ଉତପନ୍ନ । ୨୩ ।
କାଳନ୍ଦୀ ନଦୀ ତୀରକୁ ସେ ରହେ ନିତ୍ୟେ ଯାଇ ଚରି
ପିତାମହର ଶାପ୍ୟେ ସେ ବିଷ୍ଣୁ ଆପ୍ୟାନ କରି । ୨୪ ।
ମାଈ ଶୂକରୀ ଭୁଲେ ସେ କଲାକ ଅଭିଳାଷ
ବରେହା ରୂପେ ତାର ହୋଇଲା ଅପାର ବଂଶ । ୨୫ ।

---

୨୧। { ବ୍ରହ୍ମାଯେ ବୋଇଲେ ସେ ବିଦ୍ୟାଧର ଆଗେ
ହୋଇବୁ ମୋଖ୍ୟ ତୁ ଚଉବିଂଶି ସହସ୍ର ବରଷ ଲଗେ—ନ, ଖ, ଜ, ଛ ।

୨୫।୨ "ବରେହା ରୂପେ ତାର ହୋଇଲା ଅପାର ବଂଶ" ଯେହି ପାଦାନ୍ତ ପରେ 'ଥ' ପୋଥିରେ ଅଧିକା ପାଠ :—
ଦ୍ୱାପର ଯୁଗରେ ସେ ମ୍ଳେଚ୍ଛଦେଶର ରାଜା
ମଙ୍ଗଳସେନ ବୋଲି ସେ ମେଦିନୀରେ ପୂଜା ।
ଅତି ବିଚକ୍ଷଣ ସେ ତୋଟାଯେକ ଉତପତ୍ତି
ନାନା ଫଳଭରେ ସେ ତୋଟାଯେ ଶୋଭିପାନ୍ତି ।
ତହିଂ ସେ ଶୂକର ନିତ୍ୟେ ହୋଇଲା ପ୍ରବେଶ
ବୃକ୍ଷ ଭାଞ୍ଜି ତାର ତୋଟା ସକଳ ଗଲା ନାଶ ।
ଯେବେ ଗ୍ରୀଷ୍ମଋତୁ ବଇଶାଖ ମାସ
ଭୃଗୁବାର ରୋହଣୀ ଯେ ତୃତୀୟା ଦିବସ ।
ସତ୍ୟଯୁଗେ ସେହିଦିନୁ ପାଇଥିଲି ଶାପ
ଦ୍ୱାପର ଯୁଗେ ସେ ଦିନେ ଖଣ୍ଡିଲି ମହାପାପ ।
ସେ ମଙ୍ଗଳ ନାମେ ରାଜାକୁ କହିଲେ ତୋଟାଳ ନିଧି
ନାରାଜରେ କରି ସେ ଶୂକରକଇଂ ବଧି ।
ନାରାଜର ଘାତେ ସେ ଛାଡ଼ିଲାକ ପ୍ରାଣ
ଇନ୍ଦ୍ର ବୋଇଲା ମାତଳି ପୁଷ୍ପେକ ନିଅ ଯେହିକ୍ଷଣ ।

ଦ୍ୱାପର ଯୁଗେ ମ୍ଳେଚ୍ଛଦେଶର ରାଜା ମଙ୍ଗଳସେନ ନୃପତି
ମୃଗୟା ନିମନ୍ତେଣ ଅଇଲା ସେ ପ୍ରତାପ ଚକ୍ରବର୍ତ୍ତୀ । ୨୬ ।
ଗ୍ରୀଷ୍ମ ଋତୁ ଯେ ସେ ବଇଶାଖ ମାସ
ଭୃଗୁବାର ରୋହିଣୀ ନକ୍ଷତ୍ର ତୃତୀୟା ଦିବସ । ୨୭ ।
ସତ୍ୟଯୁଗରେ ସେ ଦିନେ ପାଇ ଅଭିଶାପ
ଦ୍ୱାପର ଯୁଗରେ ସେ ଦିନରେ ଖଣ୍ଡିଲା ତାହାର ପାପ । ୨୮ ।
ମଙ୍ଗଳସେନ ନୃପତି ବନେ ବୁଲଇ ବେଢି ପାରିଧି
ନାରାଜ ଘାତ କରି ସେ ଶୂକରକଇଂ ବିନ୍ଧି । ୨୯ ।
ରାଜାର ନାରାଜେଣ ତୁଟିଲା ତାର ନିଜ ପ୍ରାଣ
ଇନ୍ଦ୍ର ବୋଇଲେ ତୁ ମାତଳି ପୁଷ୍ପକ ରଥ ଘେନି
ଯାଅ ପ୍ରେହ୍ନକ୍ଷଣ । ୩୦ ।

ଶାପରୁ ମୁକତ ଯେବେ ହୋଇଲା ମୋହୋର ପୁତ୍ର
ବିମାନେ ବସାଇଣ ଆଣସି ତୁରିତ ଚିତ୍ରରଥ । ୩୧ ।
ବାସବର ବଚନେ ସେ ଚଳଇ ମାତଳି
କାଳେବର ବନେ ଯାଇଣ ତତ କ୍ଷଣେ ମିଳି । ୩୨ ।
ନିକଟେ ବିମାନ ନେଇ କଲା ସନ୍ନିଧାନେ
ଧଇଲେ ପାଞ୍ଚଛତ୍ର ବିଦ୍ୟାଧରମାନେ । ୩୩ ।
ସହସ୍ରେ ପାଞ୍ଚଛତ୍ର ବେନିଲକ୍ଷ ଆଲମ୍ବ
ଉଦଣ୍ଡ ଚାରିଲକ୍ଷ ତିନିଲକ୍ଷ ବିଳମ୍ବ । ୩୪ ।
ଘୁମୁର ସୁବର୍ଣ୍ଣ ବନ୍ଧା ଶଙ୍ଖ ପୂରଇ ପ୍ରେକଲକ୍ଷେ
ବିମାନେ ବିଦ୍ୟାଧର ଯାଇ ବିଜୟ କଲା ପ୍ରତକ୍ଷେ । ୩୫ ।
ଆକାଶେ ବିମାନ ବାହଇ ମାତଳି ସାରଥି
ଅନେକ ରତ୍ନ ଅଲଂକାର ଭୂଷଣ ମହାଛବୀ । ୩୬ ।
ଅଜଙ୍ଗମ ସମାନେ ଶ୍ରୀଭୃଜେଣ ଧନୁ
ଦିବ୍ୟ ଅବତାର ହୋଇ ସେ ତିଳୋତ୍ତମାର ତନୁ । ୩୭ ।
ମାତଳି ବିମାନ ବାହଇ ଆକାଶ ମାର୍ଗେ
ଚଳଇ ବିଦ୍ୟାଧର ଗମଇ ଅତିବେଗେ । ୩୮ ।

ଆହୋ ଚଇତନ କଥାର ରଙ୍ଗରସ
ବିଚିତ୍ର କଥାଏ ଶୁଣନ୍ତେ ହରଷ । ୩୯ ।
ଯେମନ୍ତର ସମୟେ ସିନ୍ଧୁ କୂଳେ ଜମ୍ବୁବଣର ଦୁଲାଳୀ
ସଚଳା ନାମେ କନ୍ୟା ତାହାର ପିଅର ବନମାଳୀ । ୪୦ ।
ଲକ୍ଷେକ ପରିବାର ଘେନି ସେ ସଚଳା ସୁନ୍ଦରୀ
ଦ୍ୱାରକାଉଂ ବାହାର ହୋଇଲା କ୍ଷୀରୋଦ୍ରେ ସ୍ନାହାନ କରି । ୪୧ ।
ଜଳକ୍ରୀଡ଼ା ରଙ୍ଗେ ଖେଳନ୍ତେଣ ସେ ଦୁଲାଳୀ
ଚିତ୍ରସେନ ଗନ୍ଧର୍ବ ସନ୍ନିଧେ ଯାଇଂ ମିଳି । ୪୨ ।
ଯାଆନ୍ତେଣ ସୁନ୍ଦରୀ ଜଳେ ଦେଖିଲା ତାର ଛାୟା
ଊର୍ଦ୍ଧ୍ୱମୁଖ କରି ଆକାଶକୁ ଚହିଂଇ ସେ ଶ୍ରୀକୃଷ୍ଣ ତନୟା । ୪୩ ।
ବିଦ୍ୟାଧରକୁ ଚହୁଂଅଛଇ ଆକାଶ ଅବଲୋକନେ
ସଚଳାହିଂ ଚହିଂଲା ନିରେପି ବେନି ନୟନେ । ୪୪ ।
ମଦନେ ଅସାଷ୍ଟମ ହୋଇଲାକ ବାଳୀ
ଚିତ୍ରସେନ ମଦନେ ନୁଆରଇ ଚଳି । ୪୫ ।
ମାତଳିକି ବୋଇଲା ବିମାନ ମୋର କରି ଭୂମିଗତେ
ଯେହ୍ୱେଷଣି ସୁନ୍ଦରୀ ବରିବ ଜାଣ ମୋତେ । ୪୬ ।
ଚିତ୍ରସେନ ବଚନେ ବୋଇଲା ମାତଳି ସାରଥି
ଦ୍ୱାରିକା ନିକଟ ହୋଇଣ ସେ ବାସୁଦେବର କଣ୍ଡ । ୪୭ ।
ଚିତ୍ରସେନ ବୋଇଲା ଯେ ଯୋଗାଇ ଅମର ଭୁବନକୁ
ପ୍ରାପତ ହୋଇଲା ଦ୍ରବ୍ୟ ଯେ ନ ଛାଡ଼ଇ ମୁକୁ । ୪୮ ।
ଧାତିକାରେ ରଥ ନେଇ କଲାକ ସିନ୍ଧୁ କୂଳେ
ତେଜିଲା ଲଜ୍ଜା ସୁନ୍ଦରୀ ମଦନ ରସଭୋଳେ । ୪୯ ।

---

୪୨।୨ ଚିତ୍ରବାହନ ଗନ୍ଧର୍ବ ସନ୍ନିଧେ ଯାଇଂ ମିଳି ।
—ଘ, ଙ, ଦ, ଝ, ଚ, ଛ ।
୪୨।୨ ଚିତ୍ରସେନ ଦେଖି ତାକୁ ମଦନମତେ ଭଳି ।—ଘ, ଠ ।
୪୨।୨ ଚିତ୍ରସେନ ମଧ୍ୟ ମଦନରସେ ପଡେ ଢଳି ।—ଠ, ଙ, ଦ, ତ, ଜ ।
୪୮।୨ ପ୍ରାପତ ହୋଇବା ଦ୍ରବ୍ୟ ଛାଡ଼ିବ କିସକୁ ।—ଛ, ଖ, ନ

କରେଣ ସୁନ୍ଦରୀ ଯେ ଘେନିଲା ରତ୍ନମାଳୀ
ଚିତ୍ରସେନ କଣ୍ଠରେ ଲମ୍ବାଇଲା ବାଳୀ । ୫୦ ।
ସ୍ତ୍ରୀ ରତ୍ନ ନାୟିକା ସେ ଜଗତ ମୋହିନୀ
ବେନିଭୁଜେ ଚିତ୍ରସେନ କୋଳେଣ ତାହାକଇଂ ଘେନି । ୫୧ ।
କନ୍ୟା ଘେନି ବିଜୟେ ପୁଷ୍ପକ ବିମାନେ
ଧାଡ଼ିକାରେ ଚିତ୍ରସେନ ଗଲା ଅନ୍ତର୍ଦ୍ଧାନେ । ୫୨ ।
ପ୍ରବେଶ ହୋଇଲା ଯାଇ ଚିତ୍ରସେନ ଅମର ପୁରେ
ସେ କନ୍ୟାଙ୍କୁ ଲୁଚାଇଲା ମାତଳି ନବରେ । ୫୩ ।
ବାସବଙ୍କୁ ଦରଶନ କଲା ବିଦ୍ୟାଧର
ଦେଖି କୁମାରଙ୍କୁ କୋଳେ ଧଇଲେ ପୁରନ୍ଦର । ୫୪ ।
ଶାପରୁ ମୁକତ ଯେ ହୋଇଲା ଚିତ୍ରସେନ
ଅପସରୀମାନେ କଲେ ଅର୍ଘ୍ୟରେ ବନ୍ଦନ । ୫୫ ।
ସଚଳାର ଭୁଲେ ଥିଲେ ଯେତେକ ପରିବାରୀ
ଧାଡ଼ିକାରେ ପ୍ରବେଶ ହୋଇଲେ ସେ ଦ୍ୱାରାବତୀ ପୁରୀ । ୫୬ ।
ଆସ୍ଥାନ ଉପରେ ଯେ ବିଜୟେ ରାଜା ଉଗ୍ରସେନ
ରଇବ୍ରତ ପରବତେ ବିଜେ ବସନ୍ତଉତ୍ସବ ଯାତ୍ରା ବିଧାନ । ୫୭ ।
ନନ୍ଦ ବସୁଦେବ ଯେ ଅକ୍ରୂର ଉଦ୍ଧବ
ସାତ୍ୟକୀ ଅନାଧୃଷ୍ଟ ଯେ ପ୍ରସନ୍ନଜିତ ଯାଦବ । ୫୮ ।
ସୁମନ୍ତ୍ରେକ ସତ୍ରାଜିତ ଶଉନକ ଆଦିକରି
ସାତବଂଶ ଯାଦବ ଆସ୍ଥାନେ ଛନ୍ତି ପୂରି । ୫୯ ।
ଯଦୁବଂଶ ଭୋଜବଂଶ ଅନ୍ଧକ ବଂଶ ହଇହୟ ବଂଶ ଆଦି କରି
ବୃଷ୍ଣି ବଂଶ କୁକୁରବଂଶ ରୋହିଣୀବଂଶ ଆସ୍ଥାନ ତଳେ ଛନ୍ତି
ଚଉରାଶି । ୬୦ ।
ଯେମନ୍ତ ସମୟେ ଲକ୍ଷେକ ପରିବାରୀ
ଅନେକ କ୍ରୋଧ ଅବସ୍ଥାୟେ ସେ କହନ୍ତି ସୁନ୍ଦରୀ । ୬୧ ।
ଶୁଣ ହେ ଦେବ ଯଦୁବଂଶ ଶିରୋମଣି
କ୍ଷୀରୋଦ୍ର ସ୍ତ୍ରାହାନେ ଯାଇଥିଲି ତୁମର ଦୁଲଣୀ । ୬୨ ।

ବାସବର ନନ୍ଦନ ଯେ ନାମ ଚନ୍ଦ୍ରସେନ
ସଚଳା କନ୍ୟାକଇଂ ହରିନେଲା ଅମର ଭୁବନ । ୬୩ ।
ଆଚମ୍ବିତ ବାରତା ଆସ୍ଥାନ ଲୋକେ ଶୁଣି
ସମସ୍ତେହେଂ ବସିଲେ ସ୍ତମ୍ଭୀଭୂତ ଜାଣି । ୬୪ ।
ଆସ୍ଥାନ ଉପରୁ ବେଗେ ଯେ ଉଠିଗଲାକ ସାତ୍ୟକୀ
ଧାଡକାରେ ଗମିଲା ରାମକୃଷ୍ଣର ଛାମୁଂକ । ୬୫ ।
ଦିବ୍ୟ ଅବତାରେ ସ୍ୱାମୀ ଯାତ୍ରାଯୋଗେ ସଜ
ସାତ୍ୟକୀ ବୋଇଲା ଆହୋ ଶୁଣିମା ଦେବରାଜ । ୬୬ ।
ସମୁଦ୍ର ସ୍ନାହାନଠାରୁ ସଚଳା କନ୍ୟାକୁ
ଚନ୍ଦ୍ରସେନ ହରିନେଲା ବଳାତ୍କାରେ ଅମର ଭୁବନକୁ । ୬୭ ।
ଶୁଣିଣ ସ୍ତମ୍ଭୀଭୂତ ହୋଇଲେ ଜଗନ୍ନାଥେ
ଯେତେ ଭରସା ଚନ୍ଦ୍ରସେନର ବଳଲା କେମଂନ୍ତେ । ୬୮ ।
ଗୋବିନ୍ଦେ ବୋଇଲେ ତୁ ନ କହ ବଳରାମଂକୁ
ଯେତେକ୍ଷଣି ଧାଇଂବେ ସେ ଅମର ଭୁବନକୁ । ୬୯ ।
ବିଜୟେ ବାସୁଦେବ ଆସ୍ଥାନେଣ କରି
ସମସ୍ତେ ବିସ୍ମୟେ ଯେ ଦ୍ୱାରବତୀ ପୁରୀ । ୭୦ ।
ଗୋବିନ୍ଦେ ବୋଇଲେ ହୋ ଯେ କେବଣ ବିଚାର
ବାରତା ପାଇଣ ବିଜୟେ କଲେ ବଳେବର । ୭୧ ।
ବଳରାମ ବୋଇଲେ କସ ବିଚାରୁ ଦେବରାଜ
ଅମର ଭୁବନକୁଇଂ ହରି ଦଣ୍ଡ ବେଗେ ସାଜ । ୭୨ ।
ଭାଙ୍ଗିବି ଅମରପୁର ନ ଥୋଇବି ଇନ୍ଦ୍ରଦେବା
ବିଦ୍ୟାଧର ଆଦିକରି କେ ରକ୍ଷାକରଇ ଆଜ ଅବା । ୭୩ ।
ଯଦ୍ୟପି ଧାତା ଈଶ୍ୱର ଆସିବେ ପରିଧାଇ
ଆନ ଇନ୍ଦ୍ର ସ୍ଥାପିବଇଂ ସତ୍ୟ ସତ୍ୟ କଲି ମୁହିଂ । ୭୪ ।
ଗୋବିନ୍ଦେ ବୋଇଲେ ଦେବ କୋପକର ଶାନ୍ତ
ଇନ୍ଦ୍ରଦେବତାକଇଂ ଆମ୍ଭର କୋପ ନୋହଇ ଯୁଗତ । ୭୫ ।

---

୭୧।୨ ବଳେବର = ବଳରାମ ।

ବାସବ ନ ଜାଣଇ ଅବା ଚିତ୍ରସେନ ନେଲା ହରି
ପିତାଂକୁ ନ କହି ସେ ଥୋଇଲା ଗୋପ୍ୟକରି । ୭୬ ।
ଯେହ୍ନେଥିରି ତଦନ୍ତ ଯେବେ ଦେବଇନ୍ଦ୍ର ଜାଣିଥାନ୍ତା
ସଚଳାକଇଂ ଘେନିଣ ସେ ବହନେ ଆସନ୍ତା । ୭୭ ।
ହେ ଦେବ ମାଳାମ୍ବର ଇନ୍ଦ୍ରକଇଂ କୋପ ନ କର
ଅମରକଇଂ ଦୂତ ପଠିଆଇବା ଆମ୍ଭର । ୭୮ ।
ବାରତା ପାଇଣ ଯେବେ ଇନ୍ଦ୍ର ନ ଆଣଇଂ କୁମାରୀ
ତେବେ ସେ ନାଶ କରିବା ଅମର ସ୍ୱର୍ଗପୁରୀ । ୭୯ ।
ଯେହ୍ନେତେ ବୋଲି ରାମଂକୁ ସମାର୍ଜିଲେ ଶ୍ରୀପୁରୁଷ ଉତ୍ତମ
ଶୁଣିକରି ଶାନ୍ତ ଭଜଲେ ଦେବ ବଳରାମ । ୮୦ ।
ସାତ୍ୟକୀ ଅକ୍ରୂର ସେ ଦୁହିନ୍ତ ହକାରି
ବୋଇଲେ ତୁମ୍ଭେ ଦୁହେଂ ଯାଅ ହୋ ଅମର ସ୍ୱର୍ଗପୁରୀ । ୮୧ ।
ତ୍ରିଦଶ ଦେବତାଯେହ୍ନେ ବସିଥିବେ ଆସ୍ଥାନେ
ସଭାରେ ଯାଇଣ ତୁମ୍ଭେ ଯେ କହିବ ସବୁ ବିଦ୍ୟମାନେ । ୮୨ ।
ସ୍ୱାମୀର ବଚନେ ଯେ ଅକ୍ରୂର ସାତ୍ୟକୀ
ଦୁହେଂ ଚଳିଗଲେ ଇନ୍ଦ୍ର ଦେବତା ତହିଂକି । ୮୩ ।
ବଇଶାଖ ମାସ ଶୁକଳପକ୍ଷ ତୃତୀୟାର ଦିନ
ବୃହସ୍ପତି ବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ । ୮୪ ।
ସେ ଦିନ ବସନ୍ତ ଉଚ୍ଛବ ଯେ ହୋଇ ବିଧାନେ
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର କୁବେର ବରୁଣ ତ୍ରିଦଶ
ଦେବତାଗଣମାନେ । ୮୫ ।
ପବନ ତପନ ଅସିତ ଭୃଗୁ ଯେ କଶ୍ୟପେ
ଯମ ଅନଳ ଗ୍ରହଗଣେ ସମସ୍ତେ ଅଛନ୍ତି ସମୀପେ । ୮୬ ।
ନାରଦେ ଧରିଛନ୍ତି ସ ରଙ୍ଗ ସପତସ୍ୱର ବେଣୀ
ତାଣ୍ଡବ ରସ ଭରହରଷେଣ ଲାଗିଛି ଖଟଣି । ୮୭ ।
ଯେହ୍ନମନ୍ତର ସମୟେହ୍ନ ସାତ୍ୟକୀ ଅକ୍ରୂର
ପୁଷ୍ପକ ଆରୋହି ଯାଇଂ ମିଳିଲେ ଅମର ସଭାର । ୮୮ ।

ଶତେକ ପାବଚ୍ଛ ତଳେଣ ଥାଇ ପରଣାମି
ଆସ୍ଥାନେ ଥାଇ ତାଂକୁ ଦେଖିଲେ ପୁରନ୍ଦର ସ୍ୱାମୀ । ୮୯ ।
ନାରଦେ ନୃତ୍ୟ ରୁହାଇଲେ ସ ତୁକାଙ୍କ ଦେଖି
କସ ଅର୍ଥେ ମାଧବ ତୁ ବଜେକଲୁ ଯେଥିକ । ୯୦ ।
ତହୁଂ ଆସ୍ଥାନର ଭିନ ପାବଚ୍ଛର ତଳେ ପରଣାମି
ଅବଧାନ ହୋଇ ଶୁଣିମା ହେ ଦେବସ୍ୱାମୀ । ୯୧ ।
ଦୂତକଇଂ ଦେଖି ପଚ୍ଚରଇ ପୁରନ୍ଦର
କେଉଂଣ କାରଣେ ଯେଥେ ହୋ ଗବନ ତୁମ୍ଭର । ୯୨ ।
କହନ୍ତ ଅକ୍ରୂର ସାତୁର୍କ ଯୋଡକର ବେନକର
ଶୁଣ ଦେବସ୍ୱାମୀ ସ୍ୱର୍ଗପୁର ପୁରନ୍ଦର । ୯୩ ।
ଯେଉଂଣ କାରଣେ ଆମ୍ଭେ କଲୁଂ ଗବନ
ଆମ୍ଭନ୍ତ ପେଷିଲେ ସ୍ୱାମୀ ହରି ବଳରାମ । ୯୪ ।
ବୋଇଲେ ଦେବ ମଘବାନଂକୁ କହିବ ତୁମ୍ଭେ ଯାଇଂ
କମ୍ପାଇ ଅମାନ୍ତ ଆଚରିଲୁକ ସେହି । ୯୫ ।
ଇନ୍ଦ୍ର ବୋଇଲେ ହୋ ଯେଥି କେଉଂଣ ଚରିତ
କେଉଂଣ ଅନ୍ୟାୟ ଆମ୍ଭର ଦେଖିଲେ ହରି ହଳହାଥ । ୯୬ ।
କହନ୍ତ ବେନଦୂତେ ଶୁଣିମା ବଜ୍ରଧାରି
ହେ ସ୍ୱାମୀ ଶ୍ରୀ ଜଗନ୍ନାଥଂକର ଭରଯା ଜମ୍ବୋବତି ନାରି । ୯୭ ।
ସତଳା ବୋଲି କରଣ ତାହାଂକର ଦୁହିତ
ପ୍ରତକ୍ଷେ ରମ୍ଭା କ ମେନକା ରୂପବନ୍ତୀ । ୯୮ ।
କ୍ଷୀରୋଦ୍ର ସ୍ନାହାନେ ସେ ଆସିଥିଲା ସୁନ୍ଦରି
ଚିତ୍ରସେନ ଗନ୍ଧର୍ବ ତାହାକଇଂ ଆଣିଲୁକ ବଳେ ହରି । ୯୯ ।
ଧାଇଂ ମୁଦୁସୁଲୀଂକ ତହୁଂ ପାଇଣ ବାରତ
ଶୁଣିଣ ମହାକୋପ କଲେ ଦେବ ହଳହାଥ । ୧୦୦ ।
ଦଣ୍ଡ ସାଜ ବୋଲି ଆଗ୍ୟାଂ ଦିଲେ ଦେବହଳୀ
ଶୁଣି ସମାର୍ଜନା କଲେ ଦେବ ବନମାଳୀ । ୧୦୧ ।
ଆମ୍ଭନ୍ତ ପଠିଆଇ ଦିଲେ ଦେବ ଜନାର୍ଦ୍ଧନ
କନ୍ୟାଗୋଟି ଆମ୍ଭ ତୁଲେ ସମର୍ପଣ କର ହୋ ମଘବାନ । ୧୦୨ ।

ଇନ୍ଦ୍ର ଦେବତା ବିଷାଦ ହୋଇଲେ ତାହା ଶୁଣି
ଚିବଦ୍ଧ ହୋଇଣ ସେ ବସିଲେ ବଜ୍ରପାଣି । ୧୦୩ ।
ସମସ୍ତ ଦେବତାଯେ ଶୁଣି ହୋଇଲେ ଆଶ୍ଚର୍ଯ୍ୟ
କରେ କରତାଳ ଦେଇ ହସିଲେ ଈଶ୍ୱର ଦେବରାଜ । ୧୦୪ ।
ବ୍ରହ୍ମାଯେ ବୋଇଲେ ସ୍ୱାମୀ ତୁ ତ ଜଗତର ଗୁରୁ
ଏ ମହାସଭାଯେ ବସି ତୁ କିଂପେ ହାସ୍ୟକରୁ । ୧୦୫ ।
ଆମ୍ଭର ବିଚାରକଇଂ ଏ କଥା ବଡାଇ ଦୁଲଭ
ଇନ୍ଦ୍ର ଗୋବିନ୍ଦେ ଦୁହେଂ ହୋଉଅଛନ୍ତି ଅଭାବ । ୧୦୬ ।
ଯୁଗତେ ବିଚାରେ ଯେବେ ସମର୍ପିବା ଶ୍ରୀହରି କୁମାରୀ
ଇନ୍ଦ୍ର ଗୋବିନ୍ଦେ ପୀରତି ହୋଇବ ଏକସରି । ୧୦୭ ।
ବଳାତକାର କଥା ନହୋଇବ ନା ଅନୁଗତ
ବଳରାମ କୋପକଲେ ଆକାଶ ହୋଇବ ରସାଂଗତ । ୧୦୮ ।
ବଡାଇ ଦୁରାପଦ କଥା ଲଗିଲା ଭଲୁଅଛୁଂ ଆମ୍ଭେ
କେମନ୍ତ ବିଚାରି ଈଶ୍ୱରେ ହାସ୍ୟକଲ ତୁମ୍ଭେ । ୧୦୯ ।
ଈଶ୍ୱରେ ବୋଇଲେ ଆମ୍ଭେ ହସିଲୁ ବିଚାରେ
ବତିଶ ସହସ୍ର କନ୍ୟା ସେ ହରିଲା ବଳାତକାରେ । ୧୧୦ ।
ଆପଣେ ପରସ୍ତ୍ରୀମାନ ବଳେ ହରିନେଇ ପାରଇ
ତାହାର ବେଳେ କିଂପେ ସହିତ ନୁଆରଇ । ୧୧୧ ।
ବଜ୍ରନାଭର ଦୋହିତା ହରିଲା ପ୍ରଭାବତୀ
ବାଣାସୁର ଘରୁ ଊଷାକୁ ହରିଲା ତାର ନାତି । ୧୧୨ ।
ଆପଣେ ଥାଇଂଣ ସେ ଏଥିକଇଂ କଳ ଭିଆଇଲା
ବୃହସ୍ପତିର ଭାରିଯା ନେଇ ଚନ୍ଦ୍ରେ ଦିଆଇଲା । ୧୧୩ ।
ତାହାରେଣ ନାଶଗଲେ ବୃହସ୍ପତି ଦେବଗୁରୁ
ଅନେକ ଅଭିମାନ ସହିତେ କେ ପାରୁ । ୧୧୪ ।

---

୧୦୮।୨ ବଳରାମ କୋପକଲେ ସ୍ୱର୍ଗ ହୋଇବ ଭଗନନ୍ତ ।—ଡ, ଥ

୧୦୮।୨ ବଳରାମ କୋପକଲେ ସ୍ୱର୍ଗ ହୋଇବ ନାଶାଂଗତ ।—ଙ, ଝ।

ଆହୋ ବାଣାସୁର ଘରେ କନ୍ୟାଗୁର ପାଇଂ
ମୋହୋର ଭୁଜେ ଅନେକ ଦ୍ୱନ୍ଦ୍ୱ ଯେ ଲଗାଇ । ୧୧୫ ।
ଶିବଗଣନ୍ତ ମୋହୋର ସମସ୍ତ ନାଶକଲ
ମୋହୋର ଦେଖନ୍ତେ ବାଣାସୁରର ନଅଶ ଅଠାଶୋଇ ଭୁଜ ଛେଦ
ପକାଇଲ । ୧୧୬ ।
ସମୋଦ୍ର ମନ୍ଥନୁଂ ଜାତ ହୋଇଲା ପାରିଜାତକ ତରୁ
ସମସ୍ତେ ବୋଇଲେ ଯେହୁ ଇନ୍ଦ୍ର ଭୋଗକରୁ । ୧୧୭ ।
ଅନେକ ଦ୍ୱନ୍ଦକଲ ସେ ବାସବର ଭୁଜେ
ପାରିଜାତକ ତରୁ ନେଲ ଭାରିଯାର ବୋଲେ । ୧୧୮ ।
ସମସ୍ତେ ବୋଇଲେ ଆମ୍ଭ ବୋଲ ନ କଲା ସେ ଯେହୁକା
ସେ ପାରିଜାତ ତରୁ ନେଇ ରୋପିଲା ଦ୍ୱାରିକା । ୧୧୯ ।
ଆରେ ଆରେ ସାତ୍ତ୍ୱକୀ ତୁମ୍ଭେ ପରସ୍ତି ସି ହରିପାର
ଯେହୁବେ ତୁମ୍ଭର ବେଳେ ସହିତ ନୁଆର । ୧୨୦ ।
ତୁମ୍ଭେ ପାରିଜାତକ ହରିଲ ଶଙ୍ଖସେନ ହରିଲ ତୁମ୍ଭର କୁମାରୀ
ପାରିଜାତକ ପାଇଂ ଯେ ସଚଳା ପାଲଟା କୁମାରୀ । ୧୨୧ ।
ସାତ୍ତ୍ୱକୀ ଅପମାନ ଈଶ୍ୱର ବଚନ ଶୁଣି
ନ ପୁଣ ଇନ୍ଦ୍ରଙ୍କୁ ରକ୍ଷାକର ନୁଆରଇ ଶୂଳପାଣି । ୧୨୨ ।
ଈଶ୍ୱର ବୋଇଲେ ତୁ କହ ବେଗେ ଯାଇଂ
ଆମ୍ଭର ତହୁଂକ ସେ ସାଜ ଆସନ୍ତୁ ବେନଭାଇ । ୧୨୩ ।
ମୁହିଂ ସମର କରିବେ ବାସବର ପାଇଂ
ଆସନ୍ତୁ କ ନାହେ ସେ କେତେ ଦଣ୍ଡ ବାହା । ୧୨୪ ।
ସାତ୍ତ୍ୱକୀ ବୋଇଲ ସ୍ୱାମୀ ତୁମ୍ଭେ କହୁଅଛ ଯେହୁବେ
ରାମକୃଷ୍ଣ ଜିଣି ନୁଆରିଲ ବାଣାସୁରର ପ୍ରସ୍ତାବେ । ୧୨୫ ।
ଈଶ୍ୱର କୋପକଲେ ସାତ୍ତ୍ୱକୀର ବଚନେ
ଭୟେଣ ସାତ୍ତ୍ୱକୀ ଚଳିଲ ପୁତ୍ରଙ୍କ ସ୍ୱମାନେ । ୧୨୬ ।

---

୧୨୩ { ଈଶ୍ୱର ବୋଇଲେ କହ ଯା ଆସନ୍ତୁ ବେନ ଭାଇ
ମୁହିଂ ସମର କରିବ ଯେହୁକା ବାସବର ପାଇଂ ।—ତ, ଦ,ଧ,ଚ,ଜ

ଈଶ୍ୱରେ ବୋଇଲେ କହ ଯାଇ କୃଷ୍ଣ ବଳେବର
ଇନ୍ଦ୍ର ଦେବତା ପାଇଂ ସମର ହୋଇଲା ମୋହୋର । ୧୨୭ ।
ସାତ୍ୟକି ଅକ୍ରୂର ଚଳିଲେ ଅଭିମାନେ
ପ୍ରବେଶ ହୋଇଲେ ଯାଇ ଦ୍ୱାରବତୀ ଭୁବନେ । ୧୨୮ ।
ଶ୍ରୀ ରାମକୃଷ୍ଣ ଯେ ପଚାରିଲେ ବାଣୀ
ସାତ୍ୟକି ବୋଇଲେ ଦେବ ଶୁଣିମା ଚକ୍ରପାଣି । ୧୨୯ ।
ସ୍ୱାମୀ ଅପାର ପ୍ରତଗ୍ୟାଂ ସେ କହିଲେ ବିଶ୍ୱନାଥେ
ବୋଇଲେ ଦଣ୍ଡ ଘେନ ଆସନ୍ତୁ ରାମକୃଷ୍ଣ ବେନଭ୍ରାଥେ । ୧୩୦ ।
ବୋଇଲେ ଯେ ଘାନ୍ତ ସେ ସମର କୁତୂହୋଳ ହୋଇବ ସରୂପ
ସେ ଚନ୍ଦ୍ରସେନ ଭାଞ୍ଜିଲା ରେ ତୁମ୍ଭର ହାଦେ ଦର୍ପ । ୧୩୧ ।
ଆରେ ଯେବେ କମ୍ପେ ସହି ନୁଆରିଲ ଯେକା କନ୍ୟାଗୋଟି
ବାଣାସୁର ପୁରେ ମୋହୋର ତୁଲେ ସମର କଲୁଟି । ୧୩୨ ।
ଈଶ୍ୱରେ ବୋଇଲେ ସେ ତୁମ୍ଭେ ଯେ ହରିଲ କୁସୁମ ପାରିଜାତ
ତାହାଂକ ପାଲଟି ହୋଇଲା ସେ ସଚଳା ଦୁହିତ । ୧୩୩ ।
ସ୍ୱାମୀ ସମସ୍ତ ଦେବତାଯେ ସଭାରେ ଛନ୍ତି ବସି
ଈଶ୍ୱର ବଚନ ସମସ୍ତେହେଂ ନାକମଳା ହସି । ୧୩୪ ।
ଶୁଣିଣ କୋପାନଳ ଦେବ କାମପାଳେ
କୋପେ ବୁଲାଇଲେ ଦେବ ସଉନନ୍ଦ ମୂଷଳେ । ୧୩୫ ।
ସାଜ ସାଜ ବୋଲି ଶୁଭିଲା ଗରୁଡାଙ୍କ
ତ୍ରଇଲୋକ୍ୟ କମ୍ପିଲା ବଳଦେବଙ୍କର ହାକ । ୧୩୬ ।
ଆହୋ ଚଇତନ ଯେମନ୍ତର ସମଯେ ଇନ୍ଦ୍ର ଯେ ଦେବତା
ସଭାଯେଣ ଉଭା ସେ ହୋଇଲେ ସୁରନାଥା । ୧୩୭ ।
ଇନ୍ଦ୍ର ଦେବତା ବୋଇଲେ ସ୍ୱାମୀ ଶୁଣିମା ଶୂଳଧାରୀ
ଅମର ନାଶଯିବେ ମୋର ବଳେବରେ କୋପେ କରି । ୧୩୮ ।

---

୧୩୨ { ଯେବେ କମ୍ପେ ସହି ନୁଆର ଯେକକନ୍ୟାକୁ ଦୁଷ୍ଟମତି
ନ ସହିଲେ ଯୁଦ୍ଧ କରନ୍ତୁ ଆସି ସେ ବେନି ଭାଇଟି ।—ପାଠାନ୍ତର

ସଚଳା କନ୍ୟାକୁ ଯିବଇଂ ମୁହିଂ ଘେନ
ଦ୍ୱାରକାଏ ରାମକୃଷ୍ଣ ଚରଣେ କରିବ ଦର୍ଶନ । ୧୩୯ ।
ଈଶ୍ୱର ବୋଇଲେ ଆହୋ ଶୁଣସି ସୁରପତି
ତ୍ରିଦଶ ଦେବତାଏ ଆମ୍ଭେ ହୋଇଲୁଂ ତୋର କତି । ୧୪୦ ।
ବ୍ରହ୍ମା ପବନ ଚନ୍ଦ୍ର ସୂର୍ଯ୍ୟ କୁବେର
ଗ୍ରହଗଣ ନିର୍ଘାତ ଯେ ଯମ ବଇଶ୍ୱାନର । ୧୪୧ ।
ବରୁଣ ସହିତେ ସମସ୍ତ ମେଘମାଳ
ସମସ୍ତେ ସତ୍ୟକର ଆମ୍ଭେ ରଖିବା ଆଖଣ୍ଡଳ । ୧୪୨ ।
ସଭ୍ରଏ ଆଗ୍ୟାଂ ଯହୁଂ ଦଳେକ ଧୂର୍ଜଟି
ବଇଶ୍ୱାନରଂକ ବଚନ ଅବା କେ ପାରିବ ମେଣ୍ଟି । ୧୪୩ ।
ହୋଇଲୁଂ ଏକତ୍ର ଆମ୍ଭେ ତ୍ରିଦଶ କୋଟି ଦେବା
ସମସ୍ତେ ହୋଇ ଆମ୍ଭେ ଅମର ରଖିବା । ୧୪୪ ।
ସମସ୍ତେ ଛୁଇଂଲେ ନିରଞ୍ଜନର ପାଦୁକା
ଜୟ କରିବ ସେ ହରି, ବହୁତ ହୋଇ ବାସୁଦେବ ଏକା । ୧୪୫ ।
ଦେବତାଂକ ପ୍ରତିଗ୍ୟାଂ ଶୁଣିଣ ଆଖଣ୍ଡଳ
ସ୍ୱାମୀ ବେଦବର ଜିଣି ପାରିବା ଠିକ କୃଷ୍ଣ କାମପାଳ । ୧୪୬ ।
ଯେବେ ପାରିବା ତେବେ କରିବା ସାଂଗ୍ରାମ
ଜିଣି ନୁଆରିଲେ ମୁହିଂ କରିବଇଂ ସାମ୍ୟ । ୧୪୭ ।
ବାସବର ବଚନେ ବୋଇଲେ ସୃଷ୍ଟି କରତା
ସମରେ ଆମ୍ଭନ୍ତ କେହି ନାହିଂନା ଜିଣନ୍ତା । ୧୪୮ ।
ସେ ଆମ୍ଭନ୍ତ ଜିଣି ନୁଆରିବେ ଆମ୍ଭେହେଂ ତାହାନ୍ତ ନୁଆରିବା ଜିଣି
ଏ ଦୁଇବଳ ସମ ହୋଇବ ବୋଇଲେ ଶୂଳପାଣି । ୧୪୯ ।
ଏକା ଜଣେକ ଅଛୁ ଦୁଇ ବଳର ଯେ ମଧ୍ୟେ
ସେ ଯାହା କରିବ ଯାଇ ସେ ଜିଣିପାରଇ ଯୁଦ୍ଧେ । ୧୫୦ ।

---

୧୪୭ { ଯେବେ ପାରିବା ତେବେ କରିବା ସମର
ଜିଣି ନୁଆରିଲେ କର୍ମେ କରିବା କନ୍ଦଳ ।—ଡ, ଠ

ପିତାଙ୍କୁ ପୁଚ୍ଛାକଲେ ଯେ ଦେବ ବଜ୍ରପାଣି
ସେ କେବଣ ପୁରୁଷ କହ ମୁଂ ପାରିବ ଟିକ ଆଣି । ୧୫୧ ।
ସେ ରାମକୃଷ୍ଣ ଆମ୍ଭେଟି ତେତିଶ କୋଟି ଦେବଗଣେ
ଯେତେକ ଜଣିବାକୁ କେ ସାମରଥ ଯେବାଜଣେ । ୧୫୨ ।
ତାହାର ମହିମାଂ ସେ ଜୀବନହିଂ ଧନ୍ୟ ଧନ୍ୟ
ସାଧୁ ତାହାର ପିଅର ସାଧୁ ତାହାର ଜନନୀ । ୧୫୩ ।
ଧାତାଯେ ବୋଇଲେ ସେ ପାର୍ଥିବ ବଂଶେ ଜାତ
କୋଇନ୍ତାଂକର ନନ୍ଦନ ସେ ତୋହୋର ଗର୍ଭେ ସମ୍ଭୂତ । ୧୫୪ ।
ନିବାତ କବଚ ନିଶୋଧନ ଖାଣ୍ଡବ ବନ ଦହନ
ଅଗ୍ନିଦେବତାଂକର ଲୁଦୁବୁଦୁ ବ୍ୟାଧି ଛଡାଇଲା ଯେଉଂଣ ଅରଜୁନ । ୧୫୫ ।
ସଭାରେ ବାହାସ୍ଫୋଟ ଦେଇଣ ସୁରପତି
ଯେ ମୋହୋର ପୁତ୍ର ଥାଉଂ କାହାକୁ ମୋର ଭୀତି । ୧୫୬ ।
ସେ ମୋ ସଦପୁତ୍ର ଆଉ ଭୟ କି ମୋହୋର
ତ୍ରିଲୋକ ବନ୍ଦିତ ପୁତ୍ରଗୋଟି କୀର୍ତ୍ତିକର । ୧୫୭ ।
ଚଉରାଶି ବେଳ ମୋତେ ନିବାତକବଚ ଦେଲା ଧାଡି
ସତ୍ୟ ତ୍ରେତା ବେନିଯୁଗେ ନୋହିଲା ମୁଂ ତାକୁ ସରି । ୧୫୮ ।
ଅର୍ଜୁନ ଜାତ ହୋଇଲା ଆସି ଦ୍ୱାପର ଯୁଗେ
ନିବାତକବଚକୁ ବଧ କଲା ଯେ ମୋହୋର ରାଗେ । ୧୫୯ ।
ପୁଣିହିଂ ସେ ବଧକଲା ହିରଣକବଚ
ସେ ପୁତ୍ରର ପ୍ରସନ୍ନେ ମୁଂ ଅମରେ ସହସ୍ରାକ୍ଷ । ୧୬୦ ।
ମମ ଆତ୍ମା ଦେଇ ସେ ପୁତ୍ର ଜାତ କଲେ
ଯେତେ ଅପଚଯେ କଂକେ ଗାଣ୍ଡିବ ଧନୁର୍ଜୟେ । ୧୬୧ ।
ଅନେକ ଅଲଂକାର ଯେ ଦେଇଣ ଦେବଇନ୍ଦ୍ର
ବୋଇଲା ମାତଳିକ ଘେନ ତୁମ୍ଭେ ଯାଅ ହୋ ନାରଦ । ୧୬୨ ।

---

୧୫୮।୨ ସତ୍ୟ ତ୍ରେତାୟା ଦ୍ୱାପରେ ନୋହିଲି ମୁଂ ସରି ।—ଇ, ଥ, ଜ, ଝ

ପାଣ୍ଡବେ ରହିଅଛନ୍ତି ଗୋକର୍ଣ୍ଣିକା ତୀର୍ଥେ
ଅର୍ଜ୍ଜୁନକୁ ଯାଇଁ ଘେନଆସ ବହନ ବ୍ରହ୍ମସୁତେ । ୧୬୩ ।
ତୁମ୍ଭେ ବ୍ରହ୍ମା ସମାନେ ଅଟ ମହରଷି
ତୁମ୍ଭନ୍ତ ମାତଳି ଦେଖିଲେ ଆସିବ ବହନ ମୋର ଶୀଘି । ୧୬୪ ।
ଅନେକ ସାନନ୍ଦେ ସେ ଚଳନ୍ତି ମୁନିବର
ପୁଷ୍ପେକ ରଥେ ବସି ମାତଳି ସଙ୍ଗତର । ୧୬୫ ।
ଆହୋ ଚନ୍ଦ୍ର ଦେବତାଏ ଯେ ଆସ୍ଥାନେ ବସିଥିଲେ
ଧାତକାରେ ନିଶାଏ ସେ ବାହାର ହୋଇଲେ । ୧୬୬ ।
ବିଚାରଇ ଶଶଧର ତାହାର ହରଣେ
ଏକା ମୋତେ ରକ୍ଷାକଲେ ଦେବ ନାରାୟଣେ । ୧୬୭ ।
ତ୍ରିଦଶ ଦେବେ ଯେ ଆବୋରିଲେ ବୃହସ୍ପତି
ଏକା ନାରାୟଣ ପ୍ରସାଦେ ମୁଁ ଜିଣିଲି ସବୁନ୍ତି । ୧୬୮ ।
ଏତେକ ମନେ ବିଚାରି ସେ ଦେବ ଶଶଧର
ଧାତକାରେ ପ୍ରବେଶ ଯାଇଁ ଦ୍ୱାରାବତୀ ପୁର । ୧୬୯ ।
ସମଦଣ୍ଡ ସଜ କରୁଅଛନ୍ତି ରାମକୃଷ୍ଣେ
ଚନ୍ଦ୍ର ଦେବତା ପ୍ରବେଶ ହୋଇଲେ ନିକଟେ । ୧୭୦ ।
ଚନ୍ଦ୍ରଙ୍କୁ ଦେଖି ପୁଚ୍ଛିଲେ ଦେବ ଜନାର୍ଦ୍ଦନ
ଦେବତାଙ୍କ ଚରିତ କି ଦେଖିଲୁ ବିଧାନ । ୧୭୧ ।
ଚନ୍ଦ୍ର ଦେବତା କହିଲେ ବହୁତ ଦେବତାଙ୍କର କଥା
ଏକ କଟକେ ହୋଇଲେ ସମସ୍ତ ଦେବତା । ୧୭୨ ।
ନିଚୟେ ଗୋଳ ସମର ହୋଇବ ଦେବହର
ଇନ୍ଦ୍ର ଦେବତାଏ ସେ ବ୍ରହ୍ମାଙ୍କୁ ପଚାରି । ୧୭୩ ।
ଆମ୍ଭର କଟକେ ହୋଇବେ ତ୍ରିଦଶ ଦେବେ
ଯଦୁବଂଶ ଘେନ କଟକେ ହୋଇବେ କୃଷ୍ଣ ବଳଦେବେ । ୧୭୪ ।
ଆମ୍ଭେ ଯେବେ ଜିଣି ପାରିବା ତାହାଙ୍କୁ ସଂଗ୍ରାମେ
ହାରିବାଁ ବୋଇଲେ ମୁଁ କରିବଇଁ ହାଦେ ସାମ୍ୟ । ୧୭୫ ।
ବ୍ରହ୍ମାଏ ବୋଇଲେ ଓହୋ ବଳ ମଧ୍ୟେ ଅଛଇ ଏକାଜଣେ
ସେ ଯାହା କଟକେ ଯିବ ଜିଣିମ ସେହୁ ରଣେ । ୧୭୬ ।

ଆହୋ ଇନ୍ଦ୍ର ତୋହୋର ସେ ପୁତ୍ର ଯେ ବାସୁଦେବରେ ପୀରତି
ଅର୍ଜୁନ ଯାହାର କଣ୍ଟକ ଯାଇ ସେ ଜିଣିମ ସବୁନ୍ତି । ୧୭୭ ।
ପିତା ମୁଖୁଂ ଯେସନେକ ବଚନ ଶୁଣିଣ ଦେବଇନ୍ଦ୍ର
ଅର୍ଜୁନକଇଂ ଆଣିତେ ପଠାଇଲେ ମାତଳ ନାରଦ । ୧୭୮ ।
ପାଣ୍ଡବେ ଅଛନ୍ତି ଯେ ଗୋକର୍ଣ୍ଣିକା ବଇତରଣୀ ତୀର୍ଥେ
ନାରଦ ଚଳଗଲେ ଆବର ମାତଳି ସହିତେ । ୧୭୯ ।
ଶୁଣିଣ ମନେ ହରଷ ହୋଇଲେ ବାସୁଦେବ
ପଦ୍ମନକଇଂ ରାଇ ଆଜ୍ଞାଂ ଦିଲେକ ମାଧବ । ୧୮୦ ।
ବାବୁ ପଦ୍ମନ ବହନ ହୋଇ ଯିବୁ ତୁ ଗୋକର୍ଣ୍ଣିକା ତୀର୍ଥକୁ
ପୁଷ୍ପେକ ରଥେ ବସାଇ ଆଣିବୁ ତୁ ପାଥକୁ । ୧୮୧ ।
ସେ ମୋହୋର ପ୍ରାଣର ସଖା ଅଟଇ ଫାଲଗୁନ
ବେଗକରି ଦ୍ୱାରିକାକୁ ଆସ ତାକୁ ଘେନ । ୧୮୨ ।
ଗୋବିନ୍ଦ ବୋଲକରି ଯେ ଯେତୁକଇ ଅସୁର
ଭାଙ୍ଗିଣ ଭଗନସ୍ତ କଲାକ ମୋହୋର ପୁର । ୧୮୩ ।
ତାହାଙ୍କୁ ଯୁଦ୍ଧେ ନାଶକଲା ବୀର ସବ୍ୟସାଚୀ
ବେଳେ ବେଳେ ଦ୍ୱାରିକା ମୋ ସେହୁ ରଖିଅଛି । ୧୮୪ ।
ଯେସନେକ ସମୟେ ମୋତେ ଗୁଡିବ ଫାଲଗୁନ
ବହନ ପଦ୍ମନ ରେ ଆସ ତାକୁ ଘେନ । ୧୮୫ ।
ସ୍ୱାମୀର ଆଜ୍ଞାଂଯେ ସେ ମୀନ ଯେ କେତନ
ପାଣ୍ଡବଂକର କଣ୍ଟକ ସେ ଚଳଇ ବହନ । ୧୮୬ ।
ଉଡଇ ବିମାନ ତାର ଯେ ଆକାଶର ମାର୍ଗେ
ପ୍ରବେଶ କାମଦେବ ଯାଇ ବଇତରଣୀ ନଦୀ ପଶ୍ଚିମ ଭାଗେ । ୧୮୭ ।
ନାରଦେ ବିଜେକଲେ ଯାଇଂ ପାଣ୍ଡବଂକର କଣ୍ଠ
ଦେଖିଣ ଉଠିଲେ ଯେ ବଚନବାର୍ଯ୍ୟର ନାଥ । ୧୮୮ ।
ପାଦାଅର୍ଘ୍ୟ ଦେଇଣ ଯେ ପୁଜିଲେ ନାରଦଂକୁ
କୃଷ୍ଣାଜୀନ ଗୁଲଗୋଟି ଦିଲେ ବସିବାକୁ । ୧୮୯ ।
ବସନ କୁଣ୍ଡଳ ରତ୍ନମାଳ ଦେଇ କଲେ ପାଦପୂଜା
ପ୍ରଣିପତ୍ୟ ହୋଇଣ ଯେ ପୁଛନ୍ତି ଧର୍ମରାଜା । ୧୯୦ ।

ଯୁଧିଷ୍ଠିର ଦେବେ ବୋଇଲେ ଆଜ ମୋର ଜୀବନ ସୁଫଳ
ତୁମ୍ଭନ୍ତ ଭେଟିଲା ଯେ ପବିତ୍ର ହେଲା ମୋର କୁଳ । ୧୯୧ ।
ପ୍ରତକ୍ଷେ ଦେବ ତୁମ୍ଭେ ଅଟ ଦୁଷ୍ଟବ୍ରହ୍ମା
ଅଭୟେ ନମସ୍କାର ତୁ ପ୍ରତକ୍ଷେ ମହାତମା । ୧୯୨ ।
ନାରଦେ ବୋଇଲେ ବାବୁ ବ୍ରତଅଛ ଠିକ ଭଲେ
ତପୀବଳ ରକ୍ଷାକଲୁ ନାଶିଲୁ ଅସୁରେ । ୧୯୩ ।
ଭୀମ ଅରଜୁନ ଯେ ନକୁଳ ସହଦେବ
ସେବା କରିଅଛନ୍ତ ନା ଛୋଡେ ଭଗତର ଭାବ । ୧୯୪ ।
ଦାନବଂକର ଭୟୁ ନାହିଂନା ୟେ ପୃଥୀ
କ୍ଷମା ଦୟା ଧାର୍ମିକ ହୋଇ ଧେନଥିବୁ ସେ ପ୍ରକୃତ । ୧୯୫ ।
ୟେ ବନବାସକୁ ବାବୁ ନ କରସି ତୁ କିଛୁ ଚିନ୍ତା
ୟେଥୁ ଅନନ୍ତରେ ପୁଣ ହୋଇବୁ ମହାରଥା । ୧୯୬ ।
ପଞ୍ଚୁ କଂଟକ ୟେକାଙ୍ଗେ ହୋଇବ ପରାପତ
ତୁ ହୋ ମହାଧାର୍ମିକ ଜାଣିଅଛନା ସମସ୍ତ । ୧୯୭ ।
ଯୁଧିଷ୍ଠିର ଦେବେ ବୋଇଲେ କୁଶଳ ସର୍ବକଥା
ୟେ ବନବାସ ମୋତେ ପ୍ରାପତ ହୋଉ ଯେ ସର୍ବଥା । ୧୯୮ ।
ଦେଖ ମୋହୋର ତୁଲେ ଛନ୍ତ ଅଠାଶି ସହସ୍ର ଋଷି
ଅନୁବ୍ରତେ ଧର୍ମପୁରାଣ ଶୁଣୁମୁରେ ମୋର ଭଷି । ୧୯୯ ।
ଜଳରେ ସାର୍ଥକ ତୀର୍ଥ ଗୋଟିୟେ ଯେବେ କରି
ୟେକତୀର୍ଥର ଫଳଶ୍ରୁତି ଅଶ୍ୱମେଧ ଯାଗସାରି । ୨୦୦ ।
ୟେ ମହୀମଣ୍ଡଳେ ଯେତେକ ତୀର୍ଥମାନ ଅଛି
ପିତୃକାର୍ଯ୍ୟ କରିବ ମୁହିଂ ସକଳ ତୀର୍ଥ ବାଞ୍ଛି ୨୦୧ ।
ନୋହୁ ନୋହୁ ରାଜ୍ୟପଦ ଅନୁବ୍ରତେ ହୃଦ
ଶୁଣିଣ ପ୍ରଶଂସା ଯେ କଲେକ ନାରଦ । ୨୦୨ ।
ଆହୋ ନାରଦ ଯୁଧିଷ୍ଠିର କଥା ହୋଇବାର ସମୟେ
ଧାତକାରେ ପ୍ରବେଶ ଆସି କୃଷ୍ଣର ତନୟେ । ୨୦୩ ।
ହମାନୁଂ ଓହ୍ଲାଇ ଯୁଧିଷ୍ଠିରଂକ ଚରଣେ ପଣମି
ଭଗତବହଳ ଅବଧାର ଦେବସ୍ୱାମୀ । ୨୦୪ ।

ଯାଏଁ ଯାଇଂ କାମଦେବ କରଇ ନଉଛାଳ
ଝାଳେଣ ଚିପନ୍ତ୍ର ଯେ ଶରୀର ଭୂମିରଜ ଧୂଳି । ୨୦୫ ।
ମସ୍ତକେ ହାଥ ଦେଇଣ ଅନେକ ଭୁସ୍ତି ବୋଲି
ସାଷ୍ଟାଙ୍ଗେ ପ୍ରଳମ୍ଭିତ ସ୍ମୁମୁରେ ଶୁଣ୍ଡଲ ଗଡଘାଲ । ୨୦୬ ।
ଯୁଦ୍ଧେଷ୍ଟି ଦେବେ ବୋଇଲେ ବାବୁ ଯାଅରେ ନକୁଳ
ବାଞ୍ଚା ସିଦ୍ଧହୋଉ ପଦ୍ମନଙ୍କୁ ବେଗେ ତୋଳ । ୨୦୭ ।
ଧାଡକାରେ ନକୁଳ କୋଳାଗ୍ରତ କର ତୋଳଧର
ବସ୍ତ୍ରେ ବଦନ ପୋଛଇ ଶମ୍ବର ଅଇର । ୨୦୮ ।
ଯୁଦ୍ଧେଷ୍ଟି ଦେବଂକ ସ୍ମୁମୁରେ ପୁର ମେଣ୍ଟି
ମସ୍ତକେ ପଦ୍ମନ ଦେଇ ବେନ କରଗୋଟି । ୨୦୯ ।
ଅର୍ଜୁନ କୋଳକର ବସାଇଲ ପଦ୍ମନଙ୍କୁ
ମୁଖରେ ଚୁମ୍ବନ ଦେଇ ଆଶ୍ୱାସଇ ତାଙ୍କୁ । ୨୧୦ ।
ଯୁଦ୍ଧେଷ୍ଟ ବୋଇଲେ କ୍ଷେମେ ଅଛୁ ନା ଦ୍ୱାରକା
ଦଇତ ଦାନବଂକର ନାହିଂନା କଛୁ ଶଂକା । ୨୧୧ ।
ସ୍ମୁମୁରେ ପଦ୍ମନ କହିଲ ସମସ୍ତ କୁଶଳ ବୋଲି
ଠାକୁରଂକ ଆଗ୍ୟାଂରେ ମୁଂ ବହନ ଅଇଲି । ୨୧୨ ।
ଯୁଦ୍ଧେଷ୍ଟି ବୋଇଲେ ବାବୁ କେବଣଇ ଗୁଣ
ସ୍ୱାମୀ ଅରଜୁନ ଠାକୁରେ ଦ୍ୱାରକା ଯିବେ ଯେତ୍ନକ୍ଷଣ । ୨୧୩ ।
ଯୁଦ୍ଧେଷ୍ଟି ଦେବେ ବୋଇଲେ ଯଦ୍ୟପି ଅଇଲେ ପଦ୍ମନ
ଯେତ୍ନକ୍ଷଣି ଦ୍ୱାରକାକୁ ଯାଅ ରେ ଅର୍ଜୁନ । ୨୧୪ ।
ପଦ୍ମନଙ୍କୁ ପଚ୍ଚରିଲେ କେବଣ କାରଣ ତୁ ଜାଣୁଟି କରେ ବାବୁ
ବଡ କାର୍ଯ୍ୟହେଲେ ଆମ୍ଭେ ଯେତ୍ନକ୍ଷଣି ଯିବୁଂ । ୨୧୫ ।
ପଦ୍ମନ ବୋଇଲେ ଦେବ ଅର୍ଜୁନ ଠାକୁରଂକର ଗଲେ
ଜଗନ୍ନାଥେ କହିବେ ସିନା ସ୍ମୁମୁରେ ଭେଟିଲେ । ୨୧୬ ।

---

୨୦୮।୨ ବସ୍ତ୍ରେଣ କର୍ଦ୍ଦନ ପୋଛଇ ଶମ୍ବର ଅଇର ।—ଜ, କ, ଥ, ଛ

୨୧୦।୨ ମୁଖରେ ଚୁମ୍ବନ ଦେଇ ଭଡଇ ତାଙ୍କୁ ।—ଘ, ଢ, ଡ, ଜ

ଯୁଧିଷ୍ଠିର କହେ ବୋଇଲେ ଶୁଣ ହୋ ସହଦେବ
କେଉଂଣ ନିମନ୍ତେ ଅର୍ଜୁନେ ନେମାକୁ ପେଷିଲେ ପଦ୍ମନକୁ,
ବାସୁଦେବ । ୨୧୭ ।
ବାବୁ ଦଇତ ଦାନବଂକର ଆମ୍ଭେ ଅଟୁ ଯେ ବଇରି
ଆମ୍ଭନ୍ତ ହିରଣ୍ୟକପଟ ନେଲାଣି ଛଦ୍ମ ରୂପ ଧରି । ୨୧୮ ।
ଦଇତେ ହୋଇ ପାରନ୍ତିଟି ପଦ୍ମନ ସରୂପ
ଯେହୁ ପଣ୍ଡାଇ ବୁଦ୍ଧି କହନ୍ତି ରେ ବାପ । ୨୧୯ ।
ଆପଣା କରନ୍ତୁ କୃଷ୍ଣଂ ବୋଲଇ ସହଦେବ
ସ୍ୱାମୀ ବାସବ ବାସୁଦେବଂକର ହୋଇଛି ଅଭାବ । ୨୨୦ ।
ଜମ୍ବୁବନ୍ତର ଦୁହିତା ସଚଳାବନ୍ତି ନାମ
କାଲି ଯେତେବେଳେ ଚିତ୍ରସେନ ଗନ୍ଧର୍ବ ନେଲା ତାକୁ ହରି । ୨୨୧ ।
ତେଣୁକରି ଦଣ୍ଡ ସାଜୁଅଛନ୍ତି ଗୋବିନ୍ଦ
ନିଦଣ ଦେବତାନ୍ତ ହୋନ ସମର ବରିବେ ଅସକନ୍ଦ । ୨୨୨ ।
ତହିଂର ନିମନ୍ତେ ଯେ ପଦ୍ମନକୁ ହେଲେ ପଠିଆଇ
ସେ ନିମନ୍ତେ ଅଇଲା ପଦ୍ମନ ଅର୍ଜୁନ ଠାକୁରଂକୁ ନେଇ । ୨୨୩ ।
ନାରଦେ କରତାଳ ଦେଇ ବୋଇଲେ ଶୁଣ ହୋ ଯୁଧିଷ୍ଠିର
ଯେହୁ କଥାକୁ ଆମ୍ଭନ୍ତ ପଠିଆଇଲେ ପୁରନ୍ଦର । ୨୨୪ ।
ବାବୁ ଅନେକ ବନୋଯ୍ମୀ ହୋଇ କହିଛନ୍ତି ମଘବାନ
ନିବାତକପଟ ମାରି ଅମରେ ମୋତେ ଥାପିଲା ଅରଜୁନ । ୨୨୫ ।
ତାହାରେ ସିନା ଅଟଇ ଅମର ସ୍ୱର୍ଗପୁରୀ
ଯେ ସମୟେ ପୃଥ୍ୱ କଂକେ ଗୁଡ଼ିବ ମୋହୋରି । ୨୨୬ ।
ମାତେଳିକ ଆମ୍ଭନ୍ତ ପଠିଆଇଲେ ସୁରନାଥେ
ବହନ ଯିବା ଧନୁର୍ଜୟେ ବଜେକର ପୁଷ୍ପକ ଯେ ରଥେ । ୨୨୭ ।

---

୨୧୯।୧ ତୁମ୍ଭେ ମହାମନ୍ତ୍ରୀ କହ ଯେଥିର ସନ୍ଧି ଗୋପ୍ୟ ।—ଙ, ଡ
୨୧୯।୨ ଯେ ପରମ ତତ୍ତ୍ୱ ବୁଦ୍ଧି କହନ୍ତି ରେ ବାପ ।— କ, ଛ
୨୨୫।୨ ନିବାତକପଟ ମାରି ସ୍ୱର୍ଗ ଥାପିଲା ଫାଲଗୁନ୍ୟ ।— କ,ଛ,ଥ,ଡ,କ, ଡ

ପଦ୍ମୁନ ବୋଇଲା ସ୍ୱାମୀ ଦ୍ୱାରବତୀ ଭୁବନ
ଗୋସିଂହ ଦଇତ ଯେ କଲା ନିଶୋଧନ । ୨୨୮ ।
ସାତବଂଶ ଯାଦବ ସବୁନ୍ତହିଂ ମାରି
ସତ୍ୟଭାମା ଦେବୀଂକ ସେ ନେଉଥିଲା ଧରି । ୨୨୯ ।
ନିଅନ୍ତେ ଅର୍ଜୁନକଇଂ ଦେଖିଲେ ସତ୍ୟଭାମା
ଅର୍ଜୁନ ରଖବୋଲି ଡାକଇ ଜଗନ୍ନାଥଂକର ବାମା । ୨୩୦ ।
ବାଷଠୀ କ୍ଷଉଣୀ ସନ୍ୟବଳ ଘେନି ଗୋସିଂହ ଯାଉଥିଲା ।
ପହରକ ମଧ୍ୟେ ତାହା ଅର୍ଜୁନ ନାଶକଲା । ୨୩୧ ।
ଅସୁର ବଳ ନିଶୋଧନ କରି ଆଣିଲା ଶମ୍ଭାବତୀ
ଜୀବନ୍ୟାସ ଶରେ ଯାଦବନ୍ତ ଜୀଆଇଂଲେ ସବୁନ୍ତ । ୨୩୨ ।
ତେତେ ବଡ ଆପଦ ସେ ଯେହାରେ ମେଣ୍ଟି
ଯେହେତେତିକ ସମୟେ କି ଆମ୍ଭନ୍ତ ଗୁଡିବ କରନ୍ତି । ୨୩୩ ।
ଯେମନ୍ତ ବୋଲି ପେଷିଲେ ଯେ ଜଗନ୍ନାଥ ଦେବ ସ୍ୱାମୀ
ସ୍ୱାମୀ ଗୃଲ ବୋଲି ଅର୍ଜୁନଙ୍କୁ ପଦ୍ମୁନ ପରଣାମି । ୨୩୪ ।
ଯୁଧେଷ୍ଠି ଦେବେ ହୋଇଲେ ଆଶ୍ରିଜ ତାହା ଶୁଣି
ଓହୋସଂକଟେ ବାବୁ ଯେବେ ହୋଇଲା ଫାଲଗୁନ । ୨୩୫ ।
ବାବୁ ବହୁତ କଷ୍ଟୋରେ ପିତା ପୁତ୍ରଜାତ କଯେ
ବଂଶକୁ କାରଣ କରଇ ଯେବେ ସୁଲକ୍ଷଣ ଉପୁଜାଯେ । ୨୩୬ ।
ଅପାଠକ ଅପାବନ ପୁତ୍ର ସେ ଜାତ କଲେ
ତାହାକୁ କେ ଆଶ କରିବ ଯୁଧିଷ୍ଠି ଦେବେ ବୋଇଲେ । ୨୩୭ ।

---

୨୩୧।୨ ''ପହରକ ମଧ୍ୟେ ତାହା ଅର୍ଜୁନ ନାଶକଲା''
ପାଦାନ୍ତ ପରେ 'ଡ' ପାଥିରେ ଭିନ୍ନପାଠ—

ଅସୁର ବଳ ବଧକରି ବୀର ପାଥ
ଶମ୍ଭାବତୀଙ୍କ ଘେନି ସେ ଦ୍ୱାରକାକୁ ଆଗତ ।

ଦ୍ୱାରକାରେ ଆସି ପାଥ କଲେ ବଡ କୀର୍ତ୍ତି
ଜୀବନ୍ୟାଶ ଶରେ ପାଥ ଜୀଆଇଂ ସବୁନ୍ତ

ବାବୁ ଭଗୀରଥ ବୋଲା ପୂର୍ବେକ ସୂର୍ଯ୍ୟବଂଶେ ଉତପତ୍ତି
ଆକାଶୁଂ ଗଙ୍ଗା ଆଣି ଷାଠିଯେ ସହସ୍ର ପିତୃଲୋକନ୍ତ
କଲାକ ମୁକତ । ୨୩୮ ।

ତୋତେ ଜାତ କଲେ ଦେବ ଅସକନ୍ଦ
ଶତ୍ରୁ ନାଶକର ଅମରଙ୍କୁ କଲୁ ଯେ ଆନନ୍ଦ । ୨୩୯ ।
ବାବୁ ଧର୍ମ ଉଦୟ ହୋଇଲେ ହୋଅଇ ଯେମନ୍ତ
ତୁହେ ମହାପଣ୍ଡିତ ବର୍ତ୍ତୁ କେମନ୍ତ । ୨୪୦ ।
ବାବୁ ଅର୍ଜୁନ, ଯେବେ ତୁ ପିତା ପୁରକଇଂ ଯିବୁ
ଯାବତ କାଳେ ତୁ ଜଗନ୍ନାଥଂକୁ ନ ପାଇବୁ । ୨୪୧ ।
ବାବୁ ହର ଅର୍ଜୁନ ଯେ ସଂସାରେ ବୋଲନ୍ତି ଯେକଆତ୍ମା
ତୋହୋର ବାହାକୁ ସେ ଆଶ କରନ୍ତି ମହାତମା । ୨୪୨ ।
ବାବୁ ଜରାସନ୍ଧ ବଧକଲା ଯେତେବେଳେ
ଭୀମସେନ ମାଇଲା ସମର କ୍ରୁଦ୍ଧହୋଲେ । ୨୪୩ ।
ବାବୁ ଆବର ବିଶେଷେ ଯେ ଅଇଲା ପଦ୍ମନ
ଦୁସହ ସଂକଷ୍ଟରେ ପଡ଼ିଲା ଅରଜୁନ । ୨୪୪ ।
ବାବୁ କ୍ଷତ୍ରୀଂକର ଧର୍ମରେ ସୋହୋଦ୍ରେ ନୋହନ୍ତି କଛୁ
ଅଭ୍ୟାଗତେ ପୀରତି ଦୁଖୀଜନେ ଶରଣ ରଖି । ୨୪୫ ।

ତୁ ଯେବେ ବାବୁରେ ବାସୁଦେବର ତହ୍ନିଂକ ମାଉ
ଯାବତ କାଲରେ ପିତା ଇନ୍ଦ୍ରଦେବତାକୁ ନ ପାଉ । ୨୪୬ ।

ଭୀମସେନ ବୋଇଲା ଦେବ ମୋହୋର ବୁଦ୍ଧିଯେକ ଅଛୁ
କାହାର ତହ୍ନିଂକ ଯେ ନ ଯାଉ ସବ୍ୟସାଚୀ । ୨୪୭ ।

ନକୁଳ ବୋଇଲା ଯେ ନୋହଇ କଛୁ ଧର୍ମ
କ୍ଷତ୍ରୀକୁଳକୁ ନ ଯୋଗାଇ ଯେହେଶ୍ରେକ କର୍ମ । ୨୪୮

ବରିଲେ ନିମନ୍ତ୍ରିଲେ ଯିବାକ ଅବଶ୍ୟ
ନ ଗଲେ କ୍ଷତ୍ରୀପଣ ଦୁଷଣ ଧର୍ମ ହୋଯେ ନାଶ । ୨୪୯ ।

ଅର୍ଜୁନ ବୋଇଲେ ନାରଦଂକ ମୁଖ ରୁହିଂ
ଯେଉଜଣ ଶତ୍ରୁସେନ ଗ୍ୟାନ ତାହାର ନାହିଂ । ୨୫୦ ।

ତାହାର ଯେବେ ଗୋବନ୍ଦର ଦୁହିତାକୁ ଇଚ୍ଛା
ଆମ୍ଭନ୍ତ ରାଇ କମ୍ପା ନ କଲୁକ ଇଚ୍ଛା । ୨୫୧ ।
ଗୋବନ୍ଦେ ନ କରନ୍ତେ କ ଆମ୍ଭର ବଚନ
ଭବେଣ ସଚଳା କନ୍ୟାକୁ ଆମ୍ଭେ କରନ୍ତୁ ପ୍ରଦାନ । ୨୫୨ ।
ଇନ୍ଦ୍ର ଗୋବନ୍ଦଂକର ଯୋଗାନ୍ତା ବନ୍ଧୁପଣେ
କାର୍ଯ୍ୟ ସୁବଧାନ ହୋଅନ୍ତା ରହୁଥାନ୍ତା ବଡପଣ । ୨୫୩ ।
ବଳାତକାରେ ହରିଲ ସେ ଜଗନ୍ନାଥଂକର ଦୁହିତ
ଅମର ସମ୍ପଦ ନାଶକଲ ଯେ ଚିତ୍ରରଥ । ୨୫୪ ।
ଅମାତ୍ତ କଥା ଯେହୁ ସହିତେ କ ପାରି
କେଉଂଣ ଗାଢପଣେ ହରିଲ ସେ ଗୋବନ୍ଦଂକ କୁମାରୀ । ୨୫୫ ।
ଚିତ୍ରସେନ ବୁଝିଲ ମତ୍ତଗର୍ବପଣେ
ଇନ୍ଦ୍ର କଂପା ହାନ୍ଦଚିନ୍ତା କଲ ଅକାରଣେ । ୨୫୬ ।
ମୁହିଂ ତୁମ୍ଭନ୍ତ ପ୍ରଣିପତ୍ୟ କରଇଂ ନାରଦେ
ସଚଳା କନ୍ୟାକଇଂ ଘେନ ଦ୍ୱାରକାକୁ ଯାଆନ୍ତୁ ଦେବଇନ୍ଦ୍ରେ । ୨୫୭ ।
ଯେମନ୍ତେ ପାର ତୁମ୍ଭେ କର ଯେ କଥାର ସନ୍ଧି
ନୋହିଲେଣ ନାଶ ଯିବେଟି ପିତା ଜମ୍ଭାଭେଦୀ । ୨୫୮ ।
ନାରଦେ ବୋଇଲେ ସେ ଦେବ ଯେ ମୁରାରି
ସେ ଯେ କନ୍ୟାମାନନ୍ତ ନେଉଥାଇ ହରି । ୨୫୯ ।
ଅର୍ଜୁନେ ବୋଇଲେ ସେ ସମରେ ସାମରଥା
ମାରନ୍ତି ଦୁରାନ୍ତେକ ସେ ହରନ୍ତି ଦୁହିତା । ୨୬୦ ।
ରାମକୃଷ୍ଣ କୋପକୁ ନଇଲୋକ୍ୟେ କେ ସରି
ହଳମଣ୍ଡଳେ କପିଳାସ ଧଇଲେ ଉପାଡି । ୨୬୧ ।
ଯଦ୍ୟପି ସହସ୍ର ଗୁଣେ ମାନ୍ୟ ହୋଇବେ ମୋର ପିତା
କ୍ଷଣକେ ନ ସହଇ ମୁଂ କୃଷ୍ଣରେ ଅଭଗତା । ୨୬୨ ।

---

୨୫୮।୨ କାହିଂକ ନାଶ ଯିବଟି ପିତାର ସମ୍ବନ୍ଧ ।—ପାଠାନ୍ତର
୨୬୧।୨ ହଳମୁନେ କପିଳାସ ଧରି ପାରନ୍ତି ଛଡାକର୍ଣ୍ଣିକରି ।—କ, ଥ, ଞ

ହରିଙ୍କ ଯେ ନିନ୍ଦା କରଇ ସେହୁ ଆଗେ
ଅବଶ୍ୟ ତାହାକଇଂ ନାଶଇ ମୁଂ ବଇରାଗେ । ୨୬୩ ।
ଯେବେ ମୋତେ ଆଜ୍ଞ୍ୟାଂ ଦେଇଥାନ୍ତେ ନାରାୟଣ
ବାସବ ଦେବତାଂକୁ ଧରି ଆଣନ୍ତି ସେହିକ୍ଷଣ । ୨୬୪ ।
ଆଜ୍ଞ୍ୟାଂ ଯେବେ ଦେଇଥାନ୍ତେ ଜଗନ୍ନାଥ ସ୍ୱାମୀ
ଏହିକା ନାରାଜକେ ଛୁନ୍ନାଇ ପକାଇ ପାରଇ ଅମର ଭୂମି । ୨୬୫ ।
ନାରଦେ ବୋଇଲେ ଇନ୍ଦ୍ର ନୋହଇ ଯେ ଏହିକା
ବ୍ରହ୍ମା ରୁଦ୍ର ଯମ ବରୁଣ ପବନ କୁବେର ଆଦିକରି ଭଙ୍ଗିବେ
ଦ୍ୱାରକା । ୨୬୬ ।
ଅର୍ଜୁନ ବୋଇଲେ ନ କହ ଆପଣାର ପ୍ରଶଂସା
କେବଳ ଜଗନ୍ନାଥଂକ ଆଜ୍ଞ୍ୟାଂ ମୋହୋର ଏହିକାହିଂ ଭରସା । ୨୬୭ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଯମ ବରୁଣ କୁବେର ଆଦିକରି
ଏହିକା ନାରାଜକେ ମୁଂ ସମସ୍ତ ପାରଇ ସଂହାରି । ୨୬୮ ।
ଏହି ମୋହୋର ପ୍ରତଜ୍ଞ୍ୟାଂ ଯେ ଅଛଇ ସର୍ବସିଦ୍ଧ
ନଚେ ଚନ୍ଦସେନରେ ନାଶଗଲା ଅମର ସମ୍ବୃଧି । ୨୬୯ ।
ମାତଳି ବୋଇଲା ବାବୁ ଏହିତ ଦୁସହ ସନ୍ଦେହ
ଇନ୍ଦ୍ର ଦେବତାଏହି କମ୍ପେ ହୋଇଲୁ ଏହିତେକ ନମୋହ । ୨୭୦ ।
ବୋଲଇ ଫାଲଗୁନ ତୁମ୍ଭନ୍ତ ମୋହୋର ଦଇନ
ଯେମନ୍ତେ ପାର ପ୍ରୀତିକର ତୁମ୍ଭେ ଇନ୍ଦ୍ର ଗୋବିନ୍ଦ ହାଦେ
ବେନ । ୨୭୧ ।
ଈଶ୍ୱରଂକ ବଚନେ ପିତା ମୋର ନୋହନ୍ତୁ ବାଇ
ନିଶ୍ଚିତ ବେଳକୁ ସମରେ ନ ଥିବେ ଶୂଳସାଇଂ । ୨୭୨ ।
ବର୍ତ୍ତିଲେ କାଳେ ଶ୍ରୀହରି ଈଶ୍ୱର ଏହିକଆତ୍ମା
ମଧ୍ୟେ ପଡ଼ି ନାଶ ଯିବେଟି ପିତା ମୋହୋର ଇନ୍ଦ୍ର ମହାତମା । ୨୭୩ ।

---

୨୬୪।୨   ବାସବ ସହିତେ ଚନ୍ଦସେନକଇଂ ଧରି ଆଣନ୍ତି ସେହିକ୍ଷଣ ।—ଛ, ଚ
୨୬୬।୦   ତେତିଶି କୋଟି ଦେବେ ମେଳହୋଇ ଭାଙ୍ଗିବେ
ଦ୍ୱାରକା ।—ଚ, ନ, ଛ, ଖ

ନାରଦେ ବୋଇଲେ ତୋର ଏହି କଥା ଅଟଇ ସତ୍ୟ
ଏକଆତ୍ମା ତୁମ୍ଭେ ଦୁହେଂ ଅଟ କୃଷ୍ଣ ପାର୍ଥ । ୨୭୪ ।
ଏହେତେ ବୋଲି ନାରଦେ ଆରୋହିଲେ ମନପବନ ଦଣ୍ଡ
ମାତଳକଇଂ ଘେନ ବଜାଏ ଅମର ସ୍ୱର୍ଗଖଣ୍ଡ । ୨୭୫ ।
ବଜାଏ ମଘବାନ ଅମର ଆସ୍ଥାନେ
ଯେ ଯାହାର ଦଣ୍ଡ ସାଜ ଆସନ୍ତୁ ବୃନ୍ଦାଅର୍କମାନେ । ୨୭୬ ।
ଚଞ୍ଚଳ ସେ ବଳ ସାଜ ଆସନ୍ତୁ ସମସ୍ତେ
ନାରଦେ ବଜେକଲେ ଯାଇଂ ଅମର ପ୍ରଶସ୍ତେ । ୨୭୭ ।
ଇନ୍ଦ୍ର ଦେବତାଏ ଯେ ଅଛନ୍ତି ବାଟ ଚାହିଂ
ତୁମ୍ଭେ ତ ଅଇଲ ମୁନି ହେ ଅର୍ଜୁନ ମୋର କାହିଂ । ୨୭୮ ।
ନାରଦେ ବୋଇଲେ ତୋତେ ଗୁଡିଲା ଫାଲଗୁନ
ପଦୁନ ଆସିଣ ଅର୍ଜୁନକୁ ଦ୍ୱାରକା ଗଲା ଘେନି । ୨୭୯ ।
ନାରଦଂକ ମୁଖୁଂ ଏସନେକ ବାକ୍ୟ ଶୁଣି
ମୂର୍ଚ୍ଛାଗତ ହୋଇଣ ପଡିଲା ବଜ୍ରପାଣି । ୨୮୦ ।
ସଞ୍ଚଏ ଆପାଦ ଆସି ପଡିଲାକ ମୋତେ
ହେ ଈଶ୍ୱର ରାମକୃଷ୍ଣକଇଂ ଆଉ ଜିଣିବା କେମନ୍ତେ । ୨୮୧ ।
ଦେବତାମାନନ୍ତ ବସାଇ ବୋଇଲେ ସସ୍ରଯୋନି
ମୋତେ ଆଗ୍ୟାଂ ଦେବା ମୁଂ ସଚଳାକଇଂ ଯାଇ ଘେନି । ୨୮୨ ।
ରାମକୃଷ୍ଣ ଚରଣେ ମୁଂ ପଶିବଇଂ ଶରଣ
ଜାଣି ଅନୁଗ୍ରହ ମୋତେ କରିବେ କାହ୍ନୁ ସନ୍ନିବେଶେ । ୨୮୩ ।
ଇନ୍ଦ୍ର ଦେବତା ବକଲେ ଈଶ୍ୱରେ ବୋଇଲେ
ଆବର ସନ୍ଧ ହୋଅଇ କ ବିକଳ ହୋଇଲେ । ୨୮୪ ।
ମାନବେ ଜାତ ସେ ପାଣ୍ଡବ ଅରଜୁନ
ମୁହିଂ ତାହାକଇଂ ସମରେ କରିବ ନଶୋଧନ । ୨୮୫ ।
ରାମକୃଷ୍ଣ ସହିତେ ମୁଂ ଏକାଏ ଜିଣିମି
ଶତସେନକଇଂ ଇନ୍ଦ୍ରପଦ ଦ୍ୱାରକାଏ ଦେବ । ୨୮୬ ।
ବୋଲଇ ମଘବାନ ଶୁଣ ତୁ ଈଶ୍ୱର
ଅର୍ଜୁନ ମହିମାଂ କମ୍ପେ ପାସୋର ଗଲା ତୁମ୍ଭର ମନର । ୨୮୭ ।

ଯେତେକ ଅବସ୍ଥା ତୁମ୍ଭଙ୍କୁ ଦେଇଥିଲା
ସେ କଥାମାନ କି ତୁମ୍ଭ ମନରୁ ପାଶୋରି ଗଲା । ୨୮୮ ।
ଅନ୍ଧକନାଶନ ଶର ମହେଂଷାବଧ ଅକ୍ଷୟ ତ୍ରୋଣ
ଶରତୋଣ ବେନି ଦେଇ ତାରେ ପଶିଲ ଶରଣ । ୨୮୯ ।
ଈଶ୍ୱର କହିଲେ ଯେଉଁ କଥା ଅଟଇ ସେ ସତ୍ୟ
ଭୋଳରେ ଭୋଳାନାଥ ଆମ୍ଭେ ଅଟୁଁ ହେ ଯୁଗତ । ୨୯୦ ।
ସେ କଥାମାନ ଗୁଡି ଯେବେ ମେଳ ହେଲୁଂ
ନଚୟେ ଅର୍ଜୁନକୁ ସମରେ ନାଶିବୁ ବୋଇଲୁ । ୨୯୧ ।
ଅପାର ପ୍ରତଗ୍ୟାଂ ଯତ୍ନଂ କହିଲେ ଦେବରାଜ
ସମସ୍ତ ବିବୁଧେ ତୁମ୍ଭେ ଦଣ୍ଡ ବେଗେ ସାଜ । ୨୯୨ ।
ଶୁଣ ହୋ ତଇତନ ଯୁଦ୍ଧେଷ୍ଟି ଋଷିମାନନ୍ତ ସମସ୍ତ ରୁହାଇ
ଦ୍ରୋପଦୀଙ୍କୁ ସମର୍ପିଲେ ମାର୍କଣ୍ଡଙ୍କ ତହିଂ । ୨୯୩ ।
ତୁମ୍ଭେ ରହିଥାଅ ଯେହ୍ନି ଗୋକର୍ଣ୍ଣିକା ତୀର୍ଥେ
ଇନ୍ଦ୍ର ଗୋବନ୍ଧେ ସନ୍ଧିକରି ଆସିବା ପରିଯନ୍ତେ । ୨୯୪ ।
ନକୁଳଙ୍କୁ ବୋଇଲେ ବାବୁ ତୁ ରହିଥାଅ ଯେଉଁଥି
ଋଷିମାନନ୍ତ କନ୍ଦମୂଳ ଦେଉଥିବୁ ନିତ୍ୟାପ୍ରତି । ୨୯୫ ।
ଯୁଦ୍ଧେଷ୍ଟି ଭୀମ ଅରଜୁନ ସହଦେବ
ପ୍ରଦ୍ୟୁମ୍ନ ତୁଟିଲେ ବାହାର ଚିରି ଯେ ପାଣ୍ଡବ । ୨୯୬ ।
ଯେଉଁଥୁ ଅନନ୍ତରେ ଦ୍ୱାରକାଉଂ ବାହାର ଯଦୁବଂଶ ଥାଟ
ଚଳନ୍ତି ସଇନ ଯେ ସରସ୍ୱତୀ ନଦୀର ତଟ । ୨୯୭ ।
ଗୋବନ୍ଧେ ବିଜେ କରିଛନ୍ତି ଭୃଙ୍ଗିରି ପର୍ବତେ
ପାଣ୍ଡବେ ପ୍ରବେଶ ତହିଂ ହୋଇଲେ ସମସ୍ତେ । ୨୯୮ ।
ବଳଦେବ ବୋଇଲେ ହରି ଆକାଶୁଂ ଆସଇ ଯେଉଁକ ବିମାନ
ପ୍ରଦ୍ୟୁମ୍ନ ବିଳମ୍ବ କାର୍ଯ୍ୟ ହୋଇଲା ସୁବିଧାନେ । ୨୯୯ ।
ପଥ ଉପନେସନ୍ତି ରାମକୃଷ୍ଣ ବେନିଭ୍ରାତ
ଅନ୍ତରୀକ୍ଷ ମାର୍ଗେ ଦିଶିଲା ପୁଷ୍ପକ ରଥ । ୩୦୦ ।

ରଥରୁ ଓହ୍ଲାଇ ଯେ ପାଣ୍ଡବ ଜଣ ଗୃର
ଯୁଧିଷ୍ଠିରଙ୍କ ଦେଖି ନାରାୟଣ ପବନ୍ତୁଂ ଉତ୍ତର । ୩୦୧ ।
କୃଷ୍ଣ ପ୍ରଣପତ୍ୟ କଲେ ଯୁଧିଷ୍ଠି ଦେବଂକ ପଦ୍ମପାଦେ
ଯେ ବିପୁଳ ଭୋଗ ହାଦେ ତୁମ୍ଭର ପରସାଦେ । ୩୦୨ ।
ଗୋସିଂହ ବଧକର ଯେ ରଖିଲ ଦ୍ୱାରକା
ଜାରାସନ୍ଧଙ୍କୁ ନିବାର ଆମ୍ଭନ୍ତ କଲ ନିଶଂକା । ୩୦୩ ।
ଯେବେ ଶୁଣ ସ୍ୱାମୀ ତୁମ୍ଭ ଭାଇର ଚରିତ
ବଳାତ୍କାରେ ଦୁହିତାଙ୍କୁ ମୋର ହରିଲା ଶବରଥ । ୩୦୪ ।
ତାହାଂର ନିମନ୍ତେ ଦେବେ ଆସନ୍ତ ପରଭାଇ
ତେତିଶ କୋଟି ଦେବତା ଯେକମେଳ ହୋଇ:। ୩୦୫ ।
ଯୁଧିଷ୍ଠି ଦେବେ ତାହାଂ ବଚନ ପରକାଶି
ତୁହି ଦେବ ବିଦାରଣ କଲୁ କଂସ କେଶୀ । ୩୦୬ ।

---

୩୦୧।୨ ଯୁଧିଷ୍ଠିରଂକ ଦେଖି ନାରାୟଣ ରଥରୁ ଉତ୍ତର ।—ଖ, ନ

୩୦୧।୨ "ଯୁଧିଷ୍ଠିରଂକ ଦେଖି ନାରାୟଣ ପବନ୍ତୁଂ ଉତ୍ତର"
ପରେ "ଙ, ଛ, ଥ" ପୋଥିରେ ଅଧିକା ପାଠ :—
ଯୁଧିଷ୍ଠିରଂକ ଚରଣେ ପ୍ରଣମ୍ୟ ଅଚ୍ୟୁତେ
ଉଠ ଉଠ ନାରାୟଣ ବୋଲ ବୋଲନ୍ତ ଧର୍ମସୁତେ ।
ଉଠି କରଯୋଡି ଉଭା ହୋଇଲେ ନାରାୟଣ
ଶ୍ରୀକୃଷ୍ଣ ଚରଣେ ଅର୍ଜୁନ ପ୍ରଣମ୍ୟ ।
ନାରାୟଣ ବୋଇଲେ ଉଠ ଉଠ ଧନୁର୍ଜୟେ
ବାବୁ ବିପୁଳ ଲକ୍ଷ୍ମୀଭୋଗ ତୋହୋର ପ୍ରସାଦେ ଦ୍ୱାରକାୟେ ।

୩୦୨ { ବାବୁ ବିପୁଳ ଲକ୍ଷ୍ମୀଭୋଗ କର ହାଦେ
ଅକାରଣ ଇନ୍ଦ୍ର ମୋତେ ଚଳଇ ପ୍ରମାଦେ ।—ଝ, ନ }

୩୦୫।୨ "ତେତିଶକୋଟି ଦେବତା ଯେକମେଳ ହୋଇ" ଏହି ପାଦାନ୍ତ
ପରେ ନ, ତ, ଝ ଏହି ଦୁଇ ମୁଦ୍ରିତ ପୁସ୍ତକରେ ଅଧିକା ପାଠ—
ଆମ୍ଭର ସହିତ ଇନ୍ଦ୍ର କରିବ ସମର
ତୁ ଯେବେ ମୋହୋର ସଖା ନାହି ବେଗେ କର ।
ଯୁଧିଷ୍ଠି ଦେବ ବୋଇଲେ ତୁମ୍ଭେ ଶ୍ରୀମା ଗୋସାଇଂ
ତୋହୋର ସହିତ ଆମ୍ଭେ ଅଛୁ ପାଞ୍ଚଭାଇ ।

ଆମ୍ଭେ ପାଞ୍ଚ ସହୋଦରେ ତବ ଆଗ୍ୟାଂରେ ବ୍ରତ
ସଂସାରେ ଧବଳାଇ ହର ଅର୍ଜୁନର କୀରତ । ୩୦୭ ।
ନାରଦେ ଯେତେ ବାଗେ କହିଲେ ବଚନ
ସର୍ବଥା ପିତାଙ୍କୁ ହର ଗୁଞ୍ଜିଲା ଅରଜୁନ । ୩୦୮ ।
ଗୋବିନ୍ଦେ ବୋଇଲେ କୋଟିଏ ଈଶ୍ୱର କୋଟିଏ ବ୍ରହ୍ମା
ଆଜ ସମରେ ବୁଝିବା ସମସ୍ତ ଦେବତାଂକ ଗାରମା । ୩୦୯ ।
ଆଗିଆଣି ଥାଟେ ଚଳିଲା ଭୀମସେନ
ସାତବଂଶ ସଇନ ଘେନ ରହିଲା ଆବୋରଣ । ୩୧୦ ।
ଚଉଦ ଲକ୍ଷ ଯେ ଯାଦବ ବଳ ସଙ୍ଗେ ଘେନ
ଉଗ୍ରସେନ ରାଜା ଚଳାଇଲା ସଇନ । ୩୧୧ ।
ଚଉଷଠୀ ଲକ୍ଷ ଭୁଲେ ଭୋଜବଂଶ ବଳ
କୃତବର୍ମାଏ ଅଟନ୍ତି ଭୋଜବଂଶ ମହୀପାଳ । ୩୧୨ ।
ଉଗ୍ରସେନ ରାଜା ଯହିଂ ଚଳାଏ ସଇନ
ଯଦୁ ଭୋଜବଂଶ ସଇନ କେ ପାରଇ ଗଣି । ୩୧୩ ।
କୃଷ୍ଣବଂଶେ ରାଜା ଯେ ବସୁଦେବ ମହୀପତ
ଛପନ କୋଟି ଯାଦବ ଭୁଲେ ମହାରଥୀ । ୩୧୪ ।
ହରିହର ବଂଶେ ରାଜା ଉଦ୍ଧବ ଯେ ମହାବୀର
ପନ୍ଦର ଲକ୍ଷ ମୁକୁଟବନ୍ଧା ଯୋଦ୍ଧା ତାହାର ସଙ୍ଗର । ୩୧୫ ।
ଅନ୍ଧକ ବଂଶ ଅଟନ୍ତି ନନ୍ଦରାଜା
ନବକୋଟି ଯୋଦ୍ଧା ଘେନିଣ ଚଳେ ମହାତେଜା । ୩୧୬ ।
ଚୁହାଣ ବଂଶେ ଯେ ନୃପତ ପ୍ରସେନଜିତ
ତା ଭୁଲେ ମୁକୁଟବନ୍ଧା ଯୋଦ୍ଧା ଅଶି ଅଇବ୍ରତ । ୩୧୭ ।
ଭୁଲେ ଅନେକ ଯେ ସଇନ ବଳ ସାଜ
ଦୁଗ୍ଧ ସମୁଦ୍ର ଜାଣି ବଳ ଗଳଗାଜ । ୩୧୮ ।
କୁକୁର ବଂଶ ରାଜା ସାତ୍ୟକୀ ମହାମଲ୍ଲ
ଅନେକ ସଇନ ତାର ଯୋଦ୍ଧା ଅଗ୍ରର୍ଗଳ । ୩୧୯ ।

---

୩୦୮ { ନାରଦେ ଯେତେବେଳେ ମଣାଇଂ କହିଲେ ମୋତେ
ହଟାଏ ସମର ଯେ ହୋଇବ କହିଲେ ଭଗବନ୍ତେ ।—ଭ, ଭ

ଯେସନକ ସାତବଂଶର ସଇନ ସେହ୍ନା ଯନ୍ତୁ
ଦେଖିଣ ବେନଭାଇଂକର ହରଷ ମନ ଚହ୍ନ । ୩୨୦ ।
ବଳରାମ ବଜେକଲେ ତାଳଧ୍ୱଜ ରଥେ
ନନ୍ଦଘୋଷ ରଥେ ବଜସ୍ତେ ଖରବର ପାଥେ । ୩୨୧ ।
ଜଗନ୍ନାଥେ ବଜେକଲେ ବଇନେସର ପିଠି
ମହାଘୋର ବନମାଡ଼ି ଚଳନ୍ତ ବୃଷ୍ଣ ବଂଶ ଥାଠଗୋଷ୍ଠି । ୩୨୨ ।
ବାହାଉନ୍ତ ଯାଦବଂକ ଅନେକ ସମର ସଇନ
ଆକାଶ ଉଚ୍ଛୁଳୁଅଛୁ ବଜସ୍ତୁଘୋଷ ଧ୍ୱନ । ୩୨୩ ।
ଶ୍ୱେତହାଥୀ ଉପରେ ବଜସ୍ତେ ଧର୍ମସୁତ
ଭୀମସେନ ଆରୋହିଲ କାଳେବର ନାମେ ରଥ । ୩୨୪ ।
ଅଶ୍ୱେକ ଆରୋହିଲ ଯେ ସହଦେବ ମହାମନ୍ତ୍ରୀ
ମନ୍ଦର ପର୍ବତକୁ ବୋଲ ଥାଠ ଚଳାବନ୍ତ । ୩୨୫ ।
ଅନେକ ପ୍ରତଗ୍ୟାଂ ଯେ ନ ଯାଇ କହଣା
ଦ୍ରୁପଦ ମହା ପ୍ରତଗ୍ୟାଂ ଯେ କଲେକ ସଂହି ସେଣା । ୩୨୬ ।
ବାଜଇ ବ୍ରଜଘୋଷ ଝମକ ନିଷାଣ ମହୁରୀ
ଭୟେଣ ବନଚରେ ପଳାନ୍ତି ଦୂରୁଂ ପୁରସର । ୩୨୭ ।
ଚଳନ୍ତ କନ୍ଦରେ ମାଡ଼ି ଯେ ସାହେର ଉଚ୍ଛୁଳି
କୋପେଣ ବଳରାମେ କମ୍ପାନ୍ତି ଆକାଶେ ମଣ୍ଡଳି । ୩୨୮ ।
ବଳରାମ କୋପନେଣ କମ୍ପଇ ସପତ ବ୍ରହ୍ମାଣ୍ଡ
ପଳାବନ୍ତ ଧର୍ମ ପୁରୁଷେ ନ ରହଇ ଯମଦଣ୍ଡ । ୩୨୯ ।
ତାଳଧଜ ରଥେ ଲକ୍ଷେ ଶାର୍ଦ୍ଦୂଳଂକୁ ଯୋଚ
ସଉନନ୍ଦ ମୂଷଳ ସମର୍ଥକ ହଳ ଯାହାର ଭୁଜେ ଅଛି । ୩୩୦ ।
ଆବେଷଣ ମୂର୍ତ୍ତି ନୀଳାମ୍ବର ଲୋହିତବର୍ଣ୍ଣ ଯାହାର ଶିରରେ ସପ୍ତଫେଣୀ
ଶଙ୍ଖ ଗୋକ୍ଷୀର ଶୁଦ୍ଧ ସ୍ପଷ୍ଟିକ ବର୍ଣ୍ଣ ଜାଣି । ୩୩୧ ।

---

୩୨୩।୨ ଆକାଶ ଉଚ୍ଛୁଳୁଅଛୁ ବଜସ୍ତୁ ଘୋରବାକ୍ୟ ଶୁଣି ।—ପାଠାନ୍ତର
୩୨୫।୨ ଇନ୍ଦ୍ର ଉପରକୁ ବୋଲି ଡହିଂ ଥାଟ ଚଳାବନ୍ତ ।—ଜ, ଓ, ଛ
୩୩୧।୨ ଶୁଦ୍ଧ ସ୍ଫଟିକର ଆଭା ଶାର୍ଦ୍ଦୂଳ ବଳ ଜିଣି ।—ଟ

ଷୋଡଳ ନୟନ ଯାହାର ବକାଶଇ ମଣ୍ଡଳି
ପ୍ରଳୟ ପୟୋଧର ବକଶିତ ଦେବହଳୀ । ୩୩୨ ।
ପରମ ବ୍ରହ୍ମ ନିରଞ୍ଜନ ସ୍ୱାମୀ ଯାହାର ନାମଗୋଟି
ହଳମୁନେ ଛନ୍ଦାକାରେ ଧରନ୍ତା ଯେ ସୃଷ୍ଟି । ୩୩୩ ।
ମେରୁ ତୁଲ୍ୟ ଜାଣି ଯାହାର ଶିରେ ସପ୍ତଫେଣୀ
ସପତ ବ୍ରହ୍ମାଣ୍ଡକୁ ନାଥ ତୁମ୍ଭେ ସେ ଧାରେଣି । ୩୩୪ ।
କାହୁଂ ଉତପତ୍ତି ନାଥ କସ ତୋହୋର ନାମ
ଶୂନ୍ୟେଣ ଶବଦ ଶୁଭଇ ନାମ ବଳରାମ । ୩୩୫ ।
ଗୋଗୋଷ୍ଟେ ବିକାଶ ଦେବ ହୋଇଲୁ ଅଦଭୁତେ
କାହୁଂ ଉପୁଜିଲୁ ନାଥ କେହ୍ନ ନ ଜାଣନ୍ତି ତୋତେ । ୩୩୬ ।
ଅଣାକାର ପୁରୁଷ ସ୍ୱାମୀ ଆକାର ତୋର ନାହିଂ
ଶୂନ୍ୟକୁ ତୁଷ୍ଟି କସ ହେ ଦେବ କରିବଇଂ ମୁହିଂ । ୩୩୭ ।
ସତ୍ୟଶୀଳ ପୁରୁଷ କଇଛା ଜଗଜ୍ଜେଠୀ
କଞ୍ଚିତ ବାକ୍ୟେ ଯାହାର ନାମ ବ୍ରହ୍ମାଣ୍ଡେଣ ଘୋଟି । ୩୩୮ ।
ମେରୁ ହିମବନ୍ତ ଉଦୟଗିରି ମଳୟା
ଯେ ଚଉଶିଖା ସ୍ୱାମୀ ତୋହୋର ନିଜ କାୟା । ୩୩୯ ।
ସ୍ୱାମୀ କୋଟି କୋଟି ସିଂଘର ଯାହାର ପରାକ୍ରମ
ଶ୍ରୀଭୁଜେ ବଜ୍ର ଲାଙ୍ଗଳ ଅଛିବଳେ ବଳରାମ । ୩୪୦ ।
ସ୍ୱାମୀ କୁନ୍ଦ କର୍ପୂର ଜାଣି ଶ୍ୱେତ ଧବଳ ବର୍ଣ୍ଣ
ସପ୍ତନଧି ବଇକୁଣ୍ଠେ ଯାହାର ଆଶ୍ରମ । ୩୪୧ ।
ତବ ପଦ୍ମ ଚରଣେ ଶତେ ସହସ୍ର ଦଣ୍ଡ ପରଣାମି
ମମ ଅପ୍ରାଧ ପାତେକ ଖଣ୍ଡନ କରିବା ହାଦେ ସ୍ୱାମୀ । ୩୪୨ ।
ରେବତୀ ବଲ୍ଲଭ ନାଥ ଉଦତ ଯାର ନାମ
ତବ ପଦ୍ମପାଦେ ମୋର ଶତ ସହସ୍ର ଦଣ୍ଡ ପରଣାମ । ୩୪୩ ।

---

୩୩୮।୧ ଚଞ୍ଚଳ ଚରି ନାଥ କରୁଣା ଜଗଜ୍ଜେଠୀ ।—ଦ, ଛ, ଡ
୩୪୧।୧ ସପ୍ତନଧି ବଇକୁଣ୍ଠେ ଉଦତ ଯାହାର ନାମ ।—ଚ, ଦ, ଝ, ପ, ଙ୍କ. ଛ ଡ

ଅଚଳ ନିରାଲମ୍ବ ନିରାପକ୍ଷ ନିଶଙ୍କ ପରମଯୋଗୀ
ଯାହାର ପରାକ୍ରମେ ନାଶକର ଦଣ୍ଡ ପରିତ୍ୟାଗୀ । ୩୪୪ ।

ଅଭୟେ ଭଗବାନ୍ ତୁ କରୁଣାମହଲ
ଧବଳ ଉଚର ସ୍ୱାମୀ ଜପୂ ତୁ କାମପାଳ । ୩୪୫ ।

ସ୍ୱାମୀ ବିଷ୍ଣୁ ର ଜ୍ୟେଷ୍ଠପଦ ଉଦିତ ଯାର ନାମ
ଶୂଦ୍ରମୁନି ସାରୋଳା ଦାସ ମାଗଇ ତୋତେ ଧର୍ମ ଅର୍ଥ ମୋକ୍ଷ କାମ
।୩୪୬। ।୭୬୭୨ ।

---

୩୪୪।୧ ଅଖିଳ ନିରାଲମ୍ବ ଅଚଳ ପରମବ୍ରହ୍ମ ଯୋଗୀ ।—ଡ, ଝ, ଠ
୩୪୪।୨ ଯାହାର ଦ୍ରଶନେ ନାଶକର ଦଣ୍ଡ ପରିତ୍ୟାଗୀ ।—କ, ଘ

୩୪୬। { ବିଷ୍ଣୁନାଥ ତୁ ଯେ ଈଶ୍ୱର ରେବନ୍ତର ପନ୍ଥ
ବଦନ୍ତି ଶୂଦ୍ରମୁନି ସାରୋଳା ଦାସ ତବ ଚରଣେ ଭଗନ୍ତ ।—ଭ

# ଇନ୍ଦ୍ରାଦି ଦେବଙ୍କ ସହିତ ରାମକୃଷ୍ଣଙ୍କର ଯୁଦ୍ଧ ଓ ସଚଲାର ବିବାହ

ବଇବସୁତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କ ପାଶେ
ଦେବତାପ୍ରେ କେଉଂଣ କୃତ କଲେକ ଆକାଶେ । ୧ ।
ଶୁଣ ହୋ ଯୋଗେଶ୍ୱର ମନୁ ମହାଗ୍ୟାଂତା
ଈଶ୍ୱରଂକୁ ପୁଣ ପୁଣ ପୁଚ୍ଛା କରଇ ବାସେବ ଦେବତା । ୨ ।
ସ୍ୱାମୀ ବଡାଇ ସମ୍ମୁଖେ ଥାଠେକ ଯେବଣ କୃଷ୍ଣ ବଳରାମ
ଆକାଶ ଗଙ୍ଗାକୂଳ ଘୋଟିଣ ସଇନ ଧାମନ୍ତ ଅବଶ୍ରାମ । ୩ ।
ଈଶ୍ୱରେ ବୋଇଲେ ସମସ୍ତ ଦେବତାନ୍ତ ହକାର
ମନ୍ଦର ପର୍ବତକୁ ଆସ ସମଦଣ୍ଡ ସନ୍ୟ ସଜକରି । ୪ ।
ଅମରଗଣନ୍ତ ଯେନ ଦେବ ସୁରପତି
ଇନ୍ଦ୍ର ଆରୋହିଲା ଅଛଇ ଅଇରାବତ ହାଥୀ । ୫ ।
ଶ୍ରୀଭୁଜେ ଶୋଭିବନ ବଜ୍ର ଯେ ଆୟୁଧ
ଯେବଣ ଆୟୁଧ ଯେନ ଜମ୍ଭୋ ଦଇତ ବଧ । ୬ ।
ପର୍ବତଂକ ପକ୍ଷ ଛେଦିଲା ଯେଉଂଣ ଶହସ୍ରେ
ସେ ବଜ୍ର ଶକତି ଇନ୍ଦ୍ର ଧରଅଛୁ ନଜ କରେ । ୭ ।
ଚଉଷଠୀ କୋଟି ଦେବ ବାସବର ଭୁଲେ
ପାରିଜାତକ ମାଳା ଆଭରଣ ସବୁଂକର ହୃଦୟରେ । ୮ ।
ଶିରେ ସୀମନ୍ତିମି ଯାହାର ରତ୍ନଝାଳି କପାଳେ
ଅମରାଧି ନାଥ ସେ ବଜରେ ଆଖଣ୍ଡଳେ । ୯ ।
ତ୍ରିବ୍ୟଭୁବନ ନାଥ ବିଜୟେ ସୁରପତି
ପରମ ଯୋଗେଶ୍ୱର ନିଦ୍ରାଧ ଯାହାର ମୂର୍ତ୍ତି । ୧୦ ।

---

୬।୨ ଆଦ୍ରାବଳୀ ଧନୁଶର ଯେ କରେ ସାଧ ।—ଣ, ଛ, ଖ, କ

୮ { ଚଉଷଠୀ କୋଟି ପୁନ ଇନ୍ଦ୍ରଦେବତାର ସଙ୍ଗେ
ପାରିଜାତ ମାଳା ଆଭରଣ ସବୁଂକର ଅଙ୍ଗେ ।
—ଥ, ଜ, ଝ, ଙ, ଘ, ଚ

ପଞ୍ଚଷଠୀ କୋଟି ଯାହାର ଗନ୍ଧର୍ବ ସଇନ
ଲକ୍ଷେକ ବଳ ଧନୁ ଶ୍ରୀକରେ ଛନ୍ତି ଘେନ । ୧୧ ।
ତଇଲୋକ୍ୟ ସୁନ୍ଦର ସେ ବିଦ୍ୟାଧର ବଳ
ଦେବ ଦୁନ୍ଦୁଭି ବାଦ୍ୟ ଯେ ବ୍ରହ୍ମାଣ୍ଡ ଉଚ୍ଛୁଳ । ୧୨ ।
ବୃଷଭ ବାହାନେ ଦେବ ବିଜୟେ ଈଶାନ
ଚଉଦ୍ଦ କୋଟି ଭୁଲେ ଅଛନ୍ତି ଗଣପୁତ୍ରମାନ । ୧୩ ।
ମୟୁର ବାହାନେ ଯେ କାର୍ତ୍ତିକେଶ୍ୱର ବିଜେ
ନବଲକ୍ଷ ଡମ୍ବରୁ ଯେ ଅନ୍ତର୍କ୍ଷେ ବାଜେ । ୧୪ ।
ଶ୍ରୀଭୁଜେ ଶୋଭିବନ ପିନାକ ଶାରଙ୍ଗ ଧନୁ
କରେଣ ଶୂଳ ଶହସ୍ର ଧରିଣ ପଞ୍ଚମୁନୁ । ୧୫ ।
ବାମ ଦକ୍ଷିଣେ ଶୋଭିବନ ଅକ୍ଷୟେ ତୋଣ ବେନ
ପାଶୁପତ ନାରଚ ଦେବ ଶ୍ରୀକରେ ଛନ୍ତି ଘେନ । ୧୬ ।
ଅସ୍ଥିରତ୍ନେ ଖଞ୍ଜିତ ହୃଦେ ଭୂଷଣ ଦିବ୍ୟମାଳା
କଟି ମେଖଳେ ଆରୋହଣ ଅନନ୍ତ ମହାଖଳା । ୧୭ ।
ଯୋଗେଶ୍ୱର ପୁରୁଷ ମହାଭୟଙ୍କର ରାଗୀ
ଯେ ସେ କାମଦେବକଇଂ ଦହିଲ୍ଲ ଅଭୟେ ପରମଯୋଗୀ । ୧୮ ।
ଆଦହୁଂ ଗର୍ବିତ ସେ ବ୍ରହ୍ମାର ମୁଣ୍ଡମୋଡ଼ି
ମହାଯୋଗ ସାଧି ସ୍ୱାମୀ ବ୍ରହ୍ମହତ୍ୟା ଯେଡ଼ି । ୧୯ ।
ଦକ୍ଷ ପ୍ରଜାପତିର ମହାଯାଗ ଭଞ୍ଜା
ଗୁରୁପତ୍ନୀ ଶାପେ ତୁ ଘେନଲୁ ଅଣ୍ଡପୂଜା । ୨୦ ।
ଧବଳ ଶଙ୍ଖ ଶ୍ୱେତବର୍ଣ୍ଣ ଯାହାର ମଉଳ କୁଣ୍ଡଳୀ
ଭବକୁ ଭବ ନାଥ ଅଭବକୁ କୋପ ଯେ ଅଗୁଳ । ୨୧ ।
ଶରୀରରେ ଫୁଫୁକାର ଗର୍ଜ୍ଜନ୍ତି ମହାନାଗେ
ଶିବଗଣେନ୍ତ ଘେନ ସଦାନନ୍ଦ ଚଳନ୍ତି ଅତି ବେଗେ । ୨୨ ।

---

୧୬।୨ ଶତ୍ରୁଜିତ ନାରାଚ ଶ୍ରୀକରେ ଛନ୍ତି ଘେନ ।—ଣ, ଖ, ନ, ଛ

୧୮।୨ କଇଚ୍ଛାବନ୍ତ ନାଥ ଅଭୟେ ପରମଯୋଗୀ ।—କ,ତ, ଘ, ଝ, ଞ

୧୯।୧ ଅଭ୍ୟାଗତ ବଚନେ ବ୍ରହ୍ମାର ମୁଣ୍ଡମୋଡ଼ି ।—ଜ, କ, ତ

ନନ୍ଦୀକେଶ୍ୱର ମହାକାଳ ଭୃକୁଟି ବିଣାୟେକ ଟିଣାୟେକ
ଚଣ୍ଡ ପ୍ରଚଣ୍ଡ ଯେ ଜୟନ୍ତକ ଅଜୟନ୍ତକ । ୨୩ ।
ସ୍ୱାମେକ ମଣିଭଦ୍ର ଯେ ଶାଖା ବେନକନ୍ତ
ଇନ୍ଦୂର ବାହାନେ ଯେ ବିଜୟେ ଗଣପନ୍ତ । ୨୪ ।
ନାଗପାଶ କରେ ଘେନଣ ଷାକ୍ଷପଶୁ
ସିନ୍ଦୂର ସିମନ୍ତାନେ ଯେ ମଣ୍ଡଳ ସୀତାଂଶୁ । ୨୫ ।
ବିଜୟେ ମହାଦେବ ବୃଷଭର ପିଠି
ନାଚନ୍ତି କଣ୍ଡୁକେ ଗଣପନ୍ତ ଭୃକୁଟି । ୨୬ ।
ଶିବଗଣମାନନ୍ତ ଘେନଣ ସାନନ୍ଦେ ବିଶ୍ୱନାଥ
ବିଜୟେ ଧୂର୍ଜଟି ଯାଇଂ ମନ୍ଦର ପର୍ବତେ । ୨୭ ।
ରୁଦ୍ର ଇନ୍ଦ୍ର ଦୁହେଂ ଯାଇଂ ହୋଇଲେ ପରବେଶ
କୁବେର ବିଜେକଲେ ଅନେକ ସନ୍ୟ ଘେନ ପାଶ । ୨୮ ।
କୃତାନ୍ତକ ବଳ ଯେ ଘେନଣ ଦେବ ନାଶକର
ସେ ଯାଇଂ ପ୍ରବେଶ ହୋଇଲେ ମନ୍ଦର ପର୍ବତର । ୨୯ ।
ବାଷଠୀ କୋଟି କାଳ ବିକାଳ ସଇନ
ଯମ ଦେବତା ପ୍ରବେଶ ଯମଗଣନ୍ତ ଘେନ । ୩୦ ।
ଆବର୍ତ୍ତିକ ସମ୍ବର୍ତ୍ତିକ ଦ୍ରୋଣ ପୁଷ୍କର ବୃଦ୍ଧମେଘେ
ଯେ ବୃଦ୍ଧହେଂ ସଇନ୍ୟ ଘେନ ପ୍ରବେଶ ଆସି ବେଗେ । ୩୧ ।
କାମ୍ୟକ ମେଘ କାଳୀ ମେଘ ଚଞ୍ଚଳାବ୍ରତେକ ମେଘ
ଜମ୍ବୁପଟଳ ମେଘ ଜଳଧାର ମେଘ ଧୂମାନ୍ତେକ ମେଘ । ୩୨ ।
ଶୁଦ୍ଧସର୍ଷ୍ଣିକ ମେଘ ଆବର ବାରୁଣୀ ମେଘ
କୃତାନ୍ତକ ମେଘ ଯେ ଲୋହିତବର୍ଣ୍ଣ ମେଘ । ୩୩ ।
ପିଙ୍ଗଳ ମେଘ ଚନ୍ଦ୍ରକାନ୍ତ ମେଘ ଶାର୍ଦ୍ଦୂଳ ଯେ ମେଘ
ପର୍ବତକ ମେଘମେଳେ ଆବର ଅନେକ ମେଘ । ୩୪ ।

---

୨୫।୨ ଶିରେ ସୀମନ୍ତକ ଯେ ମଣ୍ଡଳ ସୀତାଂଶୁ ।—ଙ, ଛ, ଖ, ଜ, ଠ, ଳ

ଯେହାଂକର ମୂଳେ ଗୃହପଦ୍ମ ନବଲକ୍ଷ ମେଘମାଳ
ସମ୍ବର୍ତ୍ତ ଥାଠ ଯେନ ଚଳଇ ଆଖଣ୍ଡଳ । ୩୫ ।
ବ୍ରହ୍ମାଂକର ବଚନେ ଅଣଗୃଣ ପବନ
ଇନ୍ଦ୍ର ଦେବତାଯେ ବୋଇଲେ ଧାଅଂରେ ବହନ । ୩୬ ।
ଚଳନ୍ତ ଚଞ୍ଚଳ ଯେ ମହା ଖ୍ରିଷ୍ଟଭୂପୀ
ଆକାଶ ମଧ ଯେନ ପାତାଳ ଭୁବନ କ୍ଷେପୀ । ୩୭ ।
ତହିଂ ବଜେକଲେ ସମସ୍ତ ଦିଗପାଳେ
ଜଣେ ଜଣେ କୋଳାହଳ କରନ୍ତି ଗହଳେ । ୩୮ ।
ତହୁଂ ବଜେ କରିଗଲେ ଦେବ ସସ୍ତ୍ରଯୋନ
ହିମବନ୍ତ ବଜେକଲେ ଗିରିମାନନ୍ତ ଯେନ । ୩୯ ।
ବିନ୍ଧ୍ୟଂମାଳ ମହେନ୍ଦ୍ରମାଳ ତମ୍ପନମାଳ ପରବତ
ଗନ୍ଧମାଦନ ପର୍ବତ ମଳୟ ମାଲ୍ୟବନ୍ତ । ୪୦ ।
ଯେହାଂକର ମୂଳେ ଆଠଲକ୍ଷ ପର୍ବନ୍ତ ଯେମନଣ ହେମବନ୍ତ
ସେ ଯାଇଂ ପ୍ରବେଶ ହେଲେ ମେରୁର ସମେତ । ୪୧ ।
ଗ୍ରହଗଣନ୍ତ ଯେମନଣ ବଜାୟେ ଦିନକର
ବ୍ରାହ୍ମଣଗଣନ୍ତ ଯେନ ବଜାୟେ ବେଦବର । ୪୨ ।
ପବନ ଦେବତା ଯେ ଅଣଗୃଣ ମୂର୍ତ୍ତି
ଯୋଗପବନ ମନ୍ଦ ବଜାନ୍ତକ ଯେ ଶାନ୍ତ । ୪୩ ।
ବିକରାଳ ପବନ ଧର୍ମପବନ ଉଦାସ
ମଳୟ ବସନ୍ତପବନ ଭୋଗପବନ ଯେ ଜୀବନ୍ୟାସ । ୪୪ ।

---

ଟୀକା ୨ "ସମ୍ବର୍ତ୍ତ ଆଠ ଯେନ ଚଳଇ ଆଖଣ୍ଡଳ ।"
ପରେ କେତେକ ପୋଥିର ଭିନ୍ନ ପାଠ :—
ଝଙ୍କଡ "ଣ" ପୋଥିରେ ଅନେକ ମେଘଙ୍କର ନାମ ମିଳେ ସେ ସବୁ
ଅବାନ୍ତର ହେତୁ ପାଠରେ ଦିଆଗଲା ନାହିଂ ।

ମେଘମାନଙ୍କର ନାମ {
ଘଡ ଘଡ ମେଘ, ଚଡଚଡ ମେଘ
ଧୂଳିଆ ମେଘ ଝିମିଝିମି ଟପଟପ ମେଘ ।
ଅଥୋ'ଶଆ ମେଘ ତତ୍ୱଟକ ମେଘ
ହଟହଟା ମେଘ ଶସ୍ୟଜାତ ଶସ୍ୟଘାତ ମେଘ । ଇତ୍ୟ

ମାଧର୍ମ୍ମ ସୁସ୍ୱାଦିତ ଚଣ୍ଡ ପ୍ରଚଣ୍ଡ କାଳାନ୍ତକ
ସମତ୍ତୁଲ ଧାରଣ ତାରଣ ମାରଣ ପବନ କାମ୍ୟକ । ୪୫ ।
ମହାବାତ ଶିଶିର ହୁତାଶନ କୃତାନ୍ତକ
ପ୍ରାଣାଦି ଜୟନ୍ତକ ସୋମପାଳ ଦୁରୁଦଣ୍ଡ ବୃନ୍ଦାରକ । ୪୬ ।
ଘୋର ଗର୍ଜନ ବଷ୍ଟୁକାତ ଅଖିଳ ଶୋଷକ
ଚତୁଧର ମାତଙ୍ଗ ତମ୍ବୁର ଜାତଅନ୍ତ ଯୁଗାନ୍ତକ । ୪୭ ।
ଯେମନ୍ତ ପବନ ଦେବତା ଯେ ଅଣଗୃଣ ମୂର୍ତ୍ତି
ମେରୁ ମେଖଳକୁ ଇନ୍ଦ୍ର ଆଣିଲେ ସବୃନ୍ଦ । ୪୮ ।
ଆଦିତ୍ୟ ସୋମ ମଙ୍ଗଳ ବୁଧ ବୃହସ୍ପତି
ଶୁକ୍ର ଶନୈଚର ରାହୁ କେତୁ ଶଶାଙ୍କ ତୁଳେ ଯାନ୍ତି । ୪୯ ।
ତିଥିବାର ନକ୍ଷତ୍ର ଲୋକମାନନ୍ତ ସକଳ
ଯୋଗ କରଣ ଲୁଲେ ଆସନ୍ତି ଆଖଣ୍ଡଳ । ୫୦ ।
ନବ ସାଗର ହାହା ହୁହୁ. ଭଣ୍ଡାର ଅଧିକାରୀ
ନଳ କୁବରନ୍ତ ଘେନ କୁବେର ଦେବତା ବଜେକରି । ୫୧ ।
ସଜହୋଇ ଅଇଲେ ସେ ବଣ୍ୟାନର ବହନ
ପ୍ରାଣତେଜ କାଳାନଳ ପିଙ୍ଗଳ ଜାଳାଜାତ ପଞ୍ଚ ଅଗ୍ନି । ୫୨ ।
ଷୋଡ଼ାନଳ ଦାବାନଳ ବଡବାନଳ ହୁତ
ତ୍ରିଶିଖା ଅଗ୍ନି ବ୍ରହ୍ମଅଗ୍ନି ଆବର ଲୋହିତ । ୫୩ ।
ରୁଦ୍ରଅଗ୍ନି ବ୍ରହ୍ମଅଗ୍ନି ଆବର ରୋହିତ
ତେଜ ଅନଳ ଦହନ ଅନଳ ସପ୍ତଶୀରା । ୫୪ ।

---

୪୬।୨ ପ୍ରାଣ, ଅପାନ, ବ୍ୟାନ, ଉଦାନ, ସମାନ, ନାଗ, କୂର୍ମ, କୃକଳ ଦେବାଦତ୍ତ, ଧନଞ୍ଜୟେ, ଘୋଷ, ଭସ୍ମ ଉଷ୍ମ, ହାସ, ଅସ୍ମ, ମୋହ ଅନଳ, ସମୀର, ସାମନ୍ତ ପ୍ରଭୃତି ପବନମାନଙ୍କର ନାମ
ପୁସ୍ତକମାନଙ୍କରେ ଭିନ୍ନ ପ୍ରକାରର ଅଛି—

୫୨।୨ କପିଳ ପିଙ୍ଗଳ ଧୂମ୍ର ଜଠର ଶିଖି ଯେ ପଞ୍ଚ ଅଗ୍ନି ।
କେତେକ ପୋଥିର ପାଠ :—

ଯେହ୍ନାଂକର ମୂଳେ ପଞ୍ଚବାଂଶ ବହନ୍ତି
ଦେବସଭାକୁ ସେ ସଜ ହୋଇଣ ଆସନ୍ତି । ୫୫ ।
ଜଳଚର ସଇନ ଘେନଣ ବାରିନଧି
ମେରୁସଭା ମଧ୍ୟେ ବିଜୟେ ଜଗତ ଆଧି । ୫୬ ।
ଯେ ଯାହାର ସଇନ ଘେନ ଆସନ୍ତି ଦେବଲୋକେ
ମେରୁଶିଖରେ ପ୍ରବେଶ ହୋଇଲେ ସକଳ ବୃନ୍ଦାଅର୍କେ । ୫୭ ।
ମେରୁଗିରି ପର୍ବତ ଆରମ୍ଭେ ମିଳଲେ ଦିଗପାଳେ
ମେରୁମନ୍ଦର ପର୍ବତେ ବିଜୟେ ଆଖଣ୍ଡଳେ । ୫୮ ।
ଛତିଶି ସହସ୍ର ଯୋଜନ ଯେବଣ ମନ୍ଦର ପର୍ବତ ଆୟୁତନ
ପୂରିଲେ ବୃନ୍ଦାଅର୍କେ ଯେ ବହୁତ ଗହନ । ୫୯ ।
ବଜାବନ୍ତି ବଜ୍ରଘୋଷ ଦେବବାଦ୍ୟ ଦୁନ୍ଦୁଭି
ମହାପ୍ରତାପେ ସମସ୍ତ ଦେବେ ଅଛନ୍ତି ସମ୍ଭର୍ଭି । ୬୦ ।
ମନ୍ଦର ପର୍ବତେ ଯେ ରହିଲେ ସର୍ବଦେବେ
ଆସନ୍ତି ଦ୍ୱାରକାଉଂ ରାମକୃଷ୍ଣ ପାଣ୍ଡବେ । ୬୧ ।
ଗନ୍ଧମାଦନ ନାମେ ଯେଉଂଣ ପର୍ବତ
ବିସ୍ତାର ଆୟୁତନ ଯୋଜନ ପାଞ୍ଚଶତ । ୬୨ ।
ଅନେକ ମଉଷଧି ଦାରାଷ ଫଳ ଅଛି ଗିରିବର ପୃଷ୍ଠେ
ସେ ପର୍ବତ ଉପରେ ଯାଇ ବିଜୟେ ରାମକୃଷ୍ଣେ । ୬୩ ।
ପୂର୍ବେ ଗନ୍ଧମଦନ ପଚ୍ଛିମେ ମନ୍ଦର ପର୍ବତ
ମଧ୍ୟରେ ଛଡା ଅଛି ଯୋଜନ ନବଶତ । ୬୪ ।
ଉଚ୍ଚବାଚ ହୋଇ ଯେ ରହିଲେ ବେନି ସଇନବଳ
ଧନୁଘୋଷ ନାଦ ଶୁଭଇ ମହାଗୋଳ । ୬୫ ।
ଯୁଦ୍ଧେଷ୍ଟି ଦେବେ ବୋଇଲେ ନାରଦନ୍ତି ରାଇ
ମଧ୍ୟେ ନାଚଇ ମୁନି କଳହ ଦଣ୍ଡକୁ ବୁଲାଇ । ୬୬ ।
ଯୁଦ୍ଧେଷ୍ଟି ଦେବେ ବୋଇଲେ ଶୁଣସି ନାରଦ
ତୁମ୍ଭେ ଯାଇଂ ବାରତା କୁହ ଦେବ ଇନ୍ଦ୍ର । ୬୭ ।

---

୬୪।୨ ମଧ୍ୟରେ ଛଡା ଅଛି ଯୋଜନ ପାଞ୍ଚଶତ ।—ଓ, ଛ, ଘ

କନ୍ୟାଗୋଟିକ ଘେନଣ ଆସନ୍ତୁ ପୁରନ୍ଦର
ଇନ୍ଦ୍ର ଗୋବିନ୍ଦ ଯେବେ ଆମ୍ଭ ନୋହନ୍ତି ସମର । ୬୮
ଯୁଧିଷ୍ଠିରଙ୍କ ବଚନେ ଚଳିଲେ ବ୍ରହ୍ମାସୁତେ
ମନପବନ ଦଣ୍ଡେ ବସି ଗଲେ ମନ୍ଦରଗିରି ପରବତେ । ୬୯ ।
ନାରଦେ ସନ୍ନିଧେଣ ବସାଇ ଚିତ୍ରରଥ
ତୋହୋର ଯେ ଜୀବନ ସାର୍ଥକ ଯଥାର୍ଥ । ୭୦ ।
ଶ୍ରୀ ଜଗନ୍ନାଥଙ୍କ ଦୁହିତା ତୁ ଆଣିଅଛୁ ହରି
ଅମର ନାୟିକାଏ ତାହାକୁ ନୁହନ୍ତି ରୂପେ ସରି । ୭୧ ।
ତାହାର ସମାନେଣ ନ ପାଇଣ ବର
ମନସରି ଅନେକ ଲୋଡ଼ିଲୁ ତିନପୁର । ୭୨ ।
ପୁରୁଷଙ୍କ ମଧ୍ୟରେ ସୁନ୍ଦର ତୁହି ଅଛୁ
ତୋହୋର ରୂପଗୁଣେ ସଚଳାହିଁ ଘେନୁ । ୭୩ ।
ଆହୋ ଯୁଧିଷ୍ଠିର ଦେବେ ବୋଇଲେ ମୋତେ ହକାରି
ହିନ୍ଦ ନୋହୁ ସମର୍ପ ଯେ ସଚଳା କୁମାରୀ । ୭୪ ।
ତୁହିତ ଲୋଡ଼ିନାହୁଁ ତୋତେ ପ୍ରାପତ ହେଲା ଅଦଭୂତେ
ପରଗ୍ରହ ପଦାର୍ଥ ଯେବେ ପରକୁ ବାହୁଡ଼ାଇ ଦେବୁ ସେ କେମନ୍ତେ । ୭୫ ।
ବାବୁ ବିଗ୍ରହ କଥା ଯେବେ ବିଗୃହକୁ କେମନ୍ତ
କନ୍ୟା ସମର୍ପଣ ନ ଯୋଗାଇ ବିଧିମତ । ୭୬ ।
ବ୍ରହ୍ମା ଈଶ୍ୱରେ ଗଲେ କରିଅଛନ୍ତି ବୃନ୍ଦାଅର୍କ ବଳ ଘେନି
ରାମକୃଷ୍ଣ ଅର୍ଜୁନ ସେ ସର୍ବେ ଜଣ ତିନି । ୭୭ ।
କେହୁ ତୋତେ ସମାନ ଅଛଇ ହାଦେ ରଣେ
ତୁ କମ୍ପାଇ କନ୍ୟା ଦେବୁ ଆମ୍ଭେ ଅଇଲୁ ଅକାରଣେ । ୭୮ ।
ଚିତ୍ରସେନ ବୋଇଲା ମୁଂ ନ କଲି ହରଣ
ଆସୁଂ ଆସୁଂ ବରହୀତା କନ୍ୟା ମୋତେ କଲାକ ବରଣ । ୭୯ ।
ବରଣମାଳା ଗୋଟିଏ ମୋତେ କଲାକ ଆଭରଣ । ୮୦ ।
ମୁନି ହେ ଇଚ୍ଛାଏ ବର ବରନ୍ତି ଟିକ ରଜାର କୁମାରୀ
ଅବଶ୍ୟ ଆନକଇଂ ପ୍ରଦାନ କରିବେଟି ଦେବହରି । ୮୧ ।

ଅଭାବପଣ ଛାଡ଼ିଣ ପ୍ରୀତି ହୋଇଣ ଆସନ୍ତୁ
ସ୍ୱବଧାନେ କନ୍ୟାଗୋଟି ମୋତେ ପ୍ରଦାନ କରନ୍ତୁ । ୮୨ ।
ଆହୋ ନାରଦେ ତୁମ୍ଭେ ରାମକୃଷ୍ଣେ କୁହ ବେଗେ ଯାଇଂ
ସମସ୍ତେ ନାଶ ଯିବେଟି ସଚଲା କନ୍ୟାର ପାଇଂ । ୮୩ ।
ଭଲେଣ ଦଲେଟି ରହିବ ସବୁର ବଡ଼ପଣ
ଧର୍ମ ପ୍ରାପତ ହୋଇବ ରହିବ ବନ୍ଧୁପଣ । ୮୪ ।
ଦ୍ୱନ୍ଦକଲେ ମୁନି ହେ ହୋଇବେ କି ଆମ୍ଭନ୍ତ ସର
ଧାତା ଈଶ୍ୱରେ ଦିଗପାଳେ ଯାହାକଇଂ ଅଛନ୍ତି ଆଦୋର । ୮୫ ।
ଚିତ୍ରସେନ ବଚନେ ବାହୁଡ଼ିଗଲେ ତପୋନିଷ୍ଠି
ଯାଇଂଣ ଭେଟିଲେ ସେହି ଧର୍ମଦେବ ଯୁଧିଷ୍ଠି । ୮୬ ।
ଯୁଧିଷ୍ଠିଙ୍କ ଆଗରେ ଯାଇଂ କହିଲେ ନାରଦ
ସଚଳାର ନିମନ୍ତେ ହୋଇବ ବଡ଼ ଯୁଦ୍ଧ । ୮୭ ।
ଆହୋ ଧର୍ମେ ଅପାର ମଣାଇଂ ମୁଂ କହିଲି ତାହାଙ୍କୁ
ଶାହାସ୍ତ୍ର କଥା ରୁଚଇ କି ଚଷ୍କର ସଭାକୁ । ୮୮ ।
ବଧିର ଶୁଣଇ କି କମ୍ବୁରସ ବାଣୀ
ଗୋପାଳେ ଚହ୍ନିବେ କାହିଂ ଅମୂଲ୍ୟ ରତ୍ନମଣି । ୮୯ ।
ତୋହାର କଥା ଶୁଣି ସେ ଅନେକ କଲା କୋପ
ଗରୁଡ଼ ବିବାଦେ ଯେହ୍ନେ ଗର୍ଜଇ କାଳସର୍ପ । ୯୦ ।
ଶୁଣିଣ ଯୁଧିଷ୍ଠି ଦେବ ହୋଇଲେ ତବଦ
ନଚଯୂ ନାଶ ଗଲାଟି ଅମର ସମ୍ପଦ । ୯୧ ।

---

୯୦।୨ ଦର୍ଦୁର ବିବାଦେ କି ଝେଙ୍କଇ କାଳସର୍ପ ।—କ, ଚ, ଛ, ଘ

୯୦।୨ ଯଷ୍ଟିର ଘାତେ ଯେହ୍ନେ ଗର୍ଜଇ କାଳସର୍ପ ।—ଖ, ତ, ଜ, ଡ

୯୦।୨ କାଳସର୍ପ=କାଳସ୍ୱ ସର୍ପ ।

୯୧ { ନାରଦଂକ ବଚନେ କୋପିଲେ ଧର୍ମସୁତ
ଆକାଶକୁ ନଚେ ନାଶକଲା ଚିତ୍ରରଥ ।—ଓ

ତଥିଂ ନାରଦେ କହିଲେ ଯାଇଂ ବଳଦେବଙ୍କୁ
ଯୁଧିଷ୍ଠି ପେଷିଥିଲେ ମୁକ୍ତ ଇନ୍ଦ୍ରରାଜାଠାକୁ । ୯୨ ।
ବହୁତ କୋପକଲ୍ଲ ସେ କନ୍ୟା ଫେର ମାଗିବାରେ
ବୋଇଲ୍ଲ ରାମକୃଷ୍ଣ ଅର୍ଜୁନକଇଂ ମୁଂ ମାରିବଇ ସମରେ । ୯୩ ।

ନାରଦ ବଚନେ କୋପକଲେ ଦେବହଳୀ
ସମର୍ଥକ ହଳ ମୂଷଳ ବୁଲାଇଲେ ଦେବ ତୋଳି । ୯୪ ।

ଯୁଧିଷ୍ଠି ଦେବେ ବୋଇଲେ କୋପ ନ କର ବଳରାମ
ଦଣ୍ଡ ସାମ ଭେଦମତେ ଅବଶ୍ୟ କର କାମ । ୯୫ ।

ସନ୍ଧି ସମାଧାନ ନୋହିଲେ ତେବେ ଟସେ ଦ୍ୱନ୍ଦ୍ୱକର
କାଞ୍ଚିତ ମାନକେ ଦେବ ନୋହିବା ମରାମର । ୯୬ ।

ମୁହିଂ ଯିବ କ ଦେବ ମନ୍ଦର ପର୍ବତକୁ
ସମାଧନା କରି କହିବଇଂ ଇନ୍ଦ୍ର ଦେବତାଂକୁ । ୯୭ ।

ମୋହୋର ବୋଲେ ଯେବେ ନ ଦିଅଇ କୁମାରୀ
ଯେବ୍କା ନମିଷେକେ ଦ୍ୱନ୍ଦ୍ୱ କରିତ ଆମ୍ଭେ ପାରି । ୯୮ ।

ଗନ୍ଧମାର୍ଦନ ପର୍ବତରୁ ଓହ୍ଲାଇ ଧର୍ମସୁତେ
ବଇଜୟନ୍ତୀ ମାଳା ଗୋଟିଏ ଧରିଛନ୍ତି ଦେବ ହାଥେ । ୯୯ ।

ସହଦେବ ବୋଇଲେ ଠାକୁରେ ସେ ଯାଆନ୍ତୁ ଯେବ୍କେ
ଭୀମସେନ ଠାକୁରେ ଗୋଡାଇ ଯାଆନ୍ତୁ ପାଖେ । ୧୦୦ ।

ଯେବେ କାଳେ ଯେ କଥା ନୋହିବ ସମ୍ବୋଧ
ସହି ନୁଆରଲେ ସେ ଉପୁଜବଟି ଦ୍ୱନ୍ଦ୍ୱ । ୧୦୧ ।

ଇନ୍ଦ୍ରଙ୍କର ଦୁଷ୍ଟପୁତ୍ରମାନେ ହୋଇଛନ୍ତି ମେଳ
ଭୀମସେନ ଠାକୁରେ ଯେ ଆଣିବେ ସମ୍ଭାଳ । ୧୦୨ ।

ଗୋବିନ୍ଦେ ବୋଇଲେ ସେ ମନ୍ତ୍ରୀବରଂକ ବଚନେ
ଯାଉ ଭୀମସେନ ଠାକୁରଂକର ସନ୍ନିଧାନେ । ୧୦୩ ।

ବାଆନ ବାଆନ ଭାର ଗଦା ଭୀମସେନର ବେନକରେ
କୃତାନ୍ତେକ ପ୍ରାୟେ ଦିଶନ୍ତି ବୃକୋଦରେ । ୧୦୪ ।

ପ୍ରବେଶ ଧର୍ମସୁତ ମନ୍ଦର ପର୍ବତେ
ବଜ୍ରପ୍ୟେ ଦେବଇନ୍ଦ୍ର ମହାନାଗ ଐରାବତେ । ୧୦୫ ।
ଯୁଧିଷ୍ଠିରଙ୍କୁ ଦେଖି ଇନ୍ଦ୍ର ଐରାବତୁଂ ଉତୁରି
ବସିଛନ୍ତି ଆସ୍ଥାନେ ଯେ ବ୍ରହ୍ମା ଶୂଳଧାରୀ । ୧୦୬ ।
ମନ୍ଦର ପର୍ବତର ପାଞ୍ଚ ପାବଚ୍ଛର ତଳେ
ପ୍ରଣପତ୍ୟ ହୋଇଣ ଶୁଣିଲେ ଧର୍ମବାଳେ । ୧୦୭ ।
କୋପେଣ ଉତ୍ତର ଯେ ଦିଅନ୍ତି ଅସକନ୍ଦ
ଆରେ ଆରେ ପାଣ୍ଡବାପ୍ୟେ ପ୍ୟେତେ ତୁମ୍ଭେ ମନ୍ଦ । ୧୦୮ ।
ଆରେ ଆଦ୍ୟନ୍ତୁଂ ଜନ୍ମିଲ ତୁମ୍ଭେ ଗୋଲକୁଣ୍ଡାପଣେ
ଦୁର୍ବାସ୍ୟାର ମନ୍ତ୍ରେ ଆମ୍ଭେ ଆବୋରିଲୁ ବଡପଣେ । ୧୦୯ ।
ଯଦ୍ୟପି ଦିଗପାଳେ ହୋଇ ସେ ବାସୁଦେବ
ଜନମେ ଲଭିଲା ସେ ଗଉଡ ସ୍ୱଭାବ । ୧୧୦ ।
ଗଉଡେ ଉପୁଜିଲା ସେ ମାନବ ପ୍ରକୃତି
ତୁମ୍ଭଙ୍କ ଲାଗି ସେ ଯେ ହୋଇଲା ହୀନଜାତି । ୧୧୧ ।
ଗଉଡ ବାଉଡ କୃଷ୍ଣ ବଳଦେବ
ଗୋଲକୁଣ୍ଡା ଜାରଜାତକା ତୁମ୍ଭେ ଅଛ ରେ ପାଣ୍ଡବ । ୧୧୨ ।
ତୁମ୍ଭରେ ତାହାଙ୍କର ଯେବେ ବଢିଲା ବନ୍ଧୁପଣ
ବଢିଲା କନ୍ୟା ଘରେ କର୍ମେ ରେ ଥୁଅ ଅକାରଣ । ୧୧୩ ।
ମୋହୋର ଶବସେନ ନ ଆଣିଲା ତାକୁ ବଳେ ହରି
ବରହାତା କନ୍ୟା ସେ ଇଚ୍ଛାପ୍ୟେ ହେଲା ବରି । ୧୧୪ ।
ଯୁଧିଷ୍ଠିର ଦେବ ବୋଇଲେ କୋପ ଗୁଡ ଦେବରାଜ୍ୟେ
ମନ୍ଦବେଳେ ଜାତକଲ ପ୍ୟେ ତୁମ୍ଭ ତନପ୍ୟେ । ୧୧୫ ।

---

୧୦୯।୨ ଦୁର୍ଭାସ୍ୟାଂକ ମନ୍ତ୍ରେ ତୁମ୍ଭେ ଜାତ ହେଲ ବଡଜ୍ଞଣେ ।—ଓ
୧୦୯।୨ ଦୁର୍ଭାସ୍ୟାର ମନ୍ତ୍ରେ ଆମ୍ଭେ ହରିଲୁ ବଡଜଣେ । —ଛ ଣ, କ
୧୧୦।୨ କଳିର ଅବତାରେ ସେ ଯେ ଗଉଡ ସ୍ୱଭାବ ।—ଣ, ଛ, ନ

ଥୋକାଏକ ପୁତ୍ର ଯେ ବଂଶ କରନ୍ତି ସୁରକ୍ଷା
ଥୋକାଏକ ପୁତ୍ର ବଂଶନାଶ କରିତେ ବାଏଂଛା । ୧୧୫ ।
ପର ସ୍ତ୍ରୀ ହରଣେ ଅନେକ ଧର୍ମ ନାଶି
ତାର ଅଭିଳାଷେ ତନୁ କ୍ଷୀଣ ହୋଇଲାକ ଶଶୀ । ୧୧୬ ।
ଜାନକୀ ହରଣେ ନାଶଗଲାକ ରାବଣ
ଅହଲ୍ୟା ହରଣେ କସ ନୋହିଲ ଆପଣ । ୧୧୭ ।
ଗଉତମର ଶାପେ ଛିଡ଼ିଲା ତୋର ଅଣ୍ଡ
ପୁରୁଷ ଲକ୍ଷଣ ନିମନ୍ତେ ଲଗାଇଲୁ ମେଷଅଣ୍ଡ । ୧୧୮ ।
ପୁତ୍ରକୁ ନ ଝିଆରିଲ କଲ ଏଣେ ଯେସନେକ କୃତ୍ୟ
ବଳରାମଂକ କୋପେ ଅମର ରକ୍ଷା ହୋଇବ କେମନ୍ତେ । ୧୧୯ ।
ଯେବେହେଂ ବୋଲ ପୁତ୍ର ମୋର ଆଣିଲା ଅଗ୍ୟାନେ
ସନ୍ଧି କଥାରେ ତ ନ ପଶିଲୁ ପାକଶାସନେ । ୧୨୦ ।
ସଚଳାକଇଂ ଯେବେ ଯେନ ଯିବା ଚଲ ଜମ୍ବୋଭେଦୀ
ଶ୍ରୀ ଜଗନ୍ନାଥଂକର ଭୁଲେ ହୋ କମ୍ପାଇଂ ହୋଉ ହନ୍ଦୀ । ୧୨୧ ।
କାମପାଳ ଯେ, ସେ କାଦମ୍ବରୀ ପାନେ ଭୋଳ
ଶରଣ ରକ୍ଷଣ ସେ ଯେ ଭଗତ ବଚ୍ଛଳ । ୧୨୨ ।
ମୁହିଂ ତୋତେ ରାମ ଗ୍ରମୁରେ କରିବି ସମର୍ପଣ
କୋପ ଛାଡ଼ି ଦୟା ତୋତେ କରିବେ ସଂକ୍ଷେପେଣ । ୧୨୩ ।
ଯାହାର ବୋଲେ ତୁ ଯେତେ ଦ୍ୱନ୍ଦ କଲୁ ରାଏ
ରକ୍ଷା ନ ଯିବୁ କାଳେ ତାହାର ଉପାଏ । ୧୨୪ ।
ଆବର ଦେଖ ତୋର କର୍ମର ବିପାକ,
ଆତ୍ମାରୁ ଜାତ ତୋତେ ଛାଡ଼ିଲା ବିବାହ ।୧୨୫ ।
ଅର୍ଜୁନର ପ୍ରାଏ ପୁତ୍ର ତୋତେ ଛାଡ଼ିଲା ଯେତେବେଳେ
ଅମର ସମ୍ପଦ ତୋର ନାଶଗଲା ଆଖଣ୍ଡଳେ । ୧୨୬ ।

---

୧୨୫ { ଆବର ବିଶେଷେ ତୋର କର୍ମର ବିପଦ
ପୁତ୍ର ତୋତେ ଛାଡ଼ିଲା ପଡ଼ିବ ପରମାଦ ।—କ, ତ

୧୨୫।୨ ପୁତ୍ର ସହୋଦ୍ର ତୋତେ ଛାଡ଼ିଲା ପରମାଦ ପଡ଼ିବ ।—ଦ, ଛ, ଅ

ପରର ବଚନେ ତୋର ସମ୍ପଦ ନ କର ନାଶ
ନିତାନ୍ତ ବେଳକୁ ସମରେ ନ ଥିବ ବିଶ୍ୱାସ । ୧୨୭ ।
ବ୍ରହ୍ମାପ୍ରେ ଯିବେଟି ଜଗତପିତା ପଣେ
ଯେତେ ବଡ ସମ୍ପଦ ତୁ ନାଶ ନ କର ଅକାରଣେ । ୧୨୮ ।
ପବନ ଦେବତା ଆମ୍ଭର ହୋଇବେ ପିତାମହ
ଯମ କୁବେର ବରୁଣ ଆମ୍ଭନ୍ତ ସମରେ ନୋହନ୍ତ ରହ । ୧୨୯ ।
ପରମ ପଣ୍ଡିତ ନାଥ କର୍ମେ ହୋଉ ବଣା
ସେ ଯେ ରାମକୃଷ୍ଣ ତ୍ରଇଲୋକ୍ୟ ଧାରଣା । ୧୩୦ ।
କହୁଂ କହୁଂ ଯୁଧିଷ୍ଠିଂକ ବସିଲା ମହାକୋହ
କେହୁଣସି କାଳରେ ତୁମ୍ଭେ ରାମକୃଷ୍ଣଂକୁ ସରି ନୋହ । ୧୩୧ ।
ସତ୍ୟଭାମାଂକ ଛଳେ ହରି ହରିଲେ. ପାରିଜାତ
ସ୍ୱର୍ଗୁଂ ଅମୃତ ହରି ନେଲା ବେଳେ ବଇନେୟ । ୧୩୨ ।
ଗୋପପୁରେ ବାମକରେ ଧଇଲେ ଗୋବର୍ଦ୍ଧନ ଗିରିବର
ସାତଦିନ ବୃଷ୍ଟି ଯେ କଲୁ ପୁରନ୍ଦର । ୧୩୩ ।
କଂସ ସଭାତଳେ ହୋଇଥିଲ ନା କିଂକର
ସେ ବେଳର କଥା ଯେବେ ଗଲୁ କି ପାସୋରି । ୧୩୪ ।
ପରିଘାଇ ଅନେକ କହିଲେ ଯୁଧିଷ୍ଠିର
ଶୁଣି କୋପ ବସିଲା ଦେବ ସୁନାସୀର । ୧୩୫ ।
କୋପେ ଆରକ୍ତ ଲୋଚନ କରି ମଘବାନ
ବୋଇଲା ଯୁଧିଷ୍ଠିଂକ ନାଶ କର ରେ ଚିତ୍ରସେନ । ୧୩୬ ।
ଯହୁଂଣ ଇନ୍ଦ୍ର ଦେବତା ଚାହିଂଲେ କୋପଦୃଷ୍ଟି
ତ୍ରାସେଣ ପର୍ବତୁଂ ଓହ୍ଲାଇଲେ ଯୁଧିଷ୍ଠି । ୧୩୭ ।

---

୧୨୭।୧ ଖଳର ବଚନେ ତୋର ସମ୍ପଦ ନ କର ନାଶ ।—ଣ, ଛ, କ, ଚ

୧୩୦।୨ 'ସେ ଯେ ରାମକୃଷ୍ଣ 'ତ୍ରଇଲୋକ୍ୟ ଧାରଣା' ପାଠପରେ 'ଞ' ପୋଥିରେ ଅଧିକା ପାଠ—

ଇନ୍ଦ୍ର ବୋଇଲେ ତୁ ଯେବେ ଶୁଣ ହୋ ଯୁଧିଷ୍ଠି
ରାମକୃଷ୍ଣ ଅର୍ଜୁନ ଯେ ସବେ ଅଛନ୍ତି ତିନଗୋଟି ।
କିଂତ ମାନେ ମୁ ତାହାନ୍ତ ପାରେ ଜିଣି
ଦ୍ୱାରକାରେ ଚିତ୍ରସେନ ବରିବ ନୃପମଣି ।

ପିତାର ବଚନେ ଯେ ଧାଇଁଲା ବିଦ୍ୟାଧର
କରେ ଧରିଅଛି ଯେ ବଜ୍ର ମୁଦ୍ଗର । ୧୩୮ ।
କୁଟିଳ ଚିତ୍ତ ପ୍ରାୟେକ ମୁଦ୍ଗର ବୁଲାଇ
ଯୁଧିଷ୍ଠିର ଦେବଙ୍କ ଉପରେ ପିଠିଲା ଝିସାଇ । ୧୩୯ ।
ମୁଦ୍ଗର ପଡନ୍ତେ ଭୀମ ଯୁଧିଷ୍ଠିରଙ୍କ ପଛ କଲା
ଆପଣେ ଆଗହୋଇ ବଜ୍ର ମୁଦ୍ଗର ଧଇଲା । ୧୪୦ ।
ବାହାନାଦ ଦେଇ କୋପେ ଗରଜିଣ ବୀର ଭୀମ
ବିଦ୍ୟାଧର ଡହୁଁ ଉଛୁଡି ଧରିଲା ବିକ୍ରମ । ୧୪୧ ।
ଯୁଧିଷ୍ଠିରଙ୍କ ବୋଇଲେ ଭୀମ ତୁମ୍ଭେ ପଳାଅ ବେଗହୋଇ
ମୋହୋର ଘଞ୍ଜିଲେ ଦେବ ତୁମର ଗୀଇନାହିଁ । ୧୪୨ ।
ଯେବକା ଆଁସୂଥିଲ ପରି କଥା ସନ୍ଧିକରି
ଯେତେବେଳେ ଥାଅନ୍ତ ତୁମ୍ଭେ ମନ୍ଦର ପର୍ବତରେ ପଡି । ୧୪୩ ।
ଯେହା ଶୁଣି ଯୁଧିଷ୍ଠିର ଯେ ହୋଇଲେ ଅନ୍ତର
ରେ ରେ କାର କରି ଯେ ବୋଲଇ ପବନ କୁମର । ୧୪୪ ।
ସେହି ମୁଦ୍ଗରକୁ ସେ କୋପେଣ ବୁଲାଇ
ଚିତ୍ରସେନ ରଥପରେ ପିଠିଲାକ ବେଗେ ନେଇ । ୧୪୫ ।
ମହାବଳବନ୍ତା ସେ ପାଣ୍ଡବ ବୀରଷଣ୍ଡ
ଭୀମସେନ ବିଘାତେ ସେ ରଥ ହୋଇଲା ମସୀଗୁଣ୍ଡ । ୧୪୬ ।
ଅନେକ ରତ୍ନ ମଣ୍ଡଣି ରଥ ସହୁଁ ଗଲା ଭାଜି
ଜୟସେନ ଅଙ୍ଗାରପନଙ୍ଗ ଉଠିଲେ ଗଜଗାଜି । ୧୪୭ ।
ପ୍ରଚଣ୍ଡବଳୀ ତୁଳାକର୍ଣ୍ଣ ବୃଦ୍ଧଶ୍ରବା ବିଶ୍ୱାବସୁ
କୋପେଣ ଉଗାଳିଲେ ବେଗେ ଭୀମସେନ ବେଗେ ଆସୁ । ୧୪୮ ।
ବାସବର ପୁତ୍ର ଯେ ବିଦ୍ୟାଧର ଲକ୍ଷ ବୀର
ଶତେପୁର କରି ଭୀମସେନକଇଁ ଉଗାଳ । ୧୪୯ ।
ପଟ୍ଟିଶ ଗଦା ମୁଦ୍ଗର ଛେଲ ଚକ୍ର କାଣ୍ଡ
କୋନ୍ତ ମୁଷଳୀ ସାବେଳୀ ଯେ ବାରୁଣାଣର ଯୋଡ । ୧୫୦ ।

---

୧୫୦ { ପ୍ରହାରନ୍ତି କୁନ୍ତ ଯେ ମୁଦ୍ଗର ମୁଷଳୀ
ଭୀମସେନ ଅଙ୍ଗେ ପଡି ସମସ୍ତ ହୋଇ ଧୂଳି । (କେତେକ ପୋଥି)

ଆଦିତ୍ୟ କିରଣ ପ୍ରାୟେ ଝଳକନ୍ତ ଲାଂଜଆ
ମହାଭୀଷ୍ମ ମୂର୍ତ୍ତି ବିଦ୍ୟାଧରେ ସହସ୍ର ବାହା । ୧୫୧ ।
ଯୁଧିଷ୍ଠିର ଦେବେ ଯେ ତହୁଁ ଅଇଲେ ପଳାଇ
ଗନ୍ଧମାର୍ଦନ ପର୍ବତେ ଉଠିଲେ ବେଗେ ଯାଇଂ । ୧୫୨
ଯୁଧିଷ୍ଠିର ଦେବଂକୁ ଦେଖି ପଚାରନ୍ତି ହରି
କେବଣ ନିମନ୍ତେ ସ୍ୱାମୀ ନିଶ୍ୱାସ ଖରକର । ୧୫୩ ।
ଯୁଧିଷ୍ଠିର ଦେବେ ବୋଇଲେ ଉତ୍ତର ଅଇଲୁ ହୋ ଧର୍ମେ
ଭୀମସେନ ମୋର ନିଚେ ପଡ଼ିଲା ସାଂଗ୍ରାମେ । ୧୫୪ ।
ଆବର ସୋଦର ମୁହିଂ ପାଇବଇଂ କାହିଂ
ମୁହିଂ ଅଇଲି ଦେବ ଭାଇକି ମୋର ଦେଇ । ୧୫୫ ।
ଯୁଧିଷ୍ଠିର ଦେବଂକର କ୍ରୋଧର ବିକଳେ
ପର୍ବତ ଉପରୁ ଡେଇଂ ପଡ଼ିଲେ କାମପାଳେ । ୧୫୬ ।
ରଥ ସହିତେ ଦେବ ନ କଲେ ଆରୋହଣ
ହଳ ମୂଷଳ ଘେନି ଧାମନ୍ତି ସଂକର୍ଷଣ । ୧୫୭ ।
ନନ୍ଦଘୋଷ ରଥ ଯେ ମଣ୍ଡିଣ ବନମାଳୀ
ତହୁଂ ବହୁତ ଯାଦବ ସନ୍ୟ ଧାମନ୍ତି ମହାବଳୀ । ୧୫୮ ।
ସାତବଂଶ ଘେନି ଚଳନ୍ତି ଜଗନ୍ନାଥେ
ଅର୍ଜୁନ ବିଜେକଲେ ନନ୍ଦଘୋଷର ରଥେ । ୧୫୯ ।

---

୧୫୯।୧ "ସାତବଂଶ ଘେନି ଚଳନ୍ତି ଜଗନ୍ନାଥେ" ପରେ କେତେକ ପୋଥିରେ ଭିନ୍ନ ପାଠ :—

ଅର୍ଜୁନ ବିଜେକଲେ ନନ୍ଦଘୋଷ ରଥେ
ଗାଣ୍ଡିବ ଧନୁ କରେ ଧରିଛନ୍ତି ବୀର ପାଥେ ।
ଦେବଦତ୍ତ ଶଙ୍ଖ କଲେକ ବାଦ୍ୟ
ଆକାଶ ଉଚ୍ଛୁଳିଲା ସେ ଶଙ୍ଖର ଶବଦ ।
ଭୀମସେନ ଶ୍ରବଣେ ଶୁଭିଲା ଶଙ୍ଖଧ୍ୱନି
ପୁଣି ଗର୍ଜି ଉଠିଲା ଗଦାବର ଘେନି ।

ବଇନେହ ବାହାନେ ବଜସ୍ତେ ଜଗନ୍ନାଥେ
ଶଙ୍ଖ ଚକ୍ର କଉମୁଘ ଗଦାବର ହାଥେ । ୧୬୦ ।
ପଞ୍ଚଜନ୍ୟ ଶଙ୍ଖ ହରି କଲେକ ବାଦ୍ୟ
ଆକାଶ ଉଚ୍ଛୁଳଲା ସେ ଶଙ୍ଖର ଶବଦ । ୧୬୧ ।
ଭୀମସେନ ଶ୍ରବଣେ ସେ ଶୁଭିଲା ଶଙ୍ଖଧ୍ୱନି
ଶୁଣି ପରବତ୍ତୁଂ ଉଠିଲା ତହୁଂ ଭୀମ ଶିର ଟ୍ଟେଣି । ୧୬୨
କୋପେଣ ଗଦାବର ପ୍ରହାର କଲା ମହାବଳ
ପଡଣ ଜତ୍ରସେନ ରଥ ହୋଇଲା ବେନଫାଳ । ୧୬୩ ।
ଅଙ୍ଗାରପନଙ୍ଗ ରଥ ଧଇଲା ବାମକରେ
ବଶ୍ୱାବସୁ ରଥ ଉପରେ ପିଟିଲା କୋପଭରେ । ୧୬୪
ଭୀମସେନ ପ୍ରହାରକେ ଭାଜଲା ରଥ ବେନ
ଭୟେଣ ବେନଭାଗ ହୋଇଲେ ସଇନ । ୧୬୫ ।
ମନ୍ଦର ପର୍ବତ୍ତୁଂ ଭୀମ ପଡିଲାକ ବେଗେ ଡେଇଁ
ଦେଖିଣ ବଦ୍ୟାଧରମାନେ ପୁଣ ପଡୁଛନ୍ତି ଧାଇଂ । ୧୬୬ ।
ପୁଣି ଯାଇଂ ବେଢି ଭୀମସେନଙ୍କୁ କଟାଳ
ଗର୍ଜିଣ ଉଠିଲା ସେ ପାଣ୍ଡବ ମହାବଳୀ । ୧୬୭ ।
ଗଦାବର ବୁଲାଇଣ ସେ ପିଟିଲା ମାରୁତ
ମହାବାତେ ଯେସନେକେ ଫଂଳୁଫଂଳ ଲୋଟନ୍ତି । ୧୬୮ ।
ସମର ସମ୍ମୁଖେ ସେ ପାଣ୍ଡବ ବଳବନ୍ତା
ବଦ୍ୟାଧର ଜଣ ମାନକେ କେହ୍ନି ଗ୍ଧମୁରେ ନାହ୍ନିଂନା ରହନ୍ତା । ୧୬୯ ।
ସଇନ ଭାଗନ୍ତେଣ ଧାମଇଂ ଚନ୍ଦ୍ରରଥ
ଭୁଲେଣ ସଇନ ତାର ଗୃଶ ଅହ୍ନବ୍ରତ । ୧୭୦ ।

---

୧୬୮।୧ ମହାବାତେ ଯେସନେକେ ବୃଭଫଳ ଲୋଟନ୍ତି ।—ଚ, ଠ, ଢ
୧୬୮।୨ ମହାବାତେ ରମ୍ଭାତରୁ ଯେସନେ ପଡନ୍ତି ।—ଖ, ଣ, ନ
୧୭୦।୨ ଭୁଲେ ସୋଦର ତାର ଗୃଶ ଅହ୍ନବ୍ରତ ।—
କ, ଛ, ଗ, ଘ, ଜ, ଦ, ଡ, ଠ, ଭ

ଅନେକ ରତ୍ନ ଭୂଷଣ ଅଛଇ ତାର କାୟେ
ବସନ୍ତ ବିଦ୍ୟାଧରେ କାର୍ତ୍ତିକେଶ୍ୱର ପ୍ରାୟେ ।୧୭୧।

ରେ ରେ କାର କରଣ ସେ ଧାଇଂଲା ଚିତ୍ରରଥ
ତୀକ୍ଷ୍ଣମୁନା ଶସ୍ତ୍ର କରେ ଧରିଅଛି ନଶାନଶି କୋନ୍ତ ।୧୭୨।

ଭୀମସେନ ଉପରକୁ ସେ ମାଇଲା ତାହା ଧରି
ସେହି କୋନ୍ତ ଚୂରିଗଲା ଭୀମସେନ ବାମଅଙ୍ଗେ ବାଜି ।୧୭୩।

ପୁଣ ପ୍ରହାର କଲା ବିଦ୍ୟାଧର ବଜ୍ର ଯେ ଭୁସୁଣ୍ଡିରେ
ପଡନ୍ତେ ବୃକୋଦର ତାହା ଧଇଲା ବାମକରେ ।୧୭୪।

ଚିତ୍ରସେନ ହାଥରୁ ସେ ଧଇଲା ଉଝୁଡି
ସେହି ଭୁସୁଣ୍ଡିରେ ଚିତ୍ରସେନକୁ ମାଇଲାକ ଧରି ।୧୭୫।

ବାମଅଙ୍ଗେ ତାର ଯାଇଂ ପଡିଲା ବଜ୍ରଗୋଟି
ଘାତ୍ୟେଣ ଚିତ୍ରସେନ ଯେ ପଡିଲା ମହୀଲେଟି ।୧୭୬।

ବଜ୍ରଘାତ ପ୍ରାୟେକ ଶୁଭଇ ଘୋରବାଣୀ
ଚିତ୍ରସେନ ପଡିଲା ଦେଖିଲେ ବଜ୍ରପାଣି ।୧୭୭।

ଆପଣେ ବିଜେକଲେ ଐରାବତ ପିଠି
କରେଣ ବଜ୍ରଶକତି କୋନ୍ତ ଖଡଗ ଯାଠି ।୧୭୮।

ମୁଦଗର ଅସିପତ୍ର ଗୁରୁଜ ଶାବେଳୀ
ବିଭିଶ ଆୟୁଧ କରେ କରିଅଛି ତୋଳି ।୧୭୯।

ବକ୍ଷସ୍ଥଳେ ଲମ୍ବିତ ଯେ ପାରିଜାତକ ପୁଷ୍ପମାଳ
କୋଟିୟେ କରଣ ଶକ୍ତ କରେ ଦେନିଣ ଆଖଣ୍ଡଳ ।୧୮୦।

ଯେତୁକାୟେଣ ବେନିକରେ ଗଦା ଦେନିଣ ଉଠି
ବିଦ୍ୟାଧର ବଳଯାକ ଆସୁଅଛି ପିଟି ।୧୮୧।

ଯେତୁକାୟେ ସମର କରଇ ଯେ ପବନ ବହ
ସମରେ ପଡିଲେକ ଗନ୍ଧର୍ବ ତିନଲକ୍ଷ ।୧୮୨।

ଯେସନେକେ ମତ୍ତବ୍ୟାଘ୍ର ଧାମଇଂ ଜନ୍ତୁ ଦେଖି
ମାରଇ ମାରୁତି ସେ ଓପ୍ରୋଧ ଉପେକ୍ଷି । ୧୮୩ ।
ଅନେକ ସଇନ ସେ ଆସୁଅଛଇ ପିଠି
ବିଦ୍ୟାଧର ବଳ ସେ ପଡ଼ନ୍ତି ମହାଲୋଟି । ୧୮୪ ।
ଅସମ୍ଭବ ମହିମାଂ ସେ ପାଣ୍ଡବ ବୀରମଣି
ପଳାବନ୍ତି ଗନ୍ଧର୍ବେ ସେ ଶ୍ରୀକାଳ ସୂଥ ଜାଣି । ୧୮୫ ।
ଜୟସେନ ବିଶ୍ୱାବସୁ ବୃଦ୍ଧଶ୍ରବା ଅଙ୍ଗାରପର୍ଣ୍ଣଙ୍କ ପ୍ରଚଣ୍ଡାବଳୀ
ଭଜି ପଳାବନ୍ତି ଗନ୍ଧର୍ବେ ଭୀମସେନ କରଇ ରଣକେଳି । ୧୮୬ ।
ଶଙ୍ଖ ଶବଦ ଯନ୍ତ୍ରୁଂ କଲେକ ଶ୍ରୀରଙ୍ଗ
ଶୁଣିଣ ଦୁଗୁଣ ତେଜ ବିକାଶଇ ମାରୁତିର ଅଙ୍ଗ । ୧୮୭ ।
ଭୀମସେନର ଭୀଷ୍ଣମୂର୍ତ୍ତି ମହାସମର ଦେଖି
ଭାଜିଲେ ବିଦ୍ୟାଧରେ ସେ ସମର ଉପେକ୍ଷି । ୧୮୮ ।
ଗୋଡ଼ାଇ ବୃକୋଦର ସେ ମହାମୂର୍ତ୍ତି ଧରି
ବାସବର ସହସ୍ରେ ପୁନ ଧରଣ କରନ୍ତି । ୧୮୯ ।
ଦଶବିଂଶ ପଚାଶ ଧରି ବିଅଇ ସେ ଫିଙ୍ଗି
ଅନେକ ଯୋଜନେ ପଡ଼ିଲେ ହାଥ ଗୋଡ଼ ଭାଂଜି । ୧୯୦ ।
ସମର ବିଭଙ୍ଗ ଦେଖିଣ ବୃକୋଦର
ଶରଣ ବୋଇଲେ ଭୀମ ଦୁଗୁଣ କରଇ ପ୍ରହାର । ୧୯୧ ।

---

୧୮୩।୧ ଯେସନେକେ କେଶରୀ ଧାମଇଂ ହାଥୀପଲ ଦେଖି ।—ଝ
୧୮୩।୧ ଯେସନେକେ ମତ୍ତଗଜ ଧାମଇଂ ଅଶ୍ୱ ଦେଖି ।—ଣ, ଛ
୧୮୩।୧ ଯେସନେକେ ମତ୍ତଗଜ ଧାମଇଂ ଜନ୍ତୁ ଦେଖି ।—ଡ, ଜ, ତ
୧୮୬।୨ ଭାଜିଲେ କେହୁ ତାର ସମ୍ମୁରେ ନ ମିଳି ।—ନ, ଖ, ଛ, କ, ଣ
୧୯୧ { ଗନ୍ଧର୍ବଂକ ଅଭାବେ ବୀର ବୃକୋଦର
ଶରଣ ବୋଇଲେ ଭୀମ ଦୁଗୁଣ କରଇ ପ୍ରହାର ।—ଝ, ଡ, ଢ, ନ

ପୂର୍ବଂକର ବିନାଶ ଦେଖିଣ ପୁରନ୍ଦର
ଆପଣେ ବିଜେକଲେ ସମର ଭିତର । ୧୯୨ ।
ଆରେ ଆରେ ଭୀମା ବୋଲି ଯେ କୋପେ ଦୁରୁଂ ଡାକଦେଇ
ଆପଣେ ଓଗାଳିଲେ ଦେବ ସୁରସାଇଂ । ୧୯୩ ।
କରେ ବଜ୍ର ଧରିଣ ସେ ବେଗେ ଝମକାଇ
ଗର୍ଜିଣ ମହାନାଗ ଯେ ଉଠିଲା ଭୁହାଇ । ୧୯୪ ।
ଯେସନେକେ ମହିମାଂ ଦେଖିଣ ସେ ବୃକୋଦର
ଗଦା ଧରି ଉଭାହେଲା ବାସବ ସମ୍ମୁର । ୧୯୫ ।
ମହାନାଗ ପରେ ଚଢିଅଛି ପୁରନ୍ଦର
ଇନ୍ଦ୍ରର ବଚନେ ହାଥୀ ଧାଇଂଲାକ ଖର । ୧୯୬ ।
ମହା ବଳବନ୍ତ ଯେ ଅଟଇ ଅଇରାବ୍ରତ
ଥୋରହସ୍ତେ କଟିଭାଗୁଂ ଧଇଲା ଭୁରିତ । ୧୯୭ ।
ଅନ୍ତରୀକ୍ଷେ ବୁଲାଇଲା ଅଇରାବ୍ରତ ତୋଳି
ଫିଙ୍ଗିଦିଲା ଭୀମକୁ ସେ ଗଜ ମହାବଳୀ । ୧୯୮ ।
ଆକାଶ ମାର୍ଗରେ ଯହୁଂ ଫିଙ୍ଗିଦିଲା ଅଇରାବ୍ରତ ଗଜ
ଗନ୍ଧମାର୍ଦ୍ଦନ ପରବତେ ପଡିଲା ପବନ ଆତ୍ମଜ । ୧୯୯ ।
ବଜ୍ରଘାତ ପ୍ରାପ୍ତେ ଜାଣି ପଡିଲାକ ଭୀମ
ଭୂମିରେ ପଡିଣ ସେ ହୋଇଲା ଅଚେତନ । ୨୦୦ ।

---

୧୯୨ { କଟାଳ ଦେଖିଣ ସେ ଦେବ ମଘବାନ
ଆପଣେ ବିଜେକଲେ ପାକ ଯେ ଶାସନ ।—ଟ, ତ, ଥ, ଡ,
ଦ, ଜ, ଝ

୧୯୩।୨ ସନ୍ନିଧେଣ ମିଳିଲେ ଯେ ପୁରନ୍ଦର ଯାଇଂ ।—ଣ, ଛ, ଖ, ନ

୧୯୭ { ମହାନାଗ ଅଇରାବ୍ରତ ଧଇଲା କୁମ୍ଭସ୍ଥଳେ
ଯୋରହସ୍ତେ ଗୁଡିଆଇଲା କଟି ଯେ ମେଖଳେ ।
(କେତେକ ପୋଥି)

୧୯୮ { ଭୀମକୁ ଧରିଣ ବୁଲାଇଲା ଆକାଶମାର୍ଗେ
ଫିଙ୍ଗି ଦିଅନ୍ତେ ଭୀମ ପଡିଲା ଗନ୍ଧମାର୍ଦ୍ଦନ ପର୍ବତ ଲାଗେ ।
—କ, ଥ, ଜ, ଘ

ଦେଖିଲେକ ଯୁଧିଷ୍ଠିର ଭୀମସେନର କଷ୍ଟ
କୋଳକରି ଧଇଲେ ଯାଇଂ ଦେବ ଧର୍ମଶ୍ରେଷ୍ଠ । ୨୦୧ ।
ହା ହା ସୋଦର ରେ ମହା ଅଗ୍ଗର୍ଗଳ ଯୋଧୀ
କେବଣ ଦଇବ ତୋତେ ଅନମିତେ ବିରୋଧୀ । ୨୦୨ ।
ନାରଦେ କହିଲେ ଯେ ଭୀମସେନର କଥା
ସଂକ୍ଷିପି କହିଲେ ସେ ଯେ ସମର ବାରତା । ୨୦୩ ।
ଅନେକ ଗନ୍ଧର୍ବେ ଯେ ସେ ମାଇଲା ସମରେ
କଣ୍ଟାଳ ଦେଖିଣ ବିଜେକଲେ ଆପଣେ ସୁରେଶ୍ୱରେ । ୨୦୪ ।
ଦେଖ ହୋ ପ୍ରତାପ ଭୀମସେନର ଯେ କଥା
ଦେବ ସଇନ୍ୟଯାକ ଭୀମ ମାରି ଅପ୍ରମିତା । ୨୦୫ ।
ଇନ୍ଦ୍ରକୁ ଦେଖିଣ ଭୀମ ନ ଘୁଞ୍ଚିଲା ଯତ୍ନଂ
ସମରେ ସେ ଦେବଇନ୍ଦ୍ରକେ ପିଲ୍ଲକ ଚହ୍ନଂ । ୨୦୬ ।
କୋପେଣ ଯେ ଅଇରାବ୍ରତ ନାଗ ତାକୁ ଫିଙ୍ଗି ପକାଇଲା
ଯୋୟଜନେ ଦୂରେ ଆସି ଭୀମସେନ ଯେ ପଡ଼ିଲା । ୨୦୭ ।
ଶୁଣି କୋପାନଳ ହୋଇଲେ ଦେବ ବଳରାମ
ରାଗେଣ ଉଠିଲେ ସେ ଯେ ପୁରୁଷଙ୍କ ଉତ୍ତମ । ୨୦୮ ।
ରାମ କୃଷ୍ଣଂକର ମୂର୍ତ୍ତି ସେ ଦେଖିଣ ମଘବାନ
ମହାନାଗ ବାହନେ ବିଜୟେ ଦେବ ପାକଯେ ଶାସନ । ୨୦୯ ।
ଶ୍ରୀଭୁଜେ ଶୋଭବନ ବଜ୍ର ଯେ ଶକତ
ମନ୍ଦର ପର୍ବତୁଂ ଓହ୍ଲାଇଲେ ସୁରପତ । ୨୧୦ ।
ଛଡ଼ ମର୍ଭୁଚ ପୁଷ୍ପ ଅଛନ୍ତି ତାର ଭୁଲେ
ଅନେକ ଅମରଗଣ ପବନୁଂ ବେଗେ ଧାଇଂଲେ । ୨୧୧ ।

---

୨୦୫ { ଶୁଣ ହୋ ଯୁଧିଷ୍ଠିର ଭୀମସେନର କଥା
ବାସବର ଶ୍ରୁମୁକୁ ସେ ହୋଇଲା ସାମରଥା ।—କ, ଡ, ଜ, ଝ }

୨୦୫।୨ ବାସବର ଭୁଲେ ରହିତେ ନୋହିଲା ସାମରଥା ।—ଛ, ଣ, ନ, ଖ

ସମର ସମ୍ମୁଖେ ଯେ ବିଜୟେ ଆଖଣ୍ଡଳେ
ଗର୍ଜନ ନାଦ କରି ଉଠିଲେ ମେଘମାଳେ । ୨୧୨ ।
ଆହୋ ଚଇତନ ଚଉଦିଗେ ଘୋଟିଗଲେ ଜଳଧର ମେଘେ
ଆକାଶ ଅନ୍ଧକାର ହୋଇଲା ଚଉଦିଗେ । ୨୧୩ ।
ନିର୍ଘାତ ବାଣ ଅନଳ ଯେ ବଜ୍ରସୂଚୀ
ବଜ୍ରାଘାତେ ଉଲ୍କାପାତ ଆକାଶୁଂ ପଡୁଅଛି । ୨୧୪ ।
ମେଘଂକର ଗର୍ଜନେ କମ୍ପଇ ବ୍ରହ୍ମାଣ୍ଡ ଖଣ୍ଡ ସାତ
ଦିବ ପୃଥିବୀ ଯେ ଦିଶିଲା ଉଲ୍କାପାତ । ୨୧୫ ।
ଦେଖିଣ ଆଶ୍ଚିଜ ଯେ ହୋଇଲେ ଯଦୁବୀରମାନେ
ସ୍ୱାମୀ ବଡାଇ ଦୁରପଦ ପଡିଲା ରଖ ହେ ଭଗବାନେ । ୨୧୬ ।
ଶୁଣିଣ ବିଚାରନ୍ତ ଦେବ ଦାମୋଦର
ବିନତା ନନ୍ଦନ ମୁଖକୁ ଯେ ଚାହିଁଲେ ଚକ୍ରଧର । ୨୧୭ ।
ବାବୁ ମେଘେ ତ ଉଠିଲେ ବାସବ ବଚନେ
ଦେଖିଣ ବିକଳ ହୋଇଲେ ସମସ୍ତ ଯଦୁସୈନ୍ୟମାନେ । ୨୧୮ ।
ବିନତା ନନ୍ଦନ ଯେ ଉହାଡିଲା ବେନି ପକ୍ଷି
ଆକାଶ ଘୋଟିଲା ସେ ସମସ୍ତ ସୈନ୍ୟମାନ ବ୍ୟାପି । ୨୧୯ ।
ଦଶଯୁଣ ମାଡି ରହିଛଇ ଯେବଣ ଯାଦବ ବଳ
ପକ୍ଷିଦେଇ ବଇନେଇ ଉହାଡିଲା ସକଳ । ୨୨୦ ।
ବରଷନ୍ତି ମେଘେ ଯେ ମୂଷଳ ଧାର ଜାଣି
ଗରୁଡ ପିଠିରେ ପଡି ଢଳେ ପଡୁଅଛି ପାଣି । ୨୨୧ ।
ନିର୍ଘାତ ବଜ୍ରସୂଚୀ ଅନଳ ଶରମାନ
ଗରୁଡ ପିଠିରେ ପଡି ହୋଉଛନ୍ତି ନାଶପାନ । ୨୨୨ ।
ପବନକଇଂ ରାଇ ଆଗ୍ୟାଂ ଦିଲେ ମଘବାନ
ମେଘଂକର ତୁଲେ ତୁ ଯାଇ ବହସି ବହନ । ୨୨୩ ।
ଅଣଚୃଶ ପବନ ଯେନ ତୁ ବହିବୁ ସମ୍ମୁରେ
ଯାଦବମାନଙ୍କୁ ନେଇ ପକାଅ ସାଗର ଭିତରେ । ୨୨୪ ।

---

୨୨୧।୨ ଗରୁଡ ପିଠିରେ ଉପୁଡି ପଡଇ ପାଣି ।—ଘ, ଥ, ଝ

ଦେବରାଜଂକ ବଚନେ ସେ ଗର୍ଜଇ ପବନ
ବହିଲା ଅଣଗୃଣ ସେ ବଢାଇ ଗହନ । ୨୨୫ ।
ଯୁଧିଷ୍ଠିର ଦେବ ଶ୍ରୀକୃଷ୍ଣ ବୋଇଲେ ପବନ ମେଘ ଭୁଲେ
ସମସ୍ତେ ନାଶ ଯିବାଟି ଅଣଗୃଣ ବହିଲେ । ୨୨୬ ।
ଶୁଣିଣ ନାରାୟଣ ସୁମରିଲେ ହନୁମନ୍ତ
ଖିନଖିନାଏଁ ଥାଇଂ ଜାଣିଲା ସେ ଅଞ୍ଜନାର ସୁତ । ୨୨୭ ।
ଚଉଦ ଶଙ୍ଖ ତାହାର ଦଧିମୁଖା ସଇନ
ଲାଙ୍ଗୁଳ ଉପରେ ତାଂକୁ ବସାଇ ଆସଇ ପାବନ । ୨୨୮ ।
ଯେସନକ ବହମ ଶତ ଧରି ହନୁମନ୍ତ କ୍ଷେପି
ଆଠଶତ ଯୋଜନ ଯେକା ପାଦକେ ବ୍ୟାପି । ୨୨୯ ।
ମନ୍ଦର ଗନ୍ଧମାର୍ଦ୍ଦନ ପର୍ବତ ମଧ୍ୟସ୍ଥାନେ
ଚହ୍ୱଂ ଯାଇ ପଡିଲା ହନୁମାନେ । ୨୩୦ ।
ଶ୍ରୀ ଜନାର୍ଦ୍ଦନ ଚରଣେ ହନୁମନ୍ତ ପରଣାମି
କେବଣ ଚରିତ ତୁମେ ଭିଆଇଲ ଦେବସ୍ୱାମୀ । ୨୩୧ ।
ଗୋବିନ୍ଦେ ବୋଇଲେ ମୋର ଦୁହିତା ସଚଳା
ବଳାତକାରେ ହରିନେଲା ତାହା ବାସେବର ବଳା । ୨୩୨ ।
ତାହାର ପାଇଂ ନିଦଶ ଦେବେ ପରିଧାଇ
ଅମ୍ଭନ୍ତ ଜିଣିମେ ବୋଲି ଆସିଛନ୍ତି ଧସାଇ । ୨୩୩ ।
ଆହୋ ମେଘନ୍ତ ଯେନକରି ପବନ ସେନାପତି
ଆମ୍ଭନ୍ତ ଉଡାଇ ପକାଇବ ସମୋଦ୍ରେ ସବୁନ୍ତ । ୨୩୪ ।
ଶ୍ରୀ ନାରାୟଣଂକ ବଚନ ଶୁଣିଣ ହନୁମନ୍ତ
ଲାଙ୍ଗୁଳ ବିସ୍ତାର କଲା ପବନର ସୁତ । ୨୩୫ ।
ଦଶଯୁଣ ମାଡି ରହିଅଛନ୍ତି ନାରାୟଣଂକ ସଇନ
କୋଡିଏ ଯୋଜନ ଆୟତନେ ଗଡେ କଲାକ ପାବନ । ୨୩୬ ।
ଉଚ୍ଚର୍ଗ କଲାକ ସେ ଷାଠିଏ ଯୋଜନ
ପବନର ବାଘାତ ଯେକା ଆବୋରିଲା ହନମାନ । ୨୩୭ ।

ଭାବେ ଲାଞ୍ଜ ଆଉଜ ସଇନ ରହିଲେ ନିଶ୍ଚିନ୍ତେ
ଉପରେ ପକ୍ଷି ଘୋଡାଇଲା ବନତାର ସୁତେ । ୨୩୮ ।
ଅଣଚୃଶ ପବନ ଯେନ ଯେ ବହିଲା ପବନ ମହାବଳ
ବନ ପରବତ ଭାଙ୍ଗି ହୋଇଲା ସମତୁଲ । ୨୩୯ ।
ଉପରେ ମେଘମାନେ ମୂଷଳଧାର ବୃଷ୍ଟି
ଗରୁଡ ପକ୍ଷରେ ପଡି ମହାଯେ ବନ ଫୁଟି । ୨୪୦ ।
ଆହୋ ଚଇତନ, ଗରୁଡ ପକ୍ଷି ଗୁଡୟେଣୀ, ହନୁମନ୍ତ ଲାଞ୍ଜ
ପାଚେଷ୍ଟ ପ୍ରାୟେ ମଣି
ଯେତେ ପବନ ମେଘଂକର ଘାତ ଯଦୁବୀରେ କେହିହିଂ ନ ଜାଣି । ୨୪୧ ।
ବଜ୍ରସୂଚୀ ବଘାତ ଆବର ଅଗ୍ନିବାଣ
ଗରୁଡ ପକ୍ଷରେ ପଡି ହୁଅନ୍ତି ଅକାରଣ । ୨୪୨ ।
ସଇନ ବିକଳ ହୁଅନ୍ତି ନ ପୁଣ ଗରୁଡ ପକ୍ଷି ପୋଡଇ
ଝଟିଣ ଅଗ୍ନି ଆମ୍ଭର ଉପରେ ପଡଇ । ୨୪୩ ।
ସଇନ ବିକଳ ଦେଖିଣ ଫାଲଗୁନ
ଅବଚ୍ଛନ୍ନେ ବାଣ ବିନ୍ଧିଲା ମନଭେଦୀ ଶର ଯେନ । ୨୪୪ ।
ଗରୁଡ ପକ୍ଷ ଘୋଡାଇଲା ଅଛି ମହାଭାର
ତହିଂର ଉପରେ ଅର୍ଜୁନ କଲା ଶର ପୀଡା । ୨୪୫ ।
ପଞ୍ଚତାଳ ବହଳ ହୋଇ କୋଡିଏ ଯୋଜନ ବିସ୍ତୀର୍ଣ୍ଣ
ଶର ଗୁଡଣୀ କର ଘୋଡାଇଲା ବୀର ଅରଜୁନ । ୨୪୬ ।
ପବନ ବହଇ ମେଘ ବରଷଇ ମୂଷଳ ଧାରେ
ପଞ୍ଚ ରାତ୍ର ପଞ୍ଚ ଦିବସ ବରଷିଲେ ସମ୍ଭରେ । ୨୪୭ ।
ପବନ ବହନ୍ତେ ଯେ ଉଠିଲେ ଦିଗମ୍ୱଳେ
ସମସ୍ତେ ଓହାଡ ହୋଇଲେ ମେରୁ ଯେ ମେଖଳେ । ୨୪୮ ।

---

୨୩୮।୧ ସୁଖେଣ ସଇନ ଯେ ରହିଲେ ନଚନ୍ତେ ।—ଣ, ଖ; ନ, ଛ, ଚ

୨୪୩।୨ ଝଟିଣ ମହାବୃଷ୍ଟି ପୁଣ ଉପରେ ପଡଇ ।—କ, ଥ, ଜ

ମେଘଂକର ଗର୍ଜନ୍ତେ ହନୁମନ୍ତ ମହାକୋପେ
ମେଘକୁ ଗୃପଡ୍ଡେ ମାଇଲା ଚଟଚାପେ । ୨୪୯ ।
ସମ୍ବର୍ତ୍ତକ ମେଘ ମଥାରେ ପଡ଼ିଲା ବଜ୍ରବଧା
ମୋହୋଣ ଅସାଃଷ୍ଟମ ହୋଇଲା ଜଲସିନ୍ଧା । ୨୫୦ ।
ମହାବଳୀ ମେଘ ଯହୁଂ ପଡ଼ିଲା ମଣ୍ଡଳେଟି
ସମସ୍ତ ମେଘମାନେ ତହୁଂ ପଳାଇଗଲେ ଫୁଟି । ୨୫୧ ।
ମେଘେ ପଳାଇଲେ ଯହୁଂ ଟହିଲା ମହାବୃଷ୍ଟି
ବନ ଡିଙ୍ଗର ପର୍ବତ ଯେକମେଳ ହୋଇଲା ଜଳଘୋଟି । ୨୫୨ ।
ମହା ଅନ୍ଧତ୍କାର ଯେ ସବୁ ଜଳମଧ୍ୟେ
ହନୁମନ୍ତ ଲାଂଜ ପଡ଼ନ୍ତେ ସନ୍ୟକୁ କଷ୍ଟୁ ନାହିଂ ଭୟେ । ୨୫୩
ପବନ ବହୁଅଛୁ ଯେ ମହାସମ୍ପରେ
ପବନକୁ ହନୁମନ୍ତ ମାଇଲା ଗୃପଡ୍ଡେ । ୨୫୪ ।
ପ୍ରଚଣ୍ଡ ପବନ ଯାଇଂ ପଡ଼ିଲା ନିଜସ୍ଥାନେ
ଘାତ୍ୟେଣ ଅଚେତନ ସେ ହୋଇଲା ପବନେ । ୨୫୫ ।
ଭୟେ ପାଇଣ ସେ ଯେ ରହିଲା ମହାବାତ
ପ୍ରଚଣ୍ଡ ପବନ ମୋହେଣ ହୋଇଲା ଅଚେତ । ୨୫୬ ।
ଆରମ୍ଭେ ପବନେ ଯେ ବହୁଥିଲେ ଗଲଗାଜ
ହନୁମନ୍ତ ବଘାତେଣ ପଳାଇଲେ ସର୍ବେ ଭାଂଜ । ୨୫୭ ।
ମେଘ ପବନ ଯହୁଂ ହୋଇଲା ନିବର୍ତ୍ତି
ହନୁମନ୍ତ ଲାଙ୍ଗୁଡ଼ ସଂହରିଲା ତତକ୍ଷଣାନ୍ତ । ୨୫୮ ।
ଗରୁଡ଼ର ପକ୍ଷ ଯେ ସମାର୍ଜନା କଲା
ଅର୍ଜୁନ ନାଗରାଜମାନ ହୋଣରେ ସଂହରିଲା । ୨୫୯ ।
ବଳରାମେ ବଜେକଲେ ତାଳଧ୍ୱଜ ରଥେ
ଗୋବିନ୍ଦେ ବଜେକଲେ ବଇନେୟ ପିଠିଗତେ । ୨୬୦ ।

---

୨୫୯।୧ ଗରୁଡ଼ ପକ୍ଷ ଯେ ସମାନ ତହୁଂ କଲା ।—ଦ, ଡ, ଜ, ଞ୍ଜ, ଛ
୨୫୯।୧ ଗରୁଡ଼ ପକ୍ଷ ତହୁଂ ଯେ ସଂହରଣ କଲା ।—କ, ଡ

ଦେଖିଲେ ଦେବତାମାନେ ସମରେ ନାହାନ୍ତି କେହ୍ବି
ଈଶ୍ବର ଇନ୍ଦ୍ର ଦୁଇ ଦେବତା ଛନ୍ତି ରହ୍ବି । ୨୬୧ ।
କୋପେଣ ଗର୍ଜିଲେ ରାମ ତେଜ ଅନର୍ଗଳା
କାଦମ୍ବରୀ ପାନେ ସେ ମହାମତ୍ତଭୋଳା । ୨୬୨ ।
ନୀଳାମ୍ବର ପୁରୁଷ ପ୍ରତାପ୍ୟାଂ ଦେବହଳୀ
ମଣ୍ଡନେ ଫେଣା ଯାର ସପତ କୁଣ୍ଡଳୀ । ୨୬୩ ।
ନବ୍ବକାର ପୁରୁଷ ଯେ ପରମାନନ୍ଦ ଯୋଗୀ
ସମର୍ଥକ ହଳ ଦେବ ବୁଲାଇଲେ ବେଗି । ୨୬୪ ।
ନବ ସହସ୍ର ଯୋଜନ ପୋତା ଯେବଣ ମନ୍ଦର ପରବତ
ଉହର୍ଗ ବିସ୍ତାର ଯେ ତିନ ଅବ୍ବବ୍ରତ । ୨୬୫ ।
ବଜ୍ର ହଳ ଘେନି ପର୍ବତ ରାମ ତାଡି
ମହାଭାରା ପର୍ବତ ହେଲେଣ ଉପାଡି । ୨୬୬ ।
ଆହୋ ଚଉତନ କୋଟିଯେ ସିଂହର ବଳ ଯାହାର ପ୍ରତକ୍ଷେ
ମନ୍ଦର ଗିରି ପର୍ବତ ହଳମୁନେ ରାମ ଧଇଲେ ଅନ୍ତରୀକ୍ଷେ । ୨୬୭ ।
ଈଶ୍ବର ଇନ୍ଦ୍ର ଯେ ଘେନିଣ ବେନିବଳ
ସେହ୍ବି ପର୍ବତ ଉପରେ ରହ୍ବିଅଛନ୍ତି ନଚଳ । ୨୬୮ ।
ଚଉଦ କୋଟି ଶିବଗଣନ୍ତ ଘେନିଣ ସଦାଶିବ
ବୃଷଭ ଚଳାଇ ଡେଇଂ ପଡିଲେ ମହାଦେବ । ୨୬୯ ।
ଅଇରାବତ ଚଳାଇଂ ଡେଇଂ ପଡିଲେ ସୁରପତି
ଅମରଗଣ ଘେନିଣ ସେ ହୋଇଲେ ଭୂମିଗତି । ୨୭୦ ।
ଦେଖିଣ କାମପାଳେ ଯେ ଧାମନ୍ତି ଅତିବେଗେ
ମନ୍ଦର ଧରି ରାମ ସଦାଶିବର ଆଗେ । ୨୭୧ ।
ଶ୍ରୀଭୁଜେ ଶଙ୍ଖ ଚକ୍ର ଘେନିଣ ବନମାଳୀ
ବାସବ ଦେବତା ସମ୍ମୁରେ ଯାଇଂ ମିଳି । ୨୭୨ ।
ନିଶାଚର ବଳମାନନ୍ତ ଘେନିଣ ଯେ ଯମ ଦେବତା
କାଳଫାଶ କରେ ମହିଷି ବାହନ ଘେନି ନାଥା । ୨୭୩ ।

---

୨୬୪।୧ ନବ୍ବକୁଳ ପୁରୁଷ ପରମାନନ୍ଦ ଯୋଗୀ ।—ଡ, କ, ତ, ଦ

କୋପେଣ କୃତାନ୍ତକ ବଳ ଘେନଣ ଧାମଇଂ ଅତିବେଗେ
ପଳାବନ୍ତ ସଇନ କେହ୍ନ ନ ରହିଲେ ଆଗେ । ୨୭୪ ।
ଦୂରେଣ ଦେଖିଲା ତାହା ପାଣ୍ଡବ ଭୀମସେନ
କୃତାନ୍ତକ ଉପରକୁ ଧାଇଂଲା ବହନ । ୨୭୫ ।
ଯମ ଭୀମ ଦୁହେଂ ଯୁଦ୍ଧଂ ହୋଇଲେକ ଯେକଭେଟ
ଅଗ୍ନି ଦେବତାଯେ ଯାଇଂ ହୋଇଲେ ନିକଟ । ୨୭୬ ।
ଅଗ୍ନିଂକର ମୂର୍ତ୍ତି ଦେଖି ପଳାବନ୍ତି ସଇନ
ନନ୍ଦିଘୋଷ ରଥ ଆରୋହି ଯାଇଂ ଓଗାଳଲେ ଫାଲଗୁନ । ୨୭୭ ।
ଅର୍ଜୁନର ହାଥେ ଶହସ୍ର ବଇଶ୍ୟାନର ଦେଖି
ଭାଜିଣ ଧୂଞ୍ଜ ରହିଲେ ସମର ଉପେକ୍ଷି । ୨୭୮ ।
ଅଗ୍ନି ବୋଇଲେ ବାବୁ ମୋହୋର କଷ୍ଟଥିଲା ଲୁଦୁ ବୁଦୁ ବ୍ୟାଧି
ତାହା ପାରକଲୁ ମୋତେ ଦେଇଣ ମଉଷଧି । ୨୭୯ ।
ବାବୁ କଲାର ଉପକାର ନ ସୁମରନ୍ତି ଯେବଣ ଲୋକ
କୁପୁରୁଷ ଭୁଲେ ତାକୁ କରିବା ଜଣେକ । ୨୮୦ ।
ତୁ ମୋତେ ଉପକାର କଲୁ ସବ୍ୟସାଚୀ
କାହୁଂ ଶୁଝିବ ମୁଂ ତୋର ଗୁଣ ହୃଦେ ପାଞ୍ଚି । ୨୮୧ ।
ଅଗ୍ନିଦେବତା ଯେ ଅର୍ଜୁନକୁ ବହୁତ ପ୍ରସର ବୋଲି
ବାବୁ ସମରେ ମୁହିଂ ଯେବେ ତୋର କଣ୍ଠରେ ହୋଇଲି । ୨୮୨ ।
ଯହିଂକ ପେଷିବୁ ମୋତେ ଧନୁରେ ବସାଇ
ତଇଲୋକ୍ୟେଣ ଥିଲେ ତାହା ମୁଂ ଆସିବଇଂ ଦହି । ୨୮୩ ।
ଶୁଣ ହୋ ଅର୍ଜୁନକୁ ପ୍ରସନ୍ନ ହୋଇଲେ ଯେ ଅଗ୍ନି
ପଞ୍ଚଶିଖା ହୋଇ ବୋଣେ ପଶିଲେ ବହନ । ୨୮୪ ।
ଯୁଦ୍ଧ ଶୁଣି ପ୍ରସନ୍ନ ହୋଇଲେ ବଇଶ୍ୟାନର
ଚମକାଇ ନନ୍ଦିଘୋଷ ରଥ ବାହିଇ ପାଥ ଧନୁର୍ଦ୍ଧର । ୨୮୫ ।

---

୨୮୦।୨ କୁପୁରୁଷ ସଙ୍ଗେ ତାହାକୁ କରିବାର ଲେଖ ।—ଣ, ଖ, ନ

୨୮୪ { ଅର୍ଜୁନ ଭୁଲେ ରହିଲେ ପଞ୍ଚବର୍ଣ୍ଣ ଅଗ୍ନି
କଂପାଇ ନନ୍ଦିଘୋଷ ବାହିଲେ ଫାଲଗୁନ ।—ଦ, ଡ, ଢ, ଘ ଥ;

ଯମ ଭୀମ ଦୁହିଁଙ୍କର ବାଜିଲା ମହାଗୋଳ
ଦଣ୍ଡ ଘେନି ଧାଇଁଲେ କାଳ ଯେ ବିକାଳ । ୨୮୬ ।
ଯମଗଣଙ୍କର ହାଥେ ଅଛଇ କାଳଫାଶି
ଗଦା ଘେନି ବୃକୋଦର କାଳ ବିକାଳକୁ ଆକ୍ଷେପି । ୨୮୭ ।
କାଳଫାଶ ଘେନିଣ ଯେ ଧାଇଁଲେ ଯମଦୂତେ
ଧାଇଁଣ ମାରୁତି ନେଇ ପିଟିଲା ଗଦାଘାତେ । ୨୮୮ ।
ଗଦାବର ପଡନ୍ତେ ଛିଣ୍ଡିଲା କାଳଫାଶି
କାଳ ବିକାଳକୁ ଗଦା ଘେନି ଭୀମସେନ ଆକ୍ଷେପି । ୨୮୯ ।
ମହାଗଦା ଦେଖିଣ ସେ ଯମର ସେନାପତି
ନାସେଣ ଆଡ ହୋଇଲେ ସଘଟ ମୂରତି । ୨୯୦ ।
ମୂର୍ଚ୍ଛନା ସେନା ପଡି ଭାଙ୍ଗିଲେ ଯହୁଁ ରଣେ
ପଞ୍ଚାଇଁଣ ମର୍ଦ୍ଦିତ ଭାଙ୍ଗି ପଳାଇଲେ ଯମଗଣେ । ୨୯୧
ଯହୁଁଣ ଭାଙ୍ଗିଲେ ସେ କୃତାନ୍ତକ ଦଣ୍ଡ
କାଳଦଣ୍ଡ ଧରି ଧାଇଁ ନାଶକର ପ୍ରଚଣ୍ଡ । ୨୯୨ ।
ମଇଁଷି ବାହନେ ଯେ ଅନ୍ଧାର ଘୋର ମୂର୍ତ୍ତି
ଭୀମର ସମ୍ମୁଖେ ଯମ ମିଳିଲା ତଡନ୍ତି । ୨୯୩ ।
ଶତଶୃଙ୍ଗ ସୁମେରୁ ଭୀମ ବିସ୍ତାର କଲା କାୟା
ଯମକୁ ଦେଖି ଭୀମସେନ ନିଶଙ୍କ ନିର୍ଭୟା । ୨୯୪ ।
ରେ ରେ କାର କରିଣ ଭୀମ ବୁଲାଇ ଗଦାବର
ଧାଇଁଣ ପିଟିଲା ସେ ଯମର ମଇଁଷି ଉପର । ୨୯୫ ।
ପବନର ସାମର୍ଥ୍ୟ ଜାତ ସେ କ୍ଷତ୍ରିୟ ପରଚଣ୍ଡ
ଗଦା ବାଘାତେ ଚୂରିଗଲା ମଇଁଷିର ମୁଣ୍ଡ । ୨୯୬ ।
ଅସାଷ୍ଟମେ ମଇଁଷି ଯେ ପଡିଲା ମହୀଲୋଟି
ସେ ମଇଁଷି କି ଧରି ଯମ ଉପରେଣ ନେଇ ପିଟି । ୨୯୭ ।

---

୨୯୭ { ବାହାନ ଅଭାବେ ଯମ ପଡଇ ମହୀଲୋଟି
ସେ ମଇଁଷିର ଦୁଇପାଦ ବୁଲାଇ ଯମ ଉପରେ ପିଟି ।—କ, ଜ

୨୯୭ { ଅଚେତନ ହୋଇ ମଇଁଷି ପଡିଲା ମହୀଲୋଟି
ସେହୁ ମଇଁଷିର ବେନି ଶୃଙ୍ଗ ବୁଲାଇ ଯମ ଉପରେ ପିଟି ।—ଚ, ଝ

ପର୍ବତ ଉପରେ ଯେହ୍ନେ ପଡ଼ଇ ବଜ୍ରଘାତ
ପ୍ରହାରେ ଯମ ଦେବତା ହୋଇଲେ ଅଚେତ । ୨୯୮ ।
ପୁଣି ସଚେତ ହୋଇ କରେ ଗଦା ଘେନ
ଭୀମକଇଂ ପ୍ରହାର ସେ କରଇ ଜନ୍ତୁସ୍ୱାମୀ । ୨୯୯ ।
ଗଦା ପିଟନ୍ତେ ସେ ଯେ ଧଇଲା ମାରୁତି
ଯମର ହାଥୁଂ ଉଛୁଡ଼ି ଧଇଲା ତଡ଼ତି । ୩୦୦ ।
ସେହି ଗଦା ଘେନ ପିଟିଲା ନଠାଇ
ଭୟେଣ ନ ଶ୍‌କର ଅନ୍ତର୍ଦ୍ଧାନ ସେହିଠାଇଂ । ୩୦୧ ।
ଅନ୍ତରୀକ୍ଷେ ପଳାଇଲା କୃତାନ୍ତେକ ସଇନ ଘେନ
ପଳାଇ ପଶିଲା ସେ ଭୁବନ ସଞ୍ଜିବନୀ । ୩୦୨ ।
ସିଂଘନାଦ ଶବଦ କରଇ ବୃକୋଦର
ବିହଡ଼ଇ ପାଣ୍ଡବ ଯେ ତେଜ ପରଖର । ୩୦୩ ।
ଯମର ହାଥରୁ ଗଦାବର ଉଛୁଡ଼ଣ ଘେନ
କାଳେବର ନାମ ଯେ ବହିଲା ପାବେନ । ୩୦୪ ।
ସାଧ ସାଧୁ ଭୀମ ବୋଲି ନାରଦେ କଲେ ଧୁନି
ଯମର ଉପରେ ଦୁଷ୍ଟଯମ ଖାରଧୂ ପାବେନ । ୩୦୫ ।
ସମରେ ଭଗ୍ନ ଯଦ୍ଧୁଂ ହୋଇଲେ ନାଶକର
ଦିଗପାଳମାନେ ଯେ ହୋଇଲେ ଅନ୍ତର । ୩୦୬ ।
ସମରେ ବିଜେକଲେ ଦେବ ବିଶ୍ୱନାଥେ
କୋଟିଏ ସହସ୍ର ବଳ ପିନାକ ଧନୁ ଧରି ହାଥେ । ୩୦୭ ।
ଚଉଦ କୋଟି ଶିବଗଣ ଅଛନ୍ତି ତାଂକ ଭୁଲେ
ପରମାନନ୍ଦ ନାଥ ସମରେ ବିଜେକଲେ । ୩୦୮ ।
ମୟୂର ବାହାନେ ଯେ କାର୍ତ୍ତିକେଶ୍ୱର ବିଜେ
ଇନ୍ଦ୍ରୁର ବାହନେ ବିଜେକଲେ ବିଘ୍ନରାଜେ । ୩୦୯ ।
ଶାର୍ଦ୍ଦୁଳ ବାହାନେ ନନ୍ଦୀକେଶର ଚଳ
ଶ୍ରୀକାଳ ବାହନେ ଯେ ଜୟନ୍ତକ ବେଗେ ମିଳ । ୩୧୦ ।

ଚଣ୍ଡ ପ୍ରଚଣ୍ଡ ବେନ ବ୍ୟାଘ୍ର ଆରୋହି
ଚିଣାୟେକ ବଣାୟେକ ବେନ ଭାଲୁକ ଉପରେ ଗମଇ । ୩୧୧ ।
ଜୟନ୍ତକ ଅଜୟନ୍ତକ ମୃଗ ଯେ ବଳୟି
ଭୂମିରେଣ ପାଦଗଡ ଧାମଇଂ ଅଭୟି । ୩୧୨ ।
ମଣିଭଦ୍ର ଚଳଇ ଯେ ଶମ୍ବର ବାହନେ
ବନଜୀବ ଆରୋହଣ ସକଳ ଗଣନାୟେକମାନେ । ୩୧୩ ।
ବଇନେୟ ବାହାନେ ଯେ ବିଜୟେ ଚକ୍ରଧାରି
ହରିହର ଦୁହେଂ ଭେଟ ସମର ଆବୋରି । ୩୧୪ ।
ନାରାୟେଣକଇଂ ଦେଖିଣ କୋପକଲେ ହର
ସଞ୍ଜୟେ ସମ୍ବନ୍ଧ ଆଜ ବୁଡାଇଲ ରେ ଗଉଡ । ୩୧୫ ।
ଆରେ ସଚଳା କନ୍ୟା ତୋର କୁଳ ଯେ ନାଶିମି
ଦ୍ୱାରିକା ଭୁବନକୁ ସେ କାଳାନଳ ବହ୍ନି । ୩୧୬ ।
ଯାବତ କନ୍ୟା ତୁ ହରିଆଣୁ ବଳେ
ତୋତେ କଳଂକ ଲାଗିଲା ଆସି ଯେତେକାଳେ । ୩୧୭ ।
ଗୋବନ୍ଦେ ବୋଇଲେ ହୋ ତୋହୋର ମନ୍ଦପଣ
ତୁ କଂପେ ମଝିରେ ପଶି ମରୁଚୁ ଅକାରଣ । ୩୧୮ ।
ବାସେବର ପୁତ୍ର ମୋର ଦୋହିତା ହରିଲା
ତାହାର ମୋହୋର ଯେ ସମର ହୋଇଲା । ୩୧୯ ।
ତୁ କଂପେ ମଧ୍ୟେ ପଡି ଧ୍ୱଂସି ମରୁ ଅନମିତେ
ପୃଥିବୀ ରହଇ କ ସମୋଦ୍ର ଲଂଘନ୍ତେ । ୩୨୦ ।
କର୍ମେଣ ଯୋଗୀ ତୁ କାଳେଣ ଅବତ୍ରେର ମନ୍ଦବୁଦ୍ଧି
ଯତନେ ନାଶ କରିବୁ ଅମର ସମ୍ପ୍ରଧି । ୩୨୧ ।
ନାରାୟେଣଂକର ବଚନ ଶୁଣିଣ ବିଶ୍ୱବାସୀ
କରେ ପିନାକ ଦେବ ଧଇଲେ ଆନ୍ଦେଷି । ୩୨୨ ।

---

୩୧୧।୧ ଚଣ୍ଡ ପ୍ରଚଣ୍ଡ ବେନ ବରାହ ଆରୋହି ।—ଖ, ନ, ତ, ଣ, ଛ
୩୧୨।୨ ଭୀମେକ ପାଦଗଡ ଧାମଇ ମହାକାୟି ।—ତ, କ, ଘ, ଥ, ଛ, ଞ
୩୧୭।୨ ତୋର ଦୋହିତା ହରିଲା ବାସବର ବାଳେ ।—ଣ, କ

ଅନର୍ଯାପ ନାଗଜ ବନ୍ଧିଲେ ହର କୋପେ
ସମସ୍ତ ଚୂରଗଲ ଗରୁଡ ପକ୍ଷୀ ଦର୍ପେ । ୩୨୩ ।
ଅବକ୍ଷଣେ ବାଣ ବନ୍ଧିଲେ ଧୂର୍ଜଟୀ
ପ୍ରେକା ପ୍ରହାରକେ ଛଲନ୍ତ କୋଟି କୋଟି । ୩୨୪ ।
ବନଚାର ନନ୍ଦନ ପଥି ଯେ ଉହାଡି
ସମସ୍ତ ଶାସ୍ତ୍ରମାନ ହୋଇଛନ୍ତ ଚୂରି । ୩୨୫ ।
ଅଗ୍ନି ବାଣ କରେ ଧରି ବନ୍ଧିଲେ ସଦାଶିବ
ସେ ଅଗ୍ନିବାଣକୁ ଗରୁଡ ସଂହରିଲ ଗର୍ଭ । ୩୨୬ ।
ପର୍ବତ ଘେନିଣ ଯେ ଧାମନ୍ତ ହେମବନ୍ତ
ଆଗେ ଉଗାଳିଲ ତାହା ବୀର ହନୁମନ୍ତ । ୩୨୭ ।
ଗିରିବରମାନେ ଯେ ପଡୁଛନ୍ତ ଝଡି
ସମସ୍ତ ଚୂରଗଲେ ହନୁମନ୍ତ ଶରୀରେଣ ପଡି । ୩୨୮ ।
ଲକ୍ଷେକ ପର୍ବତେ ଯେ ପଡିଲେ ପ୍ରେକଘାନ୍ତ
ହନୁମନ୍ତ ଦେହେ ପଡି ହୋଇଲେ ଧୂମ୍ରାନ୍ତ । ୩୨୯ ।
ରେ ରେ କାର କରିଣ ଯେ ଧାମଇ ପାବେନ
ହନୁମନ୍ତ ଆଗେ ହୋଇଲ ପର୍ବତେକ ଘେନ । ୩୩୦ ।
ଡିଙ୍ଗର ବୁଲାଇ ଯେ ପ୍ରହାର କଲ ହନୁ
ପର୍ବତେ ଭାଙ୍ଗିଲେ ପଡ ହେମବନ୍ତର ତନୁ । ୩୩୧ ।
ଲଉହଗିରି ହେମଗିରି ଘେନି ରାଜା କରେ
ବୁଲାଇ ପ୍ରହାର କଲ ମାରୁତିର ଶିରେ । ୩୩୨ ।
ଦେଖିଣ ହନୁମନ୍ତ ପାତିଲ ବକ୍ଷସ୍ଥଳ
ଲଉହଗିରି ଭାଙ୍ଗି ହୋଇଲ ଶତେ ଚୂର । ୩୩୩ ।
ଦେଖିଣ ଆଶ୍ଚର୍ଯ୍ୟ ଯେ ହୋଇଲେ ହେମବନ୍ତ
ନିଶ୍ୱାସ ନ ବହଇ ହୋଇଲେ ଥମ୍ଭୀଭୂତ । ୩୩୪ ।
କୋପେଣ ମାରୁତି ଯେ ମାଇଲ ବଜ୍ରମୁଥ
ପଡିଣ ମୂର୍ଚ୍ଛାଗତ ହୋଇଲେ ହେମବନ୍ତ । ୩୩୫ ।
ପୁଣି ପୁଣି ପ୍ରହାର ଯେ କରଇ ମାରୁତି
ହନୁମନ୍ତ ହାଥ ଆସି ଧଇଲେ ପାର୍ବତୀ । ୩୩୬

ବାବୁ ମୋହୋର ପିଅର ପ୍ରେ ଯେ ତୋହୋର ଅଟେ ଅଜା
ରହ ରହ ବାବୁରେ ସମର କର ପଶ୍ଚେଜ୍ୟା । ୩୩୭ ।
ପାର୍ବତୀଙ୍କ ବଚନେ ହନୁ କୋପକଲା ଶାନ୍ତ
ଆଉ ପର୍ବତମାନନ୍ତ ଲାଙ୍ଗୁଡେ ବାନ୍ଧି ଫିଙ୍ଗିଲା ସବୁନ୍ତ । ୩୩୮ ।
ହେମବନ୍ତ ଗଲା ଯେ ତେଜଣ ସମର
ହନୁମନ୍ତକୁ ଓଗାଳିଲା ଆସି କାର୍ତ୍ତିକେଶ୍ୱର ବୀର । । ୩୩୯ ।
ଦ୍ୱାଦଶ ଭୁଜେ କୁମର ଧରିଛନ୍ତି ଛଡଧନୁ
ଲକ୍ଷେକ ନାରାଚ ବିନ୍ଧିଲା ପାର୍ବତୀର ତନୁ । ୩୪୦ ।
ଦେଖିଣ ହନୁମାନ ପାତିଲା ବକ୍ଷସ୍ଥଳ
କାର୍ତ୍ତିକେଶ୍ୱର ନାରାଚମାନ ହୋଇଲେ ସର୍ବଚୂର । ୩୪୧ ।
ପୁଣି ଲକ୍ଷେକ ପ୍ରହାର କଲା ବୀରମଣି
ହନୁମନ୍ତ ପାତିଲା ବକ୍ଷସ୍ଥଳ ପୁଣି । ୩୪୨ ।
ନାରାଚ ପଡିଲେ ଯେ ହନୁମନ୍ତ ହୃଦେ
ସମସ୍ତ ନାରାଚ ଯେ ଚୂରିଗଲା ହାଦେ । ୩୪୩ ।
ଅଞ୍ଜନାର ନନ୍ଦନ ଯେ ଅତ୍ୟନ୍ତ ବଳବନ୍ତା
ମହାକଳ୍ପାନ୍ତ ପୁରୁଷ ସାଂଗ୍ରାମେ ଜଣନ୍ତା । ୩୪୪ ।
ଦେଖିଣ କୋହାନଳ କାର୍ତ୍ତିକେଶ୍ୱର ଯନ୍ତ
ହନୁମନ୍ତ ଉପରେ ନେଇ ପିଟିଲା ଶକତ । ୩୪୫ ।
ହନୁମନ୍ତ ହୃଦେ ପଡିଣ ଖଣ୍ଡଶୂଳ
ଝଣତ୍କାର ହୋଇ ଅଗ୍ନି ହୋଇଲା ବାହାର । ୩୪୬ ।
ପଡିଣ ଚୂରିଗଲା ମହାରୁଦ୍ର ଶର
ମହାମେଘ ପ୍ରାୟେ ଗର୍ଜି ପବନ କୁମାର । ୩୪୭ ।
କାର୍ତ୍ତିକେଶ୍ୱରକୁ ମାଇଲା ଭୁଜଦଣ୍ଡେ
ଶ୍ରୋଣିତ ବୃଷ୍ଟି ହେଲା କାର୍ତ୍ତିକେଶ୍ୱର ଛଡମୁଣ୍ଡେ । ୩୪୮
ଘାତପୁଣ ଅଚେତନ ସେ ଗଉରୀଙ୍କ ବଚ୍ଛି
ଶହସ୍ର ଗୁଡିଣ ସେ ପଡଇ ଭୂମି ମୂର୍ଚ୍ଛି । ୩୪୯ ।
କାର୍ତ୍ତିକେଶ୍ୱର ନଚେଷ୍ଟ ଦେଖି ଭାଜିଲେ ସଇନ
ଚଳାବନ୍ତ ରୁଦ୍ରଗଣେ କରେ ଶସ୍ତ୍ର ଘେନ । ୩୫୦ ।

ବଜ୍ରଗିରି କରେଣ ଧରି ଧାମଇଂ ହନୁମନ୍ତ
ଗୋଡାଇ ପିଟିଲା ସେ ଶିବଗଣମାନନ୍ତ । ୩୫୧ ।
ହରିହର ସମର ଯେ ହୋଇଲା ମହାରୋଳ
ଉଲୁକାପାତ ପ୍ରାୟେ ଦିଶିଲା ସ୍ୱର୍ଗ ମର୍ତ୍ତ୍ୟ ପାତାଳ । ୩୫୨ ।
ଈଶ୍ୱରେ ବନ୍ଧିଲେ ଯେ ପାଶୁପତ ବାଣ
ନାରାୟଣୀ ଶସ୍ତ୍ର ବନ୍ଧିଲେ ନାରାୟଣ । ୩୫୩ ।
ବେନି ଶହସ୍ତ୍ର ପରିତାଳ ହୋଇଲା ସମର ଭୂମି
ମହା ଅନଳ ତେଜ ବ୍ୟାପିଲା ଗଗନଗାମୀ । ୩୫୪ ।
ଈଶ୍ୱରେ ପ୍ରହାର କଲେ ଶୂଳ ଯେ ଶକତି
କଉମୁଦ ଗଦାରେ ଯେ ବଞ୍ଚାଇଲେ ଶ୍ରୀପତି । ୩୫୫ ।
ଧନୁ ଛାଡି ରୁଦ୍ରଦେବ ପଡିଲେ ବେଗେ ଡେଇଂ
ମାଲବନ୍ଧେ ହରି ଜଗନ୍ନାଥଂକୁ ଧଇଲେକ ଯାଇଂ । ୩୫୬ ।
ପାଦେ ପାଦ ଛନ୍ଦି ମୁଥେ ମୁଥ ମରାମରି
ରୋମେ ରୋମେ ଶୋଣିତ ବହଇ ଦେବହରି । ୩୫୭ ।
ଦେଖିଣ ବଇନେଟ ପକ୍ଷ ଯେ ଧୋଡାଇ
ନାରାୟଣଂକୁ ପିଠିରେ ବସାଇ ଉଡି ଘେନିଯାଇ । ୩୫୮ ।
ଗୋବିନ୍ଦ ଆଉ ହୁଅନ୍ତେ ଧାଇଂଲେ ଦେବହର
ଉଗ୍ରସେନ ମୂଳେ ଅନେକ ସନ୍ୟ କଲେକ ଅପହାର । ୩୫୯ ।
ପଳାବନ୍ତ ଯାଦବେ ରୁଦ୍ରଂକ କୋପମୂର୍ତ୍ତି ଦେଖି
ପଶିଲେ ଗହନ ବନେ ସମର ଉପେକ୍ଷି । ୩୬୦ ।
ଈଶ୍ୱରଂକ କୋପମୂର୍ତ୍ତି ଦେଖି ଦେବ ବଳରାମ
ହଳ ମୂଷଳ ଘେନିଣ ପଶିଲେ ସାଂଗ୍ରାମ । ୩୬୧ ।
ବୃଷଭ ଆରୋହଣ କଲେ ଦେବ ଶୂଳୀ
ମୁଖରାବ ଶବଦ କରି ଓଗାଳିଲେ ଦେବ ହଳୀ । ୩୬୨ ।
ବଜ୍ର ମୂଷଳ ଯେ ସଉନନ୍ଦ ଯାର ନାମ
ବୃଷଭ ଉପରେ ନେଇ ପିଟିଲେ ବଳରାମ । ୩୬୩ ।
ବୃଷଭ ଉପରେଣ ମହାବଜ୍ର ପଡି
ମୋହେଣ ବୃଷଭ ଯେ ପଡିଲା ବସୁନ୍ଧରା । ୩୬୪ ।

ବଇଲ ଅଚେବନେ ରୁଦ୍ର ଯେ ଦେବତା
ଶୂନ୍ୟ ବାହନେ ଦେବ ସମରେ ଅପ୍ରମିତା । ୩୬୫ ।
ମନ୍ଦର କନ୍ଦର ରାମ ଧରିଅଛନ୍ତି ବାମକରେ
ଶୂଳେକ ସେନ ପିଠିଲେ ମାଳାମ୍ବର ଉପରେ । ୩୬୬ ।
ପୁଣି ପିଠିଲେ ହର ସୂର୍ଯ୍ୟାବ୍ରତେକ ଚନ୍ଦେ
ଅଇରାବ୍ରତ ଆରୋହି ବଜଯ୍ରେ ଦେବ ଶନ୍ଦେ । ୩୬୭ ।
ଶନ୍ଦ ଦେବତାଂକ ଧାମନ୍ତେ ଦେଖିଲା ଫାଲଗୁନ
ପୁରନ୍ଦର ସ୍ଥମୁରେ ପ୍ରବେଶ କରେ ଗାଣ୍ଡିବ ଧନୁ ସେନ । ୩୬୮ ।
ଇନ୍ଦ୍ର ଆରୋହି ଅଛନ୍ତି ଅଇରାବ୍ରତ ନାଗ
ନନ୍ଦଘୋଷ ରଥ ଆରୋହି ବଜଯ୍ରେ ପାର୍ଥ ଆଗ । ୩୬୯ ।
ଇନ୍ଦ୍ରଦେବ ବୋଇଲେ ଆରେ ରେ ମୂର୍ଖ ପାଣ୍ଡବା
ଦେବାଧି ଦେବଂକର ମୁହିଂ ସେ ଶିରୋମଣି ଦେବା । ୩୭୦ ।
ମୁହିଂ ତୋର ଯୁଗତେ ଅଟଇ ପିତାମହ
ସ୍ଥିର ଗଉଡ ବାଉଡ ପାଇଂ ଛୁଡ଼ିଲୁ ମୋତେ ସ୍ନେହ । ୩୭୧ ।
ଅଗ୍ୟାନ ପାଣ୍ଡବା ରେ ଗ୍ୟାନ ତୋର ନାହିଂ
ପଶିଲୁ ଯମଦଣ୍ଡେ ଯିବୁ ଆଜ କାହିଂ । ୩୭୨ ।
ପିତାମାତାଂକୁ ନ ଚିହ୍ନଇ ରେ ଯେବଣ ପୁତ୍ର
ତାହାର ଜୀବନ ରେ ଅଟଇ ଅକୃତାର୍ଥ । ୩୭୩ ।
ଯଦ୍ୟପି ବେଦମନ୍ତ୍ରକୁ ଜାଣଇଂ ଯେଉଂ ପୁତ୍ର
ପିତାରଂ ପ୍ରସାଦେ ସିନା ହୁଅଇ ଉଦ୍ଧତ । ୩୭୪ ।
ଗୋଲକୁଣ୍ଡା ଜାରଜାତକା ସେ ଅଗ୍ୟାନୀ ମୂଢପ୍ରାଣୀ
ଗଉଡଂକ ମେଳେ ବଢ଼ିଲୁ କଛିହିଂ ନ ଜାଣି । ୩୭୫ ।
କହୁଂ କହୁଂ କୋହ ଯେ ବଢ଼ିଲା ଅସକନ୍ଦ
ବଜ୍ର ଶକତ ବୁଲାଇ ଗର୍ଜଇ ଦେବଇନ୍ଦ୍ର । ୩୭୬ ।

---

୩୭୩।୨ ତାହାର ଜୀବନ ରେ ଅଟଇ ବ୍ୟର୍ଥ ।—ଛ, ଦ

୩୭୪।୧ ଯଦ୍ୟପି କ୍ଷତ୍ରୀବୀର ହୁଅନ୍ତି ସେ ପୁତ୍ର ।—କ, ଛ, ଖ, ଘ, ଟ, ଦ, ତ

ଅର୍ଜୁନ ବୋଇଲା ଦେବ ବୋଇଲ ବହୁତ
ଅକାରଣେ ପ୍ରତଗ୍ୟାଂ କଲୁ ଅନମିତ୍ର । ୩୭୭ ।
ଯେସନେକେ କୁହୁଡ଼ି ଘେଟଇ ଆକାଶେ
କ୍ଷଣକେ ଫିଟଇ ସେ ସୂର୍ଯ୍ୟଂକର ଜ୍ୟୋତିପ୍ରକାଶେ । ୩୭୮ ।
କାହ୍ନିଂ ତୋର ପବନ କାହ୍ନିଂ ତୋର ବଇଶ୍ୟାନରେ
କାହ୍ନିଂ ତୋର ହିମବନ୍ତ କାହ୍ନିଂ ନାଶକରେ । ୩୭୯ ।
ଆଗହୁଂ ପିତାମହ କର୍ମେ ନ କଲୁ ବୁଦ୍ଧି
କେମନ୍ତେ ଦିଗପାଳ ବୋଲାଉ ଜମ୍ଭୋଭେଦୀ । ୩୮୦ ।
ପାରଜାତକ ହରିଆଣିଲା ଯେତେବେଳେ
ବଳସାମ୍ଫି ପ୍ରାକ୍ରମ କାହ୍ନିଂ ଥୋଇଲ ଆଖଣ୍ଡଳେ । ୩୮୧ ।
ସମରେ ପଡ଼ିଲେ ଯେ ତୋହୋର ସର୍ବପୁତ୍ରେ
କ୍ଷଣକେ ସ୍ୱେ ତୋହୋର ଜୀବନ ଅଛଇ ନା ହୃଦଗତେ । ୩୮୨ ।
ଅର୍ଜୁନର ବଚନ ଶୁଣିଣ ମଘବାନ
ଅଜଗ ଧନୁ ଧରି କଲାକ ଆଧାନ । ୩୮୩ ।
ନିଜ କରେ ଅର୍ଜୁନ ଧରିଲା ଗାଣ୍ଡିମ ଧନୁ
ବଢ଼ିଲା ଉଚ୍ଚବାଚ ପିତାପୁତ୍ର ହୋଇଲେ ଅନ୍ୟାଅନୁ । ୩୮୪ ।
ଆକର୍ଣ୍ଣ ପରିଯନ୍ତେ ନାରାଚ ପୁରୋଇ
ମନ୍ତ୍ର ଆବାହନେ ନାରାଚ ବନ୍ଧିଲେ ସୁରସାଇଂ । ୩୮୫ ।
ସାତୁକୀ ସାରଥି ଯେ ଅର୍ଜୁନର ରଥେ
ତାହାକଇଂ ନାରାଚ ବନ୍ଧିଲେ ଦଶଶତେ । ୩୮୬ ।

---

୩୭୭।୨  ଅକାରଣେ ପ୍ରତଗ୍ୟାଂ କରୁ ତୋହୋର ଦୁଷ୍କୃତ ।
—ଣ, ଖ, ନ, ଝ

୩୮୦।୧  ଅର୍ଜୁନ ବୋଇଲା ଦେବ ନ କଲୁତ ସନ୍ଧି ।—ଛ, ଣ, କ, ନ, ଖ

୩୮୨।୨  କ୍ଷଣକେ ନାଶ ହୋଇବଟି ସ୍ୱେ ତୋହୋର ଗାତେ ।—ଖ, ଣ, ନ

୩୮୫।୨  ଅନିବାରଣ ଶର ବନ୍ଧିଲେ ସୁରସାଇଂ ।—କ, ତ

ଅର୍ଜୁନଂକୁ ବନ୍ଧିଲେ ବେଢକୋଟି ନାରାଜ
ଗୃଧ୍ର ଅଶ୍ୱନ୍ତ ଗୃଧ୍ର ଶହସ୍ର ବନ୍ଧିଲେ ଦେବରାଜ । ୩୮୭ ।
ବାସେବର ଶହସ୍ରକୁ ଅର୍ଜୁନ ବନ୍ଧିଲା ଜ୍ୱାଳାବଳୀ
ବାସେବର ଶହସ୍ରମାନ ସବୁ ଗଲା ଜଳି । ୩୮୮ ।
ବାବଲ ଶରେକ ଯେ ପେଷିଲା ବାସେବର ତନୁ
ଛେଦ ପକାଇଲା ଇନ୍ଦ୍ର ଦେବତାର ଧନୁ । ୩୮୯ ।
ପୁଣ ଆରେକ ଧନୁ ଧରି ସୁରନାଥ
ଅର୍ଜୁନ ଉପରେ ନାରାଜ ବନ୍ଧିଲା କୋଟି ସାତ । ୩୯୦ ।
ଅର୍ଦ୍ଧଚନ୍ଦ୍ର ବାଣ ଯେ ଅର୍ଜୁନ ବେଗେ ସନ୍ଧି
ବାସେବର ଧନୁ କ୍ଷୋଣ ପକାଇଲା ଛେଦି । ୩୯୧ ।
କାମ୍ୟେକ ନାରାଜ ଗୋଟି ବନ୍ଧିଲା କିରୀଟୀ
ଅଇରାବ୍ରତ ଶରୀରେ ପଡି ରୋମେ ରୋମେ କଣ୍ଟି । ୩୯୨ ।
ପ୍ରଭାତ କାଳେ ଯେହ୍ନେ ଦିଶଇ ଆଦିତ୍ୟ
ଶ୍ରୋଣିତ ବୃଷ୍ଟି ହୋଇ ଚଳିଲା ଅଇରାବ୍ରତ । ୩୯୩ ।
ନାଗପାଶ ଶରେକ ଯେ ଅର୍ଜୁନ ପ୍ରହାରି
ଅଇରାବ୍ରତକୁ ଗୁଡିଆଇଲା ଶତେପୁର କରି । ୩୯୪ ।
ଅହିଶର ବନ୍ଧନେ ମହାନାଗ ହୋଇଲା ଅଚଳ
ହାତୀ ପିଠିରୁ ଉତ୍ତୁରି ଧାମଇଂ ଆଖଣ୍ଡଳ । ୩୯୫ ।

---

୩୮୯।୨ "ଛେଦ ପକାଇଲା ଇନ୍ଦ୍ର ଦେବତାର ଧନୁ"
ପରେ 'ଡ' ପୋଥିରେ ଅଧିକା ପାଠ :—
ପୁଣ ଜୀମୁତେକ ଧନୁ ଧଇଲା ସୁରନାଥ
ସେ ଧନୁ ଧରନ୍ତେ ପୁଣ ତେଜ ବିକାଶେ ପୁରସାତ ।
ଝଂକାର ଶବଦ ଇନ୍ଦ୍ର କଲା ଯେତେବେଳେ
ମହା ମହା ରଥୀଂକର ଧନୁ ଖସିଲାକ ବଳେ ।
ସେ ଧନୁ ଧରି କରେ ଆପଣେ ଶଚୀନାଥ
ଅର୍ଜୁନ ଉପରକୁ ନାରାଜ କଲେ କୋଟିସାତ ।
୩୯୨।୨ ଅଇରାବ୍ରତ ଶରୀରେ ପଡି ରୋମେ ରୋମେ ଫୁଟି ।—ଖ, ଛ, ଙ
୩୯୩।୨ ସେହି ସାଦୃଶ ଯେ ଦିଶଇ ଅଇରାବ୍ରତ ।—କ, ଖ

ଶ୍ରୀଭୂକେ ଶୋଭାବନ ବଜ୍ର ଯେ ଶକତି
ବୁଲାଇ ବାସେବ ଯେ ମାଇଲା ତତକ୍ଷଣାନ୍ତ । ୩୯୬ ।
କୋଟିସୂର୍ଯ୍ୟ କରଣ ସେ ବଜ୍ର ଶକତିର ତେଜ
ଆସନ୍ତେ ମଧ୍ୟସ୍ୱର୍ଗ ହୋଇଲା କ ଦହ୍ୟଜ୍ୟ । ୩୯୭ ।
ଦେଖିଣ ଆଶ୍ଚର୍ଯ୍ୟ ଯେ ସତ୍ୟବନ୍ତର ନାତି
ଅର୍ଜୁନ ପ୍ରହାର କଲା ବ୍ରହ୍ମ ଯେ ଶକତି । ୩୯୮ ।
ବଜ୍ର ଶକତି ବ୍ରହ୍ମ ଶକତି ଦୁହେଁ ହୋଇଲେ ଭେଟଭେଟି
ଦବ ଭୁବନ ଦହନ ହେଉଛି ଜାଣିଲେ ପରମେଷ୍ଠି । ୩୯୯ ।
ଦୁହିଁଙ୍କର ହାବୁଡା ହାବୁଡିରେ ନ ସହଇ ମେଦିନୀ
ଉଲ୍କାପାତ ଜାଣି କମ୍ପିଲା ଭୁବନ ତିନ । ୪୦୦ ।
ଅନେକ ବିକଳ ହୋଇଲା ବସୁନ୍ଧରା
ବୋଇଲା ପାତାଳଗାମୀ ହେଉଅଛି ସହି ନୁଆରଇ ଭାର । ୪୦୧ ।
ସଂସାରର ବିକଳ ଦେଖି ଶାନ୍ତ ବେନଶର
ଦୁହେଁ ପଶିଲେ ଯାଇଁ ସାହେର ଭିତର । ୪୦୨ ।
କାଣ୍ଡ ଛୁଡିଲେ ଯେହ୍ନେ ସର୍ପ ହୁଅଇ ନଚେତ
ବଜ୍ର ଛୁଡନ୍ତେ ଇନ୍ଦ୍ର ହୋଇଲେ ସେହିମତ । ୪୦୩ ।
ମନଭେଦୀ ନାରାଚ ଘେନ ଫାଲଗୁନ
ମୋହନା ଶରେ ଭେଦିଲା ଦେବ ସହସ୍ରଯୋନ । ୪୦୪ ।
ଯେବଣ ଶର ପ୍ରତିଗ୍ରହ କରି ଦେଇଛନ୍ତି ବହ୍ନି
ଯାହାକୁ ପେଶଇ ଅବଶ୍ୟ ସମରେ କେହି ନ ବର୍ତ୍ତନ୍ତି । ୪୦୫ ।
ଅନର୍ଥୀପ ଶର ସେ ନ ଯାଇ କଳନା
ରୋମେକେ ଶତେ ନାରାଚ ପଡିଲା ବାସବ ଅଙ୍ଗେ ସିନା । ୪୦୬ ।

୩୯୯।୨ ତ୍ରିଭୁବନ ଦହ୍ୟଜ୍ୟ ହୋଅଇ ଜାଣିଲେ ସୁରଶ୍ରେଷ୍ଠି ।—ଛ, ଜ, ଣ

୪୦୩ { କାଢ ଛୁଟିଲେ ଯେହ୍ନେ ସର୍ପ ହୁଅଇ ବିଚେଷ୍ଟିତ
ବଜ୍ର ଛୁଡନ୍ତେ ଇନ୍ଦ୍ର ହୋଇଲେ ତେମନ୍ତ ।—ଦ, ଡ, ଜ

ଶରୀର କର୍ଦ୍ଦନ ହୋଇଲା ରକତ ଯେ ବୃଷ୍ଟି
ମୋହଶରେ ସୁରନାଥ ପଡ଼ିଲା ମହୀକୋଟି । ୪୦୭ ।
ଘାୟେଣ ଦେବଇନ୍ଦ୍ର ପଡ଼ିଲେ ମୋହଯାଇ
ସାନନ୍ଦେ ଅର୍ଜ୍ଜୁନ ଦେବଦତ୍ତ ଶଙ୍ଖ ବାଇ । ୪୦୮ ।
ଇନ୍ଦ୍ର ଦେବତା ଯେନଣ ସବ୍ୟସାଚୀ
ଦ୍ରୁଶନ କଲାକ ପାର୍ଥ କାମପାଳ ପଛ୍ଚ ଅଛୁ । ୪୦୯ ।
ଇନ୍ଦ୍ର ଦେବତାଙ୍କୁ ଯେ ଗ୍ଧମୁରେଣ ଦେଇ
ଅର୍ଜ୍ଜୁନ ଶୁଝିଲା ଶତ ସହସ୍ର ଦଣ୍ଡଲାଇଂ । ୪୧୦ ।
ଇନ୍ଦ୍ରର ନଟେଷ୍ଟା ହେବାର ଦେଖିଣ ଶୂଳପତ
ବଳରାମକଇଂ ମାଇଲେ ସହସ୍ରଧାର ଶକତ । ୪୧୧ ।
ଆବହା ସମର ତେଜ ଇନ୍ଦ୍ରକଇଂ ଗୃହାନ୍ତେ ଦେବହଳୀ
ଯେମନ୍ତର ସମୟେ ଶକତ ମାଇଲେ ଦେବଶୂଳୀ । ୪୧୨ ।
ଯେବଣ ଶକତ ଘାୟେ ଚୂର ହୋୟେ ମେରୁ
ମନୁଷ୍ୟ ଶରୀର ମାନକେ ତାହା କେହୁ ମେଣ୍ଟି ପାରୁ । ୪୧୩ ।
ଶକତର ଘାତେ ଦେବ ବଳରାମ ସ୍ୱାମୀ
ମୂର୍ଚ୍ଛାଗତ ହୋଇଣ ଯେ ପଡ଼ିଲେ ଅବନୀ । ୪୧୪ ।
ରୁଦ୍ରଶସ୍ତ୍ରେ ମୂର୍ଚ୍ଛାଗତ ହୋଇଥିଲେ ଦେବହର
ଗରୁଡ଼ ତାହାଙ୍କୁ ନେଇଥିଲା ଆଡ଼େକର । ୪୧୫ ।
ଗରୁଡ଼ ବାହନ ତେଜଣ ଯେ ଜଗନ୍ନାଥେ
ସାରଥି ହୋଇଲେ ଦେବ ଆସି ଅର୍ଜ୍ଜୁନର ରଥେ । ୪୧୬ ।
ଇନ୍ଦ୍ରର ଅଚେତନ ଦେଖିଣ ଦେବ ପଶୁପତ
ଅର୍ଜ୍ଜୁନଙ୍କୁ ଆସିକରି ଓଗାଳଲେ ଧାଇ । ୪୧୭ ।
ବଳରାମଙ୍କ ଅଚେତନ ଦେଖି ସବ୍ୟସାଚୀ
ରୁଦ୍ର ଦେବତାକଇଂ ନାରାଚ ଆମଞ୍ଚ । ୪୧୮ ।

---

୪୦୭।୧ ରୁଧିରେ କର୍ଦ୍ଦନ ଶରୀରୁ ହୋୟେ ବୃଷ୍ଟି ।—ଣ, ଛ

ବାହାନ୍ତ ତୁରଙ୍ଗ ଯେ ଦେବ ଚକ୍ରଧାରୀ
ସଦାଶିବଂକ ଅଛନ୍ତେ ରଥ ଚେକଲେ ଦେବହର । ୪୧୯ ।
ପଶୁପତ ନାରାଜ ଦେବ ଧରିଛନ୍ତି ନିଜ ହାଥେ
ଯେଉଣ ଶରେ ତ୍ରିପୁର ନାଶକଲେ ଦେବ ବିଶ୍ୱନାଥେ । ୪୨୦ ।
ଶତ କୋଟିକ ପୁଣ ଯେବଣ ନାରାଜର ଜ୍ୟୋତି
ଧନୁରେ ବସାଇଣ ପେଷିଲେ ପଶୁପତି । ୪୨୧ ।
ଅର୍ଜୁନ ସୁମରିଲା ମହାଦେବଂକ ଶର
ସୁମରନ୍ତେ ପ୍ରାପତ ହୋଇଲା ଆସି ଅର୍ଜୁନ ହାଥର । ୪୨୨ ।
ଈଶ୍ୱରଂକ ଗୁଣରେ ଯେ ବାଣ ବସିଥିଲା
ଅର୍ଜୁନ ସୁମରନ୍ତେ ତାହା ଆସି ପ୍ରାପତ ହୋଇଲା । ୪୨୩ ।
ଅଗ୍ନି ସମର୍ପି ହୋଇଅଛନ୍ତି ଅର୍ଜୁନର ତହିଂ
ସେ ଶର ଗୋଟିକ ଚନ୍ଦ୍ରଶେଖର ତହିଂ ନାହିଂ । ୪୨୪ ।
ଶୁଣ ହୋ ମନୁରାଜା ଯୁଦ୍ଧର ହାଦେ କଥା
ପ୍ରଥମେ ଜୟକଲା ଇନ୍ଦ୍ର ଯେ ଦେବତା । ୪୨୫ ।
ବଳବୀର୍ଯ୍ୟ ନନ୍ଦନ ଦେଖି ବ୍ରହ୍ମାଣ୍ଡେ ଗଲେ ଧାତା
ଭୟେଣ ବାରନିଧି ଘେନ ପଳାଇଲେ ରତ୍ନାକର
କୁବେର ଦେବତା । ୪୨୬ ।
ପବନ ଦେବତା ଯେ ସମରେ ଗଲେ ହାରି
ମୁଥଘାତେ ଅଚେତନ ହୋଇଲେ ମେଘବୃତ୍ତି । ୪୨୭ ।

---

୪୨୩।୧ ଅକ୍ଷୟେ ଦ୍ରୋଣ ଯେ ରୁଦ୍ରଦେବତା ତହିଂ ଥିଲା ।—ଅ, ଦ, ଟ, ଡ, ଝ, ତ, ଓ, ପ, କ

୪୨୪।୨ ହମଶର ନାରାଜ ଚନ୍ଦ୍ରଦେବତା ତହିଂ ନାହିଂ ।—ତ, ଦ, ଜ କ, ଓ, ଘ, ଝ

୪୨୬।୨ ଭୟେଣ ପଳାଇଲେ କୁବେର ଦେବତା ।—ଖ ଣ ନ, ଛ, ଚ

୪୨୭।୧ ବରୁଣ ଦେବତା ଯେ ସମରେ ଗଲେ ହାରି ।—ଖ, ଣ, ନ, ଚ, ଛ

ଆଦିତ୍ୟ ଦେବତା ଗଲେ ମେରୁ ପ୍ରଦକ୍ଷିଣେ
ସଂଗତରେ ଚଳିଲେ ସମସ୍ତ ଗ୍ରହଗଣେ । ୪୨୮ ।
ଚନ୍ଦ୍ର ଦେବତା ଯାଇଂଣ ପଶିଲେ ଗଗନେ
ବଳବୀର୍ଯ୍ୟ ନନ୍ଦନେ ହାରିଲେ ସକଳ ଦେବତାମାନେ । ୪୨୯ ।
ବଳନାଶ କରି ପଳାଇଲେ ଯମ ଯେ ଦେବତା
ଯମର ଉପରେ ଦୁଷ୍ଟଯମ ସ୍ଥିର ହୋଇଲା
ବୃକୋଦର ବଳବନ୍ତା । ୪୩୦ ।
ଇନ୍ଦ୍ର ଦେବତାଯେ ପଡ଼ିଲେ ମୋହବନ୍ଧେ
ଅର୍ଜୁନଙ୍କଇଂ ସମରେ ହାରିଲେ ସଦାନନ୍ଦେ । ୪୩୧ ।
ଦ୍ରୋଣ ଶହସ୍ର ଧନୁ ଶ୍ରୀକରେ ଯନ୍ତ୍ର ନାହିଂ
ଈଶ୍ୱର ଉଭା ହୋଇଲେ କାଖରେ ହାଥ ଲଇ । ୪୩୨ ।
ଗୋବିନ୍ଦେ ବୋଇଲେ ଈଶ୍ୱରଂକୁ ନାରାଜ ବନ୍ଧ ପାଥ
ଅର୍ଜୁନ ବୋଇଲା ମୁଂ ବାନ୍ଧିବ ଶହସ୍ରାନ୍ତ । ୪୩୩ ।
ବିରଥୀ ନିଶସ୍ତ୍ର ବିବସନ ହୋଇଥିଲେ
ମୁହିଂ ନ ମାରଇ ଦେବ ରଣେ ପିଠିଦିଲେ । ୪୩୪ ।
ଯେମନ୍ତେହେଂ ସଦାଶିବ ପାଇଲେ ନିକ ଲାଜ
ଅର୍ଜୁନ ବୋଇଲେ ସ୍ୱାମୀ ବିଜେକର ଯା ଦେବରାଜ । ୪୩୫ ।
ଇନ୍ଦ୍ରଂକୁ ତରଛି କଲ ହୋ ଈଶ୍ୱରେ
ରାମକୃଷ୍ଣ ସହିତେ ଯାଦବନ୍ତ ଜିଣିଲ ସାଂଗ୍ରାମରେ । ୪୩୬ ।
ହରି ଅର୍ଜୁନ ତ ଘେନଲେ ସବୁଯଶ
ଯେବେ ସ୍ୱାମୀ ବିଜେକରିବା ଦେବ କପିଳାସ । ୪୩୭ ।
ଯେ ଅବା ଶିବଗଣମାନେ ସଙ୍ଗତରେ ହୋଇଥିଲେ
ସବୁନ୍ତ ଘେନି ଈଶ୍ୱରେ କପିଳାସେ ବିଜେକଲେ । ୪୩୮ ।

---

୪୩୦।୧ ତରତରେ ପଳାଇଲେ ଜନ୍ତୁ ନାଶକରି ।—ଦ, ଛ, ତ, ଜ, କ

୪୩୬ { ଇନ୍ଦ୍ରଂକୁ ତ ରକ୍ଷାକଲ ଅମର ସ୍ୱର୍ଗପୁର
ଯେମନ୍ତ ପ୍ରତଜ୍ଞ୍ୟାଂରେ ତ ଯାଦବନ୍ତ ଜିଣିଲେ ସୁନାସୀର ।—
ଡ, ଛ, ଦ

ସମରେ ଜୟକର ଦେବ ମଧୁ ହାଣି
ଯୁଧିଷ୍ଠିରଙ୍କ ପାଦେ ପ୍ରଳମ୍ବ ଦେବ କରି । ୪୩୯ ।
ସ୍ୱାମୀ ମୁହିଂ ଯେ ପ୍ରତଗ୍ୟାଂ କଲି ଇନ୍ଦ୍ର କଇଂ ନାଶିବି
ଅମର ସଭର ଆସ୍ଥାନେ ଆନ ଇନ୍ଦ୍ର ବସାଇବି । ୪୪୦ ।
ଅମର ଗଣନ୍ତ କଣିଲ ତୋହୋର ପରସାଦେ
ସ୍ୱାମୀ ତୁମ୍ଭନ୍ତ ନେଇ ବସାଇବି ଇନ୍ଦ୍ରପଦେ । ୪୪୧ ।
ଯୁଧିଷ୍ଠିର ଦେବେ ବୋଇଲେ ନାରାୟଣଂକ ଯେହ୍ନେ ଆଗ୍ୟାଂ
ତାହାକଇଂ ମୋହୋର ବେଳେ କରିପାରିବି କି ଅବଗ୍ୟାଂ । ୪୪୨ ।
ଆହୋ ଚଇତନ ଯୁଧିଷ୍ଠିର ଭୀମ ଅରଜୁନ ସହଦେବ
ଖଗେଶ୍ୱର ପିଠିରେ ଆରୋହିଲେ ବାସୁଦେବ । ୪୪୩ ।
ବଳରାମ ବିଜେକଲେ ପୁଷ୍ପକ ବିମାନେ
ବିଜୟେ ଦେବ ଯାଇଂ ଅମର ଭୁବନେ । ୪୪୪ ।
ବହୁତ ଆନନ୍ଦେଣ ସଭାୟେ ଦେବ ବିଜେ
ଇନ୍ଦ୍ର ଆସ୍ଥାନେ ଯୁଧିଷ୍ଠିରଙ୍କ ବିଜେ କରାଇଲେ ଦେବରାଜେ । ୪୪୫ ।
ଅମଳାନ ବସ୍ତ୍ର ଯେ ପାରିଜାତେକ ପୁଷ୍ପମାଳ
ଯୁଧିଷ୍ଠିରଙ୍କ କଣ୍ଠେ ଦିଲେ ନେଇ କାମପାଳ । ୪୪୬ ।
ଅମର ବିଳାସୁଣୀୟେ ଅଇଲେ ଚଉଷଠୀ କୋଟି
ବିବିଧ ବେଶ ବେଶନେ ନୃତ୍ୟରଙ୍ଗେ ଖଟି । ୪୪୭ ।

---

୪୪୫।୨ "ଇନ୍ଦ୍ର ଆସ୍ଥାନେ ଯୁଧିଷ୍ଠିରଙ୍କ ବିଜେ କରାଇଲେ ଦେବରାଜେ"
ପରେ କେତେକ ପୋଥିରେ ଅଧିକା ପାଠ :—
ଯୁଧିଷ୍ଠିର ବୋଇଲେ ବାବୁ ଶୁଣ ଦାମୋଦର
ଅନମିତେ ସମ୍ପଦ ନାଶିଲ ସୁନାସୀର ।
ସ୍ୱାମୀ ଯେବଣ ଆଗ୍ୟାଂ ଦିଲ ହୋ ବିବରାଣି
ତୋହୋର ଆପିତ ଆମ୍ଭେ ଅଟୁ ପାଞ୍ଚଭାଇ ।
ସ୍ୱର୍ଗର ସମ୍ପଦ ଭାଞ୍ଜିଲ କଣ୍ଟିତ ମ ତରଇ
ଆମ୍ଭର ଥାଆନ୍ତେ ଈଶ୍ୱର ତୋତେ ଗର୍ବ ବହି ।
ବାବୁ ସ୍ୱର୍ଗର ସମ୍ପଦ କଣ୍ଟିତ ମାତର
ତୋହୋର ସଦୟ ଥାଉ ମୋତେ ଚକ୍ରଧର ।

ମର୍ଦ୍ଦଳ ତାଳ କଂସାଳ ଶରଗୁଣା ଅଧାଟି
ଭରହର ନାଟପୂକା ପଞ୍ଚମ ସ୍ୱରେ ଖଟି । ୪୪୮ ।
ଶ୍ରୀ ନାରାୟଣଂକ ବିଜେ ଦେଖିଣ କୁବେର
ସପତ ନିଧି ଘେନ ଆସି ଖଟିଲା ଧନେଶ୍ୱର । ୪୪୯ ।
ହାହା' ହୁହୁ ମୂଳେ ଯେ ତିନକୋଟି ବିଦ୍ୟାଧର
ଆସ୍ଥାନ ନିରୋଧ କରନ୍ତି ସମସ୍ତ ଦ୍ୱାର । ୪୫୦ ।
ମେଘମାଳାମାନେ ଆସି ହୋଇଲେ ପ୍ରବେଶ
ଗିରିରାଜା ବିଜେ ଆସି ଆସ୍ଥାନର ପାଶ । ୪୫୧ ।
ଯେହ୍ନେ ଯେ ଆରାଧନା ଇନ୍ଦ୍ରଂକୁ କରନ୍ତି ନିତ୍ୟକର୍ମେ
ସମସ୍ତେହେଂ ଖଟିଲେ ଆସି ଆସ୍ଥାନେ ଦେବଧର୍ମେ । ୪୫୨
ସାରିଗାମା ଧ୍ୱନି ଯେ ସପତସ୍ୱର ବୀଣା
ନୃତ୍ୟ ଆରମ୍ଭେ ନାରଦେ ଖଟାଇଲେ ଖଟଣା । ୪୫୩ ।
ମନୁପୁରୁଷ ସନକ ଆବର ବିଶ୍ୱଦେବା
ବିଦ୍ୟାଧର ପୁରୁଷେ ଲଗାଇଲେ ସେବା । ୪୫୪ ।
ବାରିନିଧି ଘେନିଣ ଯେ ବରୁଣ ରତ୍ନାକର
ନିଧି ଭଣ୍ଡାର ଥୋଇଲେ ଯୁଧିଷ୍ଠିରଂକ ଘୁମୁର । ୪୫୫ ।
ଆସ୍ଥାନେ ଯୁଧିଷ୍ଠି ଦେବ ଗୋବିନ୍ଦେ ଡାହାଣ ଖମ୍ବେ
ବାମଖମ୍ବ ମାଡିଣ ଯେ ବିଜୟେ ହଳଦେବେ । ୪୫୬ ।
ଘୁମୁରେ ଗତ ଆଗତ କହଇ ମନ୍ତ୍ରୀ ସହଦେବ
ଯେହେନ୍ନେ ଅମରେ ପୁରନ୍ଦର ବିଧାନ ହୋଇଲା ସେହିଭାବ । ୪୫୭ ।
ଆସ୍ଥାନ ନିରୋଧଇ ବୀର ଫାଲଗୁନ
ମାତେଲ ବିଜେକଲା ଅଇରାବତ ନାଗ ଘେନ । ୪୫୮ ।

---

୪୫୩ { ସରଗୁଣା ଅଧାଟି ସପତସ୍ୱର ବେଣୀ
ନୃତ୍ୟରସେ ଝଟନ୍ତି ଅମର ବାଲାସୁଣୀ ।—ଙ

୪୫୩ { ସାରଲେ ମଙ୍ଗଳ ଧ୍ୱନି ସପତ ବେଣୀ
ନୃତ୍ୟ ପରୀକ୍ଷା ନାରଦେ ଖଟାଇଲେ ଆଣି ।—ଦ, ତ, ଥ

ପବନ ଦେବତା ବିଜେକଲେ ତତକ୍ଷଣାନ୍ତ
ଅଭିଷେକ ମୁକୁଟ ଆଣି ଦିଲକ ପ୍ରଜାପତି । ୪୫୯ ।
ସପତାଙ୍ଗ ପାଞ୍ଜି ସେ ବୃହସ୍ପତି ଘେନ
ସ୍ତୁମୁରେ ଅନକୂଳ ଯେ କହନ୍ତି ସୁବିଧାନ । ୪୬୦ ।
ରମ୍ଭା ଉରୁବଶୀ ଯେ କାମସେଣା ଚିତ୍ରରେଖା
ଚଞ୍ଚଳା ମୋହିନୀ ମଳୟା ଆବର ମଦନିକା । ୪୬୧ ।
ମାଳିନୀ ମାଳତୀ ପୁଣ ବାସନ୍ତୀ ଅସକନ୍ଦା
ବିଲୋଚନା ତିଲୋତ୍ତମା ନନ୍ଦିନୀ ଗୃରୁଚନ୍ଦ୍ରା । ୪୬୨ ।
ରତି ରେବତୀ ଗନ୍ଧମତୀ ଯେ ଚନ୍ଦ୍ରକାନ୍ତି
ମାତାଙ୍ଗୀ ସୁରୁଚି ଦମୟନ୍ତୀ ହିରାବତୀ । ୪୬୩ ।
ପ୍ରିୟା ଶ୍ରିୟା ତାରା ଯେ ତନୁ ଚିତ୍ରୋତ୍ପଳା
ଲୀଳା ଶ୍ରୀବତ୍ସ ମେନକା ଭାନୁମତୀ ଯେ କମଳା । ୪୬୪ ।
ହାରିଣୀ ତାରିଣୀ ପାରେଣୀ ଯେଉଂ ହାରାବତୀ
ଲକ୍ଷ୍ମୀ ଶାନ୍ତ ଶୁଭମତୀ ସେବତୀ ରତ୍ନକାନ୍ତି । ୪୬୫ ।
ମଳୁଆ ପାରୁଆ କେଶୀ ପାର୍ବତୀ ବିମଳା ଯେ ରାଧା
ଅରୁଣା କରୁଣା କାଶୀବାସୀ ଚକିତା ସୁମେଧା । ୪୬୬ ।
ମାଳୀ ମାରୁତୀ ସର୍ବଜଣା ନାରାୟଣୀ ଯେ ବନିତା
ଜାନକୀ ସୁରମତି ଭାନୁକୀ ସୀତା ଆବର ଶାୟେଂତା । ୪୬୭ ।
ଏ ଚଉଷଠି କନ୍ୟାଙ୍କର ମୂଳେ ଭରହରଷ ନାୟିକାଣୀ
ଚଉଷଠି କୋଟି ଅପସରାଏ ଏହାଙ୍କର ନାଚେଣୀ ଖଟଣି ।୪୬୮।
ଅପସରୀ କୋଟିଏକେ ବିଦ୍ୟାଧରୀ ବାମା
ଏମନ୍ତେ ଚଉଷଠି ବିଦ୍ୟାଧରୀ ଅନୁପମା । ୪୬୯ ।
ଏସନେକ ସମ୍ପଦ ଯେ ଅମର ବାରସ୍ତ୍ରୀ
ସ୍ତୁମୁରେ ଉଭାରଛନ୍ତି ନିରଞ୍ଜନ ଜ୍ୟୋତି । ୪୭୦ ।
ଆଦିହୁଂ ଅମର ଯେ ଦଶେ ଶୋଭାବନ
ତଳେ ଉଭା ହୋଇଛନ୍ତି ବୃନ୍ଦାଅର୍କମାନ । ୪୭୧ ।
ଆହୋ ଚଇତନ ଶରଦସୁନ୍ଦରୀ ନାମେ ଏକଇ ଅପସରୀ
ଶଚୀଦେବୀଙ୍କ ବିମାନ ସେ ଯେ ବାହଇ ବିଦ୍ୟାଧରୀ । ୪୭୨ ।

ଶଚୀ ବୋଇଲେ ତୁହି ଲୋ ଯାଅସି ବହନ
ଯେହ୍ନକ୍ଷଣି ମୋହୋର ଗ୍ଧମୂକୁ ହକାରଣ ଆଣଲେ ଅର୍ଜୁନ । ୪୭୩ ।
ବମାନ ଘେନଗଲା ସେ ଶରଦସୁନ୍ଦରୀ
ଯେତିକାଳେ ଅର୍ଜୁନକୁ ଆଣିଲା ହକାର । ୪୭୪ ।
ଶଚୀ ବଜେ କରଅଛନ୍ତି ପାରଜାତକ କଳପତରୁ ତଳେ
ଅର୍ଜୁନ ପ୍ରଲମ୍ବିତ ହୋଇଲା ଶଚୀଦେବୀ ପାଦତଳେ । ୪୭୫ ।
ଅର୍ଜୁନକୁ ଦେଖିଣ ସେ ବାସବର ନାରୀ
ତୁଳେଣ ଘେନଛନ୍ତି ଯେ ସଚଳା ସୁନ୍ଦରୀ । ୪୭୬ ।
ଶଚୀ ବୋଇଲେ ବାବୁ ଅର୍ଜୁନରେ ଯେଣ୍ଟି ବାସୁଦେବଂକ ଦୁଲଣୀ
ଚିତ୍ରସେନ ଯେହ୍ନାକଇଂ ହରିଲା କଚ୍ଛୁହ୍ନଂ ନ ଜାଣି । ୪୭୭ ।
ଯେହ୍ନାର ପାଇଂଟି ସେ ଯେ ହୋଇଲା ଯେବଡ ଦ୍ୱନ୍ଦ
ବାବୁ ଯେତେଣେ ସେ ନାଶକଲା ଇନ୍ଦ୍ରର ସମ୍ପଦ । ୪୭୮ ।
ବାଳୁତ ଅଗ୍ୟାନ ଯେ ହୋଇଲା ଯୁବଣ୍ଡି
ଇନ୍ଦ୍ର ଦେବତାର ଯେତ୍ତ ବୁଡାଇଲା ସମ୍ପତ୍ତି । ୪୭୯ ।
ବାବୁ ସମାଧାନ କର ଲୋଡୁଥିଲେ ଅସକନ୍ଦ
ଯେ ମହାହନ୍ଦ କରାଇଲେ ସଦାନନ୍ଦ । ୪୮୦ ।
ବାବୁ ତୁମ୍ଭେ ମୋହୋର ପୁତ୍ର ଯେ ବସିଲ ଅମରେ
ତୋହୋରେ ସେ ଥାପିଲା ଅଠଇ ପୁରନ୍ଦର । ୪୮୧ ।
ଯେବେ ତୁମ୍ଭେ ଇନ୍ଦ୍ରପଦେ ବସିଲ ଆକାଶେ
ଯେବେ ଇନ୍ଦ୍ର ଦେବତାକୁ ଆଣିଦଅ ମୋହୋର ପାଶେ । ୪୮୨ ।
ଅର୍ଜୁନ ବୋଇଲେ ମାଗୋ ସଚଳାକଇଂ ଘେନ
ଗୃଲ ମାଯେ ପୋଯେ ଆସ୍ଥାନର ତଳେ କରିବା ଦଇନ । ୪୮୩ ।
ସାନନ୍ଦେ ମହାଦେବୀ ଅର୍ଜୁନ ବଚନ ଶୁଣି
ସଚଳାକଇଂ ଘେନ ବଜେ ଅମର ଠାକୁରାଣୀ । ୪୮୪ ।
ଆସ୍ଥାନେ ବଜେ କରିଛନ୍ତି ଦେବଧର୍ମେ
ହାରେଣ ଶଚୀଦେବୀ ବଜଯେ ଶ୍ରମେ । ୪୮୫ ।
ସଚଳା କନ୍ୟାର ଧରିଛନ୍ତି ହାଥଗୋଟି
ଆସନ୍ତେ ତଳେ ଯାଇ ପ୍ରଲମ୍ବକରି ଲୋଟି । ୪୮୬ ।

ନାରଦେ ରୁହାଇଲେ ସପତ ସୁରବେଣୀ
ଆସ୍ଥାନ ଛଳେ ଯାଇ ବଜାୟେ ଇନ୍ଦ୍ରାୟେଣୀ । ୪୮୭ ।
ଶଚୀଂକ ଦେଖିଣ ସେ ଧର୍ମ ଯେ ଯୁଦ୍ଧେଷ୍ଟି
ଆପଣେ ଧର୍ମରାଜା ଆସ୍ଥାନ ଚେଜ ଉଠି । ୪୮୮ ।
ନାରାୟଣଂକୁ ଦେଖି ଯେ କୁମାରୀ ସରକେ
ଧାଇଁକାରେ ବସିଲ ଯାଇଂ ଜଗନ୍ନାଥଂକର କୋଳେ । ୪୮୯ ।
ଶଚୀଦେବୀ ବୋଇଲେ ଦଶଲହ ମୁଖେ ଲାଇ
ଭୋ ସ୍ୱାମୀ ଜଗତ ମୋହନ ପଣ୍ଡଂ ଦେହ୍ନି, ପଣ୍ଡଂ ଦେହ୍ନି । ୪୯୦ ।
ଯୁଦ୍ଧେଷ୍ଟି ଦେବେ ବୋଇଲେ ଗୋ ବଜେ କରସି ମାୟେ
ଯେହ୍ନକ୍ଷଣି ଆସ୍ଥାନେ ବଜେ କରବେ ଦେବରାୟେ । ୪୯୧ ।
ମାଂଗୋ ଅନୁଗ୍ରହ ନାଥର କୋପ ଶାନ୍ତ କରାଇ
ଯେହ୍ନକ୍ଷଣି ପିତାଂକୁ ମୁଂ ଆଣିବ ଜାଆଇଂ । ୪୯୨ ।
ତୁମ୍ଭେ ବଜେ କରଯିବା ନଜ ଭୁବନେ
ଭଗତମହଳ ନାଥଂକୁ କରାଇବେ ପ୍ରସନ୍ନେ । ୪୯୩ ।
ଶଚୀ ବଜେ କରଗଲେ ଅମର ଭୁବନକୁ
କଷ୍ଟୋରେ ଯୁଦ୍ଧେଷ୍ଟି ଦେବ ବୋଇଲେ ବଳଦେବ ଠାକୁରଂକୁ ।୪୯୪।
ଶ୍ରୀ ଜଗନ୍ନାଥ ଉଠିଲେ ଯୁଦ୍ଧେଷ୍ଟି ଦେବଂକ ଉଭା ଦେଖି
ଯୁଦ୍ଧେଷ୍ଟି ତୁସ୍ତି କରନ୍ତ ଆସ୍ଥାନ ଉପେକ୍ଷି । ୪୯୫ ।
ତୁ ଦେବ ନୀଳାମ୍ବର ସପୂଳ ଜନ ଚନ୍ଦ୍ରାମଣି
ତୁ ଦେବ ପରମବ୍ରହ୍ମ ହଳ ମୁଷଳ ପାଣି । ୪୯୬ ।
ତୁ ଦେବ ସୁପ୍ରସନ୍ନ ନିର୍ବିକାର ପ୍ରତକ୍ଷେ
ତୁ ଦେବ ନୀଳାମ୍ବର ଶ୍ରୀକୃଷ୍ଣ ଜ୍ୟେଷ୍ଠ ଦକ୍ଷେ । ୪୯୭ ।
ତୁ ଦେବ ସୋହଜ ନୟନ ଧବଳୀ
ତୁ ଦେବ ପରମାନନ୍ଦ ଦେବ ହଳୀ । ୪୯୮ ।

---

୪୯୭। { ତୁ ଦେବ ସପୂଳଜନ ଚନ୍ଦ୍ରା ବ୍ରହ୍ମା ହଳୀମୁଖେ
ତୁ ଦେବ ଅଭକ୍ଷେ ନୀଳାମ୍ବର କୃଷ୍ଣ ସଙ୍ଗେ ।—କ, ଡ, ଘ ଙ, ଥ, ଠ

ତୁ ଦେବ ନାରାୟଣ ରୂପ ଅବିଶ୍ରାମ
ତୁ ଦେବ ଭଗତମଙ୍ଗଳ ବଳରାମ । ୪୯୯ ।
ତୁ ଦେବ ଶରଣ ଉଦ୍ଧରଣ ମହାରୂପୀ
ତୁ ଦେବ ଜଗତ ବନ୍ଦନ ବିଶ୍ୱବ୍ୟାପୀ । ୫୦୦ ।
ତୁ ଦେବ ଗଗନ ଧାରଣ ଶୂନ୍ୟଦେବ
ତୁ ଦେବ ଭାନୁରୁଦ୍ର ବ୍ରହ୍ମରୂପ ଭାବ । ୫୦୧ ।
ତୁ ଦେବ କାମପାଳ ଭଗତମଙ୍ଗଳା
ତୁ ଦେବ ରୋହିଣୀ ନନ୍ଦନ କାଦମ୍ବରୀ ରସପାନେ ମତ୍ତଭୋଳା ।୫୦୨।
ତୁ ଦେବ ଦୃଢ଼ ଆସନ ସଉନନ୍ଦୀ
ତୁ ଦେବ ସପତ କୁଣ୍ଡଳୀ ଦେବନିଧି । ୫୦୩ ।
ତୁ ଦେବ ଯୋଗେଶ୍ୱର ମନୁକଳ୍ପ ବଞ୍ଚା
ତୁ ଦେବ ଅକାଳ ଅକାମ ଅସଞ୍ଚା । ୫୦୪ ।
ତୁ ଦେବ ଦୁଷ୍କୃତ ହରନ୍ତା ପରଲୋକର ବନ୍ଧୁ
ବଦନ୍ତ ସାରଳା ଦାସ ଶ୍ରୀ କାମପାଳ କୃପାସିନ୍ଧୁ । ୫୦୫ ।
ସୁଭାଗ୍ୟ ପଣ୍ଡିତ ମହାକଳପୀ ଋଷିର ତନୁ
ମହା ଯୋଗେଶ୍ୱର ଶୁଣନ୍ତ ବଇବସୁତ ମନୁ । ୫୦୬ ।
ପାଦ୍ୟ ଅର୍ଘ୍ୟ ଘେନିଣ ସେହୁ ମନୁ ମହାରାଜା
ଅଗସ୍ତିଙ୍କ ପଦ୍ମପାଦେ କଲେ ଦିବ୍ୟପୂଜା । ୫୦୭ ।
ବଡାଇ ଚରିଜ ମୁନି ଶୁଣିଲା ତବ ମୁଖୁଂ
ଯୁଦ୍ଧେଷ୍ଠି ରାମକୃଷ୍ଣଙ୍କୁ ସ୍ତୁତିକଲେ କହ ମୁକୁ । ୫୦୮ ।

---

୫୦୧ { ତୁ ଦେବ ନିରାକାର ଦେବଙ୍କର ଦେବା
ତୁ ଦେବ ବଳରାମ ଭାନୁଚନ୍ଦ୍ର ଦେବା ।—ଙ, ଛ }

୫୦୩ { ତୁ ଦେବ ଗଗନ ଶୂନ୍ୟ ଧାରଣା ନାବ
ତୁ ଦେବ ଭାନୁରୁଦ୍ର ଇନ୍ଦ୍ର ବ୍ରହ୍ମଦେବ ।—ଜ, ତ, ଣ }

୫୦୩ { ତୁ ଦେବ ଦୃଢ଼ ଆସନେ ସଉନିଧି
ତୁ ଦେବ ସପତ କୁଣ୍ଡଳ ବାରିନିଧି ।—କ, ଜ, ତ, ନ, ଟ }

୫୦୬।୨ ମହାଭାରଥ କଥା ଶୁଣନ୍ତେ ବଇବସୁତ ମନୁ ।—ଖ, ଣ

କସ ଆଜ୍ଞାଂ ହୋଇଲା ପ୍ରସନ୍ନେ ଦେବହଳୀ
ଅଗସ୍ତି ବୋଲନ୍ତି ହୋ ଶୁଣ ମନୁ ମହାବଳୀ । ୫୦୯ ।
ବଳରାମକଇଂ ଅନେକ ସ୍ତୁତି କଲେ ଧର୍ମସୁତେ
ପ୍ରସନ୍ନ ହୋଇଲେ ସ୍ୱାମୀ ଦେବ ଯେ ଅନନ୍ତେ । ୫୧୦ ।
କେବଣ କଥା ଅଛୁ କହ ଦେବ ଧର୍ମରାୟେ
ଶ୍ରୀ ବଳରାମେ ପ୍ରସନ୍ନ ହୋଇଲେ ସଭାୟେ । ୫୧୧ ।
ଯୁଧିଷ୍ଠିର ବୋଇଲେ ସ୍ୱାମୀ ଯେବେ ହୋଇଲଟି ପ୍ରସନ୍ନ
ବାସବ ଦେବତାକଇଂ ଦେବ ଦେବାଟି ଜୀବଦାନ । ୫୧୨ ।
ସ୍ୱାମୀ ତୁମ୍ଭର ଥାପିଲାର ସିନା ଅଟେ ଦେବଇନ୍ଦ୍ର
ତୁମ୍ଭେ ହେ ହଲ ତୁମ୍ଭେ ହରିବ କ ତାହାର ସମ୍ପଦ । ୫୧୩ ।
ସ୍ୱାମୀ ଅନୁଗ୍ରହ ନାଥ ଯେବେ ହୋଇଲ ପ୍ରସନ୍ନ
ଆଜ୍ଞାଂ ହେଲେ ବାସବ ଦେବତାଂକୁ ଜୀଆଇଂ ଆଣିବ ସେ ଅରଜୁନ
। ୫୧୪ ।
ଯୁଧିଷ୍ଠିର ବଚନେ ରାମ ଅର୍ଜୁନକୁ ଚାହିଂ
ଆଜ୍ଞାଂ ହେଲେ ଇନ୍ଦ୍ରକୁ ତୁ ଘେନଆସ ଯାଇଂ । ୫୧୫ ।

---

୫୧୩।୨   ତୁମ୍ଭେହେଂ ହଲ ତୁମ୍ଭେ ରଖିଲ ବିବାଦ ।—ଣ, ଙ୍ଗ

୫୧୫।୨   'ଆଜ୍ଞାଂ ହେଲେ ଇନ୍ଦ୍ରକୁ ତୁ ଘେନଆସ ଯାଇଂ' ଏହି ପାଦାନ୍ତ ପରେ 'ଖ' ପୋଥିରେ ଅଧିକା ପାଠ :—

ଶୁଣ ବଇବସୁତ ମନୁ ବଦନ୍ତି ଅଗସ୍ତି
ହାଥୀ କାନ୍ଧେ ମୋହ ଯାଇଥିଲା ସୁରପତି
ଚେତନା ପାଇଲା ଯହୁଂ ଦେବ ସୁରନାଥ
ମନେ ମନେ ଲାଜ ସେହୁ ପାଇଲା ବହୁତ ।
ବହୁତ ଲାଜ ପାଇଣ ଇନ୍ଦ୍ର ଚଳିଗଲା
ନିଜ ମନ୍ଦିରେ ଯାଇଂ ପ୍ରବେଶ ହୋଇଲା ।
କାହାକୁ ସମାସ୍ୟା ନ ହେଅଇ ସୁରପତି
ମହାଲଜ୍ଜା ପାଇଣ ସେ ବସିଲା ମଥାପୋତି ।
ବଳରାମଂକ ବଚନେ ବୀର ଅରଜୁନ
ପ୍ରବେଶ ହୋଇଲେ ଯାଇ ଇନ୍ଦ୍ର ସନ୍ନିଧାନ ।

ରାମକଂର ବଚନେ ସେ ଅମୃତାକ୍ଷ ଶର ଘେନ
ବାସବର ସନ୍ନିଧେ ଯାଇଂ ବିଜୟେ ଫାଲଗୁନ । ୫୧୬ ।
ଚେତନା ଶରେକ ବିନ୍ଧିଲା ବିବହ୍ର
ମୋହ ତେଜିଣ ସେ ଉଠି ବସିଲେ ସହସ୍ରାକ୍ଷ । ୫୧୭ ।
ଚିତ୍ରସେନ ତୁଲେ ଯେତେକ ଥିଲେ ରଣେ ପଡି
ଚେତନା ଶରେଣ ସେ ଉଠିଲେ ମୋହ ଛାଡି । ୫୧୮ ।
ଅର୍ଜୁନ ବିନୋପଇ ସୁରନାଥଂକ ପାଦତଳେ
ବାସବ ଦେବତା ଅର୍ଜୁନକଇଂ ବସାଇଲେ କୋଳେ । ୫୧୯ ।
ସାଧୁ ସାଧରେ ଅର୍ଜୁନ ମୋର ପୁତ୍ର ତୁ ସମରେ ସର୍ବସିଦ୍ଧା
ମାରଣ ତାରଣ ତୁ ଜାଣୁ ସର୍ବବିଦ୍ୟା । ୫୨୦ ।
ଅର୍ଜୁନ ବୋଇଲା ସ୍ୱାମୀ ପୁଷ୍ପେକ ରଥେ କର ବିଜେ
ଅମର ଆସ୍ଥାନକୁ ବିଜେ କରିବା ଦେବରାଜେ । ୫୨୧ ।
ଅନେକ ପୁରସର ବୋଇଲେ ଦେବ ସୁରନାଥ
ମାତେଳକ ଘେନକରି ବିଜେ ପୁଷ୍ପକ ରଥ । ୫୨୨ ।
ଅମର ସ୍ୱର୍ଗପୁରେ ବିଜୟେ ମଘବା
ବାରସ୍ୱର୍ଣ୍ଣ ପୁରେ ମିଳିଲେ ସୁରଦେବା । ୫୨୩ ।
ଶଚୀ ସହିତେଣ ଯେ ଦେବ ସସ୍ତ୍ରଯୋନ
ଆପଣେ ଇନ୍ଦ୍ରାୟଣୀ କରେ ଅର୍ଘ୍ୟସ୍ଥାଳୀ ଘେନ । ୫୨୪ ।
ବିଜୟେ ମଘବାନ ଯେ ଅମର ସଭାରେ
ଅର୍ଘ୍ୟ ବନ୍ଦାପନା କଲେ ଯୁଝେଷ୍ଟିଂକ ଶିରେ । ୫୨୫ ।
ଅର୍ଘ୍ୟଶିରେ ଦେଇ କଲ୍ୟାଣ କରନ୍ତି ବିଡୌଜା
ତୁମ୍ଭେ ସେ ଅମର ସ୍ୱର୍ଗେ ଆସି ପାଇଲୁ ଦେବ ପୂଜା । ୫୨୬ ।
ଯେବେ ଯାଇ ମଧୁପୁରେ ଭାର କର ନାଶ
ଯେମ୍ଭ ଦେହ ଘେନଣ ସ୍ୱର୍ଗରେ ଆସି ବସ । ୫୨୭ ।
ଶ୍ରୀ ବଳରାମ ଚରଣେ ଇନ୍ଦ୍ର ଦେବତା ପରଣାମି
ମମ ଦୋଷ ଉପେକ୍ଷା କରିବା ଦେବସ୍ୱାମୀ । ୫୨୮ ।
ତୁ ଦେବ କାରଣ ପୁରୁଷଂକ ଉତ୍ତମା
ଅନେକ ଦୋଷ ଅପରାଧ କରିବା ମୋର କ୍ଷମା । ୫୨୯ ।

ସତ୍ତ୍ୱନିଧି ନାଥ ତୁ କଇଛୁ ଜଗଜ୍ଜେଠୀ
ହୃଦଗତେ ବିଧଂସୁ ମୋହୋ ଶ୍ରୀ ବଳରାମ ନାମଗୋଟି । ୫୩୦ ।
ଶୁଣ ହୋ ଚଇତନ ବାସବର ବଚନେ ବଳରାମେ ହୋଇଲେକ ଶାନ୍ତ
ଈଶ୍ୱରଂକ ବଚନେ ତୁହି ସେ ପଶିଲୁ ଅମାନ୍ତ । ୫୩୧ ।
ଇନ୍ଦ୍ର ଗୋବିନ୍ଦ ଆମ୍ଭେ ଯେକବୋଲି ଜାଣି
ମଧ୍ୟରେ ଭେଦକଥା ଯେ ଭିଆଇଲେ ଶୂଳପାଣି । ୫୩୨ ।
ଶୁଣି ବଳରାମେ ବାସବଂକ ଶ୍ରୀହସ୍ତେ ଧଇଲେ ଶାଢ଼ୀ
ଯେବେ ଥାଅ ତୁମ୍ଭେ ଅମର ସ୍ୱର୍ଗେ ସୁଖେ ରାଜ୍ୟକର । ୫୩୩ ।
ଇନ୍ଦ୍ର ଦେବତାଯେ ବିଜେକଲେ ନିଜପୁରେ
ଆପଣେ ଆଣିଦିଲେ ଅମୃତ ଯୋଗାଡ଼େ । ୫୩୪ ।
ତନନ୍ଦନ ରହିଲେ ଦେବ ଅମର ଭୁବନେ
ଆପଣେ ଯୁଧିଷ୍ଠିର ଦେବ କଲେ ସର୍ବ ସମାଧାନେ । ୫୩୫ ।
ଯୁଧିଷ୍ଠିର ଦେବ ବୋଇଲେ ଶ୍ରୀ ଜଗନ୍ନାଥଂକୁ
କଥାଯେ କହିବ ଦେବ ଯୋଗାଇ କ ତୁମ୍ଭ ବନ୍ଧୁରକୁ । ୫୩୬ ।
ଶ୍ରୀ ଜଗନ୍ନାଥେ ବୋଇଲେ ଦେବ ତୁମ୍ଭର ବଚନ ଅଲଂଘି
ତୋହୋ ଆଗ୍ୟାଂଯେ ମୁହିଂ ସର୍ବସିଦ୍ଧ ହୋଗୀ । ୫୩୭ ।
ସ୍ୱାମୀର ବଚନ ଯେ ସେବକ କାହିଂ ମେଣ୍ଟି
ଯେହେତେଁକ ନିରାଧାର ମୋତେ ତୋହୋର ଆଗ୍ୟାଂଗୋଟି ।୫୩୮।
ଯୁଧିଷ୍ଠିର ବୋଇଲେ ଇନ୍ଦ୍ର ଗୋବିନ୍ଦ ଯେକଆତ୍ମା
ଅନେକ ଦୂଷଣ ହୋଇଲା ବାସବ ମହାତମା । ୫୩୯ ।
ଈଶ୍ୱର ବ୍ରହ୍ମା ଆଦିକରି ଦେବ ସୁରରାଜା
ପ୍ରତଗ୍ୟାଂ ସାର୍ଥକ ହୋଇଲାକ ପାଇଲେ ସର୍ବେ ଲଜ୍ଜା । ୫୪୦ ।
ସ୍ୱାମୀ ଜଗତ ମୋହନ ମୋହୋର ବଚନ କରିବା
ସଚଳା କନ୍ୟାକଇଂ ଯେବେ ଶଙ୍ଖସେନକୁ ପ୍ରଦାନ କରିଦେବା ।୫୪୧।
ଈଶ୍ୱର ଯେ ପ୍ରତଗ୍ୟାଂ କଲେ ସଚଳାକୁ ପ୍ରଦାନ କରିବା ଶଙ୍ଖସେନେ
ତାହାଂକର ପ୍ରତଗ୍ୟାଂ ରହୁ ସେ ନ ଯାନ୍ତୁ ଅଭିମାନେ । ୫୪୨ ।

---

୫୪୨ { ଈଶ୍ୱରଂକ ପ୍ରତଗ୍ୟାଂ ନୋହେ ଦେବ ଆନ
ଜଗତ ପୁରୁଷ ସେ ନ ପାଉ ଅଭିମାନ ।—ଛ, ଖ, ଣ, ଚ

ତୁମ୍ଭେ ଯେ ପ୍ରତଗ୍ୟାଂ କଲ ଯୁଧିଷ୍ଠିଂକ ଇନ୍ଦ୍ର ପଦେ ବସାଇବ ଅମରେ
ତୁମର ସେ ବଚନ ତ ରହିଲା ନିରଧାରେ । ୫୪୩ ।
ଯୁଧିଷ୍ଠିଂକ ବଚନେ ଦେବ ହୋଇଲେକ ତୃପ୍ତ
ତୁଷ୍ଟି ଅନୁମତେ ଧର୍ମେ ଅନୁକୂଳ ଥାଅ ଯେନ୍ନ । ୫୪୪ ।
ବଇନେୟ ବାହାନେ ଶ୍ରୀ ପୁରୁଷୋତ୍ତମ କଲେ ବିଜେ
ବ୍ରହ୍ମାଂକ ଭୁବନେ ବିଜୟେ ଦେବରାଜେ । ୫୪୫ ।
ପିତାର ଅଗ୍ରତେ କେଶବ ପରଣାମି
ଗୋବିନ୍ଦକଇଂ କୋଳକଲେ ପିତାମହ ଦେବ ସ୍ୱାମୀ । ୫୪୬ ।
ଧାତାୟେ ବୋଇଲେ ତୋତେ ଦ୍ରୋହକଲା ଆଖଣ୍ଡଳ
ଦୟା ସାଗର ତୁ ଯେ ଭଗତବତ୍ସଳ । ୫୪୭ ।
ଦୋଷ ଉପେକ୍ଷି ପୁଣ କଲୁ ତୁ ସଦୟେ
ଯେହେତୁଏକ କ୍ଷଣେ ସଂପକ୍ଷ ପାଇଲୁ ଧନୁର୍ଜୟେ । ୫୪୮ ।
ଯୁଧିଷ୍ଠିଙ୍କ ଯେମନ୍ତ ଅଛୁ ସେ ଆକାଶେ ପାଇବ ପୂଜା
ଯେ ତିନି ଜଗତେ ସେ ହୋଇବ ମହାରାଜା । ୫୪୯ ।
ଗୋବିନ୍ଦେ ବୋଇଲେ ପିତା ବଳରାମକଇଂ ମାଗିଲେ ଯୁଧିଷ୍ଠି
ଚନ୍ଦ୍ରସେନକଇଂ ପ୍ରଦାନ କରିବା ସରଳା କନ୍ୟାଗୋଟି । ୫୫୦ ।
ବହନ ହୋଇ ଯିବା ଦେବ ଅମର ଭୁବନକୁ
ଶୁଣି ପିତାମହ ପ୍ରଶଂସା କଲେ ଯୁଧିଷ୍ଠି ଦେବଂକୁ । ୫୫୧ ।
ତହୁଂ ମରୁଳ ବାହାନେ ବିଜେକଲେ ବେଦବର
ହରି ବ୍ରହ୍ମା ବିଜେକଲେ ଅମର ଭୁବନର । ୫୫୨ ।
ବଳରାମ ଅର୍ଜୁନ ଦୁହେଂ ବେଗେ ଗଲେ
କପିଳାସ ସ୍ୱର୍ଗେ ଯାଇଂ ପ୍ରବେଶ ହୋଇଲେ । ୫୫୩ ।
ଦେଖିଣ ସାନନ୍ଦ ଯେ ହୋଇଲେ ନୀଳକଣ୍ଠ
ବିଜେକଲେ ବିଶ୍ୱନାଥ ବୃଷଭର ପୃଷ୍ଠ । ୫୫୪ ।
ଶିବଗଣନ୍ତ ଘେନିଣ ଦେବ ବିଶ୍ୱେଶ୍ୱର
ପାର୍ବତୀ ସହିତେ ବିଜୟେ ଅମର ଭୁବନର । ୫୫୫ ।

---

୫୪୯।୨ ଯେତକାଙ୍ଗ ପୃଥୀରେ ସେ ହୋଇବ ମହାରାଜା ।—ଣ, ନ, ଛ, ଖ

ସୁଧର୍ମା ସଭାସ୍ତେ ଯେ ବଳସ୍ତେ ସମ୍ଭବେ
ଚନ୍ଦ୍ରସେନକଇଂ କନ୍ୟା ପ୍ରଦାନ କରବେ ବାସୁଦେବେ । ୫୫୬ ।
ଆପଣେ ଆଗୁର୍ଦ୍ଧ ହୋଇଲେ ଋଷି ଯେ ପଣ୍ଡିଲସ୍ତେ
ଅନେକ ମଙ୍ଗଳ ଯେ ଉଚ୍ଚାର ଯୁଗତେ । ୫୫୭ ।
ବାଜନ୍ତି ଦେବବାଦ୍ୟ ଯେ ଦୁନ୍ଦୁଭି ଶବଦ
ଗଗନ ପୂରିଲା ଦେବଦତ୍ତ ଶଙ୍ଖନାଦ । ୫୫୮ ।
ଓହୋଳୁଳ ଗୋଧ ଯେ ସୀତ୍‌କାର କରଣେ
କନ୍ୟାଗୋଟି ସମର୍ପିଲେ ଦେବ ନାରାୟଣେ । ୫୫୯ ।
କୁଶ ବନ୍ଧନ ଯେ ବେଦ କରପବେ
ଅନେକ ଯଉତୁକ ଦିଅନ୍ତି ଅମିତେ । ୫୬୦ ।
ଲାଜା ହୋମବିଧି କଲେ ଗୁଆଘୃତେ
ଲଭିଲା ସୁନ୍ଦରୀ ସେ ବାସେବର ସୁତେ । ୫୬୧ ।
ଅନେକ ହରଷ ହୋଇଲେ ଦେବଗଣମାନେ
ମନ ଭ୍ରାନ୍ତି ଗୁଚିଲେ ସେ ଦେବ ମଘବାନେ । ୫୬୨ ।
କନ୍ୟାଗୋଟି ସମର୍ପଣ କରନ୍ତି ମଧୁହାରୀ
ଦିନାଦଶ ରହିଲେ ବଶ୍ୟଯୋଗ ସାରି । ୫୬୩ ।
ଯାଦବନ୍ତ ଘେନିଣ ଯେ ଚଳନ୍ତି ଦେବହରି
ଯୁଦ୍ଧେଷ୍ଟି ଦେବେ ରହିଲେ ପଦ୍ମଲଭ ଗିରି । ୫୬୪ ।
ଗୋବିନ୍ଦେ ବୋଇଲେ ସ୍ୱାମୀ ଦ୍ୱାରକା ଚାଲି ଯିବା
ମମ କୁଟୁମ୍ବମାନେ କରନ୍ତୁ ତୋତେ ସେବା । ୫୬୫ ।
ଯୁଦ୍ଧେଷ୍ଟି ଦେବେ ବୋଇଲେ ଆମ୍ଭେ କଲୁ ଯେ ନିୟମ
ବନବାସ ନ କଲେ ନାଶ ଯିବଟି ଧର୍ମ । ୫୬୬ ।

---

୫୫୬।୧ ସୁଧର୍ମା ସଭାସ୍ତେ ବଳସ୍ତେ ସଦାଶିବେ ।—ଚ, ଠ

୫୫୭।୨ କନ୍ୟା କୋଳେ ଘେନ ବଳେ ପ୍ରଭୁ ଜଗନ୍ନାଥ ।—ଠ, ଡ

୫୬୧।୧ ଲାଜାହୋମ ସାରି ପାରଣା କଲେ ଘୃତେ ।—ଟ, ଣ, ତ, ଛ, ଖ

ଆବର ବନବାସ ଅଛୁ ବରଷେ ଦଶମାସ
ତହୁଂ ଉତ୍ତାରେ ହୋଇବ ଅଜ୍ଞାତବାସ:ପରବେଶ । ୫୬୭ ।
ସମ୍ବୋଧନା କରଣି ବାସୁଦେବ
ଚଳିଲେ ଦ୍ୱାରିକାକୁ ହରି ବଳଦେବ । ୫୬୮ ।

——— ।୮ ୨୩୨ ।

## କୀର୍ତ୍ତିବାସ ଦୈତ୍ୟ ବଧ, ଚନ୍ଦ୍ରଭାଗା ତୀର୍ଥର ମାହାତ୍ମ୍ୟ ଓ ଅର୍କଦୈତ୍ୟ ବଧ

ପଦ୍ମନାଭ ପର୍ବତେ ଯୁଧିଷ୍ଠିର ଦୁଇଦିନ ରହି
ଗୋକର୍ଣ୍ଣିକା ତୀର୍ଥକୁ ଚଳିଲେ ପଞ୍ଚଭାଇ । ୧ ।
ବିଜୟେ ଧର୍ମସୁତେ ଏକାମ୍ର ଯେ ବନେ
ବିନ୍ଦୁସାଗର ତୀର୍ଥେ କଲେକ ସ୍ନାନେ । ୨ ।
କଉଶିକଙ୍କୁ ଭେଟିଲେ ଯୁଧିଷ୍ଠିର ରାଜଦେବେ
ମହାତ୍ମାଙ୍କ ଚରଣେ ପ୍ରଣିପତ୍ୟ ପଞ୍ଚୁ ଯେ ପାଣ୍ଡବେ । ୩ ।
ବୋଲନ୍ତି କଉଶିକେ ବାବୁ ଏହୁ ଅଟେ ମହାତୀର୍ଥ
ବିଜୟେ ମହାତ୍ମା ଏଥି ଏକାମ୍ବର ନାଥ । ୪ ।
ଏ କ୍ଷେତ୍ର ଅଧିପତି ଏକାମ୍ବର ଈଶାନ
ଏକାମ୍ବର ତୀର୍ଥ ଏ ଯେ ଏକାମ୍ବର ବନ । ୫ ।
ଯୁଧିଷ୍ଠିର ଦେବଙ୍କୁ ବୋଇଲେ ବାବୁ ଏ ଲିଙ୍ଗରାଜା
ଆଗେ ଅର୍ଘ୍ୟ ଦେଇ ହୋ ଅରଜୁନ ଏହାନ୍ତ କରିବା ପୂଜା । ୬ ।
କଉଶିକେ ବୋଇଲେ ବାବୁ ଏକାମ୍ବର ଈଶ୍ୱରେ ଦେଖ
ଭୁବନେଶ୍ୱର ତୀର୍ଥ ଏହୁଂ ବରଷ ଦଶଲକ୍ଷ । ୭ ।

---

୩ { ମାରକଣ୍ଡେଙ୍କ ଚରଣେ ପ୍ରଲମ୍ବ ପଣ୍ଡୁସୁତେ
ଉଭା ହୋଇଛନ୍ତି ଯେ ପାଣ୍ଡବ ପଞ୍ଚଭ୍ରାଥେ ।—ଣ, ଚ, ଛ, ନ

ଯେଉଁକାମ୍ବର ସୂକ୍ଷ୍ମେଶ୍ୱର ଯମେଶ୍ୱର ଦେବତା
ଆଦ୍ୟନ୍ତୁଂ କ୍ଷେତ୍ରର ଯେ ଅଟନ୍ତି କରତା । ୮ ।
ବାଉନ କୋଟି ଲିଙ୍ଗ ଯେଉଁଠି ସ୍ଥାନରେ ଅଛନ୍ତି
ସମସ୍ତଂକ ଉପରେ ଶ୍ରେଷ୍ଠ ଲିଙ୍ଗ ଯେ ଅଟନ୍ତି । ୯ ।
କହନ୍ତି କଉଶିକ ପଣ୍ଡିତ ମହାଭାଗ୍ୟାଂତା
ଶୁଣ ବାବୁ ମନଦେଇ ଯେଉଁକାମ୍ବର ବନ କଥା । ୧୦ ।
ବାବୁ ଆଦ୍ୟନ୍ତୁଂ ଅଟଇ ଯେଉଁ ହାଦେ ଯେଉଁକାମ୍ବର ବନ
ପୃଥୀକ କାଳାଯେଉଁ ଯମେଶ୍ୱର ଉତ୍ତମ । ୧୧ ।
ପୂର୍ବେ ସୂକ୍ଷ୍ମେଶ୍ୱର କେଦାରେଶ୍ୱର ଉତ୍ତରେ
ମୁକଟେଶ୍ୱର ପଶ୍ଚିମେ ଦକ୍ଷିଣେ ହରଣେଶ୍ୱର । ୧୨ ।
ଈଶାନ୍ୟେ ରୁଦ୍ରେଶ୍ୱର ବାୟବ୍ୟେ ଭଇରୋବେଶ୍ୱର
ନଇରୁତ କୋଣେ ଯେ ତ୍ରିପୁରାନ୍ତକ ହର । ୧୩ ।
ଚନ୍ଦ୍ରେଶ୍ୱର ଲିଙ୍ଗ ବଜେ ଅଗ୍ନିକୋଣେ
ଯେଉଁ ଅଷ୍ଟକାଳା ଜମ୍ବୁଦ୍ୱୀପ ପୃଥୀକ ଧାରଣେ । ୧୪ ।
ଅଷ୍ଟ ମହାଲିଙ୍ଗ ଯେଉଁ ଅଛନ୍ତି ଦ୍ୱୀପକେ
ଆଉମାନେ ଭଗ୍ନ ହୋଅନ୍ତି ପ୍ରଳୟ ଅନ୍ତକେ । ୧୫ ।
ନବଦ୍ୱୀପ ପୃଥୀକି ଯେଉଁ ବାସ୍ତବ ଯେ କାଳା
ଯେଉଁଥେ ସେ ପୃଥୀକ ଖଟାଇଲା ଭେଳା । ୧୬ ।
ଶଙ୍ଖପଦ୍ମ ମହାପଦ୍ମ କର୍କୋଟକ କୁଳକ ମହାଶ୍ୱେତ ତକ୍ଷକ ଅନନ୍ତ
ଯେଉଁ ଅଷ୍ଟକୁଳା ନାଗରେ ରଜ୍ଜୁ ଦଉଡି ଛନ୍ଦ ସାତ । ୧୭ ।
ବାବୁ କୀର୍ତ୍ତି ବାସନ ବୋଲି ଯେଉଁଠୁ ଅସୁର ବେନ
ଯେଉଁକାମ୍ବର ନାଥକଇଂ ଖଟିଲେ ଯୁଗ ତିନ । ୧୮ ।
ଭୋଳେ ବରଦଲେ ଯେ ଯେଉଁକାମ୍ବରଶ୍ୱର ନାଥ
ଆରେ ଆରେ କଲ୍ପେ କଲ୍ପେ ଅମର ହୋଇ ରହିଥାଅ ଯେଉଁଥ । ୧୯ ।

---

୮।୨ ଆଦ୍ୟନ୍ତୁଂ ଯେତ୍ରହ କ୍ଷେତ୍ରେ ଯେଉଁ ସିଦ୍ଧ ଯେ ସମ୍ଭୂତା ।—କ, ଖ, ଥ, ଜ, ଡ

୧୦ { ଯୁଦ୍ଧେଷ୍ଠି ପଚ୍ଛରଲେ ତୀର୍ଥର ବାରତା
କହନ୍ତି କଉସିକେ ପଣ୍ଡିତ ମହାଭାଗ୍ୟାଂତା ।—କ, ଦ, ଜ, ଘ, ଛ, ଥ, ଡ

ବାବୁ ଯୁଟେଁଷ୍ଟୁ କଛୁନ୍ଦନ ଅନ୍ତେ ଅମର ଭଙ୍ଗିଲେ ସେ
ଅମର କଲେ ଜର
କଲେ ହରିନେଲେ ସେହୁ କୁବେର ଭଣ୍ଡାର । ୨୦ ।
ଅନେକ ରାଜଭଣ୍ଡାର ଆଣିଲେ ଜୁରକରି
ସୁବର୍ଣ୍ଣେ ବାନ୍ଧିଲେ ସୁବର୍ଣ୍ଣକୂଟ ଗିରି । ୨୧ ।
ସୁବର୍ଣ୍ଣକୂଟ ପର୍ବତ ବୋଲି ନାମ ଦିଲେ ବେଦ
ତାହାଂକର ଭୟେ ଅମର ଗୁଡିଲେ ସମ୍ପ୍ରଯୋଗ । ୨୨ ।
ବାବୁ ସତ୍ୟଦାସ ରାଜାର ଏଥି ଅଛନ୍ତି ବେଦପୁତ୍ର
ହୀନ ବାସନ ବୋଲଣ ଏଥି ବେଦ ଯେ ଦଇତ । ୨୩ ।
ଏଥି ମହାକ୍ଷେତ୍ର ହୋଇଲା ଅସୁରଭୋଗୀ
ଋଷ ବିପ୍ର ତପୋଧନ ଡରେଣ ସେ ଥାନ ପରିତ୍ୟାଗୀ । ୨୪ ।
ଶୁଣ ହେ ଯୁଟେଷ୍ଟି ସତ୍ୟଯୁଗ ଏମନ୍ତେ ବହିଗଲା
ଜନ ମନୁଷ୍ୟ କେହି ଆଗଯାତ ଏଥି ତୀର୍ଥେ ନୋହିଲା । ୨୫ ।
ଈଶ୍ୱରେ ବିସ୍ମରନ୍ତି ଏଥି ଅଛଇ ମହାତୀର୍ଥ
ସଂସାର ଜନ ଏଥି ହୋଇବେ ମୁକତ । ୨୬ ।
ଅନେକ ଆନନ୍ଦେ ଆସନ୍ତି ବୃନ୍ଦାଅର୍କେ
ଦାନବ ଭୟେ ପଶି ନୁଆରିଲେ କେହି ଦେବଲୋକେ । ୨୭ ।
ମୀନମାସ ଶୁକ୍ଳ ପକ୍ଷ ଚଉଠୀ ଚନ୍ଦ୍ରବାର
ପାର୍ବତୀ ସହିତେ ବିସ୍ମରନ୍ତି ଦେବହର । ୨୮ ।
ହୀନ ବାସନ ଦଇତେ ମରନ୍ତି କେବଣମତେ
ତେବେ ସିନା ମୁକତ ହୋଇବେ ଏହି ମହାତୀର୍ଥେ । ୨୯ ।
ଈଶ୍ୱରେ ବୋଇଲେ ତୁମ୍ଭେ ଶୁଣ ଗୋ ପାର୍ବତୀ
ତୁମ୍ଭେ ମାରିପାରିବ କି ଅସୁର ଦୁହିନ୍ତ । ୩୦ ।

---

୨୪।୨ ପଥିକ ଜନନ୍ତି ସେ ବାଟରେ ଖାଆନ୍ତି ଜଳି—ଖ, ଛ, ଣ, ନ ।

ପାର୍ବତୀ ବୋଇଲେ ବଢାଇ ଦୁରନ୍ତେ ଦଇତ ଅରି
ଉପାୟେ କରିଣ ଅବା ତାହାନ୍ତ ମାରପାରି । ୩୧ ।
ବ୍ରହ୍ମାଂଙ୍କୁ ଜିଣିଲ ସେ ବାରଲେ ଦେବରାୟେ
ନାରାୟଣ ଚକ୍ରକୁ ଯେହ୍ନାଂକର ନାହିଂ କିଛି ଭୟେ । ୩୨ ।
ଦୁର୍ଗପଦ ବରେକ ତୁମ୍ଭେ ଦଲ ଦେବରାଜ
ଅଭୟେ ହୋଇ ରହିଲେ ସେ ପାପିଷ୍ଠ ଦନୁଜ । ୩୩ ।
ବିଶ୍ୱନାଥ ସ୍ୱାମୀ ତୁମ୍ଭେ ସମରେ ନୋହିଲ ଯେ ସରି
ବିଶ୍ୱାସଘାତକ କଲେ ତାହାନ୍ତ ପାରିବା ଅବା ମାରି । ୩୪ ।
ତୁମ୍ଭେ ଯେବେ କୋପ ନ କରିବ ଦେବ ମୋତେ
ମୁହିଂ ଅଭିନ୍ନ ଭାରଯା ହୋଇବି ତାହାଂକର ପ୍ରୟତ୍ନମତେ । ୩୫ ।
ତେତେ ବାରେ ସେ ତାହାନ୍ତ ମାରପାରି
ଶୁଣିଣ ଅନେକ ସାନନ୍ଦ ହୋଇଲେ ଦେବ ତ୍ରିପୁରାରି । ୩୬ ।
ସନ୍ତୋଷେଣ ଆଜ୍ଞ୍ୟାଂ ସେ ଦଲେ ଦେବରାଜା
ଯେ ମହାର୍ଥ ଗୋ ତୁମ୍ଭେ ଉଦ୍ଧାର କର ଗିରଜା । ୩୭ ।
ସ୍ୱାମୀର ବଚନେ ସେ ଅଲଂଘିତ ମହାସତୀ
ଈଶ୍ୱରଙ୍କ ଉପେକ୍ଷିଣ ସେ ଯେ ଅଇଲେ ପାର୍ବତୀ । ୩୮ ।
ଆହୋ ଚଇତନ ସଂସାର ସାଗର ଯେ ଯେ ନ ଯାଇ କଳଣା
ପାର୍ବତୀଂକର ରୂପ ଯେ ନ ଯାଇ କହଣା । ୩୯ ।
ରମ୍ଭା ମେନକା ଅହଲ୍ୟା ଆଦିକରି
ପାର୍ବତୀଂକ ରୂପକାନ୍ତିକୁ ନୁହନ୍ତି କେହି ସରି । ୪୦ ।

---

୩୧।୧ ଯେ ବଢାଇ ଦୁରାପଦ ଦଇତ ଅରି ।—ଡ, ଛ, କ
୩୩।୨ ଅଭିନ୍ନ ହୋଇଲେ ସେ ଆମ୍ଭର ଆତ୍ମଜ ।—ଡ, ଛ, ଥ
୩୨।୨ ଅଭୟେ ହୋଇଲେ ସେ ଆମ୍ଭର ଆତ୍ମଜ ।—ଜ, ଝ, ଘ
୩୫।୨ ମୁହିଂ ଅଭିନ୍ନ ହୋଇବି ତାହାନ୍ତ ଭାରଯା ହୋଇବା ପରଯନ୍ତେ ।—ଡ, ଝ, ଜ, ଛ, ଥ, ଜ
୪୦।୨ ପାର୍ବତୀଂକ ପାଦଗଢକୁ କେହି ନୁହନ୍ତି ସରି ।—ଡ, ଛ, ଖ, ଦ

ଅପଷ୍ଟାନ୍ତର ରୂପ ସେ ପରମ ଅନ୍ନପୂର୍ଣ୍ଣା
ପୁରୁଷ ସୃଷ୍ଟିକି ସେ ମୋହଫାଶ ସିନା । ୪୧ ।

ନବସୃଷ୍ଟି ଭିଆଇଲେ ସେ ବେଦବର ସ୍ୱାମୀ
ପାଦ୍ୱଣ୍ଡଂକ ରୂପ ସେ ଦେବ ନୁଆରିଲେ ଚହ୍ନି । ୪୨ ।
ବାବୁ ଯେ ମହାଜାର୍ଥ ଉଦ୍ଧାର କରିବା ନିମନ୍ତେ
ପଶିଲେ ଗୋସାମଣି ଯେ ଗହନ ବନସ୍ତେ । ୪୩ ।
ସାତ ଶୀତଳ ବୋଲି ଯେବଣ ନଦୀଟିଗାଟି
ତହ ଉତ୍ପତ୍ତିଲାଉଂ ସେ ଦକ୍ଷିଣ ବାହ୍ୱାସ୍ୱେ ଫୁଟି । ୪୪ ।
ଆହୋ ଯୁଧିଷ୍ଟି ପିତୃଲୋକମାନନ୍ତ ଯେ ଅବସାନେ ଦହନ କରି
ସେ ଦହନ ଶୀତଳ ହୋଅଇ ଯେ ନଦୀରେ ସ୍ନାହାନ କରି । ୪୫ ।

ଯେସନେକ ମହିମା ଯେ ସାତ ଶୀତଳ ନଦୀ
ଏଞ୍ଜୁବୃଷ୍ଟୀ ବନରୁ ସେ ଆସୁଅଛୁ ଭେଦି । ୪୬ ।

ସେ ନଦୀରେ ସ୍ନାହାନ ସାରିଣ ପାର୍ବତୀ
ଗୋପାଳୁଣୀ ରୂପ ସେ ଧରିଲେ ମହାସତୀ । ୪୭ ।

ପାଟ ମଡ଼ି ଆଳ ଯେ ଦେବୀ ଆଭରଣ କଲେ ଅଙ୍ଗେ
ଶିରେ ଦଧିନଉଡ ଯେନ ଚଳିଲେ ବନମାର୍ଗେ । ୪୮ ।

ଗମନ୍ତେ ଗମନ୍ତେ ଦେବୀ ଚଳନ୍ତି ବନସ୍ତେ
ପ୍ରବେଶ ହୋଇଲେ ଯାଇ ସୁବର୍ଣ୍ଣଚୂଡ଼ ପରବତେ । ୪୯ ।
କାର୍ତ୍ତି ବାସନ ବୋଲି ବେନି ଯେ ଦଇତେ
ଦୁହେଂ ବସିଅଛନ୍ତି ଯେ ସୁବର୍ଣ୍ଣଚୂଡ଼ ପର୍ବତେ । ୫୦ ।
ଦେଖିଣ ବେନି ଦାନବେ ଯେ ଉଠିଲେ ତଡନ୍ତ
ଅପୂର୍ବ କନ୍ୟାଯେ ଯେ ରମ୍ଭାଉଂ ତେଜକାନ୍ତ । ୫୧ ।

ଆମ୍ଭର ଭଦ୍ୟେ ଯେଥେଂ ଜନ ମନୁଷ୍ୟ ଆତଯାତ
ବଡାଇ ଦୁର୍ଲଭ ଯେ ଆମ୍ଭ କର୍ମର ସୁକୃତ । ୫୨ ।
ଧାଡକାରେ ଦାନବେ ପ୍ରବେଶ ଯାଇ ଆଗେ
କାହିଂର ମହାମ୍ରାଣୀ ତୁ ପଶିଲୁ ବନମାର୍ଗେ । ୫୩ ।

ପାର୍ଥ ବୋଇଲେ ବାଉସ୍ତେ ମୁହିଂ ଦଧିବକା ଅଟଇ ଗଉଡଣୀ
ସ୍ତେ ବନମାର୍ଗେ ପଶିଲ ମୁହିଂ ବାଟ ତ ନ ଜାଣି । ୫୪ ।
ବଦସ୍ତୁଛନ୍ତି କାର୍ତ୍ତି ବାସନ ଯେ ବେନଭାଇ
ଆଜକ ଆମ୍ଭନ୍ତ ଗୋ ଦେଉକନା ଦହି । ୫୫ ।
ଧାନେଣ ତୋହୋର କାର୍ଯ୍ୟ ଧାନ୍ୟେଣ ଅଚ୍ଛୁ କାର୍ଯ୍ୟ
ଅଷ୍ଟାରନ୍ ମଧେ ଯାହା ମାଗିବୁ ତା ଦେବୁଂ ଆଜ । ୫୬ ।
ତୋହୋର ଆମ୍ଭର ହୋଇବ ଆଜ ଗୋ ବଡାଇ ପୀରତି
ଆମ୍ଭର ତହିଂକ ଗୋ ଦହି ଆଣୁଥିବୁ ନିକ ନତ । ୫୭ ।
ବୋଲଇ ଗୋପାଳୁଣୀ ତୁମ୍ଭେ ପରମ ପଣ୍ଡିତ
ଧାତକାରେ ମୁଂ ଦହି ଦେଉଥିବ ନତ୍ୟପ୍ରତ୍ୟ । ୫୮ ।
ଶାଳପାସ ପାଡିଣ ବସିଲେ ସାରବେନ
ଆପଣେ ଗୋସାମଣି ପରଶନ୍ତି ଶଡାଇ କରେ ଘେନ । ୫୯ ।
ପରିହାସ ଗୃଟୁପଟଳ କହୁଛନ୍ତି ବେନଭାରେ
ଗେଲେଣ ଭୁଞ୍ଜନ୍ତି ସେ ମଦନ ଆତୁରେ । ୬୦ ।
ସ୍ୱୟଂ ଗୋସାମଣି ଯେ ପରଶୁଛନ୍ତି ପାର୍ଥ
ଦେଉଂଣ ନ ସରଇ ସେ ମାୟା ଦଧିର ନଉତ । ୬୧ ।
ଆହୋ ଯୁଦ୍ଧେଷ୍ଟି ଷୀରେନ୍ଦ୍ର ପିଇବାକୁ ସମର୍ଥ ଯେବଣ ବେନଭାରେ
ସ୍ତେକା ଦଧି ନଉତକ ଯେ ଅଣ୍ଟିଲ ସମ୍ଭରେ । ୬୨ ।
ଖାଆନ୍ତେ ବୃହାନ୍ତି ସେ ପାର୍ଥଂକ ଜାନୁସ୍ତନ
ଅନଙ୍ଗ ବାଣାତେ ସେ ହୋଇଲେ ମୋହମାନ । ୬୩ ।
ନର୍ଜନ ବନ ଗହନ କେହି ନାହିଂ କତ
ହସଇ ପରିହାସ୍ୟେ ସେ ଗୋପାଳୁଣୀ ଜାତ । ୬୪ ।
ବହୁତ ଭୋଜନେ ଆୟୁଷ ହୋସ୍ତେ ହାନ
କାମର ଚେଷ୍ଟା ଆବର ଯୁବତୀ ମାନନୀ । ୬୫ ।
ବୋଲଇ ଗୋପାଳୁଣୀ ମୋତେ ଦେବା ମ[illegible]ପିସ ହୋଇ
ବଣା ହୋଇ ପଡିଲ ମୁଂ ତୁମ୍ଭର ହସ୍ତଇ । ୬୬ ।

---

୫୯।୨   ପରଶନ୍ତି ପାରବତୀ ହାଥରେ ଅନ୍ନ ସ୍ନେକ ଘେନ ।—ଚ, ଘ

ଦଇତ୍ୟେ ବୋଇଲେ ଆମ୍ଭନ୍ତ ବଶକଲୁ ରୂପଗୁଣ ଦେଖାଇ
ପଡ଼ିଲୁ ଆମ୍ଭର ମୁଖେ ଯିବୁ ଆର କାହିଁ । ୬୭ ।
ପୋଡ଼ଇ କନା ଯେ ତୁମ୍ଭ ଗୋପାଳୁଣୀ ଜନ୍ମ
ଯେ ନବ ଯଉବନ ଯେନ ଦେଶେ ଦେଶେ ଭ୍ରମ । ୬୮ ।
ଆଜହ୍ମୁଂ ତୋର ଜନ୍ମ ଦାରିଦ୍ର୍ୟପଣେ କର ତେଜ୍ୟା
ଅନେକ କୂଳୁହୋଳେ ଥିବା ଆମ୍ଭର ହୁଅସି ଭାରଯା । ୬୯ ।
ଆମ୍ଭର ବଚନ ତୁ ଗୋ ମେଣ୍ଟିବୁ ଯଦ୍ୟପି
ମାରଣ ମାୟେଂସ ତୋର ଭୁଞ୍ଜିବୁ ଅଦ୍ୟାପି । ୭୦ ।
ଅସୁରଂକ ମୁଖରୁ ଦେବୀ ନାରାଣ ବଚନ ଶୁଣି
ରୁବଇ ସୁନ୍ଦରୀ ତଥିଂ ନେତ୍ରୁ ବହି ପାଣି । ୭୧ ।
ଯେହେନ୍ତେକ ଭବିଷ୍ୟ ଯେବେ ଅଛଇକ ମୋତେ
ମୋହୋର ମୃତ୍ୟୁ ଯେବେ ତୁମ୍ଭର ସେ ହାଥେ । ୭୨ ।
କର୍ମ ବୋଲ ସିନା ଆପଣେ ଯାହା ଅର୍ଜି
ଆନକୁ ନ ଦଶି ଆପଣେ ତାହା ଭୁଞ୍ଜି । ୭୩ ।
ମମ କର୍ମେ ଯେବେ ଅଛଇ ଯେହେନ୍ତେକ ଘଟଣ
କାହାର ବେଳେ ସେ ହୋଇବାକ ମେଣ୍ଟଣ । ୭୪ ।
ଭକ୍ଷ ମୋର ମାୟେଂସ ଖାଅ ତୁମ୍ଭେ ଭାଜି
ତୁମ୍ଭର ହାଥେ ମୁହିଂ ଯେ ଜନ୍ମ ଯାଇ ସୁଝି । ୭୫ ।
ଅସୁର ବୋଇଲେ ଆମ୍ଭନ୍ତ ତୁ ଗୋ ନାରାଣ କନ୍ୟା କହୁ
ତୋତେ ଯାହା ଭକ୍ଷିବୁ ଆମ୍ଭେ ଜୋଇ କନ୍ୟା ନ ଖାଉଂ । ୭୬ ।
ତୁ ଆମ୍ଭନ୍ତ ରକ୍ଷା ଯେବେ କରସି ଗୋ ମାୟେ
ଦନ୍ତେଣ ତରଣ ଯେନ ବେନ ପଡ଼ିଲେ ତାର ପାୟେ । ୭୭ ।

---

୬୯ { ଆଜହ୍ମୁଂ ତୋର ଯେ ବୃଦ୍ଧିକ କର ପରତେଜ୍ୟା
ଦୁଖ ନ ପାଇ ଆମ୍ଭର ହୁଅ ତୁ ଭାରଯା ।—ଖ, ନ

୭୧ { ଅସୁଂରକ ବଚନ ଦେବୀ ନାରାଣରେ ଶୁଣିଲେ
ରୁବଇ ସୁନ୍ଦରୀ ଅତି ସନ୍ତାପେ ହୋଇ ବଇକୁଳେ ।—ଦ, ଛ

ବୁଡିଲୁ ମଦନ ଜଳେ ଗୋ ତୋହୋରେ ଶରଣ
ରତିରଙ୍ଗ ଦେଇ ଗୋ ରଖସି ପଞ୍ଚ ପ୍ରାଣ । ୭୮ ।
ବୋଲନ୍ତି ଗୋପାଳୁଣୀ ତାହାଂକ ବଚସ୍ଯ ଦେଖି
ଅଦଭୁତ କାରଣେ ତୁମ୍ଭେ ହେଇଲ ବଡ ଦୁଖୀ । ୭୯ ।
ତୁମ୍ଭର ବଚନେ ପଛେ ମୁଂ ଗୃହବାସ କରିବ ତେଜ୍ୟା
ଦସ୍ଯା ବସିଲା ମୁଁ ତୁମ୍ଭର ହୋଇବ ଭାରଯା । ୮୦ ।
ମୋହୋର ବ୍ରତେକ ଅଛି ଯେବେ କରିବ ପ୍ରତିଷ୍ଠା
ହୋଇବ ବଲ୍ଲଭ ତୁମ୍ଭର ପୂରିଇବ ମନତୁଷ୍ଟା । ୮୧ ।
ଶୁଣିଣ ଦାନବେ ଯେ ହୋଇଲେ ଉଷତ
କହ ଗୋ ମହାମ୍ମାଣୀ ତୁମ୍ଭର କସ ବ୍ରତ । ୮୨ ।
ସରୁପ ବଚନ ଯେ କହନ୍ତି ଗଉଣି
କଞ୍ଚିତ ମଂହ ବ୍ରତ ଯେ ଅଛଇ ମୋହୋର । ୮୩ ।
ତୁମ୍ଭେ ଦୁହେଂ ମୋତେ ଯେ କାନ୍ଧରେ ବସାଇ
ସ୍ନେ ତୀର୍ଥଯାକ ମୋତେ ଆଣିବ ବୁଲାଇ । ୮୪ ।
ସ୍ନେତେକେ ପ୍ରତିଷ୍ଠା ଯେ ହୋଇବ ମୋହୋର ବ୍ରତ
ଶୁଣି ଅନେକ ହରଷ ଯେ ହୋଇଲେ ବେନଭ୍ରାଥ । ୮୫ ।
କାମେ ବଶ ହୋଇଣ ସେ ନ ଚେତନ୍ତି କିଛି
ମହାଉଚାଟ ଫାଶ ଦେବୀ ଲଗାଇଣ ଅଛି । ୮୬ ।
ରଜ୍ଜୁ ଲଗାନ୍ତେ ଯେସନେ ଗମନ୍ତି ବଇଲ
କାମବଶେ ନାଶଗଲେ ବେନି ମହାମଲ୍ଲ । ୮୭ ।
ଆହୋ ନୀତି ବାସନ କାହ୍ନଂ ଅଟନ୍ତି ପରମଯୋଗୀ
ଯୁବତୀଂକ ବଶେ ପଡି ସେ ସମସ୍ତ ପରିତ୍ୟାଗୀ । ୮୮ ।
ବେନି କାନ୍ଧ ପାତିଲେ ସେ ବେନି ବୀରମଣି
ବକ୍ଷସ୍ଥଳେ ବେନି ଚରଣ ଦେଇ ଉଠିଲେ ଗୋସାମଣି । ୮୯ ।

---

୭୮।୨ ସୁରତି ଦାନ ଦେଇ ଗୋ ରଖସି ଜୀବନ ।—ଡ, ଣ, ଛ, ଥ, ଘ
୭୯।୨ ଅକାରଣେ ତୁମ୍ଭେ ହୋଅସି ବଡ ଦୁଖୀ ।—କ, ଣ, ଡ, ଖ, ଠ, ନ, ଚ, ଓ ।

ବୃନ୍ଦାବନ୍ତ କ୍ଷେତ୍ରରେ ସେ ମଧୁର ଗୀତଗାଇ
ହସନ୍ତ ନାଚନ୍ତ ସେ କରେ କରତାଳ ଦେଇ । ୯୦ ।
ଈଶାନ୍ୟ କୋଣ ତେଇଂ ଆଣିଲେ ଅସୁରେ
ଆସିଣ ପ୍ରବେଶ ହୋଇଲେ ଯେକାମ୍ବରେଶ୍ୱର ଦ୍ୱାରେ । ୯୧ ।
ବରୁଣା ବଳକା ତହିଂ ଗୋଟିଏକ ଅଛୁ
କନ୍ଧରେ ବସାଇ ଖରେ କଉତୁକେ ନାଚ । ୯୨ ।
ରେ ରେ ଶବଦ କଲେକ ଶାକାମ୍ବେଶ୍ୱ
ମହାଖ୍ରେଷ୍ଟ ରୂପ ହୋଇଲେ ଗଗନ ସର । ୯୩ ।
ମହାଭାରନ୍ତ ପାଇ ପକାଇ ଲୋଡନ୍ତ ପାମରେ
ଦୁହିଂକର କେଶ ଦେଖୀ ଧରଲେ ଦୁଇକରେ । ୯୪ ।
ଫୁକାର ଶବଦ କରିଣ ଦେଖୀ ଦ୍ଦଲେ ଗୃପି
ହୋଇଲେ ପାତାଳଗାମୀ ସେ ଅସୁର କାମରୂପୀ । ୯୫ ।
ଅସୁର ବୋଇଲେ ଯେତ କପଟ ହୋଇଲା
ଯେ ମାୟାକୂଟ ଆମ୍ଭନ୍ତ ମଣିତ ନ ଗଲା । ୯୬ ।
ପାତାଳକୁ ପଶିଲେନ ବେନଖରେ ହୃଦଗତ ପରଯନ୍ତେ
ଆହେଷି ଦରଣ୍ଡି ଧରି ଲୋଡନ୍ତ ବେନ ହାଥେ । ୯୭ ।
ଦୁଇଭୁଜେ ଧରିଛନ୍ତ ଦୁହିଂକରି କେଶ
ଆହୁର ଚତୁର୍ଭୁଜ ହୋଇଲା ପ୍ରକାଶ । ୯୮ ।
ଆହେଷି ଗୋସାମଣି ଦୁହିଂକର ଭୁଜ ଧର
ହୁଂକାର ନାଦକର ଦେଖୀ ଅସୁର ଭୁଜଲ ଉପାଡି । ୯୯ ।
ରୋଧିର ମାଯେଂସ କର୍ଦ୍ଦନ ହୋଇ ଭୁସ୍ତି କରନ୍ତ ଦାନବେ
ମାଗୋ ବୁଡାଇଲୁ ଶ୍ୱଷର ସ୍ତିଷ ମାନ ଭାବେ । ୧୦୦ ।
ଯେବେ ଆମ୍ଭେ ତ ନାଶଗଲୁ ନ ଜାଣିଣ ବେନଭାଇ
ଭୁହି କଯେଁଟି ଗୋ ଆମ୍ଭଂକୁ ନ କହୁ କାହିଂପାଇଂ । ୧୦୧ ।

---

୯୫।୧ ହୁଂକାର ଶବଦ କରଣ ଦେଖୀ ଉଠିଲେ ନାଚି।—ଜ, ତ, ଛ, ଦ
୯୮।୨ ଆହୁରି ବେନଭୁଜ ଦେଖୀ କଲେକ ପ୍ରକାଶ ।—ଦ, ଡ, ଛ, ଥ, ଊ

ନାମ କେବଣ ତୋର ଜାଣିଥାଉଁ ହୃଦେ
ବଦୟନ୍ତ ଗୋସାମଣି ମୁହିଂ ପ୍ରବଞ୍ଚ ଅଛଇ ହାଦେ । ୧୦୨ ।
ଅସୁରେ ବୋଇଲେ ଆମ୍ଭେ ନିସ୍ତରିଲୁ ମହାମାୟେ
କଣକଲୁ ଦୃଶ୍ୟ ଗୋ ହୋଇଥାଉ ଆମ୍ଭ କାୟେ । ୧୦୩ ।
ଅନେକ ତୀର୍ଥ ଯେ ୟେଥି ହୋଇବ ତହିଂ ଯାତ୍ରା
ଥିଲେହେଂ କଷ୍ଟତେ ୟେଥି ହୋଇଥାଉଁ ଦତ୍ତା । ୧୦୪ ।
କଠୋର ଦେଖି ତାହାନ୍ତ ଦୟା କଲେ ଗୋସାମଣି
ମାଗ ରେ ବର ତୁମ୍ଭେ ବୋଇଲେ ଠାକୁରାଣୀ । ୧୦୫ ।
ଅସୁରେ ବୋଇଲେ ମାତା ଗୋ ଯେବେ ହୋଇଅଛୁ ଦୃଶ୍ୟ
ୟେତେକେହେଂ ଥାଉ ଆମ୍ଭନ୍ତ ପ୍ରାଣେ ନ କର ନାଶ । ୧୦୬ ।
ମାଗୋ ଆମ୍ଭେ କୀର୍ତ୍ତି ବାସନ ବୋଲି ଯେ ବେନଭ୍ରାଥ
କୀର୍ତ୍ତିବାସନ ବୋଲି ନାମ ହୋଇବ ୟେହୁ ତୀର୍ଥ । ୧୦୭ ।
ପ୍ରସନ୍ନ ହୋଇଣ ଗୋସାମଣି ତାହାନ୍ତ କଲେ ଦୟା
ୟେ ତୀର୍ଥ ହେଉ କୀର୍ତ୍ତିବାସନ ବୋଲି ବର ଦିଲେକ ଅଭୟା । ୧୦୮ ।
ବାବୁ ୟେକାମ୍ବର ଦେବ ପାଶେ ୟେ ବେନ ପାଷାଣ
କୀର୍ତ୍ତିବାସନ ବୋଲି ୟେହା ତଥ୍ୟକର ଜାଣ । ୧୦୯ ।
ଆହୋ ଯୁଧିଷ୍ଠି କୀର୍ତ୍ତିବାସନ ଯିବା ବୋଲି ଯେ ଆସିବ ୟେ ତୀର୍ଥକୁ
ସେ ପୁଣ୍ୟ ଅଧେ ପ୍ରାପତ ହୋଇଅଛି କୀର୍ତ୍ତିବାସନକୁ । ୧୧୦ ।
ୟେ ଦୁହିଂକର ମଧ୍ୟେ ଯେହୁ ଯାଆନ୍ତ ନ ଜାଣି
ଯାବତ ସୁକୃତମାନ ୟେହାନ୍ତ ଦଅନ୍ତ ଗୋସାମଣି । ୧୧୧ ।
ଅସୁରନ୍ତ ମାରି ଦେବୀ ହୋଇଲେ ମହାଶ୍ରମି
ଅଳସେ ନିଦ୍ରାଗଲେ ଦେବୀ ଭୁଞ୍ଜା ଭୂମି । ୧୧୨ ।
କଉସିକେ ଯୁଧିଷ୍ଠିଙ୍କ ଦେଖାଇଲେ ନେଇ
ବିନ୍ଦୁ ସାଗର କୂଳେ ଅଛନ୍ତ ଦେବୀ ଶୋଇ । ୧୧୩ ।
କଉଣିକ ମୁନିଙ୍କ ପୁଚ୍ଛାକଲେ ଧର୍ମରାୟେ
କେବଣ ଚରିତ ୟେ ବଡାଇ ଆଶ୍ରିଜ ହୋୟେ । ୧୧୪ ।

---

୧୧୧।୨  ଅସୁରେ ନାଶକ୍ତି ୟେହାଙ୍କୁ ହାଦେ ପୁଣି ।—ଖ, ଗ, ଚ

ଗୋସାମଣିଙ୍କ ପଦତଳେ ଅଛଇ ଲିଙ୍ଗ ଯେ ଗୋଟିଏ
ପାର୍ବତୀଙ୍କ ଯିବା ଡେରି ଦେଖି ଦେବରାଏ । ୧୧୫ ।

ଗୋସାମଣିଙ୍କ ଲୋଡ଼ିଣ ଅଇଲେ ମହାଦେବେ
ଦେଖିଲେ ପ୍ରାଣେ ନାଶ ହୋଇଛନ୍ତି ଦାନବେ । ୧୧୬ ।

ଅନେକ ବ୍ୟାକୁଳେ ଦେବ ହୋଇଣ ବିମୁଖ
ପାର୍ବତୀଙ୍କୁ ନ ଦେଖି ଈଶ୍ୱରେ କଲେ କୋପ । ୧୧୭ ।

ଶ୍ରମେ ଧାମନ୍ତି ଦେବ ଲୋଡ଼ନ୍ତି ଚଉକଡ଼ି
ବଂଶଗିରି ପର୍ବତେ ଯାଇ ବିଜୟେ କଲେ ଝାଡ଼ି । ୧୧୮ ।

ପାର୍ବତୀ ପାର୍ବତୀ ବୋଲି ଡାକନ୍ତି ଉଚ୍ଚସ୍ୱରେ
ସେ ବଂଶଗିରି ପର୍ବତ ପାତାଳକୁ ପଶିଲା ରୁଦ୍ର ପାଦଭରେ । ୧୧୯ ।

ବାବୁ ଏଣୁକର ପାତାଳଗାମୀ ହୋଇଲା ବଂଶଗିରି ପର୍ବତ
ତେନ୍ୟାସ୍ତୁଂ ଉଦେ ହୋଇଲା ବଂଶଗିରି ତୀର୍ଥ । ୧୨୦ ।

ବାବୁ ଲୋଡ଼ନ୍ତେ ଏଥେ ଆସି ଭେଟିଲେ ଦେବ ଶୂଳପାଣି
ଦେଖିଲେ ଦକ୍ଷିଣକଇଂ ଶୋଇଅଛନ୍ତି ଗୋସାମଣି । ୧୨୧ ।

ହା ହା ସଖୀ ବୋଲିଣ ଦେବ ଯେ ସୁତଲେ
ଈଶ୍ୱର ସ୍ୱାମୀ ଯେ ବିଜେକଲେ ପାର୍ବତୀଙ୍କ ପାଦତଳେ । ୧୨୨ ।

ଶୁଣ ବାବୁ ଯୁଧିଷ୍ଠି ଏହୁ ଲିଙ୍ଗର ଆଦ୍ୟକଥା
ଶମ୍ଭୁ ହୋଇ ରହିଲେ ସେ ଈଶ୍ୱର ଦେବତା । ୧୨୩ ।

ଯୁଧିଷ୍ଠି ପୁଚ୍ଛାକଲେ ଶୁଣିମା ବିଶ୍ୱାମିତ୍ରେ
ସେ ମାଏ ବିଜେକଲେ ଦକ୍ଷିଣଭାଗ ତୀର୍ଥେ । ୧୨୪ ।

ବିଶ୍ୱାମିତ୍ରେ ବୋଇଲେ ବାବୁ ସାବଧାନେ ଶୁଣ
ଏହୁ ମହାତୀର୍ଥେ ଆସି ତପ କଲାଟି ରାବଣ । ୧୨୫ ।

ଯୁଧିଷ୍ଠି ପୁଚ୍ଛା କଲେ ବିଶ୍ୱାମିତ୍ରଙ୍କ ଅଗ୍ରତେ
ଲଙ୍କାକଇଂ ଛାଡ଼ି ରାବଣ ଏଥକୁ ଆଇଲା କସ ଅର୍ଥେ । ୧୨୬ ।

ଶୁଣ ହୋ ଯୁଧିଷ୍ଠି ବ୍ରହ୍ମାଙ୍କର ସମୟେକେ ହୋଇଲା ଚାରିପୁତ୍ର
ବଶିଷ୍ଠ ନାରଦ ଯେ ଅଗସ୍ତି ପୋଲସ୍ତ୍ୟ । ୧୨୭ ।

ପୋଉଲସ୍ତିଂକର ନନ୍ଦନ ଯେ ହୋଇଲେ କପିଳ
ଶୂନ୍ୟମୁନି ବୋଲିକରି ସ୍ୱେହ୍ନାଂକ ଦୁଲାଳ । ୧୨୮ ।
ଶୂନ୍ୟଂକର ପୁତ୍ର ଯେ ପ୍ରଯୁଗ ବାସୁଦେବା
ସ୍ୱେହ୍ନାଂକର ନନ୍ଦନ ଯେ ହୋଇଲା ବିଶ୍ରବା । ୧୨୯ ।
ବଇବସ୍ୱତ ମନୁଂକର ଦୁହିତା ଜମ୍ବୁବତୀ
ତାହାଙ୍କଇଂ ପ୍ରଦାନ ହୋଇଲେ ବିଶ୍ରବା ମହାଯତି । ୧୩୦ ।
ବିଭା ହୋଇଣ ସେ ବିଶ୍ରବା ମୁନିବରେ
ସ୍ୱସ୍ଥ ପାଇ ରହିଲେ ସେ ବଇବସ୍ୱତ ମୁନିଂକର ପୁରେ । ୧୩୧ ।
ମେରୁଶୃଙ୍ଗ ଭଗ୍ନଗଲା ପବନ ବିଘାତେ
ଦକ୍ଷିଣ ମଉଦଧିରେ ପକାଇଲେ ହାଦେ । ୧୩୨ ।
ସୁବର୍ଣ୍ଣର ଶିଂଗ ବୋଲି ଚାପିତା କଲେ ରକ୍ଷ
ଦକ୍ଷବଂଶେ ଉପୁଜଛନ୍ତି ରକ୍ଷ ଭକ୍ଷ । ୧୩୩ ।
ଘଟଣା ଯୋଗାଡମାନ ହେଲେ ବେଦବର
ବୋଇଲେ ତୁମ୍ଭେ ଦୁହେଂ ସ୍ୱେ ଶିଂଗେ ପୁରେକ ନିର୍ବାଣ କର ।୧୩୪।
ବଡ ବିଚକ୍ଷ କରି ପୁରେକ ନିର୍ବାଣ କରିବ
ଅସୁର ଭସ୍ମେ ହୋଇଲେ ସ୍ୱେଥେଂ ତେତିଶକୋଟି
ଦେବତା ନ୍ତ ଦେବ ଠାବ । ୧୩୫ ।
ବଜ୍ରଯନ୍ତ୍ର କବାଟ ହୋଇବ ବଜ୍ରଯନ୍ତ୍ର କଳଣି
ପାଚେରୀ ଉଚ୍ଛର୍ଗ ହୋଇବ ମେରୁଗିରି ଜାଣି । ୧୩୬ ।
ଚଉପଠ ଗୋଟିଯେ ପାଡିଲେ ବେଦପତି
ସ୍ୱେହ୍ନମତ ଲଂକାଗଡ ସ୍ତି୍ରଜବ ମେଡା ମଣ୍ଡପ ଜଗତୀ । ୧୩୭ ।
ଧାତାର ବଚନେ ରକ୍ଷ ଭକ୍ଷ ଦୁହେଂ ଲାଗି
ମହା କାମରୂପୀ ସେ ଗଢନ୍ତି ତାହା ବେଗି । ୧୩୮ ।
ବ୍ରହ୍ମାଂକର ବଚନେ ସେହୁ ବେନି ରକ୍ଷ ଭକ୍ଷ
ଲଂକା ନିର୍ବାଣ କଲେ ବରଷ ଦଶଲକ୍ଷ । ୧୩୯ ।

---

୧୨୮।୨ ଶୁଦ୍ଧମନୁ ବୋଲିକରି ସ୍ୱେହ୍ନାଂକର ବାଳ ।—ଝ, କ, ଟ, ଯ, ଜ
୧୩୪।୧ ଘଟଣ ବିନ୍ଧାଣୀମାନ ହେଲେ ବେଦବର ।—ଟ, ଝ, ଘ
୧୩୬।୨ ପାଚେରୀ ଉଚ୍ଚ ହୋଇବ ଗଡସନ୍ଧି ଜାଣି ।—ଣ, ଜ

ଦେଖିଣ ସାନନ୍ଦ ଯେ ହୋଇଲେ ପଦ୍ମଯୋନି
ବୋଇଲେ ସ୍ୱେଚ୍ଛେ ତୁମ୍ଭେ ରାଜ୍ୟକର ଭାଇବେନି । ୧୪୦ ।
ପିତାର ଆଜ୍ଞା ପାଇ ସେହୁ ରକ୍ଷ ଭକ୍ଷ
ନଚାନ୍ତି ରାଇଜ ସେ କରନ୍ତି ବେନିବକ୍ଷ । ୧୪୧ ।
ସମସ୍ତେକେ ସେହୁ ଦୈତ୍ୟ ଉପଦ୍ରବ କଲେକ ଆକାଶ
ଅମିତ ଦେଖିଣ ନାରାୟଣ ତାହାଂକଇଂ କଲେ ନାଶ । ୧୪୨ ।
ରକ୍ଷ ଭକ୍ଷଂକର ପୁତ୍ର ଯେ ହେତି ପରହେତି
ଲଂକାରେ ସମସ୍ତେ ସେ ହୋଇଲେ ଅଧିପତି । ୧୪୩ ।
ସେହୁ ସମସ୍ତେକେ କଉଣୋପେ ଉପଦ୍ରବ କଲେ
ନାରାୟଣଂକର ହାଥେ ସେହୁ ନାଶଗଲେ । ୧୪୪ ।
ତାହାଂକର ପୁତ୍ର ଯେ ବଜ୍ରାଙ୍ଗ କାଳାନଳ
ସମସ୍ତେକେ ଲଂକାଗଡେ ସେହୁ ହୋଇଲେ ମହୀପାଳ । ୧୪୫ ।
ସେହୁ ବିରୋଧ କଲେ ଆକାଶ ସ୍ୱର୍ଗପୁରେ
ତାହାନ୍ତ ନାଶ କଲେ ହରି ଦାମୋଦରେ । ୧୪୬ ।
ତାହାଂକର ନନ୍ଦନ ହୋଇଲେ କେଶୀ ମହାକେଶୀ
କେଶବରୂପେ ହରି ତାହାନ୍ତ ଦର୍ପ ଧ୍ୱଂସି । ୧୪୭ ।
ତାହାଂକର ପୁତ୍ର ଯେ ଉପୁଜିଲେ ବଳୀ ମହାବଳୀ
ତାହାନ୍ତ ବଧ କଲେ ଦେବ ବନମାଳୀ । ୧୪୮ ।
ବଳୀ ମହାବଳୀର ପୁତ୍ର ମାଳୀ ଯେ ସୁମାଳୀ
ସମସ୍ତେକେ ଥିଲେ ସେ ଲଂକା ମହାସ୍ଥଳୀ । ୧୪୯ ।
ସମସ୍ତ ଦେବତାଂକୁ ଯେ ବଶ୍ୟାବୃତ୍ତି କରି
ଜନାର୍ଦ୍ଦନ ଅବତାରେ ମାଳୀ ଦୈତ୍ୟକୁ ଦଳି । ୧୫୦ ।
ସୁମାଳୀ ଦାନବ ତହୁଂ ପଳାଇଲା ଡରେ
ଭୟେଣ ଲୁଚିଲେ ଯାଇ ପାତାଳ ସୁର୍ଗପୁରେ । ୧୫୧ ।
ସେ ଲଂକାଗଡ ଶୂନ୍ୟ ଯେ ହୋଇଲା ସମସ୍ତେ
କେହି ଆତଯାତ ନୋହନ୍ତି ତହିଂ ପଦ୍ମଲଭର ଭୟେ । ୧୫୨ ।

---

୧୪୧।୨ ସୁଷ୍ଠରେ ରାଜ୍ୟ ଭୋଗ କରନ୍ତି ପାଇ ସୁଖ ।—ଖ, ଣ, ନ, ଠ

ବିଶ୍ରବା ଋଷି ଯେ ବଇବସ୍ୱତ ମନୁ ଘରେ ଥିଲେ
ବ୍ରହ୍ମା ନେଇ ତାହାଙ୍କୁ ଲଂକାରେ ରୁହାଇଲେ । ୧୫୩ ।
ଘରଣୀଂକ ସହିତେ ଲଂକାରେ ଥାନ୍ତି ବିଶ୍ରବା ମହଋଷ
ପାତାଳ ସ୍ୱର୍ଗପୁରୁଂ ଦିନେ ସୁମାଳୀ ଦୈତ୍ୟ ଆସି । ୧୫୪ ।
ମୀନମାସ ଶୁକଳ ପକ୍ଷ ଚଉଠୀ ଗୁରୁବାର
ମୃଗଶିରା ନକ୍ଷତ୍ର ଭୋଗ୍ୟ ସେ ଦିନର । ୧୫୫ ।
ବାଣ୍ଡିବ୍ୟ ନାମେ କରଣ ଆୟୁଷ୍ମାନ ନାମେ ଯୋଗ
ମୀନ ଘଣ୍ଟାକୁ ତେରଦିନ ଭୋଗ । ୧୫୬ ।
ସେ ଦିନ ସୁମାଳୀ ଯେ ଅଇଲା ମଧ୍ୟସ୍ୱର୍ଗେ
ସମସ୍ତ ରାଜ୍ୟ ବୁଲି ପଶିଲା ଲଂକାଭାଗେ । ୧୫୭ ।
ପୁରେ ପୁରେ ଦୈତ୍ୟ ଯେ ବୁଲିଲେ ଆମ୍ଭନ୍ତେ
ବିଶ୍ରବା ଋଷିଙ୍କୁ ସେ ଭେଟିଲା ଏକାନ୍ତେ । ୧୫୮ ।
କୋପକଲା ରାକ୍ଷସ ସେ ବିଶ୍ରବାକଇଂ ଦେଖି
କାଳଚକ୍ର ପ୍ରାଏକ ବୁଲାଇ ଦେନଆଖି । ୧୫୯ ।
କାହିଂର ବ୍ରାହ୍ମଣ ତୁରେ ମୋହୋର ପୁରେ ପଶୁ
ବ୍ରାହ୍ମଣ ହୋଇ କିଂପେ ଅସୁର ଭୂମିକି ଆସୁ । ୧୬୦ ।
ବିଶ୍ରବା ବୋଇଲେ ଆମ୍ଭନ୍ତ କୋପ ନ କର ରେ ବାବୁ
ତୋହୋର କୋପକଲେ ଆମ୍ଭେ କ୍ଷଣେହେଂ କମ୍ପେ ଥିବୁ । ୧୬୧
ତୁ ଯେବେ ଲଂକାଗଡର ଅଛୁ ଆହୋ ରାଏ
ତୋତେ ଦେବୁଂ ଆମ୍ଭେ ଅନ୍ନ ଯେ ପୂଜାଏ । ୧୬୨ ।
ଏତେ ବୋଲି ବିଶ୍ରବା ଭୋଜନ ତାକୁ ଦିଏ
ଭୁଞ୍ଜଇ ସୁମାଳୀ ଯେ ପରଶନ୍ତି ବିଶ୍ରବାଏ । ୧୬୩ ।
ଅନେକ ସନ୍ତୋଷେ ଭୁଞ୍ଜଇ ଅସୁରେଶ୍ୱର ରାଏ । ୧୬୪ ।
ଭୁଞ୍ଜଣ ନିବୃତ୍ତ ଯେ ହୋଇଲା ଦଇତ ଅରି
ନଚଏ ବ୍ରାହ୍ମଣ ତୁଲ୍ଲ ପ୍ରାପତ ହୋଇଲା ଲଂକାପୁରୀ । ୧୬୫ ।
ମୋହୋର ଅଛଇ ଯେ ଦୁହିତା ଗୋଟିଏ
ତାହାକଇଂ ପ୍ରଦାନ ତୁମ୍ଭେ ହୋଇବା ପଣ୍ଡାଏ । ୧୬୬ ।

ୟେ ଲଂକାଗଡ଼ ଭୁମ୍ୟନ୍ତ ହଲାଇଂ ଯଉତୁକ
ୟେ ଲଂକାଗଡ଼କୁ ଭୋଗ୍ୟକର ଅକଣ୍ଟକ । ୧୬୭ ।
ଉତରଣ ସନମତ କଲେ ବିଶ୍ରବା ମହାଋଷି
ସୁମାଳୀର ଦୁହିତା ବଡ଼ ହୋଇଲା ନଉକେଶୀ । ୧୬୮ ।
ମାଳୀଦତ୍ୟର ଦୂହିତା ପୁଷ୍ପଉତକଟ ନାମେ ଦୁଲଣୀ
ବିଶ୍ରବାକଇଂ ପ୍ରଦାନ କଲା ତାହାକୁ ଆଣି । ୧୬୯ ।
ମାଲ୍ୟବନ୍ତର ଦୁହିତା ପୁଷ୍ପ ଯେ ମାଳମା
ବିଶ୍ରବାକଇଂ ପ୍ରଦାନ କଲା ସେହୁ ଆଣି । ୧୭୦ ।
ବ୍ରାହ୍ମଣୀ ତାହାଂକର ଯେ ହୋଇଥିଲା ଗର୍ଭବଣ୍ଡ
ତାହା ତହୁଂ ପୁତ୍ରେକ ହୋଇଲା ଉତପତ୍ତି । ୧୭୧ ।
ବିଶ୍ରବାୟେ ଦେଖିଲେ ସୁସଞ୍ଚ ବାଳ ତନୁ
ସେ ପୁତ୍ରର ନାମ ହଲେକ ଶତମନୁ । ୧୭୨ ।
ପୁଣି ସମୟେକେ ନଉକେଶୀ ହୋଇଲା ଗର୍ଭବଣ୍ଡ
ତାହାର ତହୁଂ ରାବଣ ହୋଇଲା ଉତପତ୍ତି । ୧୭୩ ।
ପୁଣ ନଉକେଶୀର ପୁତ୍ରେକ ହୋଇଲା ଜାତ
ଅରୁଣତେଜ ବୋଲି ତାହାର ନାମ ବିଖ୍ୟାତ । ୧୭୪ ।
ସମୟେକେ ଖେଳୁଛନ୍ତି ଅରୁଣତେଜ ଶତମନୁ
ବାଳୁଆଳୀ ହୋଇଲେ ଦୁଇ ବାଳୁତ ତନୁ । ୧୭୫ ।
କୋପେ ଶତମନୁ କଟାକ୍ଷି ଚହିଂଲା
ନଉକେଶୀର ନନ୍ଦନ ଅରୁଣତେଜ ଭସ୍ମ ହୋଇଗଲା । ୧୭୬।
ଉରେଣ ନଉକେଶୀ ରାଇଲା ରାବଣ ନାମେ ବଳା
ୟେଥେ ଥିଲେ ମରିବୁ ବାବୁ ବନ୍ଧନ ହୋଇ ପଳା । ୧୭୭ ।
ମାତାର ବଚନେ ସେ କଲାକ ମହାଭୟେ
ପୁଷ୍ପକ ଆରୋହି ପଳାଇଲା ନଉକେଶୀର ତନୟେ । ୧୭୮ ।
ପଳାଇ ପଶିଲା ଆସି ମଉଦଧି ଉତ୍ତର ତଟେ
ୟେକାମ୍ବର ନାଥକଇଂ ଭେଟିଲା ନିକଟେ । ୧୭୯ ।

---

୧୭୨।୧ ଦେଖିଣ ସାନନ୍ଦ ଯେ ହୋଇଲେ ମୁନି ତନୁ ।—ଣ, ଚ, ଖ

ସୁବର୍ଣ୍ଣଚୂଡ଼ ପର୍ବତ ଦକ୍ଷିଣ କୋଣ ଭାଗେ
ବାଣେକ ଥୋଇ ଜପଇ ମହାମନ୍ତ୍ର ଯୋଗେ । ୧୮୦ ।
ସମସ୍ତ ନିରୋଧିଲା କାଳ କାମ କ୍ରୋଧ ନିଦ୍ରା
ଅଶୀ ସହସ୍ର ବରଷ ବସିଲା ଯେକମୁଦ୍ରା । ୧୮୧ ।
ଚର୍ମାର କୁଣ୍ଡେଣ ସେ କଲ୍ପକ ଆହୁତ
ଶରୀରୁ ମାଂସ କାଟି ପକାଇ ତହିଁ ନିତ । ୧୮୨ ।
ଯେ ମହାକଷ୍ଟୋର ଦେଖିଣ ବିଜୟେ ଯୋଗେଶ୍ୱର
ଭୋଳେଣ ରାବଣ ଜାଇଂ ପ୍ରସନ୍ନେ ଦିଲେ ବର । ୧୮୩ ।
ଚଉରାଶୀ କୋଟି ଅମର ବର ମାଗିଲା ଯାତୁଧାନ
ବୋଇଲା:ମୋହୋର ହୋଇବ ଦଶଇ ବଦନ । ୧୮୪ ।
ଯେକ ଶରୀରେ ହୋଇବ ମୋହୋର କୋଡ଼ିଯେ ଯେ ଭୂଜ
ନାଗ ନର ଦେବଲୋକେ ହେବି ଯେକରାଜ । ୧୮୫ ।
ଭୋଳେଣ ପ୍ରସନ୍ନ ଯେ ହୋଇଲେ ସୋମୟା
ଅଙ୍ଗୁଠ ଅପୁଂଠ ହୋଉ ରାବଣ ତୋର କାୟା । ୧୮୬ ।
କଞ୍ଚିତ ଭଗତେ ସେ କଲେ ବହୁତ ସଦୟା
ବାବୁ ଯେ ଲିଙ୍ଗଗୋଟି ହାତେ ରାବଣ ସୋମୟା । ୧୮୭ ।
ଯେହାଙ୍କୁ ସେବାକର ଯେ ଯାହା କରନ୍ତି ଇଚ୍ଛା
ପ୍ରତକ୍ଷେ ମହାଦେବ ପୂରିବନ୍ତି ମନବାଞ୍ଛା । ୧୮୮ ।
କଉସିକ ମୁନିଂଙ୍କ ବଚନେ ସାନନ୍ଦ ଧର୍ମରାଯେ
ସେ ସୋମାୟା ଲିଙ୍ଗଙ୍କୁ ବହୁତ ସ୍ତୁଅନ୍ତି ବନଯେ । ୧୮୯ ।

---

୧୮୦ { ସୁବର୍ଣ୍ଣଚୂଡ଼ ପର୍ବତ ଦକ୍ଷିଣ କଣ୍ଡରେ
ବାଣେକ ଆପି ଜପଇ ମହାମନ୍ତ୍ର ଗାଢେ ।—ଡ. ବ }

୧୮୧।୨ ସମସ୍ତ ନିରୋଧିଲା ବସିଲା ଯୋଗମୁଦ୍ରା ।—ଘ, କ, ଡ

୧୮୩।୨ ଭୋଳେଣ ପ୍ରସନ୍ନ ଯେ ହୋଇଲେ ଦେବ ହର ।—ଖ, ଛ, ଣ, ଢ, ନ, ତ

୧୮୫।୨ ନରଲୋକେ ଅବଧ ମୁଂ ହୋଇବ ଦେବରାଜ ।—ଜ, ଘ

ବାବୁ ଯେ ହାଦେ ଅଛଇ ଅମାପତ ସରଇଂ
ଯେଉଥେ ସ୍ନାହାନ କଲେ ଅନେକ ପାପ ଯେ ହରଇ । ୧୯୦ ।
ଯେଉଥେ ସ୍ନାହାନ କରି ପୁଷ୍କେଶ୍ୱର ଲିଙ୍ଗ ଦେଖ
ଗତ ଆଗତ ଜନ୍ମର ପାତେକ ଉପେଖ । ୧୯୧ ।
କଉସିକେ ବୋଇଲେ ବାବୁ ଶୁଣ ଧର୍ମବାଳ
ଯେ ସେ ମହାଲିଙ୍ଗ ହାଦେ ଅଛନ୍ତି କପିଳ । ୧୯୨ ।
ତେତାୟା ଯୁଗରେ ରାମ ରାବଣକଇଂ ମାରି
ବିଭୀଷଣକୁଇଂ ରାଜ୍ୟ ସମର୍ପି ସୀତାଂକୁ ଘେନି ଆସନ୍ତି ବାହୁଡି । ୧୯୩ ।
ଶ୍ରୀ ରାମଚନ୍ଦ୍ର ଲିଙ୍ଗ ଗୋଟିକ ଆରାଧି
ରାମେଶ୍ୱର ବୋଲି ଲିଙ୍ଗେକ ଥାପିଲେ ସେ ବୋଧି । ୧୯୪ ।
ସୁଗ୍ରୀବର ନୃପତି ଯେ ଲିଙ୍ଗଟିଗୋଟି କଲେ ପୂଜା
ଭୁବନେଶ୍ୱର ଆଧିପତି ସେ ଭୁବନେଶ୍ୱର ଲିଙ୍ଗରାଜା । ୧୯୫ ।
ଜମ୍ବେବ ପୂଜଲେ ଯେ ଜମେଶ୍ୱର ମହାଲିଙ୍ଗ
ଶତବାଳୀ ପୂଜିଲା ଈଶାଣେଶ୍ୱର ଲିଙ୍ଗ । ୧୯୬ ।
ହନୁମନ୍ତ ପୂଜଲେ ସେ ସୁରେଶ୍ୱର ଦଇବତ
ଶଙ୍ଗେଶ୍ୱର ଦେବଂକୁ ପୂଜିଲା ହରିନାଥ । ୧୯୭ ।
ବ୍ରହ୍ମା ପୂଜଲେ ବ୍ରହ୍ମେଶ୍ୱର ଦେବ କାଶୀ
ନାରଦେଶ୍ୱର:ବୋଲି ଲିଙ୍ଗେକ ପରକାଶି । ୧୯୮ ।
ଲିଙ୍ଗେକ ପୂଜଲେ ଯେ ଦକ୍ଷ ପ୍ରଜାପତି
କୁତ୍ତେଶ୍ୱର ବୋଲି ଲିଙ୍ଗେକ ଆଧିପତି । ୧୯୯ ।
ଯମଦେବତା ପୂଜଲେ ଯମେଶ୍ୱର ଲିଙ୍ଗ
ମରୁତେଶ୍ୱରଂକୁ ସ୍ଥାପି ପୂଜଲେ ଧନେଶ୍ୱର ବେଗ । ୨୦୦ ।
ମହାକ୍ଷେତ୍ର ଦେଖି ସେ ତେତିଶ କୋଟି ଦେବେ
ସମସ୍ତେହେଂ ପୂଜା ଘେନୁଛନ୍ତି ଯେତ୍ହାଠାବେ । ୨୦୧ ।

---

୧୯୪।୨ ରାମେଶ୍ୱର ବୋଲି ନାମ ଯେ ପ୍ରସିଦ୍ଧି ।—ଥ,' ଠ

୧୯୬।୨ ଜମ୍ବେବ ପୂଜଲେ କପିଳେଶ୍ୱର ମହାଲିଙ୍ଗ ।—ଥ, ଜ, ଝ, କ, ଠ, ଳ

ଦେବତାଙ୍କୁ ବର୍ଜ୍ଜକଲେ ମଧ୍ଯ ଯେ ଆକାଶେ
ବାସୁକି ବର୍ଜ୍ଜକଲେ ଯେ ଯୋହୁ ଭୁବନ ବାସେ । ୨୦୨ ।
ସେହୁ ବସିଲେ ଯୋଥେଂ ଲିଙ୍ଗରୂପ ଧରି
କୋଟିଙ୍କୁ ତୀର୍ଥ ଯେନ ଯୋଥେ ପୁଷ୍କର ବର୍ଜ୍ଜକରି । ୨୦୩ ।
ତହୁଂଣ ପାଣ୍ଡବେ ଚଳଣ ହାଦେ ଗଲେ
ଭାସ୍କର ତୀର୍ଥେ ଯାଇଂ ପ୍ରବେଶ ହୋଇଲେ । ୨୦୪ ।
ଚନ୍ଦ୍ରଭାଗା ଦେବ ଦକ୍ଷିଣେ ମହୋଦଧି
ସ୍ନାହାନ କଲେ ତହିଂ ପାଣ୍ଡବ ଗୁଣନିଧି । ୨୦୫ ।
ଯୁଧିଷ୍ଠିର ଦେବ ତହିଂ ପଚାରିଲେ ବାରତା
କହିବା ମୁନି ହେ ଯୋହୁ ଅର୍କତୀର୍ଥର କଥା । ୨୦୬ ।
ତାହାର ପୁତ୍ର ସେହୁ କଲା କେଉଂଣ ଦୋଷ
କେଉଂଣ ପ୍ରକାରେ ତାକୁ ବିରଞ୍ଚି ନାରାୟଣ କଲେ ନାଶ । ୨୦୭ ।
ବଦନ୍ତି ମାରକଣ୍ଡେ ଶୁଣ ହୋ ପଣ୍ଡୁସୁତ
କୃତାନ୍ତକ ଦଇତତହୁଂ ଜାତ ଅର୍କ ଯେ ଦଇତ । ୨୦୮ ।
ଅମର ବିବାଦେ ଜମ୍ଭୋଦୈତ୍ୟ ଇନ୍ଦ୍ର କଲା ହତ
ଶିରଗୋଟି ତାର ଛେଦିଲା ସୁରନାଥ । ୨୦୯ ।
ଦୁଃସହ ସମରେ ଜମ୍ଭୁଦୈତ୍ୟ ଶିର ଛେଦି
ତେଣୁ ସେ ଇନ୍ଦ୍ରନାମ ବହିଲା ଜମ୍ଭୋଭେଦୀ । ୨୧୦ ।
ସେ ଜମ୍ଭୁଦୈତ୍ୟର ପୁତ୍ର ଅଛଇ କୃତକେଶୀ
ହିରଣ୍ୟ ହିରଣାକ୍ଷ ବୋଲି ତାହାର ବେନି ଶିଶି । ୨୧୧ ।
ହିରଣାକ୍ଷର ପୁତ୍ର ମଧୁ ଯେ ଦାନବ
ସେ ଯେ ନିରୋଧିଲା ଭୂବି ଭୁବନ ସର୍ବ । ୨୧୨ ।
ମଧୁ ଦାନବର ପୁତ୍ର ନାମ କାନ୍ତିମାଳା
ଯୋହାର କୁମର ଯେ ହୋଇଲା ବିଡୋଳା । ୨୧୩ ।
ବିଡୋଳାର ପୁତ୍ର ଯେ ଅଛଇ ଭାସ୍କର
ଅର୍କ ଦଇତ ବୋଲିଣ ଯେ ପୁତ୍ରେକ ତାହାର । ୨୧୪ ।
ବଡାଇ ପ୍ରତାପୀ ସେ ଅର୍କ ଦଇତାରି
ରହିଲା ଦଇତ ଯୋହି ତୀର୍ଥେକ ଆବୋରି । ୨୧୫ ।

ମନୁବଂଶେ ଜାତ ପଦ୍ମନାଭ ନରପତି
କଣ୍ୟୁବନ୍ଦୁ ବୋଲି ତାହାର ସନ୍ତତି । ୨୧୬ ।
ବଡାଇ ପ୍ରତାପୀ ସେ ହୋଇଲାକ ରାଜା
ବଡ ସୁଚରିତ୍ରେ ସେ ପାଳଇ ଜନ ପ୍ରଜା । ୨୧୭ ।
ଯେଉଁକା ମାତଙ୍କେ ଜନାୟେ ଦ୍ୟୁମନ୍ତ ଋଷୀ
ସମୁଦ୍ରର ପର୍ଯ୍ୟନ୍ତ ଆୟେ କରନ୍ତି ଦୁଇରାଶି । ୨୧୮ ।
ଭଗ୍ନପାଦ ବେଳେ ରାଜ୍ୟେ ବସିଲାକ ପାପ
ରାଜ୍ୟଯାକ ଭଗନ ହୋଇଲା ଦରିଦ୍ରବାସୀ ହୋଇଲା ସମରାଷ୍ଟ୍ର । ୨୧୯ ।
ସଂସାର ବିକଳ ଦେଖି ବିଚାରଇ ରାଜନ
ପରଜାର ଦୁଃଖିତେ ରାଜାର କିସ ପୁଣ୍ୟ । ୨୨୦ ।
ବିଚାରଇ ନୃପତି ମୁଁ କରତାକଇଂ କରିବି ସେବା
ରାଜ୍ୟଯାକ ମୋର କଣ୍ୟ ବୃଷ୍ଟି କରାଇବା । ୨୨୧ ।
ପୁତ୍ରକଇଂ ରାଜ୍ୟଭାର ସମର୍ପି ମହୀପତ୍ୟେ
ବସିଲା ନିରାଟଣ ଚନ୍ଦ୍ରଭାଗା ମହୋଦଧି ଅର୍କକ୍ଷେତ୍ରେ । ୨୨୨ ।
ନିରାଟଣ ବସିଣ ସେବା କରଇ କରତାର
ଯେଉଁକା ଆସନେ ବସିଲା ପଞ୍ଚଦଶ ବର୍ଷର ନରାଧାର । ୨୨୩ ।
ବିଚାର ଗୁଣଇ ସେ ଅର୍କ ନାମେ ଦଇତ
ମହାତପୀ ହୋଇଲା ଯେଉଁହାର ଚରିତ କେମନ୍ତ । ୨୨୪ ।
ନ ପୁଣ ମୋର ପଦ ନେବ ମାଗିଣ ବିରଞ୍ଚି
ରାଜାକୁ ମାରିବ ବୋଲି ହୃଦଗତେ ପାଞ୍ଚି । ୨୨୫ ।
ମକର ମାସ ଶୁକଳପକ୍ଷ ଚତୁର୍ଥୀର ଦିନ
ଚନ୍ଦ୍ରଭାଗାୟେ ଦେଖିଲା ସ୍ୱାମୀର ବର୍ଣ୍ଣ ଚିହ୍ନ । ୨୨୬ ।
ଅନେକ ସ୍ତୁତି କରି ସେ ହୋଇଲା ପରଣାମି
ଆକାଶେ ଥାଇ ତାହା ଦେଖିଲେ କରତାର ଦେବସ୍ୱାମୀ । ୨୨୭ ।
ପ୍ରଣପତ୍ୟ ହୋଇଲେ ଯେ ଶୁଣିଲା ନରପତି
ଦେଖିକରି ଅର୍କ ଦଇତ ଧାଇଁଲା ତତକ୍ଷଣାନ୍ତ । ୨୨୮ ।
ଲୋହାର ଲଉଡ଼ି ଯେଉଁକ ଧରିଅଛି ହାଥେ
ପ୍ରହାର କରିବ ଆଜ ପାମରର ମାଥେ । ୨୨୯ ।

ଲକ୍ଷେ ଯୋଜନେ ଥାଇଂ ତାହା ଦେଖିଲେ କରତାର
ନୁହଇ ନୁହଇ ବୋଲି ବଢ଼ାଇ ଦିଲେ କର । ୨୩୦ ।
ଅର୍କ ଦଇତ ଦେବ ଧଇଲେକ ଶିର
ଅଦୋଷେ କମ୍ପେ ତୁ ପ୍ରହାର କର ରେ ଅସୁର । ୨୩୧ ।
ଅର୍କଦୈତ୍ୟଙ୍କୁ ବିରଞ୍ଚି ଧଇଲେ ଆକ୍ଷେପି
ମହାବଳବନ୍ତା ଦୈତ୍ୟ ସମରେ ନ ଘୁଞ୍ଚି । ୨୩୨ ।
ଅର୍କ ଦଇତର ଭୁଲେ ଦେବ କଲେକ ସାଂଗ୍ରାମ
ବଢ଼ିଲା ରଣରଙ୍ଗ ସାଂଗ୍ରାମ ଅବିଶ୍ରାମ । ୨୩୩ ।
ଚଉଠୀ ପଞ୍ଚମୀ ଷଷ୍ଠୀ ସୁନ୍ଦିବ ଦିନହିଁ ଦିନ
ମହାଘୋର ସମରେ ହାରିଲା ଯାତୁଧାନ । ୨୩୪ ।
ମକର ମାସ ଶୁକ୍ଳପକ୍ଷ ସପତମୀ ରାତି
ଅର୍କ ଦଇତକୁ ଦେବ ଧଇଲେ କୋପମୂର୍ତ୍ତି । ୨୩୫ ।
ବିରଞ୍ଚି ନାରାୟଣ ହୋଇଲେ ତେସନ
ଦୈତ୍ୟର ଭୁଜ ସେହୁ ଧରିଲେ ଆକ୍ଷେପିଣ । ୨୩୬ ।
ଚନ୍ଦ୍ରଭାଗା ତୀରେ ଥିଟଲ ଯେ ଚନ୍ଦ୍ରଗିରି ପର୍ବତ
ତହିଂ ନେଇ କଚାଡ଼ିଲେ ଦେବ ଅର୍କ ଯେ ଦଇତ । ୨୩୭ ।
ସେ ଚନ୍ଦ୍ରଚୂଡ଼ ଗିରି ଅସୁର ପଡ଼ି ଚୂରିଗଲା
ସେ ଅର୍କ ଦଇତର ଦେହ କଚ୍ଛିହିଂ ନୋହିଲା । ୨୩୮ ।
ସୂର୍ଯ୍ୟାବ୍ରତେକ ଚକ୍ର ମାଇଲେ ଦେବ ତୋଳି
ଅର୍କଦୈତ୍ୟର ଦେହେ ପଡ଼ି ଚକ୍ର ହୋଇଲାକ ଧୂଳି । ୨୩୯ ।
କେଉଁଣସି ପ୍ରକାରେ ସେ ନାଶ ନୋହିଲା କଙ୍କଣୋପ
ମାଉଣ ବସିଲେ ଦେବ ହୋଇ ବିଶ୍ୱରୂପ । ୨୪୦ ।
ଅର୍କ ଦଇତକୁ ମାଡ଼ି ବସିଲେ ବକ୍ଷସ୍ଥଳେ
ବିଜୟେ ବିରଞ୍ଚି ନାରାୟଣ ଚନ୍ଦ୍ରଭାଗା ବାରିନିଧି କୂଳେ । ୨୪୧ ।
ଚଳିଗଲେ ବାରିନିଧି ଅଗ୍ନିକୋଣ ଆଡ଼େ
ଅର୍କ ଦଇତକୁ ମାଡ଼ି ବସିଲେ ମଉଦଧି ପଶ୍ଚିମ କଗ୍ଭଡ଼େ । ୨୪୨ ।

ପୃଥିବୀର ଅଗ୍ନି କୋଣେ ବିଜୟେ ଜଗତ ଜ୍ୟୋତି
ତେଣୁ ସେ କୋଣାର୍କ ତୀର୍ଥ ଜଗତେ ବିଖ୍ୟାତି । ୨୪୩ ।
ସେ କଣୟୂବନ୍ଦୁ ରାଜାଙ୍କୁ ଅର୍କ ପ୍ରସନ୍ନ ହୋଇଲେ
ସାତଘଡ଼ି ପର୍ଯ୍ୟନ୍ତେ ତାହାର ରାଜ୍ୟେ କଣୟୂ ବରଷିଲେ । ୨୪୪ ।
ଶୁଣ ଆହୋ ଯୁଧେଷ୍ଠି ବଦୟନ୍ତି ମାର୍କଣ୍ଡେ
ସେହି କୋଣାର୍କ ତୀର୍ଥ ପବନ ଭୂଥଖଣ୍ଡେ । ୨୪୫ ।
ମଉଦଧିରେ ସ୍ନାନ କର ଚନ୍ଦ୍ରଭାଗା ତୀର୍ଥ ଦାହି
ବିରଞ୍ଚି ନାରାୟଣଙ୍କ ବଦନ ଯେବେ ଗୃହ୍ନଂ । ୨୪୬ ।
ଜୟତୁ ଜୟତୁ କମଳ ଲୋଚନ ପୀତବାସ
କରୁଣାକର ନାଥ ପ୍ରସନ୍ନ ଆଦେଶ । ୨୪୭ ।
ଜୟତୁ ଦିନକର ନାଥ ଗଗନ ଚୂଡ଼ାମଣି
ଭଗତ ଜନମାନଙ୍କୁ ସଦୟା ଦିନମଣି । ୨୪୮ ।
ଅର୍କ ବିଦାରଣ ନାଥ ଭଗତ ଉଦ୍ଧାର
ସଦୟ ଉଦ୍ଧାରଣ ନାଥ ବ୍ରହ୍ମାଣ୍ଡ ଅଧିକାରୀ । ୨୪୯ ।
ସଂଗ୍ୟାଂର ବଲ୍ଲଭ ତୁ ପ୍ରସନ୍ନ ସଦୟେ
ଯାବତ କାଳକୁ ନାଥ ତୁହି ସେ ବରଦାୟେ । ୨୫୦ ।
ତିମିର ବିଦାରଣେ ନାଥ ତୁ ପ୍ରସନ୍ନ ଅନାଦି
ଦ୍ରଣନେ ସଂସାର ସାଗର ସଂସିଦ୍ଧି । ୨୫୧ ।
ନମୋ ନମୋ କମଳଲୋଚନ କରତାର
ପ୍ରଳୟ କାଳ ବଞ୍ଚାନ୍ତା ତୁହି ସେ ଭାସକର । ୨୫୨ ।
ସଜ୍ଜନ ତାରଣ ନାଥ ତୁ ଯୋଗେଶ୍ୱର ସ୍ୱାମୀ
ତବ ଚରଣ ପଂକଜ ନାଥ ମମ ପରଣାମି । ୨୫୩ ।

---

୨୪୩।୧ ପୃଥୀର ଭାରତର ଉଶ୍ୱାସି ଶ୍ରୀପଥ ।—ଣ, ଝ, ଠ, ଖ

୨୪୩ { ପୃଥିବୀର କୋଣେ ବିଜୟେ ସଂଗ୍ୟାପଥ
ତେଣୁ କୋଣାସ୍ୱେକ ତୀର୍ଥ ବୋଲ ହୋଇଲା ଯୁଗତ ।—ଙ୍

୨୪୭ { କଉଶିକଂକ ବଚନେ ବିଚନ୍ଧବୀର୍ଯ୍ୟ ନାଥ
ଧ୍ୟାନେ ଲୟକରି ତାଂକୁ କଲେ ବହୁ ସ୍ତୁତ ।—ଝ, ନ

ତ୍ରୈଲୋକ୍ୟ ପାଳନ ନାଥ ନମସ୍ତେ ନାରାୟଣ
ଯେଣୁ ଅଗଣ୍ଡ ସଂସାରକୁ ନାଥ ତୁମ୍ଭ ସେ କାରଣ । ୨୫୪ ।
ତବ ପଦ୍ମପାଦେ ଭକତି ଭାବେ ସେବା
କାଳ ବଞ୍ଚାଇଲୁ ନାଥ ସାରୋଳ ଦାସ କବି । ୨୫୫ ।
ଶୁଣ ହୋ ଯୋଗେଶ୍ୱର ବଦନ୍ତି ବ୍ରହ୍ମବେତ୍ତା
ଯୁଧିଷ୍ଠି ଆରାଧନା କଲେ ବିରଞ୍ଚି ନାରାୟେଣ ଦେବତା । ୨୫୬ ।
ମକର ମାସ ମଧ୍ୟେ ମଉଦଧି ଚନ୍ଦ୍ରଭାଗା
ଯେଣୁଥେଂ ସ୍ନାହାନ କଲେ ଖଣ୍ଡିବ ରୋଗବାଧା । ୨୫୭ ।
ବାବୁ ଯେଣୁ ତୀର୍ଥେ ସ୍ନାନକର ଯେ ବୁଡାଇବ ମଥା
କାଳକର ଦୁଷ୍ଟୁକୃତ ଯେ ଖଣ୍ଡିବ ସର୍ବଥା । ୨୫୮ ।
ମକର ମାସେ ଚନ୍ଦ୍ରଭାଗା ମଉଦଧି ମଧ୍ୟସ୍ଥାନେ
ଯେବଣ ଜନ ଯେଣୁଥି ଯେ କରନ୍ତି ପିଣ୍ଡଦାନେ । ୨୫୯ ।
ଦ୍ୱାଦଶ ପୁରୁଷ ଯେ ଯାଆନ୍ତି ଦେବଲୋକେ
ବଂଶେ ଅଗଣ୍ଡ ଯେ ନ ଥାଇ ପିତୃ ଗଣଂକେ । ୨୬୦ ।
ଅନ୍ୟ ଶ୍ରାଦ୍ଧ ସର ନୋହେ ଦ୍ୱାଦଶ ପରିଯନ୍ତେ
ଯେଣୁଥେଂ ପିଣ୍ଡ ଦିଲେ ଯେ ତରନ୍ତି ସମସ୍ତେ । ୨୬୧ ।
ବାବୁ ଯେଣୁଥେ ସ୍ନାହାନ କରି ଯେ ପୂଜନ୍ତି ବିରଞ୍ଚି
ଗଳିତ କୁଷ୍ଟ ବ୍ୟାଧି ଥିଲେ ପକାଇ ସର୍ବ ପୋଛି । ୨୬୨ ।—। ୪୯୮ ।

———

୨୬୨।୨ କ, ଖ, ଘ, ଛ, ଞ୍ଜ, ତ, ଥ, ପୋଥିମାନଙ୍କରେ ଶ୍ଳୋକ ସ୍ଥିତ ଅଛି ଯାହାକି ଚ, ଜ, ଝ, ଞ, ଠ, ଡ, ' ଢ, ଣ, ଦ, ନ ପୋଥିମାନଙ୍କରେ ନାହିଂ :—
ଶୁଣ ହୋ ମହାରାଜା ଅର୍କତୀର୍ଥର କଥା
ଅର୍କ ଦଇତକ ମାର ଯେଣୁଥେ ଭଜୟେ ବିରଞ୍ଚି ଦେବତା ।
ଯୁଧିଷ୍ଠି ଦେବେ ତାଂକୁ କଲେକ ବହୁତ ଗୁସ୍ତି
ଜଗ୍ଗୁରୁ ପରମେଶ୍ୱର ଅନାଦି ମୂରତି ।

(ଅବଶିଷ୍ଟାଂଶ ପରପୃଷ୍ଠାରେ)

(ପୂର୍ବପୃଷ୍ଠାର ପାଠାନ୍ତର)

ଜୟତୁ ପରମେଶ୍ୱର ଉଦୟେ କରତା
ଜୟତୁ ପରମେଶ୍ୱର ତିମିର ବିଦାରନ୍ତା ।
ଜୟତୁ ପରମେଶ୍ୱର ପରମ ସାନନ୍ଦେ
ଜୟତୁ ପରମେଶ୍ୱର ଜୟତୁ ପରମାନନ୍ଦେ ।

ଜୟତୁ ପରମେଶ୍ୱର ଯୁଗାନ୍ତେକ କାଳ ବିଞ୍ଚା[?]
ଜୟତୁ ପରମେଶ୍ୱର ସମ୍ଭୁଳ[?] ଜନ ସଞ୍ଚା ।
ଜୟତୁ ପରମେଶ୍ୱର ଅର୍କ ନିଶୋଧନ
ଜୟତୁ ପରମେଶ୍ୱର ଜଗତ ପ୍ରବୋଧନ ।

ଜୟତୁ ପରମେଶ୍ୱର ଗ୍ରହଂକ ଆଦିମୂଳ
ଜୟତୁ ପରମେଶ୍ୱର ଅନାଦି ଲୋକପାଳ ।

ଜୟତୁ ପରମେଶ୍ୱର ଉଦୟସ୍ତେ[?] ଗିରି ପ୍ରଦକ୍ଷିଣ
ଜୟତୁ ପରମେଶ୍ୱର ଅନାଦି ନିରଞ୍ଜନ । ୮ ।

ଜୟତୁ ପରମେଶ୍ୱର ଦିବସ ଅବିଶ୍ରାମି
ଜୟତୁ ପରମେଶ୍ୱର ଦିବାରାତ୍ର[?] ଭ୍ରମି ।

ଜୟତୁ ପରମେଶ୍ୱର ହେ ସହସ୍ର କିରଣ
ଜୟତୁ ପରମେଶ୍ୱର ମେରୁ ପ୍ରଦକ୍ଷିଣ ।

ଜୟତୁ ପରମେଶ୍ୱର ଦ୍ୱାଦଶ ନାମ ବହି
ନିରାକାର ମୂରତି ନାଥ ତୋତେ ନ ଦେଖନ୍ତି କେହି ।

ଜୟତୁ ପରମେଶ୍ୱର ଅନାଦି ମାରତଣ୍ଡ
ଯାହାର ଜ୍ୟୋତି ବିକାଶଇ ସପତ ବ୍ରହ୍ମାଣ୍ଡ ।

ଗଗନ ଲିଙ୍ଗ[?] ନାଥ ସମ୍ଭୁଳ[?] ଜନ ଚିନ୍ତାମଣି
ତୋହୋର ପ୍ରସନ୍ନେ ନାଥ ସମସ୍ତ ଦିନ ଗଣି ।

ନାଶକର ସିଅର[?] ଚରଣେ ନମାମି
ଶୂଦ୍ରମୁନି ସାରୋଳ ଦାସ ଶତେ ସହସ୍ର ଦଣ୍ଡ ପରଣାମି ।

# ଚନ୍ଦ୍ରଭାଗା ତୀର୍ଥେ ଶାମ୍ବଙ୍କର କୁଷ୍ଠବ୍ୟାଧି ମୋଚନ ଓ ଯୁଧିଷ୍ଠିରଙ୍କ ମହୋଦଧିରେ ମାଘସ୍ନାନ ଫଳ ବିବରଣ

ବାବୁ ଶ୍ରୀକୃଷ୍ଣ ନନ୍ଦନ ଶାମ୍ବ ଯେ କୁମର
ଦ୍ୱାରକାର ରକ୍ଷା ପାଳକ ସେ ପଶ୍ଚିମ ଦ୍ୱାର । ୧ ।
ତୁଳମାସ କୃଷ୍ଣପକ୍ଷ ପଞ୍ଚମୀ ଗୁରୁବାର
ମୃଗଶିରା ନକ୍ଷତ୍ର ଯେ ଅଟଇ ସେ ଦିନର । ୨ ।
ବିଷ୍ଟି ନାମେ କରଣ ଯେ ଅତିଗଣ୍ଡ ନାମେ ଯୋଗ
ତୁଳା ସଂକରାନ୍ତିକ ଯେ ପାଞ୍ଚଦିନ ଭୋଗ । ୩ ।
ସେ ଦିନ ନାରଦେ ବିଜେକଲେ ଦ୍ୱାରିକା
ଶାମ୍ବ କୁମର ହୋଇଛନ୍ତି ପଶ୍ଚିମ ଦ୍ୱାର ରକ୍ଷା । ୪ ।
ନାରଦଂକୁ ଦେଖି ସେ ହୋଇଲେ ପରଣାମି
ନାରଦେ ବୋଇଲେ କାହିଂ ଛନ୍ତି ତୋର ସ୍ୱାମୀ । ୫ ।
ବିହନ ହୋଇ ଯାଇ ହରିଂକ ବାରତା କହିବାବୁ
କ୍ଷଣେହେଂ ରହି ନୁଆରଇ ଆମ୍ଭେ ବିହନ ହୋଇ ଯିବୁ । ୬ ।
ଆକାଶର ବାରତା ବାବୁ ବିଡ଼ାଇ ସମ୍ବାଦ
ଦେବତାଂକ କାର୍ଯ୍ୟେ ମୋତେ ପେଷିଲେ ଜନ୍ମୋଦ୍ଭେଦା । ୭ ।
ଦ୍ୱାର ଛାଡ଼ି ମୁଂ ଯିବଇଂ ଭିତରକୁ
ନୋହିଲେ ଶ୍ରୀକୃଷ୍ଣଂକୁ ଘେନଆସ ମୋହୋର ଛାମୁକୁ । ୮ ।
ଶାମ୍ବ କୁମର ବୋଲେ ଶୁଣ ତପୋବନ୍ତେ
ଭିତରକୁ ଯିବାକୁ ତ ମନା ଅଛି ମୋତେ । ୯ ।
ଆଗ୍ୟାଂ ମେଣ୍ଟିଣ ମୁଂ କପରି ଯିବଇଂ ପିତା ପାଶ
ତାହା ଶୁଣି କୋପେ ଯେ କମ୍ପନ୍ତି ବ୍ରହ୍ମଶିଷ । ୧୦ ।
ଯଦ୍ୟପି ଯ୍ୟେ କଥା ନ କରିବୁଟି କୁମର
ନଚେତ୍ ଦ୍ୱାରକା ଆଜ ମୁଂ ଦହିବି ତୁମ୍ଭର । ୧୧ ।

କୁମର ବୋଇଲା ମୁନି ହେ କୋପ ଶାନ୍ତକର
ଯେବେତେ ବୋଲି କୁମର ଯେ ପଶିଲା ଅନ୍ତେଶ୍ୱର ପୁର । ୧୨ ।
ଦ୍ୱାରେଣ ନାରଦ ମୁନିକଇଂ ଗଲା ଯେ ରୁହାଇ
ଅନ୍ତେଶ୍ୱର ପୁରେ କୁମର ପଶିଲା ବେଗେ ଯାଇଂ । ୧୩ ।
ବିଜୟେ ଜଗନ୍ନାଥେ ଜମ୍ୱୋବନ୍ତି ପୁରେ
ପ୍ରିୟବନ୍ତି ମେଳେ ସେ କ୍ରୀଡାରଙ୍ଗ କୁତୂହୋଳେ । ୧୪ ।
ଶାମ୍ୱ କୁମର ଭେଟିଲା ପିତାମାତାଂକ ଉଚ୍ଛରଙ୍ଗ ବେଳେ
ଜମ୍ୱୁବନ୍ତି ବିଜେ ଜଗନ୍ନାଥଂକର କୋଳେ । ୧୫ ।
ଶାମ୍ୱ କୁମରକୁ ସେ ପ୍ରତକ୍ଷେ ଦେଖି ଦେଖି
ଲଜେଣ ମାହେଶ୍ୱରୀ ଗଲେ ଶୃଙ୍ଗାର ଉପେଖି । ୧୬ ।
ଆମ୍ଭା ବଇକୁଲ୍ୟ ହୋଇଲା ସ୍ୱାମୀର ରସ ଭଗ୍ନକରି
ରାଗେଣ ଶାପ ଯେ ଦିହ୍ଲେ ଦେବହରି । ୧୭ ।
ଆରେ ଆରେ ଶାମ୍ୱ କୁମର କଲୁ ତୁ ମନ୍ଦବୁଦ୍ଧି
ଶରୀରେ ହୋଉ ତୋର ଗଳନ୍ତ କୁଷ୍ଟ ବ୍ୟାଧି । ୧୮ ।
ନାରାୟଣଂକର ଶାପ ସେ ପ୍ରତକ୍ଷେ ମହାଗୁରୁ
ସେ ଦେବଂକର ଶାପ କେ ଅନ୍ୟଥା କରିପାରୁ । ୧୯ ।
ବାହାର ରୂପ ତାର ଭିତରକୁ ଗଲା
ଭିତର ରୂପ ହାଦେ ବାହାର ହୋଇଲା । ୨୦ ।
ଲିଙ୍ଗଭଗ୍ନ ବ୍ରହ୍ମହତ୍ୟା ହାଦେ ସବୁ ଦୋଷ
ଶୃଙ୍ଗାର ଭଗ୍ନ ଦୋଷ ତହିଂକ ପ୍ରକାଶ । ୨୧ ।
ଶାମ୍ୱକୁମର ବୋଇଲା ଦେବ ନୁହଇଂ ମୁଂ ଦୋଷୀ
ଦ୍ୱାରେଣ ବିଜେକଲେ ନାରଦ ମହର୍ଷି । ୨୨ ।
ଆକାଶର ବାରତା ବୋଲି ବଡ କଟାଳିଲେ ମୋତେ
ମୁନିଂକର କୋପେ ଦେବ ମୁହିଂ କହି ଅଇଲଇଂ ତୋତେ ।୨୩।

---

୧୫ { ପ୍ରେମରସେ ପଶିଛନ୍ତି ଦେବକୀର ବାଳ
ଶାମ୍ୱକୁମର ଦେଖିଲା ମାତାଂକର ଅଙ୍ଗସଙ୍ଗ ମେଳ ।—(ପାଠାନ୍ତର)

ବୋଇଲେ ହର ଆଗେ ଯାଇ କୁହସି ବଚନ
ନୋହିଲେ ମୋହର କୋପେ ପୁର ହୋଇବ ଦହନ । ୨୪ ।
ସ୍ୱାମୀ ବଚନେ ବଜେ କରିବା ନାରଦଂକ ତହିଂ
କଳହପ୍ରିୟ ମୁନି ନ ପୁଣ ପୁର ଦହି । ୨୫ ।
ବାବୁ ତୋତେ ନାଶକଲ ରେ କଳହପ୍ରିୟ ବୋଲେ
ନାରଦଂକ ତହିଂକ ଯେ ନାରାୟଣ ବଜେକଲେ । ୨୬ ।
ନାରଦେ ଦେଖିଲେ ଯେ ଶାମ୍ବ କୁମରକୁ
ଯେତେହେନେକ ଅବସ୍ଥା ବାବୁରେ କେହ୍ନ କଲୁ ତୁକୁ । ୨୭ ।
ନାରାୟେଣ ବୋଇଲେ ତୁମ୍ଭେ କଲ ଯେବଣ କୃତ୍ୟ
ତୁମ୍ଭରେ ନାଶଗଲା ମୋର ଅନଙ୍ଗ ସମାନେ ପୁତ୍ର । ୨୮ ।
ମୁନି ବୋଇଲେ ତୁମ୍ଭେ ତ ଭୂତ ଭବିଷ୍ୟ ଗମ୍ୟଂତା
ଉତ୍ତର ନୁଆଇଲ ଯେତେ ମୋର କଷଣ ବାରତା । ୨୯ ।
ମାନୁଷ୍ୟର କୋଳେ ଯେ ହୋଇଲୁ ଉତପତ୍ତି
ବଞ୍ଚିତ ନ ଗଲା ତୋତେ ମୃତଲୋକର ପ୍ରକୃତି । ୩୦ ।
ଶାମ୍ବ କୁମରକୁ ଦେଖି ମୁନି ହୋଇଲେ ବିକଳ
ମହାଗୁରୁ ଶାପ୍ୟ ତୋତେ ନୋହିଲା ନିଷ୍ଫଳ । ୩୧ ।
ତୁ ଯେବେ ଶାମ୍ବକୁମର ଚଳ ଯେତେହିକ୍ଷଣ
ଚନ୍ଦ୍ରଭାଗା ଅର୍କତୀର୍ଥେ ବଜାଏ ବରଞ୍ଚି ନାରାୟେଣ । ୩୨ ।
ପୃଥିବୀର କୋଣେ ଅର୍କଦଇତକୁ କରଣ ନାଶପାନ
ଶ୍ରୀ ମାରତଣ୍ଡ ଦେବତା ବୋଲି ତାର ନାମ । ୩୩ ।
ଧାତକୋଟି ତୀର୍ଥ ଯେ ବଜାଏ ତହିଂ ସବୁ
ସେ କୋଣାର୍କ ତୀର୍ଥେ ଯାଇ ବରଞ୍ଚି ସେବିବୁ । ୩୪ ।
ନାରଦଂକ ବଚନେ ଚଳିଲା ନାରାୟେଣଂକ ସୁତ
ଚନ୍ଦ୍ରଭାଗା ତୀର୍ଥେ ଯାଇ ବଜାଏ ତୁରିତ । ୩୫ ।

---

୩୦।୨ ଚଞ୍ଚଳ ଚଉ ତୋର ମନୁଷ୍ୟ ପ୍ରକୃତ ।—ଖ, ଣ

ଆହାର ମଇଥୁନ ନଦ୍ରା ତାର ନାହିଂ କିଛି
ପବନ ଆହାରେ ସେ କୁମ୍ଭଦ ନାଡ ଭକ୍ଷି । ୩୬ ।
ମନ ବଚନ କର୍ମବ୍ୟେ ବରଞ୍ଚି ନାରାୟଣଂକୁ ସେବା
ଦ୍ୱାଦଶ ବରଷେ ମେ ପ୍ରସନ୍ନ ହୋଇଲେ ଆଦ୍ୟଦେବା । ୩୭ ।
ବରଞ୍ଚି ନାରାୟଣଂକର ବଚନେଣ କରି
ମହାଗୁରୁ ଶାପ ଗଳୁଡ କୋଷ୍ଟ ହୋଇଲାକ ପାରି । ୩୮ ।
ନକଳଂକ ହୋଇଲା ସେ ମହା କୋଷ୍ଟବ୍ୟାଧି
ମହା କ୍ଲେଶରୁ ଶାମ୍ବ ହୋଇଲା ସସିଦ୍ଧି । ୩୯ ।
ନଷ୍କଳଂକ ହୋଇଲା ସେ ବାସୁଦେବଂକ ତନୟେ
ହେ ତୀର୍ଥର ମହିମାଂ ଶୁଣସି ଧର୍ମରାୟେ । ୪୦ ।
ଆହୋ ଯୁଧେଷ୍ଟିର ତୁ ବରଞ୍ଚି ନାରାୟଣ କର ସେବା
ପ୍ରସନ୍ନ ହୋଅନ୍ତୁ ତୋତେ ବରଞ୍ଚି ନାଥ ଦେବା । ୪୧ ।
ପ୍ରସନ୍ନ ବରଞ୍ଚି ନାରାୟେଣ ଦୟାର ସାଗର
ଅନେକ ଜନ୍ମାନ୍ତର ଦୁଷ୍କୃତ ଯାଉ ପାର । ୪୨ ।
ସେ ତୀର୍ଥେ ପାଣ୍ଡବେ ରହିଲେ ପଞ୍ଚ ରାସ
ଛହିଂ ବନେ କରଗଲେ ଦେବ ଧର୍ମସୁତ । ୪୩ ।
ରାମଚଣ୍ଡୀ ଦ୍ରଶନ କଲେ ରାମତୀର୍ଥେ
ଅଠାଅଶି ସହସ୍ର ଋଷି ଅଛନ୍ତି ସଗତେ । ୪୪ ।
ମାରକଣ୍ଡ ବୋଇଲେ ବାବୁ ହେ ସେ ରାମଚଣ୍ଡୀ
ଦକ୍ଷିଣ କୋଶଳେ ହେ ଗୁପତ ତୀର୍ଥଖଣ୍ଡି । ୪୫ ।
ବାବୁ ସୀତାୟା ହରଣ ଯହିଂ କଲାକ ରାବଣ
ମାଲ୍ୟବନ୍ତ ପର୍ବତୁଂ ଶ୍ରୀରାମଂକୁ ଆଣିଲା ବୀର ହନୁମାନ । ୪୬ ।
ମକର ମାସ ପ୍ରଥମ ପକ୍ଷ ପ୍ରତିପଦାର ଦିନ
ଅଶ୍ଳେଷା ନକ୍ଷତ୍ର ସେ ଦିନ ଭୃଗୁବାର ବିଦ୍ୟମାନ । ୪୭ ।
ଶ୍ରୀ ରାମଚନ୍ଦ୍ରେ ଯେ ବିଜୟେ କଲେ ହେଥେ
ଶୁଭଶମ୍ଭ ପୋତିଲେ ଲଂକାକୁ ସେତୁବନ୍ଧ ବାନ୍ଧିବା ନିମନ୍ତେ । ୪୮ ।

---

୩୯।୧ ଅନୁବ୍ରତେ ଶବ୍ଦରୁ ତାର ଝରଇ ମହୌଷଧି ।—ଝ, କ, ଖ

ସେଠାରେ ଶରଣ ଆସି ପଶିଲା ବିଭୀଷଣ
ବୋଇଲା ଭୋ ସ୍ୱାମୀ ସେଥି ଶୁଭଦେବାର ହୋଇଲା ଅକାରଣ ।୪୯।
ଉତ୍ତର ଭାଗରେ ଦେବ ଲଂକା ସିଂହଦ୍ୱାର
ପୂର୍ବ କଣ୍ଟକ ପ୍ରକୃତ ଶଂକା ଭୂମି କରିଧାର । ୫୦ ।
ସେହି ସଲଖେ ବନ୍ଧ ପାଡ଼ିଲେ ଦେବସ୍ୱାମୀ
ବନ୍ଧ ଲଗିବ ଯାଇଂ ମରଡ଼ା ଶାଳ ଭୂମି । ୫୧ ।
ବିଭୀଷଣର ବଚନେ ବିସ୍ମୟେ ରଘୁପତି
ତହୁଂ ଚଳିଗଲେ ଦେବ ଦକ୍ଷିଣ ମୂରତି । ୫୨ ।
ଯେଉଁଣ ଶିଳାଖମ୍ଭଗୋଟି ପୋତିଲେ ଶ୍ରୀରାମ
ଜ୍ୟୋତି ବୀଜମନ୍ତ୍ରେ ପୂଜିଲେ ଶ୍ରୀରାମ ଚଣ୍ଡୀ ନାମ । ୫୩ ।
ବାବୁ ଶ୍ରୀରାମଚନ୍ଦ୍ର ଦର୍ଶନେ ଯେତେକ ଫଳଶ୍ରୁତି
ଇହଲୋକେ ପରଲୋକେ ପାଇ ସଦଗତି । ୫୪ ।
ସେ ମଉଦଧିରେ ସ୍ନାନକରି ପିଣ୍ଡ ଦିଲେ ରଘୁନାଥେ
ସେ ରାମକୁଣ୍ଡେ ମୁକତିଟି ହୋଇଲେ ରାଜା ଦଶରଥେ । ୫୫ ।
ଯୁଧିଷ୍ଠିର ଦେବେ ସ୍ନାହାନ କଲେ ମଉଦଧି
ଶ୍ରୀରାମକୁଣ୍ଡେ ସ୍ନାନକରି ରାମଚଣ୍ଡୀ ତୋଷିଲେ
                                        ଯେସନେକେ ବିଧି । ୫୬ ।
ଶ୍ରୀମନ୍ତ ମାତଙ୍ଗୀ ସୁପ୍ରସନ୍ନ ପରମ ବ୍ରହ୍ମରୂପୀ
ଦର୍ଶନେ ପ୍ରସନ୍ନ ଦେବୀ ତାରନ୍ତି ସର୍ବବ୍ୟାପୀ । ୫୭ ।
ଶୁଣ ହୋ ଚଇତନ ତହୁଂ ବିଜେକଲେ ଧର୍ମସୁତେ
ପ୍ରବେଶ ହୋଇଲେ ଯାଇଂ ଯମନ୍ତକ ତୀର୍ଥେ । ୫୮ ।
ମାର୍କଣ୍ଡେ ବୋଇଲେ ବାବୁ ମଉଦଧିରେ ସ୍ନାହାନ କର
ମୁକତ ମହାଲିଙ୍ଗ ସେ ଅଟନ୍ତି ଯମେଶ୍ୱର । ୫୯ ।
ଶୁଣ ହୋ ଯୁଧିଷ୍ଠିର ଦେବେ ବଦନ୍ତି ମାରକଣ୍ଡେ
ମହାତୀର୍ଥ ସେଟି ମଧ୍ୟମହୀ ଯେ ବ୍ରହ୍ମାଣ୍ଡେ । ୬୦ ।

୫୩।୨ ଯୋଗୀର ମନ୍ତ୍ରେ ପୂଜାକଲେ ଦେବ ରାମଚଣ୍ଡୀ ନାମ ।—ଖ,ଣ, କ,ନ
୫୬।୨ ରାମକୁଣ୍ଡେ ସ୍ନାହାନ ରାମଚଣ୍ଡୀ ପ୍ରବୋଧ ।—ଚ, ଉ

ବାବୁ ବ୍ରହ୍ମାଂକର ପୁତ୍ର ଯେ ସନନ୍ଦକ ମହର୍ଷି
ଅନେକ ସ୍ନେହ ତାଂକୁ କରନ୍ତି ବେଦାଭ୍ୟାସୀ । ୬୧ ।
ବ୍ରହ୍ମାଂକର ବାହାନ ସୁଚମୁଖ ଧବଳପକ୍ଷୀ
ସେ ସନନ୍ଦକ ମହର୍ଷି ଆରୋହିଲେ ତାର ପିଠି । ୬୨ ।
ଶରଧାରେ ଭ୍ରମିଲେ ସେ ସପତ ବ୍ରହ୍ମାଣ୍ଡ
ପାତାଳ ସୁତଳ ମହୀତେ ଯେ ମହୀ ନବଖଣ୍ଡ । ୬୩ ।
ନବଦ୍ୱୀପ ସପତ ସାଗର ଆଦିକର
କୁତୂହୋଳେ ଭ୍ରମଇ ସେ ବାଳଖିଲା ତପସ୍ୱୀ । ୬୪ ।
ବ୍ରହ୍ମାସ୍ତେ ବଜେ କରିବେ ଅମର ସଭାକୁ
ତଉକତ ଲୋଡନ୍ତି ସେ ବାହାନ ହଂସକୁ । ୬୫ ।
କରଯୋଡ ନାରଦେ ଯେ ଜଣାଇଲେ ଉତ୍ତର
ସ୍ୱାମୀ ସନନ୍ଦକ ଆରୋହିଲେ ମରୁଳ ପିଠିର । ୬୬ ।
ବଇଶମ୍ପାୟନ ବୋଇଲେ ମୁଂ ସନ୍ଧ୍ୟା କରିବାର ବେଳେ
ମରୁଳ ଚଢ଼ି ସନନ୍ଦକ ପଶୁଥିଲେ ପାତାଳେ । ୬୭ ।
ଶୁଣିଣ କୋପିତ ଯେ ହୋଇଲେ ବିଧାତା
ଭୃଗେଣ ଶାପିଲେ ହୋଇ କୋପ ଅପ୍ରମିତା । ୬୮ ।
କୋପେଣ ଶାପ ଯେ ଦିଲେକ ବେଦବ୍ୟାସ
ତୁରେ ସନନ୍ଦକ ମୋର ଗ୍ରାମକୁ ନୁଆସ । ୬୯ ।
ଯେବଣଠାରେ ଅଛୁ ରେ ସେହିଠାରେ ମତ
ଯୁଗେ ଯୁଗେ ଥାଅ ତୁହି ସେହି ଭୁବନରେଂ । ୭୦ ।
ପିତା ଶାପ ଦେଉଅଛନ୍ତି ଯେତେବେଳେଂ
ସନନ୍ଦକ ରହିଅଛନ୍ତି ବାଘନଦୀ ଉତ୍ତରକୂଳେ । ୭୧ ।
ପିତାର କୋପେ ସେ ଯେ ନଚଳ ହୋଇଲା
ସେହିଠାରେ ମହାତ୍ମା ହୋଇଣ ରହିଲା । ୭୨ ।

---

୬୧।୨ ଅନେକ ସ୍ନେହ ତାଂକୁ କରନ୍ତି ଦେବ କାଶୀ ।—ଚ, ଛ, ଝ
୬୭।୧ ବଇଶମ୍ପାସ୍ୱେନ ବୋଇଲେ ମୁଂ ସ୍ନାନ କରିବାର
ବେଳେ ।—କ, ଠ

ବ୍ରହ୍ମାର ନନ୍ଦନ ତୁମ୍ଭେ ସେ ଶ୍ରୀଲିଙ୍ଗ ପରମେଶ୍ୱର
ମହାଲିଙ୍ଗ ହୋଇ ବୃଜେକଲନ୍ତି ଯମନ୍ନକ ତୀର୍ଥର । ୭୩ ।
ଅନ୍ତରେ ରୁହାଇଲେ ନୀଳସୁନ୍ଦର ନାମେ ଗିରି
ନୀଳ କଳ୍ପବଟ ତୁମ୍ଭେ ବସଇ ଯୁଗସ୍ଥିର । ୭୪ ।
ମାରକଣ୍ଡେ ବୋଇଲେ ବାବୁ ଶୁଣ ତୁ ଯୁଧିଷ୍ଠି
ନାରାୟଣ ଅବତାର ହୋଇଛନ୍ତି ନବସୃଷ୍ଟି । ୭୫ ।
ଭାର ନଷ୍ଟେ କର ନାଶିବେ ସେ ଆପଣାର ବଂଶ
ସମସ୍ତ ନାଶକରି ଆପଣେ ହୋଇବେ ବରଷ । ୭୬ ।
କୁଞ୍ଜବନ କାଳିନ୍ଦୀ ଲତାତଳେ ଦେବଦ୍ୱାର
ମାଧବୀ ଲତାରେ ଥିବେ ଦୋଳରେ ବଜେକରି । ୭୭ ।
ତ୍ରେତୟା ଯୁଗେ ଶ୍ରୀରାମଚନ୍ଦ୍ରେ ବାଳିକି ବଧକଲେ
ଋଷ ହରବଳ ଘେନି ବାରିନିଧିକି ବାନ୍ଧିଲେ । ୭୮ ।
ଲଂକାଗଡ ରାବଣକୁ ଦେଲେ ଶ୍ରୀମୁଖ ଲେଖନ ଗୋଟିଏ
ଶ୍ରୀମୁଖ ଘେନି ଲଂକାକୁ ଗଲା ବାଳିର ତନୟେ । ୭୯ ।
ଲଂକାଗଡେ ଯାଇଂ ସେ ବହୁତ ପ୍ରତାପ୍ୟାଂ କଲା
ସିଂଘନ୍ତ ଭଙ୍ଗି କରି କପାଟ ଚୂରିକଲା । ୮୦ ।
କୁମ୍ଭକର୍ଣ୍ଣକଇଂ ଶୁଆଇଲା ଉତ୍ତର ଶିରକରି
ଅନ୍ତେଶ୍ୱରେ ମିଳ ଯହୁଂ ଅଛନ୍ତି ଅସୁନ୍ଦ୍ରୀ । ୮୧ ।
ମନ୍ଦୋଦରୀ କେଶ ଧରି ନେଲାକ ସଭାରେ
ଲଂକଦେବୀ ଅପମାନ କଲା ମହାବୀରେ । ୮୨ ।
ରାବଣର ମଥାରୁ ସେ ଭାଙ୍ଗି ଆଣିଲା ମୁକୁଟ
ଜଗତର ରୂଳ ଘେନି ଅଇଲା ବାଳିସୁତ । ୮୩ ।
ଶ୍ରୀରାମଚନ୍ଦ୍ରଙ୍କର ସମ୍ମୁଖରେ ମୁକୁଟ ରୂଳ ନେଇ ଥୋଇ
ଅଙ୍ଗଦ ଶୁତିଲା ଯେ ପ୍ରଣପତ୍ୟ ହୋଇ । ୮୪ ।
ଶ୍ରୀରାମ ବୋଇଲେ ବର ମାଗ କପିରାଜ
ଅଙ୍ଗଦ ବୋଇଲା ସ୍ୱାମୀ ପର ମନ ଜାଣୁ ଦେବରାଜ । ୮୫ ।

---

୮୨।୧ ମନ୍ଦୋଦରୀ କେଶ ଧରିଲା ବିଭୀଷଣ ଉତ୍ତରେ ।—ଙ,ଥ,ଜ
୮୫।୨ ଅଙ୍ଗଦ ବୋଇଲା ମୋ ମନ ଜାଣୁ ବୃଦ୍ଧ ଦଶରଥ ଆତ୍ମଜ୍ଜ।—କ,ତ

କସ ବର ମାଗିବ ମୁଂ ଜାଣି ଅନୁଗ୍ରହ କର
ଯେମନ୍ତେ କାର୍ଯ୍ୟ ମୋର ହୋଅଇ ହୃଦୟୂର । ୮୬ ।
ଶ୍ରୀରାମ ବୋଇଲେ ଶୁଣ ସୁଗ୍ରୀବ ଜାମ୍ବବ
ଅଙ୍ଗଦ ଯେ ଆମ୍ଭଂକୁ ମାଗିଲା ପ୍ରସ୍ତାବ । ୮୭ ।
କେ କେ ଜାଣି ପାରଇଛି ସେହାର ଯେ ମନ
ଜାମ୍ବବ ବୋଇଲା ସ୍ୱାମୀ ତୁମ୍ଭେ ସେ ସର୍ବ ଜାଣ । ୮୮ ।
ଗର୍ଭର କଥାମାନ ଆମ୍ଭନ୍ତ ଦୃଶ୍ୟ କାହିଂ
ତ୍ରଇଲୋକ୍ୟ ଚନ୍ତାମଣି ନାଥ ତୋ ତହୁଂ ଆନ ନାହିଂ । ୮୯ ।
ଶ୍ରୀରାମ ବୋଇଲେ ଆମ୍ଭେ ବଧିଲୁ ବାଳକ
ଅଙ୍ଗଦର ପିତୃ ଶତ୍ରୁ ହୋଇଲୁ ନାହିଂକ । ୯୦ ।
ମନେ ମନେ ଅଙ୍ଗଦ ଯେ ମାଗଇ ବାକ୍ୟ ସିଦ୍ଧ
ବୋଇଲା ମୋହୋର ହାଥେ ସ୍ୱାମୀ ହୋଇବ ତୁମ୍ଭେ ବଧ । ୯୧ ।
ଶୁଣିଣ ହନୁମନ୍ତ ଯେ ମହା କୋପକରି
ବୋଇଲା ଅଙ୍ଗଦ ରେ ମୁଣ୍ଡ ତୋର ପକାଇବ ମୋଡ଼ି । ୯୨ ।
ଶ୍ରୀରାମଚନ୍ଦ୍ରେ ବୋଇଲେ କୋପ ଛାଡ ହନୁ
ଦ୍ୱାପର ଯୁଗେ ସେହାର ହାଥେ ଛାଡିବୁ ଆମ୍ଭେ ତନୁ । ୯୩ ।
ଆହୋ ଅଙ୍ଗଦ ବାଞ୍ଛା ସିଦ୍ଧ ଆମ୍ଭେ କରିବୁ ତୋହୋର
ଦ୍ୱାପର ଯୁଗେ ତୁହି ଆମ୍ଭନ୍ତ ନାଶକର । ୯୪ ।
ସେ ଆମ୍ଭର ସତ୍ୟ ସତ୍ୟ ଅଟଇ ଯଥାର୍ଥ
ଦ୍ୱାପରେ ଶରୀର ବସର୍ଜିବୁ ତୋହୋର ଯେ ହାଥ । ୯୫ ।
ଶୁଣ ହୋ ଯୁଧେଷ୍ଠି ଯେ ବଦୟୁନ୍ତ ମାରକଣ୍ଡେ
ସେ ଅଙ୍ଗଦ ଜାରା ନାମେ ଶବର ଯେ ହୋଇଛନ୍ତି ମଧ୍ୟସ୍ୱର୍ଗେ ।୯୬।
ସେ ଜାରା ଶବର ଯେ ଆସିବ ମୃଗସ୍ଥା
ମୃଗ ଲୋଡନ୍ତେ ଦେଖିବ ସେ କେଶବର ପାଦଛାୟା । ୯୭ ।

---

୮୭।୨ ଅଙ୍ଗଦ ଅମ୍ଭନ୍ତ ଯେ ମାଗିଲା ସଦଭାବ ।—ଖ,ଣ,ନ

୯୨ { ଶୁଣି ହନୁମନ୍ତ ଯେ ମହାକୋପ କରି
ବୋଇଲେ ଅଙ୍ଗଦ ରେ ଆଜ ତୋର ମୁଣ୍ଡ ପକାଇବୁଂ
ମୋଡ଼ି ।—କ, ଚ

ନାରଜେକ ବନ୍ଧିବ ସେ ଯୁଗ ହତକାଳେ
ସେ ନାରଜ ପଡ଼ିବ ଯାଇଁ କେଶବର ପାଦ ତଳେ । ୯୮ ।
ଗତଦୋଷେ ସେହୁ ଛାଡ଼ିବେ ନିଜ ପ୍ରାଣ
ଆଗ୍ୟାଂ ଦେବେ ହରି ଶବରରେ ଅର୍ଜୁନେ ରାଇଆଣ
କରାତ ଦେଖିବ ସେ ବାସୁଦେବର ଚରଣ । ୯୯ ।
ଚରଣ ଦେଖି କରାତ କରିବ ବହୁ ଭୁସ୍ତି
ଅର୍ଜୁନକଇଂ ଧାଇଁଯାଇ ଆଣିବ ତୁରନ୍ତ । ୧୦୦ ।
ଦେଖିବ ଜଗନ୍ନାଥେ ହୋଇଅଛନ୍ତି ମୃତୁଗତ
କଣ୍ଠତଟେ ପ୍ରାଣ ରହିଛି କଞ୍ଚିତ । ୧୦୧ ।
ଅର୍ଜୁନର ହାଥ ଧରି ଛାଡ଼ିବେ ପଞ୍ଚ ପ୍ରାଣ
ପିଣ୍ଡ ଦହନ କରିବ ଅର୍ଜୁନ ଯମୁନା କୂଳେଣ । ୧୦୨ ।
ଆକାଶର ବାଣୀ ଯେ ପଡ଼ିବ ବୀର ଅର୍ଜୁନକୁ
କମ୍ପା ଦହନକରୁ ପାଥ ଜଗନ୍ନାଥର ପିଣ୍ଡକୁ । ୧୦୩ ।
ସ୍ୱେଛି କଳେବର ଥାଉ ସମୁଦ୍ରେ ମେଲ ଦେବରାଜା
ନୀଳସୁନ୍ଦର ପର୍ବତେ କଳିଯୁଗେ ହେନମେ ସ୍ୱେ ପୂଜା । ୧୦୪ ।
ଦେବଂକର ଆଗ୍ୟାଂ ଯେ ହେନିବ କରିଟୀ
କ୍ଷୀରେଦ୍ରେ ମେଲିବ ନେଇ ଜଗନ୍ନାଥଂକ ପିଣ୍ଡଗୋଟି । ୧୦୫ ।
ସେ ପିଣ୍ଡ ଲଗିବ ଆସି ବାରନଧିର ଉତ୍ତର କୂଳେ
ସେ ଜାର ଶବର ପୂଜା କରିବଟି ସର୍ବକାଳେ । ୧୦୬ ।
ଜଗନ୍ନାଥ ରୂପେ ହରି ତହିଁ ବଜେକର
ବଳରାମହିଁ ବଉଧ ରୂପେ ଅବତର । ୧୦୭ ।
ଗତ ଦୋଷ ଉପେକ୍ଷା କରିବେ ଦେବହରି
ବ୍ରହ୍ମା ସଙ୍ଗତେ ବସିବେ ସୋହୋଦ୍ରା ରୂପ ଧରି । ୧୦୮ ।
କଳିଯୁଗ ଚ୍ୟରିଲକ୍ଷ ବତିଶ ସହସ୍ର ବରଷ ପରିଯନ୍ତେ
ବଉଧ ରୂପେ ପୂଜା ପାଇବେ ନୀଳସୁନ୍ଦର ପର୍ବତେ । ୧୦୯ ।

---

୯୮।୧   ନାରଜ ବନ୍ଧିବ ସେ ସନ୍ଧ୍ୟାଯୁକ୍ତ କାଳେ ।—ଛ, ଥ, ଝ

ଯୁଧିଷ୍ଠି ଦେବେ ପ୍ରଶଂସନ୍ତି ନୀଳସୁନ୍ଦର ପର୍ବତଙ୍କୁ
ଯେ ଶଇଳ ମେଳ ଗୁଡ଼ ଜନ୍ମେ ଅଇଲ ଯୂଥକୁ । ୧୧୦ ।
ଯୁଧିଷ୍ଠି ଦେବେ ପର୍ବତକୁ କଲେ ବହୁତ ପୂଜା
ତୁହି ସେ ଗିରିବର ନାରାୟଣ ରୂପେ ପୂଜା । ୧୧୧ ।
ପର୍ବତଂକ ସଙ୍ଗ ତୁ ଗୁଡ଼ିଲୁ କମ୍ପାଇ
ଯେଉଁକାନ୍ତେ ରହିଲୁ ତୁ ନିରାଶ ଭକ୍ତ ହୋଇ । ୧୧୨ ।
ଯୁଧିଷ୍ଠିରଂକ ବଚନେ ସେ ବୋଲଇ ଶଇଳ
ହେମବନ୍ତ ବିବାଦେ ପକ୍ଷ ଛେଦିଲେ ଆଖଣ୍ଡଳ । ୧୧୩ ।
ସହସ୍ର ପର୍ବତଂକର ପକ୍ଷମାନନ୍ତ ଛେଦନ୍ତେ
ଅଷ୍ଟପର୍ବତ ଆମ୍ଭେ ପଳାଇ ଲୁଚିଲୁ ଗୁପତେ । ୧୧୪ ।
ନୀଳଗିରି ସୁନ୍ଦରଗିରି ଅଟୁ ଆମ୍ଭେ ବେନି
ସୋଦର ବୋଲି ଗରୁଡ଼ ଆମ୍ଭନ୍ତ ଅଇଲେକ ଘେନି । ୧୧୫ ।
ନୀଳଗିରି ପର୍ବତ ଯେ ପାତାଳେ ଗୋପ୍ୟଗଲ
ନାରାୟଣ ପ୍ରସନ୍ନେ ମୋର ନାମ ଚନ୍ଦ୍ର ରହିଲ । ୧୧୬ ।
ସତ୍ୟଯୁଗେ ମୁହିଂ ସତର ଲକ୍ଷ ଯୋଜନ
ତ୍ରେତାଯୁଗରେ ତେରଲକ୍ଷ ଯୋଜନ ଆୟତନ । ୧୧୭ ।
ଦ୍ୱାପର ଯୁଗେ ଦ୍ୱାଦଶ ଲକ୍ଷ ଯୋଜନ ମୋର ସ୍ଥଳୀ
ମମ ତେଜ ଅଭ୍ୟନ୍ତରେ ଗମଇ ଅଂଶୁମାଳୀ । ୧୧୮ ।
ମୁହିଂ ଯେବେ ନିଜ କାୟା ବିକାଶିଲ ରୂପ
ମମ ତେଜ ଲାଗିଣ ଯେ ଆଦିତ୍ୟ ହୋଇଲେକ ଗୋପ୍ୟ । ୧୧୯ ।
ସେ ନିମନ୍ତେ ତୁଷ୍ଟି ମୋତେ କଲେକ ବିରଞ୍ଚି
ମୁହିଂ ଦିନକର ନାଥ ଶନ୍ୟେ ଯାଉଅଛି । ୧୨୦ ।

---

୧୧୦।୧ ଯୁଧିଷ୍ଠି ପୂଜା କରନ୍ତି ନୀଳସୁନ୍ଦର ପର୍ବତଙ୍କୁ ।—ଖ, ଗ, ଘ, ଙ
୧୧୮।୨ ମମ ଅଭ୍ୟନ୍ତରେ ଗମଇଂ ଅଂଶୁମାଳୀ ।—ଚ, ଛ
୧୧୮।୧ (ସତରଶତ, ତେରଶତ, ଦ୍ୱାଦଶଶତ ଦଶ ଯୋଜନ, ଦ୍ୱାଦଶ ଯୋଜନ ପ୍ରଭୃତି ପାଠାନ୍ତର ଅଛି )

ତୋହୋର ଶିରଗ୍ରରେ ହାବୋଡ଼ନ୍ତେ ମୋହୋର ହୃଦୟୁ
ରଥଚକ ଭଜଣ ହୋଇଲା ଗୁଣ୍ଡାମୟେ । ୧୨୧ ।
ଶତେ ଚକ ନବାଣ ମୋହୋର ରଥେ ଆଦି
ଅନେଶତ ରଥଚକ ଭଜିଲା ତୋହୋର ଶିଖରେ ଲାଗି । ୧୨୨ ।
ଯେକାଚକ ମାତ୍ର ରହିଲା ମୋର ରଥ
ଦକ୍ଷିଣ ଦିଗ ପନ୍ଥ ତେଜି ମୁଁ ଗମିଲି ଉତ୍ତର ଦିଗ ପନ୍ଥ । ୧୨୩ ।
ମୁହିଂ ତୋହୋର ଉପରୁ ଉପେକ୍ଷିଲି ଦକ୍ଷିଣ ପନ୍ଥ ଭୂମି
ତୋହୋର ଶୋଭ୍ୟଗଲେ ଯେ ପାରଇ ମୁହିଂ ଗମି । ୧୨୪ ।
ତୁ ଯେବେ ଗିରିବର ଗୋପ୍ୟକର ନିଜ କାୟେ
ଯୁଗ ଯୁଗାନ୍ତରେ ତୁ ହୋଇବୁ କ୍ଷୀଣମୟେ । ୧୨୫ ।
ସତ୍ୟଯୁଗେ ମୁହିଂ କାଞ୍ଚନ ସରୂପ
ତ୍ରେତୟା ଯୁଗେ ମୁହିଂ ମର୍କତ ମଣି ରୂପ । ୧୨୬ ।
ଦ୍ୱାପର ଯୁଗେ ମୁହିଂ ନୀଳରତ୍ନ କାୟେ
ତେଣୁକରି ନୀଳଗିରି ମୋତେ ବୋଲନ୍ତି ସଭୟେଂ । ୧୨୭ ।
କଳିକାଳ ଯୁଗରେ ଯେହୁ ଯିବ ଗୋପ୍ୟ
ନାରାୟଣ ପାଦୁକା ହୋଇବ ମୁଂ ବାଲୁଂକା ସରୂପ । ୧୨୮ ।
ଶୁଣ ହୋ ଯୁଧେଷ୍ଟି ଦେବ ବଦପୃନ୍ତ ନୀଳଗିରି
ମମ ଦର୍ଶନେ ଯେ ଅଶ୍ୱମେଧ ଯାଗ ସରି । ୧୨୯ ।
ସତ୍ୟଯୁଗେ ମୁହିଂ ଅଟେ ଖଗେଶ୍ୱର ମୂର୍ତ୍ତି
ତ୍ରେତୟା ଯୁଗେ ବଲ୍ଲଚନ୍ଦ୍ର ନାମେଣ ସମ୍ପାତ୍ତ । ୧୩୦ ।
ଦ୍ୱାପର ଯୁଗେ ମୁହିଂ ଚଉଧର୍ମ୍ମ ଗଜ
ମୁହିଂ ସେ ବହି ପାରଇ ନାରାୟଣଂକ ତେଜ । ୧୩୧ ।
କଳିଯୁଗେ କେଶବ ହୋଇବେ ବଉଧ ପ୍ରତିମା
ମୁହିଂ ହୋଇବି ନୀଳସୁନ୍ଦର ମହତମା । ୧୩୨ ।
ଆହୋ ଯୁଧେଷ୍ଠି ମୁହିଂ ସେ ନାରାୟଣଂକୁ ବହନ୍ତା
ମୋ ବଚନକେ ଆନ ନାହିଂ ନା ସହନା । ୧୩୩ ।
ପଞ୍ଚଇ ଭଗ୍ନୀ ଯେଥି ବହଇ ଧବଳାଙ୍ଗୀ
କୁଣ୍ଡ ଗଣ୍ଡ ଭେଦ ଯେହ୍ନ ସେ ମୋତେ ମାଙ୍ଗୀ । ୧୩୪ ।

ନବକୋଟି ତୀର୍ଥ ଯେନ ଯେ କ୍ଷେତ୍ରାଧି ପୁଷ୍କର
ନନ୍ତ ସଙ୍ଗମ ହୋଉଛନ୍ତି ମୋହୋର କନ୍ଦର । ୧୩୫ ।
ମଉଦଧି ଶ୍ୱେତଗଙ୍ଗା ମାରକଣ୍ଡ ଇନ୍ଦ୍ର ଯେ ଯାମୁନ
ପୁଣ୍ୟତୋୟା କାବେରୀ ଯେ ପଞ୍ଚ ବାହ୍ନମା । ୧୩୬ ।
ଆକାଶୁଂ ଉତପତ୍ତି ଯେ ହୋନ୍ତ ପାତାଳଗାମୀ
କୋଟିଯେ ତୀର୍ଥ ଯେନ ଯେ ମାଳ କଳ୍ପବଟେଣ ଭୂମି । ୧୩୭ ।
ନବକୋଟି ତୀର୍ଥର ଠାକୁର ମଉଦଧି
ନାନାତୀର୍ଥ ଜଳ ଗମି ହୋଇଲେ ଯେଥେ ଭେଦି । ୧୩୮ ।
ସକଳ ତୀର୍ଥ ପାରଦନ୍ତ ମଉଦଧି ସେ ରାଜା
କୃଷ୍ଣ କୋଟିଯେ ଅବତାରେ ଯାହାକୁ କରନ୍ତ ପୂଜା । ୧୩୯ ।
ମଉଦଧି ବେମକେ ପ୍ରାଗତୀର୍ଥ ଫୁଟି
ଆରେକ ବେମକେ ଯେ ସୁବର୍ଣ୍ଣଭଦ୍ରା ନଦୀଗୋଟି । ୧୪୦ ।
ଆରେକ ବେମେ ମଣିକର୍ଣ୍ଣିକା ତୀର୍ଥ କୁଣ୍ଡେ
ଯେ ବେମକେ ଗୋଡାଇ ଗଲେ ମାରକଣ୍ଡେ । ୧୪୧ ।
ସମସ୍ତ ତୀର୍ଥ ଯେ ଯେଥିରେ ଅଛନ୍ତ ନବକୋଟି
ମଉଦଧି ନାଭିରୁ ସମସ୍ତ ତୀର୍ଥ ଫୁଟି । ୧୪୨ ।
ବାବୁ ଶୁଣ ହେ ଯୁଧିଷ୍ଠି ଯେ ଶ୍ୱେତଗଙ୍ଗାର ମହିମାଂ
ଯେଥୁଂ ଉତପତ୍ତି ହୋଇଲେ ଶ୍ୱେତ ନାମେ ବ୍ରହ୍ମା । ୧୪୩ ।
ଯେ ଶ୍ୱେତଗଙ୍ଗା ମଉଦଧି ତୀର୍ଥେ ତପ କଲ୍ଲ ଧାତା
ଯେଥିର ଫଳଶ୍ରୁତି ହୋଇଲ୍ଲ ନବସୃଷ୍ଟିର କରତା । ୧୪୪ ।
ବାବୁ ପ୍ରଜାପତି ଦଇବତ ଯେ ରୋହିଣୀ କୁଣ୍ଡଗୋଟି
ଆକାଶ ମେଖଳା ଯେଥେ ଅନନ୍ତ ତୀର୍ଥ ଭେଟି । ୧୪୫ ।

---

୧୩୬।୨ ପୁଣ୍ୟତୋୟା ଅବଗାହି ଯେ ପଞ୍ଚ ବାହ୍ନମା ।—ଅ, ନ, ଝ, ଣ
୧୩୯।୨ ଅନନ୍ତ କୋଟି ତୀର୍ଥ ସେ ଯାହାକୁ କରଇ ପୂଜା ।—ଟ, ଠ, ଝ, ଞ
୧୪୦।୨ ଆରେକ ବେମକେ ଯେ ମୃଗଭଦ୍ରା ତୀର୍ଥଗୋଟି ।—ନ, ଣ, ଡ, ଞ

ମାଳାମ୍ବର ଉତପତ୍ତି ବୈତ୍ବଣୀ କୁଣ୍ଡ ଭେଦା
ସେଥକୁ ସ୍ପେକନଲା ପୃଥୀର ଯେତେ ନଦୀ । ୧୪୬ ।
ଯଦ୍ୟପି ସପତ ସାଗର ନବଦ୍ୱୀପା ପୃଥୀ
ସନ୍ଧ୍ୟା ଅବକାଶେ ସମସ୍ତ ସଙ୍ଗମ ହୁଅନ୍ତି ସେଥି । ୧୪୭ ।
ବ୍ରହ୍ମାଂକର ଆସନ ଅଟେ ସେ ଶ୍ୱେତଗଙ୍ଗା ତୀର୍ଥ
ଯମନକ ତୀର୍ଥେ ବାସ ଅନାଦରୁଦ୍ର ଦଇବତ । ୧୪୮ ।
ଇନ୍ଦ୍ର ଯାମୁନକ ତୀର୍ଥରେ ଇନ୍ଦ୍ର ଦେବତାର ବସା
ସେ ତିନ ଦେବତାନ୍ତ ଦେଖିତେ ସବୁର ମନାଷା । ୧୪୯ ।
ବାବୁ ଶତେକ ପ୍ରଳୟେଁ ପୃଥୀ ନାଶ ଯାଏ
ସେ ତୀର୍ଥେ ଲୁଚଇ ସମସ୍ତ ଦେବତାଂକ କାଏ । ୧୫୦ ।
ମଉଦଧିରୁ ଯାମୁନକ ତୀର୍ଥ ପରଯନ୍ତେ ଯେତେଦୂର ବାଲି
ସମସ୍ତ ଦେବତାର ଅସ୍ଥି ସେ ମୁଂ ପ୍ରତକ୍ଷେ ଦେଖିଲି । ୧୫୧ ।
ସତ୍ୟ ତେତୟା ଦ୍ୱାପର କଳି ଗୁରିଯୁଗେ
କାରଣକୁ ମାନ ବାଟ ସେ ଭୂମି ତିନସ୍ୱର୍ଗେ । ୧୫୨ ।
ବାବୁ ଦେବତାଏ ମୃତ୍ୟୁ ଇଚ୍ଛନ୍ତି ଯେବଣ ଭୂମି
ଚତୁର୍ଦ୍ଦଶ ଭୁବନ ଭ୍ରମି ନାରାୟେଣ ସେଥେଂ ବିଶ୍ରାମି । ୧୫୩ ।
ପ୍ରତକ୍ଷେ ବଇକୁଣ୍ଠ ସେହା ଚିହ୍ନିତ ନୁଆର
ପରମ ପଦ ଛାଡି ପାଷାଣ୍ଡେ କଂପେ ଆନ ଇଚ୍ଛାକର । ୧୫୪ ।
ବାବୁ ଯୁଦ୍ଧେଷ୍ଠି ସେଥି ମକରମାସେ ରହ
ସେ ପଞ୍ଚ ତୀର୍ଥ ଯେନ ତୁ ମଉଦଧିରେ ଅବଗାହ । ୧୫୫ ।
ବାବୁ ଉତ୍ତର ଦକ୍ଷିଣ ପୂର୍ବ ପଚ୍ଛିମ ସେ ଗୁରିଦଗ
ସେ ମୃତ୍ୟୁ ମଣ୍ଡଳେ ସେ ଅଟଇ ଅମର ସ୍ୱର୍ଗ । ୧୫୬ ।

---

୧୪୮।୧ ବ୍ରହ୍ମାଂକ ଆଶ୍ରମ ଅଟେ ସେ ଶ୍ୱେତଗଂଗା ତୀର୍ଥ ।—ଜ, ଝ
୧୫୧।୧ ମହୋଦଧି ଯମନକାଦ ଯେ ତୀର୍ଥ କହିଲି ।—ଗ, ନ, ଣ, ବ, ଝ, ଟ
୧୫୪ } ପ୍ରସନ୍ନ ବଇକୁଣ୍ଠ ସେହା ଚିହ୍ନିତ ନୁଆର
ବ୍ରହ୍ମପଦ ଛାଡି ପାଷାଣ୍ଡେ କଂପେ ଆନ ଇଚ୍ଛାକର ।—ଟ, ଛ, ଜ

ଯେକାବେଳେ ତୀର୍ଥକଲେ ଅନେକ ଜନ୍ମର ଦୁଃଖ ମୋଚି
ନକ୍ଷତ୍ର ହୋଇ ସ୍ୱର୍ଗେ ବସଇ ଯେବେ ପଞ୍ଚ ଭୂତ ପଞ୍ଚ ଦିବସ ଯାଚି । ୧୫୭ ।
ତୁ ଯେବେ ଯେକମନେ ମକରମାସରେ ରହିବୁ
ଯେ ଦେହଗୋଟି ଘେନି ତୁ ସ୍ୱର୍ଗରେ ବସିବୁ । ୧୫୮ ।
ଆହୋ ଚଇତନ ମାର୍କଣ୍ଡେୟ କହିଲେ ଯୁଧିଷ୍ଠିର ଦେବଙ୍କୁ
ଧର୍ମ ଅର୍ଥ କାମ ମୋକ୍ଷ କହିଲେ ଯେ ତୀର୍ଥକୁ । ୧୫୯ ।
ଅନେକ ପରମାର୍ଥ ମାର୍କଣ୍ଡେୟ କହିଲେ କହି
ମହତ ବାକ୍ୟେଣ ଯୁଧିଷ୍ଠିର ଦେବ ପର୍ବତେଣ ରହି । ୧୬୦ ।
ବୃଷଭ ମିଥୁନ କର୍କଟ ସିଂହ କନ୍ୟା ତୁଳ
ବୃଶ୍ଚିକ ଧନୁରେ ବଞ୍ଚିଲେ ଋଷିଙ୍କର ମେଳ । ୧୬୧ ।
ଅମୃତ ଯୋଗାଡ଼ ଦ୍ରାକ୍ଷ ଫଳମାନ
ପର୍ବତରୁ ପ୍ରସରଇ ନିତ୍ୟକର୍ମ ବିଧାନ । ୧୬୨ ।
ଦିବସେ ଦିନେ ହୋଇ ରାଜେ ଲଗଇ ସ୍ୱର୍ଗେ
ଦେଖନ୍ତି ତ୍ରିପୁର ଲୋକେ ଗିରି ଅନୁରାଗେ । ୧୬୩ ।
ଧନୁ ମାସ ଶୁକଳ ପକ୍ଷ ଦଶମୀ ପାହାନ୍ତି
ତିନଦଣ୍ଡ ଥାଉଁ ସେ ଲଗିଲା ମକର ସଂକ୍ରାନ୍ତି । ୧୬୪ ।
ଅର୍କବାର ସେ ଦିନ ନକ୍ଷତ୍ର ଅଶ୍ୱିନୀ
ତଇତଳ ନାମେ କରଣ ଭୋଗ ଦଣ୍ଡ ତିନି । ୧୬୫ ।
ଶୁଭ ନାମେ ତହିଁ ଯୋଗ ସେ ଭୋଗଇ
ପଞ୍ଚମର ଚନ୍ଦ୍ରେ ସେହି ଦିନ ଅନୁକୂଳ ଲଗଇ । ୧୬୬ ।
ଦଶମରେ ଆଦିତ୍ୟ ସେ ପଣ୍ଡୁ ରାଜେନ୍ଦ୍ରର ପୁତ୍ରା
ମହୋଦଧିର କୂଳେ ବିଜୟେ ତୀର୍ଥଯାତ୍ରା । ୧୬୭ ।
ଅସଦ୍ୟ ସ୍ନାହାନ ସାରିଲେ ବାହ୍ମଣ୍ୟେ
ବାରିନିଧି କୂଳେ ବିଜୟେ ଦେବରାଜେ । ୧୬୮ ।

---

୧୫୭।୧ ସକଳ ସୂକ୍ଷ୍ମ (ସ୍ନାନ) ବାରତା କହିଦେଲେ ତାଙ୍କୁ ।—ଙ୍କ, ନ, ଣ,
୧୫୯।୨ ଧର୍ମ ଅର୍ଥ କାମ ମୋକ୍ଷ ଲଭନ୍ତି ଯେ ତୀର୍ଥକୁ ।—ଡ, ଛ,
୧୬୨।୨ ପର୍ବତ ପରଶଇ ହୋଇଣ ତୋଷମନ ।—ଛ, ଚ, ଣ, ନ, ଟ

ଧଉମ୍ୟ ପୁରୋହିତ ବରଣେ ସଂକଳ୍ପ କରି
ମକର ସଂକ୍ରାନ୍ତି ଗଣାଇ ମଙ୍ଗଳ ଆଚରି । ୧୬୯ ।
ଦେବ ପିତୃ ବିଶ୍ୱଦେବା ସନକ ବରୁଣ
ଅଷ୍ଟକୁଳା ନାଗ ପୁଷ୍କର ମନ୍ତ୍ରେଣ ସୁମରଣ । ୧୭୦ ।
ପଞ୍ଚଭୂତ ମହାତମା ସେ ଗୁରୁମନ୍ତ୍ର ଦାହ୍ନି
ନିରାକୁଳ ମନ୍ତ୍ରେ ଦେବ ଜଳେ ଅବଗ୍ରାହି । ୧୭୧ ।
ପ୍ରସନ୍ନ ଶୁଦ୍ଧ ବୋଧନ ମହୋଦଧି
କଣପୂ ଅଞ୍ଜଳିପୂ ଦେଇ ସ୍ନାହାନ ବାରିନଧି । ୧୭୨ ।
ପୃଥୀ ଅପ ତେଜ ବାୟୁବ୍ୟ ଆକାଶ ପଞ୍ଚ ଭୂତ ମନ୍ତ୍ରେ
ପଞ୍ଚ ବେଳ ସ୍ନାନକଲେ ନାରିପୂଣ ଲପୂ ହୃଦଗତେ । ୧୭୩ ।
ଆସନ ପାଦାସନ ପାଦ୍ୟ ଅର୍ଘ୍ୟ ଗନ୍ଧ ଚନ୍ଦନ ଧୂପ ଦୀପେ
କଣପୂ ଅର୍ଘ୍ୟପୂଜା କରଣ ରିପୂ ନୃପେ । ୧୭୪ ।
ଦେବଗଣ ଗ୍ରହଗଣେ ସନକ ନକ୍ଷତ୍ରଗଣେ
ପୂବ ଭୂତ ନାମେ ବାମ ପାବକ ତର୍ପଣେ । ୧୭୫ ।
ବିଜପୂ ଧର୍ମ ନନ୍ଦନ ପିତୃକାର୍ଯ୍ୟ ସାରି
ପୁସ୍ତକ ଫେଇ ଶୁକବ୍ରହ୍ମା ପୁରାଣ ଉଚ୍ଚାରି । ୧୭୬ ।
ଶୁଣ ବାବୁ ଯୁଧିଷ୍ଠି ହେ। ମକର ମାସର ମାହାତ୍ମ୍ୟ
ଯେହେନେକ ବାରେ କଲେ ପ୍ରାପତ ହୋଇଇ ଧର୍ମ । ୧୭୭ ।
ମକର ସଂକ୍ରାନ୍ତିରୁ କୁମ୍ଭ ସଂକ୍ରାନ୍ତି ପର୍ଯ୍ୟନ୍ତେ
ଅତି କଷ୍ଟୋର ମକର ମାସ ସ୍ନାହାନ ଫଳ କହଇ ମୁଂ ତୋତେ ।୧୭୮।

---

୧୬୯।୨ ମକର ସ୍ନାହାନକୁ ସତ୍ୟ ଅବଧାରି ।—ଜ, ଟ,

୧୭୧ { ପଞ୍ଚଭୂତ ଆତ୍ମା (ଗିରିମନ୍ତ, ଚିତ୍ତମନ୍ତ୍ର, ଗୁରୁମନ୍ତ୍ର) ଦାହ୍ନି
ନିଚଳ ହୋଇଣ ସ୍ନାନ କଲେ ପଞ୍ଚ ଥର ।—ଣ୍ଡ, ଟ, ଙ୍ଗ,ଜ

୧୭୨ { ପ୍ରାଗମ୍ୟ ଶୁଦ୍ଧ ବୋଧନ ମହୋଦଧି
କଣପୂ ଅଯୋନି ଯେ ସ୍ନାହାନ ମହୋଦଧି ।—ପାଠାନ୍ତର

୧୭୨।୧ ପ୍ରସନ୍ନ—ନିର୍ମଳ
ପ୍ରାଗମ୍ୟ—ସୁଖପ୍ରାପ୍ୟ,

ନିଶାକାଳେ ମନ୍ଦିରୁଂ ବାହାର ହୋଇବା ପ୍ରେକା
ରାଜ ଥାଉଂ ମଣ୍ଡନେ ସାରିବ ପ୍ରକୃତି ଶଂକା । ୧୭୯ ।
ଅକାମ ଜଳେ ଯେ କରିବ ଶଉଚନ
ମୃତ୍ତିକା ଆଣିବ ଯେ ଭୂଜ ବଢାଇଣ । ୧୮୦ ।
ଦ୍ୱାଦଶ ବେଳ ଲଗାଇବ ମଳଗୁହ୍ୟ ଥାନ
କର ପାଦ ପ୍ରୋଞ୍ଛନ ଚତୁର୍ଦ୍ଦଶ ଉଚ୍ଚସ୍ଥାନ । ୧୮୧ ।
ଉଦ୍ଧାରଣ ଜଳେ ପଖାଳିବ ଶୁଦ୍ଧକରି
କର ଅଙ୍ଗୁଷ୍ଠି ନଦେ ଲଗାଇବ ବେଳ ଗୁରି ଗୁରି । ୧୮୨ ।
ଚରଣ ଗଣ୍ଠି ଅଙ୍ଗୁଷ୍ଠି ନାଭିମୂଳ କୁଣ୍ଠି
ବସ୍ତ୍ରୀର୍ଣ୍ଣ ମୃତ୍ତିକା ଜଳ ଘେନିଣ ଯେ ପୋଛୁ । ୧୮୩ ।
ପଡ଼ନ୍ତା ପଂକୁ ଆମ୍ଭ ପସେକ ଶିର ବନ୍ଧୁନେ
ବାଗୃ ନ ଉଚ୍ଚାର କରିବ ଦନ୍ତ ଯେ ଧାପନେ । ୧୮୪ ।
କୋମଳ କରିଣ ଯେ ମାଜିବ ଦନ୍ତପନ୍ତ
ରୁଧିର ବାହାର ହୋଇଲେ ଧର୍ମ ବିନଶ୍ୟନ୍ତି । ୧୮୫ ।
ଦନ୍ତ ଧାପନ କରିଣ ନ ଗୃଞ୍ଜିବ ଜିଭ
ଯେସନେକ ସରୂପେ ଯେ ନିତ୍ୟକର୍ମ ସାରିବ । ୧୮୬ ।
ଅଷ୍ଟ ଉତ୍ତର ଶତେଢଘାନ୍ତ କରି ପକାଇବ କୁଳୁକୁଞ୍ଚା
ତେବେ ସେ ଶୁଦ୍ଧ ହୋଇବ ମୁଖ ସେ ସୁସଞ୍ଚା । ୧୮୭ ।
ସ୍ନାହାନ ସାରିବ ଯେ ନିତ୍ୟକର୍ମ ବିଧାନେ
ଦେବ ପିତୃ ତର୍ପଣ କରିବ ମନ୍ତ୍ର ଧ୍ୟାନେ ଯେନ୍ହେ । ୧୮୮ ।

---

- ୧। ୧।୨ କର ପାଦ ପ୍ରକ୍ଷାଳନ ଚତୁର୍ଦ୍ଦଶ ଉଚ୍ଛନ ।—କ, ତ, ଥ

୧୮୨ { ଉଦ୍ଧାରଣ ଜଳେ ଯେ ପଖାଳିବ ନାଭି
କର ଆଙ୍ଗୁଳି ଜଳେ ଲଗାଇବ ବେଳ ଛନ ଘଡି ।—ଖ,ଣ,ନ

୧୮୪।୨ ମନ୍ତ୍ର ଉଚ୍ଚାରଣ ଦନ୍ତେ କରିବ ଧାପନ ।—ଛ,ଣ

୧୮୭ { ଅଷ୍ଟ ଉତ୍ତର ଶତଘାନ୍ତ କରି ପକାଇବ ଜଳ
ତେବେ ସେ ଶୁଦ୍ଧ ହୋଇବ ବଦନ ନିର୍ମଳ ।—କ,ତ,ଅ,ଛ,ଟ,ଜ

୧୮୮ { ଲୈକବସ୍ତ୍ର ପିନ୍ଧି ନ କରିବ ସ୍ନାହାନ
ଦେବ ପିତୃ ତର୍ପଣ ପୂଜାର ବିଧାନ ।—ଖ, ନ, ଣ,ଠ

ମଜ୍ଜନବ୍ରତ କର ତେଜିବ ସ୍ନିଗ୍ଧ ତଇଲ ଆମିଷ
ଅଖଣ୍ଡିତ କର ପିନ୍ଧିବାକ ଝୀନବାସ । ୧୮୯ ।
ଅନୁବ୍ରତେ ରହିଥିବ ସତ୍ୟ ଯେ ଆଗ୍ରହରେ
ମିଥ୍ୟା ନ କହିବ ନ ପଶିବ ଯେତେ ମାୟା ଫସାରେ । ୧୯୦ ।
ତଇଲ ନ ଘେନିବ ନ ଯିବ ସ୍ନିଗ୍ଧ ପାଶ
ହବିଷ୍ୟ ଭୋଜନ କର ହୋଇବ ନିରାମିଷ । ୧୯୧ ।
ଶୁଣ ଯୁଧିଷ୍ଠି ଦେବ ବଦପୃନ୍ତ ଶୁକବ୍ରହ୍ମା
ବାସବର ନନ୍ଦନ ଯେ ଚିତ୍ରବାହାନ ମହାତମା । ୧୯୨ ।
ମକର ସ୍ନାହାନ ସେ କରଇ ମନ୍ଦମାଘେ
ସୁଖେ ତଇଲ ଲଗାଇଲା ସେ ଶୁକ୍ଳ ଚଉଠି ଦିବସେ । ୧୯୩ ।
କୋପେଣ ମାଧବ ଯେ ବହିଲେ ଅଭିଶାପ
ଯାଅ ରେ ବିଦ୍ୟାଧର ହୋଅସି ବ୍ୟାଘ୍ର ରୂପ । ୧୯୪ ।
ମାଧବର ବଚନେ ସେ ହୋଇଲା ବ୍ୟାଘ୍ର ରୂପ
ଗୋ ବ୍ରାହ୍ମଣ ଚଣ୍ଡାଳ ସହିତେ ସମସ୍ତ କଲା ଭକ୍ଷ । ୧୯୫ ।
ଅନେକ ଜୀବ ନାଶକଲା ସେ ଆଧାର ନିମନ୍ତେ
ବ୍ୟାଘ୍ର ହୋଇଥିଲା ସେ ତ୍ରେତାଯୁଗ ପରିଯନ୍ତେ । ୧୯୬ ।
ସତ୍ୟଯୁଗ ସତର ଲକ୍ଷ ଅଠାଶି ସହସ୍ର ବରଷ
ତ୍ରେତୟା ଯୁଗ ବାରଲକ୍ଷ ଛୟାଣୋଇ ସହସ୍ର ବରଷ ଯେ ଶେଷ ।୧୯୭।
ଯେତେକାଳ ବ୍ୟାଘ୍ର ହୋଇଲା କ୍ଷଣକର ଦୋଷେ
ମକର ମାସେ ତଇଲ ଘେନିଲେ ଯେତେକ ପାପ ପ୍ରକାଶେ । ୧୯୮ ।
ଉମାବସୁ ବିଶ୍ୱବସୁ ଦାର ହରଣ ଦୋଷେ
ଗଜ କଚ୍ଛପ ହୋଇଲେ ଯେହୁ ମନ୍ଦମାସେ । ୧୯୯ ।

---

୧୯୩।୨ ସୁଖେ ତଇଲ ଲଗାଇଲା ମକର ଶୁକଳ ଷଷ୍ଠୀ
ଯେ ଦିବସେ ।—କ, ଡ ଅ

୧୯୯ { ଉମାବସୁ ପ୍ରାଗବସୁ ଦାରହରଣ ଦୋଷେ
ମଚ୍ଛ କଚ୍ଛପ ହୋଇଲେ ଯେ ମକର ମାସେ ।—କ, ଡ, ଣ, ଜ, ଡ

ମକର ମାସେ ସ୍ନାହାନ କଲେ ବୃହସ୍ପତିଂକ ଦୁଲଣୀ
ମିଥ୍ୟା କହିଲର ଦୋଷେ ହୋଇଲେକ ପିଶାଚୁଣୀ । ୨୦୦ ।
ଶୁଣ ବାବୁ ଯୁଧିଷ୍ଠି ବଦନ୍ତି ଶୁକମୁନି
ଯେମନ୍ତେ ମାଘମାସେ ତଇଲ ନ ଦେବ । ୨୦୧ ।
ଯେବେ ମୁକତି ବାବୁ ଚାହୁଁ ମାଘମାସେ
ହବିଷ୍ୟ ଭୋଜନ ତେ କରିବ ସନ୍ଧ୍ୟା ଅବକାଶେ । ୨୦୨ ।
ଅଖଣ୍ଡିତ ରମ୍ଭାପତ୍ର ହୋଇଥିବ ଯେବେ ମଞ୍ଜି
ଉଆ ଗୁଜର ଗୁଡକର ଅନ୍ନ ହାଦେ ଭୁଂଜ । ୨୦୩ ।
ଗୁଆ ଲବଣୀ ଯେ ସୂର୍ଯ୍ୟପାକ ଲୁଣ
ରନ୍ଧଣା ବର୍ଦ୍ଧନକୁ ନ ଯୋଗାଇଟି ଧବଳ ଲବଣ । ୨୦୪ ।
ଅଗସ୍ତି ଗଛଙ୍କ ଶାକ ମୁଗ ସାରୁ ମିଶା
ପୁରାଣେ ଘଟଣ ଯେହ୍ନ ପୃରଅ ମନୀଷା । ୨୦୫ ।
ଶାକଅର୍ଣ୍ଣ ହୋଇବ ଅକଠା ଅବଠା ଯେତେ ସଅ
ବାବୁ ମାଘ ମାହାତ୍ମ୍ୟରେ ଯେସନେକ ଯୁଗତି ଅଛି । ୨୦୬ ।
ପ୍ରକୃତି ଶଂକା ଦନ୍ତ ଧାପନ ସ୍ନାହାନ ଭୋଜନ ତିନସନ୍ଧ୍ୟା
ମଜନ ବ୍ରତ ହୋଇବ ନ କରିବ ପାପ ବାଧା । ୨୦୭ ।
ଅତିଥି ଅଭ୍ୟାଗତ ଭିକ୍ଷୁକ ଜନ ଦାଦେ ଯେତେ
ନିରାଶ ନ କରିବ ଦେଉଥିବ ଉଦେ ଅସ୍ତ ପରିଯନ୍ତେ । ୨୦୮ ।
ନିତ୍ୟକର୍ମ ଅନ୍ତର ନୋହିବ ଯେକଲତା
ଅନୁବ୍ରତେ ଶୁଣୁଥିବ ପୁରାଣ ସଙ୍ଗୀତା । ୨୦୯ ।
ଦିବାରାତ୍ରେ ବଞ୍ଚିବ ଯେକା ମାଧବକଇଂ କର ଲୟେ
ଘୃତ ଜାଗର ଜାଳି ନିଶି ବଞ୍ଚିବ ଯେକଧ୍ୟାୟେ । ୨୧୦ ।
ଶଯ୍ୟାରେ ନ ବହିବ ତାମସ ଯେ ବୃତ୍ତି
କଦାଚିତେ ନ ଭାବିବ ପାପ ଯେ ପ୍ରକୃତି । ୨୧୧ ।

---

୨୧୧ { ଶଯ୍ୟାରେ ନ ବହିବ ତାମସ ଯେ ମୂର୍ତ୍ତି
କଦାଚିତେ ନ ଭାବିବ ବେଶ୍ୟା ସଙ୍ଗ ପ୍ରୀତି ।—ଜ, ୯

ଶୁଣ ହୋ ଯୁଧେଷ୍ଠି ସୁଜନ ହୋଉ କି କୁଜନ ହୋଉ ଅବା
ପୁରାଣ ସଙ୍ଗତେ ନିତ୍ୟକର୍ମହିଂ କରିବା । ୨୧୨ ।
ଯୁଧେଷ୍ଠି ପୁଚ୍ଛାକଲେ ଆକାଶୁଂ ଉତପତ୍ତି ତୋୟ
ସୁଜନ କୁଜନ ବୋଲି କେନ୍ହେ ବାରବାଂକ ଯେହ୍ନା । ୨୧୩ ।
ମାରକଣ୍ଡେ ବୋଇଲେ ବାବୁ ଶୁଣ ନୃପବର
ମେରୁ ମେଖଳୁଂ ଯେ ସଙ୍ଗମ ହୋଉଛନ୍ତି ସାଗର । ୨୧୪ ।
ମେରୁ ମେଖଳେ ଉଠି ଦେବତାଯେ ପଖାଳୁଛନ୍ତି ଅଙ୍ଗ
ତହିଂର ଉଦେକ ଆସି ସାଗରେ ହୋଉଛନ୍ତି ସଙ୍ଗ । ୨୧୫ ।
ତିନଶ ସାଠିଯେ ଦିନ ବହଇ ଯେବଣ ଜଳ
ତହିଂରେ ସ୍ନାନକଲେ ହୁଅଇ ବହୁତ ସୁଫଳ । ୨୧୬ ।
ଆକାଶୁଂ ପତିତ ସମୋଦ୍ର ସାହିତା ସୁଜଳ ଜଳ ବୋଲି
ପୁଷ୍କରଣୀ ଗଡ଼ ଖାଲ କୂପ ଯେହ୍ନାକୁ ଜଳ କହିଲି । ୨୧୭ ।
ଆହୋ ଚଇତନ ପୁଷ୍କରଣୀରେ ସ୍ନାହାନ କଲେ ପାଞ୍ଚଭାଗ ହୋଇ ଧର୍ମ
କୀର୍ତ୍ତି କଲି ଲୋକକୁ ବେନଭାଗ ନିତ୍ୟକର୍ମ । ୨୧୮ ।

---

୨୧୨।୨ "ପୁରାଣ ସଙ୍ଗତେ ନିତ୍ୟକର୍ମହିଁ କରିବା" ଏହି ପଦାପରେ "ଖ" ପୋଥିରେ ଭିନ୍ନ ପାଠ :—

ଯୁଧେଷ୍ଟି ପୁଚ୍ଛାକଲେ ହୋ ଶୁଣ ମହାମନ୍ୟୁ
କେଉଂଠାରେ ସ୍ନାନ କଲେ ହୋଯେ କେତେ ପୁଣ୍ୟ ।
ତାହା ଶୁଣି ମାରକଣ୍ଡେ ବୋଲନ୍ତି ବଚନ
ତୀର୍ଥେ ସ୍ନାନ କଲେ ହୋଯେ ଚ୍ଚରପାଦ ଧର୍ମ ।
ସର୍ବଦାହି ଯେଉଂ ନଦୀ ବହୁଯାଉ ଥାଇ
ତହିଂ ସ୍ନାନକଲେ ଯେ ତିନପାଦ ଧର୍ମ ହୋଇ ।
ଆକାଶୁଂ ପଡ଼ିଣ ଜଳ ଯାଯେ ସମୁଦ୍ରକୁ
ମଧ୍ୟେ ରହିଲେ ତାଗ କହନ୍ତି ତାହାକୁ ।
ତହିଂ ସ୍ନାନକଲେ ବେନିଭାଗ ଧର୍ମ ହୋଇ
ଯେକ ଭାଗ ପୁଷ୍କରଣୀ ସ୍ନାନରେ ଅଛଇ ।
କୀର୍ତ୍ତିକଲି ଲୋକ ତିନିଭାଗ ପାଇ ଧର୍ମ
ଭାଗେକ ମିଳଇ ଯେ କରଇ ସ୍ନାନ କର୍ମ ।

ତିନ ଭାଗ ପ୍ରାପତ ହୋଅଇ ଧର୍ମ କଲା ଲୋକଙ୍କୁ
ସାତ ଭାଗ ଧର୍ମ ହୋଅଇ ନଦୀ ସ୍ନାହାନକୁ । ୨୧୯ ।
ବାବୁ ମାର୍କଣ୍ଡେୟେଶ୍ୱର ଯେ ତୀର୍ଥଂକର ଅଟଇ ଆଦ
ପଞ୍ଚତୀର୍ଥର ନାଭି ମଣ୍ଡଳ ଯେଥେ ହାଦେ ଭେଦ । ୨୨୦ ।
ଯେଥିର ପଛିମେ ସ୍ନାନ କଲେ ପୂର୍ବ ଯେ ମୂରତି
ନାଭି ମଣ୍ଡଳ ପରଯନ୍ତେ ପଶିବାକ ଯୁଗତି । ୨୨୧ ।
ନାଭି ମଣ୍ଡଳୁଂ ଅଧିକ ଯେ ଗଙ୍ଗାଂଯେ ପଶିଲେ
ମାତୃ ହରଣ ଦୋଷ ପାଇବ ଯେଥି ଭଲେ । ୨୨୨ ।
ନତ୍ୟକର୍ମ ଜଳକୁ ନାଭି ଯାଯେ ସ୍ନାହାନ
ଖଣ୍ଡଇ ଦୁଷ୍କୃତ ଯେ ଅନେକ ପାପମାନ । ୨୨୩ ।
କଥଯନ୍ତି ମାରକଣ୍ଡେ ଧୂରଣ ସଙ୍ଗତେ
ଯେ ମାଘ ମାହାତ୍ମ୍ୟ ଯେ କହଇ ମୁଂ ତୋତେ । ୨୨୪ ।
ବାବୁ ପୁଷ୍କର ବୋଲକର ଯେବଣ ପୁରୁଷଇଂ
ଶତେକୋଟି ତୀର୍ଥ ଲୋଭର ଭିତରେ ବସଇ । ୨୨୫ ।
ମେରୁ ମେଖଳେ ଥାଇଂ ପୁଷ୍କର ଦେବସ୍ୱାମୀ
ଯେ ମକର ମାସରେ ସକଳ ଜଳଗାମୀ । ୨୨୬ ।
ବାବୁ ନବ କର୍ମଣ ପୁରୁଷ ଯେ ବଶାନ୍ତ କାଯେ
ପରମ ନରକୁଳ ପୁରୁଷ ଯେହାର ନାହିଂ ଆତଯାଯେ । ୨୨୭ ।
ମକର ମାସର ସ୍ନାହାନେ ଯେଉଂ ଫଳଶ୍ରୁତି
ଯେ ପୁଷ୍କର ଦେବତା ହୋଇଲେ କ୍ଷେତ୍ର ଆଧିପତି । ୨୨୮ ।
ଯେ ମକର ତିରଣ ଦିବସେ ଯେ କରଇ ସ୍ନାହାନ
ଖଣ୍ଡଇ ଅପାଦ କଲେଶ ଦୁଷ୍କୃତମାନ । ୨୨୯ ।
ବାବୁ ମକର ମାସର ସ୍ନାହାନ ଫଳଶ୍ରୁତି
ନବସୃଷ୍ଟି କରତା ହୋଇଲେ ବେଦପତି । ୨୩୦ ।
ବାବୁ ମକର ମାସର ସ୍ନାହାନର ଧର୍ମେ
ଦିବଶ୍ୟ ଧର୍ମ ପାଇଲେ ବୃହସ୍ପତି ଉତ୍ତମେ । ୨୩୧ ।

---

୨୨୬। ୨ ମକର ମେଷ ତୁଳ ଧନୁମାହରେ ଜଳଗାମୀ ।— କ, ଚ

ବାବୁ ଚସ୍ୟୁ ମାଘ ମାସର ସ୍ନାହାନ ଫଳଶ୍ରୁତି
ଅମରାଧି ନାଥ ହୋଇଲେ ସୁରପତି । ୨୩୨ ।
ମାଘମାସ ସ୍ନାନେ ଶତମନ୍ୟୁ କଲେ ବାଞ୍ଛା
ବାରାନିଧି ନାୟେକ ସେ ଭଣ୍ଡାର କରେ ରକ୍ଷା । ୨୩୩ ।
କଳଂକ ଚନ୍ଦ୍ରେ ସ୍ନାହାନ କଲା ଯେ କୃତାନ୍ତ
ନାଶକର ପୁରୁଷ ସେ ହୋଇଲେ ଯମ ଦଇବତ । ୨୩୪ ।
ରୁଦ୍ର ଦେବତାୟେ କଲେ ମାତୃ ହରଣ ଦୋଷ
ମକରମାସ ସ୍ନାହାନେ ମହାଦେବର ପାପ ଗଲା ଧ୍ୱଂସ । ୨୩୫ ।
ବାବୁ ବରୁଣ ମାଘ ସ୍ନାହାନ କଲେକ ଭୂତସ୍ୱାମୀ
ପୁଷ୍କର ପ୍ରସନ୍ନେ ସେ ହୋଇଲେ ଜଳଗାମୀ । ୨୩୬ ।
ବାବୁ ବାସୁକି ନାଗ ମକରେ ସ୍ନାହାନ ସେ କଁର
ମହାଭାର ସହିଲନ୍ତି ସେହି ବସୁନ୍ଧରା । ୨୩୭ ।
ଶଙ୍ଖ ପଦ୍ମ ମହାପଦ୍ମ ଶ୍ୱେତପଦ୍ମ କୁଳିକ ତକ୍ଷକ ଅନନ୍ତ
ମକର ସ୍ନାହାନ ଫଳେ ହୋଇଲେ ଦଇବତ । ୨୩୮ ।
ମକର ମାସର ସ୍ନାହାନର ଫଳେ ଦ୍ୱାଦଶ ବିଶ୍ୱଦେବା
ପାଇଲେ ପରମ ଗତି ମହାସିଦ୍ଧ ଦେବା । ୨୩୯ ।
ମକର ସ୍ନାହାନ କଲେ ଉନମତ ଋଷିର ତନୁ
ଉଦୟୁ କାଳ ବାକ୍ୟେ ହୋଇଲେ ସନକ ସପତ ମନୁ । ୨୪୦ ।
ବେଶ୍ୟାଙ୍କ ଜାତ ହେଲେ ବଶିଷ୍ଠ ମହାଋଷି
ମାଘ ସ୍ନାହାନର ଫଳେ ଯୁଗାନ୍ତେକ କଳ୍ପବାସୀ । ୨୪୧ ।
ସତ୍ୟଯୁଗେ ସୂର୍ଯ୍ୟବଂଶେ ଦକ୍ଷ ପ୍ରଜାପତି
ଚନ୍ଦ୍ର ଦେବତାକଇଂ ପ୍ରଦାନ କଲା ସତାଇଶ ଦୋହିତା । ୨୪୨ ।
ସେ ଚନ୍ଦ୍ର ରୋହିଣୀର ତୁଲେ ଅନେକ ପୀରତି
ଛବିଶ କନ୍ୟାର ସେ ନ ଗଲେକ କତି । ୨୪୩ ।
ଛବିଶ କନ୍ୟାଂକର ତାପେ ପ୍ରଜାପତି ଚନ୍ଦ୍ରକୁ କଲେ କୋପ
ଦୋହିତାଂକର ବକଳେ ସେ ଦକ୍ଷ ରାଗେଣ ଦେଲେ ଶାପ । ୨୪୪ ।
ପ୍ରଜାପତି ବୋଇଲେ ତୋତେ କାମୁକ ପୁରୁଷ ବୋଲି
ତିହାଂର ନିମନ୍ତେ ତୋତେ ସତାଇଶ କନ୍ୟାକଇଂ ଦେଲି । ୨୪୫ ।

ଛବଶ କନ୍ୟାଙ୍କୁଇଂ ମୋର ତୁ କଲୁ ଯେ ଦୁରୂଭାଗୀ
ତନୁ ଛିନ୍ନ ହୋଇଲେ ତୋହୋରେ ଅଭାଗୀ । ୨୪୬ ।
ଶାନ୍ତଶୀଳ ଦୁହିତାଂକୁ ଅନମିତେ ଦୁଖ ଦେଉଂ
ଯେହ୍ନାଂକର ଦୁଃଖେ ତୋର ତନୁ ଛିନ୍ନ ହୋଉ । ୨୪୭ ।
ସେ ଅନାଦ୍ୟ ପୁରୁଷ ମହାତମାର ଅନ୍ତ ମହାକୋପେ
ତତକ୍ଷଣେ ଚନ୍ଦ୍ର ଗଳତ ହୋଇଲା ପ୍ରଜାପତିର ଶାପେ । ୨୪୮ ।
ପ୍ରଭାସ ପୁଷ୍କରର ଜଳେ ମକର ମାସେ ଚନ୍ଦ୍ର ଦେଇଂଣ ପଡ଼ିଲା
ପ୍ରଜାପତିର ଶାପେ ଯେ ଶଶଧର ନାଶଗଲା । ୨୪୯ ।
ବାହୁଡ଼ି ଚନ୍ଦ୍ର ଦେବତାର ତନୁ କଅଂଳ ଉଠିଲା
ମାଘ ସ୍ନାହାନ ଫଳେ ସେ ଉଦଯ୍ୟେ ହୋଇଲା । ୨୫୦ ।
ଦକ୍ଷର ଛବଶ କନ୍ୟା ଯହୁଂ ଥିଲା ସେ ଉପେକ୍ଷି
ମାଘ ସ୍ନାହାନର ଫଳେ ସେ ଉଭୟେ କାମ ଇଚ୍ଛି । ୨୫୧ ।
ପୁଷ୍କରର ଦେବ ପରସନ୍ନେ ଅଭୟେ ହୋଇଲେ
ବଇବନ୍ତ ପୁରୁଷ ହୋଇ ଆକାଶେ ଉଦେ ହେଲେ । ୨୫୨ ।
ଆଦ୍ୟ ବ୍ରହ୍ମାଂକର ଯେ ଉପୁଜଲେ ପଞ୍ଚତନୁ
ସନକ ସନନ୍ଦନ ସନାତନ କପିଳ କୁମାର ଶତମନୁ । ୨୫୩ ।
ମକର ମାସ ସ୍ନାହାନର ଯେତେକ ଫଳଶ୍ରୁତି
କଳପୀ ପୁରୁଷ ହୋଇଲେ ସେ ଅନନ୍ତ ମୂରତି । ୨୫୪ ।
ମକର ମାସ ସ୍ନାହାନ କରଇ କାମଦେବ କ୍ଷେତ୍ରପାଳ
ଯେହ୍ନଥିର ଫଳଶ୍ରୁତିରେ ସେ ଆକାଶ ରଖୁଆଳ । ୨୫୫ ।

---

୨୪୬।୨ ତନୁ ଛିନ୍ନ ହୋଇଲେ ତୋହୋରେ ଅଭୋଗୀ - ଅ, ଛ

୨୫୩ { ଆଦ୍ୟ ବ୍ରହ୍ମାଂକର ଯେ ଉପୁଜଲେ ସାତ ତନୁ
ସନାକ ସନାତନ ଆଦ୍ୟକର ମନୁ ।—ଜ

୨୫୩ { ଆଦ୍ୟ ବ୍ରହ୍ମାଂକର ଯେ ଉପୁଜଲେ ତନୁ ସାତ
ସନକ ସନାତନ ସନନ୍ଦନ ସନ କପିଳ କୁମାର
ସନତ୍ ସୁଜାତ । ( ସଂଶୋଧିତ )

୨୫୫।୨ ଯେହ୍ନଥିର ଫଳ ଶ୍ରୁତିରେ ସେ ଆକାଶ ରକ୍ଷାପାଳ ।—ଚ, ଛ

ଆହେ। ବାବୁ ଯୁଧିଷ୍ଠିର ମକର ମାସ ସ୍ନାହାନ ସୁକୃତର ଫଳେ
ଋଷିମାନେ ବ୍ରତଳୁ ଆମ୍ଭେ ପରମ ନଗରକୁଲେ । ୨୫୬ ।
ଅଗସ୍ତି ବଶିଷ୍ଠ ପଉଲସ୍ତି ଆବର ବାଲମୀକେ
ଶକ୍ତି ବିଶ୍ୱାମିତ୍ର ମାରକଣ୍ଡ ଶଉନକେ । ୨୫୭ ।
ବାମଦେବ ସୁଦେବ ଗାଲବ ଆବର ପାରେଶ୍ୱର
କଣ୍ଡ କଣ୍ୱେ କପିଳ ସତ୍ୟପା ଋଷିଶିଙ୍ଗ ଅଙ୍ଗିର । ୨୫୮ ।
ଗାଲବ ଲୋମଶ ବ୍ୟାସ ଜଯ୍ୟେମୁନି ଶୁକବ୍ରହ୍ମା ବଇଶମ୍ପାୟନ
ମକର ମାସ ସ୍ନାହାନ ଫଳ୍ଗୁଂ ଆମ୍ଭନ୍ତ ଯୁଗ ଯ୍ୟେକଦ୍ଧନ । ୨୫୯ ।
ସତ୍ୟଯୁଗେ ବୃଦ୍ଧଶ୍ରବା, ପୁରୁରବା, ନଘୋଷ ଯଯାତି
ପୁରୁ, ପ୍ରୱୀର, ଭୂମନ୍ନୁ ଦୁଷ୍ୟନ୍ତ ଚକ୍ରବ୍ରତୀ । ୨୬୦ ।
ମକର ମାସର ଯେ ସ୍ନାହାନର ଫଳେ
ସତ୍ୟଯୁଗ ପାରକଲେ ଯ୍ୟେଥିର ପୁଣ୍ୟବଳେ । ୨୬୧ ।
ଶୁଣ ବାବୁ ଯୁଧିଷ୍ଠି ସତ୍ୟଯୁଗେ ଦକ୍ଷ ପ୍ରଜାପତି
ବଇବସ୍ୱତ ମନୁ, ଇକ୍ଷାକୁ ବଂଶର ନୃପତି । ୨୬୨ ।
ସୋମେକ ଅଶ୍ୱକ, ପୃଥୁ ଯେ ସଗର
ଭାନୁବନ୍ତ ଭଗୀରଥ, ଦିଲୀପ, ଯୁବନାଶ୍ୱ ମହୀଧର । ୨୬୩ ।
ଯୁବନାଶ୍ୱ ରାଜା ଉପୁଜିଲା ଇକ୍ଷାକୁର ବଂଶେ
ଅନେକ ଯାଗଯଜ୍ଞଂ ରାଜା ଖଟାଇ ହରଷେ । ୨୬୪ ।
ଯୁବନାଶ୍ୱ ରାଜାର ଯହୁଂ ନୋହିଲା ସନ୍ତତି
ଅନେକ ଦାନଧର୍ମ କଲା ମହୀପତି । ୨୬୫ ।
ବହୁତ ଦାନ ଦିଲା ରାଜା ସନ୍ତାନ ଜାତ ଅର୍ଥେ
ଦେବତା ବ୍ରାହ୍ମଣଂକର ବନଯ୍ୟେ ଭଗତେ । ୨୬୬ ।
ଦଶ ସହସ୍ର ବରଷ ପରଯନ୍ତେ ଅଲୋକତ ଧର୍ମ କଲା
ତଦ୍ୟାପି ଯୁବନାଶ୍ୱର ଯେ ସନ୍ତତ ନୋହିଲା । ୨୬୭ ।

---

୨୬୪।୨ ବହୁତ ଯାଗଯଜ୍ଞଂ କଲ ରାଜା ଭଣ୍ଡାର ବିଧ୍ୱଂସେ ।— ତ, ଟ, ଥ ନ

ଯତ୍ନଂ ତାହାର ସନ୍ତତ ନୋହିଲା ସତ୍ୟଯୁଗେ
ଦେବତା ବ୍ରାହ୍ମଣଂକ ବୃତ୍ତି ହରିଲା ବର ସ୍ନେହ ରାଗେ । ୨୬୮ ।
ଅନେକ ଦୂଷିତ କଲା ନାମ ଧର୍ମ ନାହିଂ
ସେହିକାମାନ ପ୍ରାଗଶର୍ଥେ ମାଘ ସ୍ନାହାନ ଦାହି । ୨୬୯ ।
ସମସ୍ତ ପୁରାଣ ସେ ନନ୍ଦିଲା ଯୁବନାଶ୍ୱ
ସେହିକାମାନ ମାଘ ମାହାତ୍ମ୍ୟ ଶୁଣଇ ମହମାସ । ୨୭୦ ।
ଆହୋ ଯୁବନାଶ୍ୱ ରାଜାର ଅନୀତ ଦେଖିଣ ସବଋଷି
ସମସ୍ତ ଋଷିଗଣେ ବ୍ରହ୍ମାକଇଂ ଯାଇଂ ଭାଷି । ୨୭୧ ।
ସ୍ୱାମୀ ମୃତ୍ତୁ ମଣ୍ଡଳେ ଯେ ଇଛାକୁରୁ ବଂଶେ
ସତ୍ୟରାଜାର ନନ୍ଦନ ନୃପତ ଯୁବନାଶ୍ୱେ । ୨୭୨ ।
ବଡାଇ ଧାର୍ମିକ ସେ ଅଟଇ ନରପତ
ଅନେକ ଧର୍ମେ ତାର ଯେ ନୋହିଲା ସନ୍ତତ । ୨୭୩ ।
ପୁତ୍ର ଅଭାବେ ରାଜା ପାଇଲା ବହୁତ ଦୁଖ
ଦେବତା ବ୍ରାହ୍ମଣଂକ ବୃତ୍ତି ହରିଲା ହୋଇଣ ବିମୁଖ । ୨୭୪ ।
ସତ୍ୟଯୁଗେ ଯେବେ ବୃତ୍ତି ହରଣ ହୋଇବ
ଆବର ତ୍ରେତାଯୁଗେ ବୃତ୍ତିଦାନ ଧର୍ମ କ ରହିବ । ୨୭୫ ।
ଋଷିଂକର ବଚନେ ଯେ ବୋଇଲେ ବିରଞ୍ଚି
ଆମ୍ଭେ ଯୁବନାଶ୍ୱ ରାଜାକଇଂ ଦେବୁ ପୁତ୍ର ସଞ୍ଚି । ୨୭୬ ।
ବାରମାସର ମଧ୍ୟେ ଯେ ମକର ମାସ ସିଦ୍ଧି
ସେ ପୁଣ୍ୟେ ତାହାକଇଂ ପୁତ୍ରେକ ଦେବୁଂ ଯେ ସମ୍ପାଦି । ୨୭୭ ।
ନରାଧାର ଆଗ୍ୟାଂ ଯତ୍ନଂ ଦିଲେ କୁଶଟକେତୁ
ବ୍ରହ୍ମଋଷିମାନେ ଶୁଣି ହୋଇଲେ ସପୁତ୍ରୁ । ୨୭୮ ।
ବାବୁ ଆଶ୍ୱିନ କାର୍ତ୍ତିକ ମାର୍ଗଶୀର ପୁଷ୍ପମାସ ଅନ୍ତେ
ମକର ମାସର ଯେ ସଂକରାନ୍ତ ହୋଅନ୍ତେ । ୨୭୯ ।
ମକର କୃଷ୍ଣପକ୍ଷ ଯେ ଦୁଷ୍ଟାଯୂାର ତିଥି
ମଘା ନକ୍ଷତ୍ର ସେ ଯେ ବାର ବୃହସ୍ପତ । ୨୮୦ ।
ବାଳବ ନାମେ କରଣ ବିଷ୍କ ମ୍ଭ ନାମେ ଯୋଗ
ବଶିଷ୍ଠେ ଜଣାଇଲେ ପିତାମହର ଆଗ । ୨୮୧ ।

ଜାଣିଲେ ପିତାମହ ସେ ଯୁବନାଶ୍ୱର କଥା
ତ୍ରିବେଣୀ ସଙ୍ଗମେ ସେ ପଶିଲେ ଦେବ ଧାତା । ୨୮୨ ।
ନିର୍ମଳ ଜଳ ଘଟେକ ଆଣିଲେ ଦେବ ତୋଳ
ମହାମନ୍ତ୍ରେ ମନ୍ତ୍ରିଲେ ସନ୍ତତି ଜାତ ହେବ ବୋଲ । ୨୮୩ ।
ବୃନ୍ଦାଅର୍କ ବୋଲଣ ଅଛଇ ଯେକ ବନ
ତହିଁ ଯାଇଂ ପ୍ରବେଶ ହୋଇଲେ ଚତୁରାନନ । ୨୮୪ ।
ଶିଷ୍ୟମାନନ୍ତ ଦେଖିଣ ସ୍ୱାମୀ ବେଦବରେ
ସେ ଜଳଘଟ ନେଇ ଥୋଇଲେ ଧ୍ରୁମନ ଗିର ଶିଖରେ । ୨୮୫ ।
ଶାଯେଣ୍ଡା ବୃକ୍ଷେକ ଅଛି ସେ ଗିର ଉପରେ
ତହିଁରେ ଜଳ ଘଟ ଥୋଇଲେ ନିର୍ଭୟରେ । ୨୮୬ ।
ଲୋକାଲୋକ ନାମେ ସେ ଅଛଇ ଅଚଳ
ଆଦ୍ୟ ଅନ୍ତ ଶୂନ୍ୟ ସେ ଅଛଇ ନିରାକୁଳ । ୨୮୭ ।
ତାହାର ଉପରେ ଶାହାଣ୍ଡା ବୃକ୍ଷ ଶିଖଶାଖା
ଗଗନ ମାର୍ଗେ ସେ ଲଗିଅଛି ତାର ରେଖା । ୨୮୮ ।
ତ୍ରିଶାଖା ଡାଳେଣ ସେ ବସାଇଲେ ମୁଚୁଳି
ତହିଁର ଉପରେ ଧାତା ଥୋଇଲେ ଜଳ ଘଟ ତୋଳ । ୨୮୯
ମହାମନ୍ତ୍ରେ ମନ୍ତ୍ରିଲେ ସନ୍ତତି ଜାତ ଭଳ
ବଶିଷ୍ଠଙ୍କୁ କହିଣ ପିତାମହ ଗଲେ ଚଳ । ୨୯୦ ।
ବୋଇଲେ ଯେହା ନେଇ ସମର୍ପିବ ଯୁବନାଶ୍ୱ ରାଜାକୁ
ଯେ ଜଳ ଆପ୍ୟାନ କରାଉ ତାହାର ଭାରଯାକୁ । ୨୯୧ ।
ଉପୁଜିବ ପୁତ୍ରେକ ତାର ବଳେଣ ବଳବନ୍ତା
ମହା ବଳିଷ୍ଠ ହୋଇବ ସେ ତ୍ରୈଲୋକ୍ୟ ଜଗଜ୍ଜିତା । ୨୯୨ ।
ଗଲେକ ପିତାମହ ଯଶୋବନ୍ତୀ ଭୁବନେ
ଯେଣେ ଯୁବନାଶ୍ୱ ଭ୍ରମଇ ବିପୁନ୍ୟେ ମୃଗୟା କାରଣେ । ୨୯୩ ।
ବୃନ୍ଦାଅର୍କ ବିପୁନ୍ୟେ ସେ ଖେଦଇ ମୃଗୟା
ଜଳର ବିହୁନେ ଷୋଷ ପାଇଲା ତାର ଦେହା । ୨୯୪ ।
ଜମ୍ବେକ ବୋଲକରି ତାହାର ହାଦେ ମନ୍ତ୍ରୀ
ଜଳ ଆଣ ବୋଲିକରି ବୋଇଲେ ନୃପତି । ୨୯୫ ।

ଲୋଡନ୍ତେ ମନ୍ତ୍ରୀବର ନ ପାଇଲା ଜୋଡ଼ ଖାଲ
ଗୋଲେକ ବୃକ୍ଷ ଉପରେ ଦେଖିଲା ଜଳ ଘଟେକ ନିର୍ମଳ । ୨୯୬ ।
ବୃକ୍ଷ ଉପରେ ଉଠିଣ ତାହା କାଢ଼ିଣ ଯେ ଆଣି
ଦେଖିଲାକ ଘଟରେ ଅଛଅନ୍ତି ଶୀତଳ ନିର୍ମଳ ପାଣି । ୨୯୭ ।
ଘେନିଣ ମନ୍ତ୍ରୀବର ଆସଇ ତାହା କନ୍ଧରେ କରି
ରାଜାର ସମ୍ମୁଖରେ ଥୋଇଲା ବହନ ସେ ବାରି । ୨୯୮ ।
ମହା ଶ୍ରମେଣ ରାଜା ଅଛି ଅସରାଗେ
ଆସ୍ୱୋଷି ଯୁବନାଶ୍ୱ ଜଳ ପିଇଲା ଅତି ବେଗେ । ୨୯୯ ।
ମନ୍ତ୍ରୀକି ପ୍ରଶଂସା ରାଜା କରଇ ବହୁତ
କାହିଁ ପାଇଲୁ ଯେ ଜଳ ପ୍ରତକ୍ଷେ ଅମୃତ । ୩୦୦ ।
ଅଶ୍ୱର ପିଠିରେ ଯାଇଁ ବଢ଼େ ନରେଶ୍ୱର
ପ୍ରବେଶ ହୋଇଲା ଯାଇଁ ଅଯୋଧ୍ୟା ନଗ୍ରପୁର । ୩୦୧ ।
ଶୁଣ ହେ ଯୁଧିଷ୍ଠି ଦେବ ବଦନ୍ତି ମାରକଣ୍ଡେ
ବଶିଷ୍ଠ ପଉଲସ୍ତି ଯାଇ ପ୍ରବେଶ ଯଣଶାବନ୍ତୀ ବ୍ରହ୍ମାଣ୍ଡେ । ୩୦୨ ।
ବିନୟ ଭାବହୋଇ ପୁଚ୍ଛନ୍ତି ଦେବ ଧାତା
ଭ୍ରାନ୍ତି କଲେ କି ସେ ଯୁବନାଶ୍ୱ ରାଜା କଥା । ୩୦୩ ।
ବ୍ରହ୍ମା ବୋଇଲେ ତୁମ୍ଭେ ଚଳ ଯା ବହନ
ସନ୍ତତି ଜଳଘଟ ଥୋଇ ଅଇଲୁଂ ବୃନ୍ଦାଅର୍କ ବନ । ୩୦୪ ।
ଯତନେ ଥୋଇଅଛୁ ଗୋଲକ ବୃକ୍ଷ ଡାଳେ
ତାହା ନେଇ ଦେଇଆସ ଯୁବନାଶ୍ୱ ମହୀପାଳେ । ୩୦୫ ।
ସେ ଜଳ ଆପାନ କରିବ ତାହାର ବନିତା
ପୁତ୍ରେକ ହୋଇବ ତାର ମହା ବଳବନ୍ତା । ୩୦୬ ।
ପିତାର ବଚନେ ସେ ମୁନିମାନେ ଗଲେ
ବୃନ୍ଦାଅର୍କ ବନେ ଖୋଜ ଲୋଡ଼ି ନ ପାଇଲେ । ୩୦୭ ।
ଧାତାର ଅଗ୍ରତେ ସେ କହିଲେ ବେଗେ ଯାଇଁ
ସ୍ୱାମୀ ସନ୍ତକ ଅଛଇ ଜଳଘଟି ତହିଁ ନାହିଁ । ୩୦୮ ।
ଶୁଣିକରି ବେଦବରେ ଲାଗିଲା ବଡ଼ ଚିନ୍ତା
ନ ପୁଣ ପିଅଇ ତାହା ଅସୁର ବଳବନ୍ତା । ୩୦୯ ।

ଧ୍ୟାନେଣ ଜାଣିଲେ ତାହା ଦେବ ହୃଦଗତେ
ଯୁବନାଶ୍ୱ ଭକ୍ଷିଲା ତାହା ତୃଷାର ଆରତେ । ୩୧୦ ।
ଯୁବନାଶ୍ୱ ରାଜା ଯେ ପିଇଲାକ ଜଳଘଟ
ପୁତ୍ରେକ ଜାତ ହୋଇବ ନୃପତି ଜୀବନ ହେବ ନଷ୍ଟ । ୩୧୧ ।
ଗର୍ଭରେ ରାଜାର ଯେ ରହିଲା ପୁତ୍ର ମହାବଳବନ୍ତା
ତୁମ୍ଭେ ଯାଇ ରାଜାକୁ କହ ନ କରୁ ସେ ଚିନ୍ତା । ୩୧୨
ବଶିଷ୍ଠ ବାମଦେବ ଅଗସ୍ତି ପଉଲସ୍ତ୍ୟେ
ଗୃହେହେଂ ପ୍ରବେଶ ହୋଇଲେ ଯାଇ ଯୁବନାଶ୍ୱ ରାଜାର ଅଗ୍ରତେ ।୩୧୩।
ଦେଖିଣ ମହାରାଜା ନ କହଇ ସମ୍ଭାଷି
ହୃଦଗତେ ବର୍ତ୍ତଇ ଅପୁତ୍ରିକ ହେଲି କସ ହାଦୈ ରୁଷି । ୩୧୪ ।
ବଶିଷ୍ଠେ ବୋଇଲେ ତୁ ଶୁଣ ମହୀଧର
ଦେବତା ବ୍ରାହ୍ମଣଂକୁ ତୁ ଆରାଧନା କର । ୩୧୫ ।
ପାଇଲୁନ କାରଣ ରାଜା ଅଲ୍ପଦିନ କଷ୍ଟି
ବଂଶ ରକ୍ଷା ହୋଇବ ତୁ ନ ଦେଖିବୁ ପୁତ୍ରଗୋଟି । ୩୧୬ ।
ଋଷିଂକର ବଚନ ସେ ନୃପତି କଲା ହେଳ
ସ୍ନେହମତ ଭଣ୍ଡ ମୋତେ ମୋହୋର ହୋଇଲା
ଚତୁର୍ଥ ଅବସ୍ଥା କାଳ । ୩୧୭ ।

ବ୍ରହ୍ମଋଷିମାନେ ତହୁଂ ସେ ଗଲେ ତପସ୍ଥାନେ
ବ୍ରହ୍ମାଂକର ବଚନ କି ହୋଇପାରେ ଆନେ । ୩୧୮ ।
ପିତାର ମନ୍ତ୍ରବଳ ନୋହିଲାକ ନାଶ
ପୁତ୍ରେକ ରହିଲା ଯୁବନାଶ୍ୱ ଗର୍ଭବାସ । ୩୧୯ ।
ଦିବସେ ଅଳସ ଦେହ ରାଜାର ଘନେ ଜ୍ୱର ଖଣ୍ଡି
ଆହାର ନ ରୁଚଇ ରାଜାର ଦେହେ ଅଳଂକାର ନ ମଣ୍ଡି । ୩୨୦ ।
ପେଟ ଦ୍ୱାର ଦେଖି ରାଜା ଉଦ୍ଦେଶ୍ୟ କରଇ ବଇଦ୍ୟ
ଅନେକ ମଉଷଧି ସେ କରନ୍ତି ସମ୍ପାଦ । ୩୨୧ ।
ମହା ମହା ବଇଦ୍ୟମାନେ ମଉଷଧି ଦିଅନ୍ତି ଯେତେ ଯେତେ
ସବୁ ଭସ୍ମ ହୋଅଇ ରାଜାର ଗର୍ଭଗତେ । ୩୨୨ ।

ବ୍ରହ୍ମାର ମହାମନ୍ତ୍ର ରାଜାର ଗର୍ଭେ ପଶି
ହୁତାଶନେ ପଡିଲେ ଯେନ୍ହେ ତୃଣ ହୋଯ୍ୟେ ଧ୍ୱଂସି । ୩୨୩ ।
ଦିନୁ ଦିନୁଂ ରାଜାର ଦେହ ହୋଇଲା ଅଶକତ
ଉଠନ୍ତେ ବସନ୍ତେ ରାଜା ହୋଇଲା ମୋହଗତ । ୩୨୪ ।
ମୁଖ ନାସିକା ଚରଣ ନୋହିଲା ଚଳନ୍ତା
ଗର୍ଭରେ ରହିଛି ପୁତ୍ର ମହାବଳବନ୍ତା । ୩୨୫ ।
କାହାକଇଂ ଗୋଚର ଯେ ନୋହଇ ଯେ କଥା
ବୋଲନ୍ତି ରାଜା ବୃତ୍ତି ହରଣ କଲା ଋଷି ବ୍ରାହ୍ମଣ ଦେବତା । ୩୨୬ ।
ସହି ନୁଆରଲେଟି ସେ ମହାଖଳା ଭିତରେ
କେହୁ ଅବା ପଶିଲାଟି ରାଜାର ଉଦରେ । ୩୨୭ ।
ମହାକାଳ ହୋଉ କ କ୍ଷେତ୍ରପାଳ ଚୃମୁଣ୍ଡା
ରାଜାର ଗର୍ଭେ ପଶି ହୋଇଅନ୍ତି ପ୍ରଚଣ୍ଡା । ୩୨୮ ।
ଦେବାଂକ ପୋତ ମେଷ ଛାଗଳ ମଇଂଷି ମହାର
ଅନେକ ସମ୍ଭରେ ସେ କରନ୍ତି ବଳଭୋଜା ଯୋଗାଡ ବହୁର । ୩୨୯ ।
କଡା ଝୁମୁରା ଢୋଲ ଯେ ମୃଦଙ୍ଗ ଦାମଣ୍ଡି
ନାଚନ୍ତି ମତୁଆଳେ କ୍ଷେମଣ୍ଡା ନାଟଖଣ୍ଡି । ୩୩୦ ।
ନୋହୋଇ ଶାନ୍ତ ରାଜା ଦୁଗୁଣ ହୋଇଲା କଷ୍ଟ
ବଇଶାଖ ଶୁକ୍ଲ ଚଉଠି ଦିନ ଭେଟିଲେ ବ୍ୟାସ ଯେ ବଶିଷ୍ଠ । ୩୩୧ ।
ହଂସୂଲି ଭୁଲ ସୁପାତ୍ର, କରଣ ରାୟେ ତେଜ୍ୟା
ଭୂମିଗତେ ଅସାଷ୍ଟାମ ହୋଇ ପଡିଲା ମହାରାଜା । ୩୩୨ ।
ସନ୍ନିଧେ ବସିଲେ ଋଷି ବ୍ୟାସ ବଶିଷ୍ଠ
ଯୁବନାଶ୍ୱ ରାଜା ବୋଇଲା ମୁନି ହେ ଦେଖ ମୋହୋର କଷ୍ଟ । ୩୩୩ ।
କର୍ମରେ କାଳେ ମୋହୋର ନୋହିଲା ସନ୍ତତି
ଅଧର୍ମେଣ ମୋହୋର ଆସି ହୋଇଲା ବିପତ୍ତି । ୩୩୪ ।
ରାଜାକଇଂ ସମାର୍ଜନା କରନ୍ତି ମୁନିବ୍ୟାସ
ଶରୀର ସମ୍ଭାଳ ତୁହେ ନୃପତି ଯୁବନାଶ୍ୱ । ୩୩୫ ।
ତୋହୋର ଗର୍ଭେ ହୋ ଆନ ନାହିଂ କଛୁ
ମହା ବଳବନ୍ତା ହୋ ପୁତ୍ରେକ ରହିଅଛୁ । ୩୩୬ ।

ତୁ ଯତ୍ନଂ ହରିଲୁ ବୃତ୍ତି ବାଡି ଦେବତା ବ୍ରାହ୍ମଣ
ସମସ୍ତେ ଗୁହାରି କଲୁ ଆତ୍ମ ପିତାମହ ଆଗେଣ । ୩୩୭ ।
ସନ୍ତାନ ଜଳଘଟ କଲୁ ରାଜା ତୋନହାର ନମନ୍ତେ
ବ୍ରହ୍ମା ମନ୍ତ୍ରି ଆଣିଲେ ସନ୍ତତ· ଜଳଘଟେ । ୩୩୮ ।
ଯତନେ ଆଣି ଥୋଇଲୁ ବୃନ୍ଦାଅର୍କ ବନସ୍ତ ଗୋଲକ ବୃକ୍ଷେ
ସେ ଜଳଘଟ ମନ୍ତ୍ରୀ ଆଣିଦେଲାକ ତୋହୋର ଯେ ହାଥେ । ୩୩୯ ।
ମୃଗୟା କାଳେ ତୃଷାରେ ପିଇଲୁ ସେ ତୋ ଗର୍ଭେ ପୁତ୍ରେକ ରହିଲା
ବ୍ୟାସଂକ ବଚନେ ରାଜା ସାଷ୍ଟାମ ହୋଇଲା । ୩୪୦ ।
ବହୁତ ସାନନ୍ଦେ ରାଜା ଉଠିଣ ବସିଲା
ମନରୁ ସନ୍ତାପ ଯେ ତାହାର ଗୁଡିଗଲା । ୩୪୧ ।
ବୋଲଇ ମହାପତ୍ତି ଶୁଣ ହୋ ବ୍ୟାସଋଷି
ମୁହିଂ ପଛେ ମରଇ ମୋହୋର ହୋଉ ବାଳଶିଷି । ୩୪୨ ।
କୁଳକଇଂ କାରଣ ସେ ପାଳବ ପ୍ରଜାଜନ
ପ୍ୟେ ଅଯୋଧ୍ୟା ସୂର୍ଯ୍ୟବଂଶ ରହିବ ସେ ହୋଇବ ରାଜନ । ୨୪୩ ।
ଯଦ୍ୟପି ସାନନ୍ଦ ସେ ହୋଇଲା ମହାପତ୍ୟେ
ପିତା କ ସହି ପାରଇ ଗର୍ଭର ଭାରା ଯେତେ । ୩୪୪ ।
ମାତା ସିନା ପୁତ୍ରର ଅଟଇ ଗର୍ଭଧାରୀ
ସେହି ସେ ସହି ପାରଇ ନା ଗର୍ଭର ଆନ୍ଦୋଳ । ୩୪୫ ।
କ୍ଷଣେ ସାଷ୍ଟାମ ରାଜା କ୍ଷଣକେ ଅଶକତ
କ୍ଷଣେ କ୍ଷଣେ ଅଚେତ ରାଜା ପଡଇ ଭୂମିଗତ । ୩୪୬ ।
ଚମକ ପଡିଲା ସେ ଅଯୋଧ୍ୟା ରାଜ୍ୟର
ହେ ବେଦବ୍ୟାସେ ମୁଂ ପ୍ୟେଥୁଂ କେମନ୍ତେ ହୋଇବ ଯେ ପାର ।୩୪୭।
ବ୍ୟାସେ ବୋଇଲେ ରାଜା ତୁ ପାଇଲୁନ କାରଣ
ଜୀବନ୍ତେ ମୁକ୍ତ ପ୍ୟେବେ ବସ୍ତୁ ପୁରାଣ ଶୁଣ । ୩୪୮ ।
କହନ୍ତ ବ୍ୟାସେ ଯେ ଭୂତ ଭବିଷ୍ୟ ଗ୍ୟାଂତା
ସମରାଜ୍ୟ ଲୋକ ଯେନ ଯୁବନାଶ୍ୟ ରାଜା ହୋଇଲାକ ଶ୍ରୋତା ।୩୪୯ ।
ସପ୍ତମ ମାସେ ରାଜାର ହୋଇଲାକ ଗର୍ଭ ମହାଭର
କ୍ଷଣ କ୍ଷଣକେ ମୋହଗତ ରାଜା ସହିତ ନୁଆର । ୩୫୦ ।

ନବଶତ ରାଣୀ ରାଜାର ଅନ୍ତପୁର ଭିତରଯା
ଅନୁବ୍ରତେ ରାଣୀମାନେ ଖଟନ୍ତି ପରିଚର୍ଯ୍ୟା । ୩୫୧ ।
ମକର କୁମ୍ଭ ମୀନ ମେଷ ବୃଷ ମିଥୁନ କକଡ଼ା ମାସେ
ଶ୍ରାବଣ ଶୁକ୍ଳପକ୍ଷ ଦଶମୀର ଦିବସେ । ୩୫୨ ।
ପଣ୍ଡିତ ବାର ଯେ ଶ୍ରବଣା ନକ୍ଷତ୍ରେ
ବାଣିଜ୍ୟ ନାମେ କରଣ ଇନ୍ଦ୍ର ଯୋଗ ସହିତେ । ୩୫୩ ।
ପଞ୍ଚମେଣ ଭୃଗୁ ଯେ ଚତୁର୍ଥେଣ ବୃହସ୍ପତି
ତାରଚନ୍ଦ୍ର ପ୍ରେକଯୋଗ ରୋହିଣୀରେ ପ୍ରୀତି । ୩୫୪ ।
ମହା ପଣ୍ଡିତ ପୁତ୍ରେ ସେ ଯୋଗଲଗ୍ନ ବିଗୃହ
ଦଶଦଣ୍ଡ ରାତ୍ର ସେ ସମ୍ପୂର୍ଣ୍ଣ ପାଞ୍ଚଘଡ଼ି । ୩୫୫ ।
ଓଁକାର ଶବଦ ଯେ ଗର୍ଜନ ନାଦ କରି
ଜନ୍ମ ହୋଇଲା ପୁତ୍ର ଯେ ପଞ୍ଜରା ବିଦାରି । ୩୫୬ ।
ମହା ବଳବନ୍ତା ଯନ୍ତ୍ରଂ କୁମର ଜନ୍ମ ହୋଇଲା
ଯୁବନାଶ୍ୱ ରାଜା ପୁତ୍ରକଇଂ ଦେଖି ପ୍ରାଣ ବିସର୍ଜିଲା । ୩୫୭ ।
ଅନ୍ତପୁରୁଂ ରାଜାକୁ କାଢିନେଲେ ଯାଇଂ
ବଶିଷ୍ଠେ ବାଲ୍ମୀକେ ସମ୍ଭାଳଲେ ଆତ୍ମଜଇଂ । ୩୫୮ ।
ରାଜାକୁ ଦହନ କଲେ ନେଇ ଶମଶାନେ
ପୁତ୍ର ପ୍ରତି ପାଳଲେ ପ୍ରୋହିତ ମନ୍ତ୍ରୀମାନେ । ୩୫୯ ।
ମାତା ନାହିଂ, ଧାତାର ମନ୍ତ୍ରବଳେ ଥାଇ
ତେଣୁ ମାନଧାତା ନାମ ଦିଲେ ବଶିଷ୍ଠ ପ୍ରୋହିତ । ୩୬୦ ।
ସେ ମାନଧାତା ରାଜା ଇକ୍ଷ୍ୱାକୁରୁ ବଂଶେ ଉଦେ
ସତ୍ୟଯୁଗେ ଗୃହଲକ୍ଷ ବରଷ ରାଜା ରାଜ୍ୟକଲା ହାଦେ । ୩୬୧ ।
ଶୁଣ ହୋ ଯୁଧିଷ୍ଠିର ମାଘମାସର ମାହାତ୍ମ୍ୟ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରେଥେଂ ପ୍ରାପତ ଚଉଧର୍ମ । ୩୬୨ ।
ମକର ସ୍ନାହାନ ଫଳେ ସେ ମାନଧାତା ଚକ୍ରବର୍ତ୍ତି
ମହା ପ୍ରତାପୀ ହୋଇଲା ସେ ପୃଥୀରେ ନୃପକକ୍ଷେତ୍ରୀ । ୩୬୩ ।
ଉତ୍ତର କୋଶଳ ସେ ଯେ ଅଯୋଧ୍ୟା ନଗ୍ର ପୁଷ୍ଟି
ବାଲୁତ ଆଦିକରି ମକର ସ୍ନାହାନ କରି । ୩୬୪ ।

ସପତ ଦ୍ୱୀପ ଦହନ କଲା କୃତକେଶୀ
ଉତ୍ତର କୋଣଲେ ସେ ପ୍ରବେଶ ହେଲା ଆସି । ୩୬୫ ।
ସେ ରାଜ୍ୟେଣ ପଶି ସେ ଲଗାଇଲା ବହ୍ନି
ସେ ରାଜ୍ୟ ନ ଲାଗିଲା ଅଗ୍ନି ତେଜ ଜ୍ୟୋତି । ୩୬୬ ।
ଯହୁଁ ଜୁଇ ଲଗାଇଲେ ରାଜ୍ୟ ନ ପୋଡ଼ିଲା
ତହୁଁ ସେ ଅଯୋଧ୍ୟା ନାମେ ନଗ୍ରେକ ହୋଇଲା । ୩୬୭ ।
ଯୁଧିଷ୍ଠିର ବୋଇଲେ ଶୁଣ ହୋ ମାରକଣ୍ଡ ଯତି
କେଉଂଣ ପ୍ରତାପ୍ୟଂ କଲା ମାନଧାତା ଚକ୍ରବର୍ତ୍ତୀ । ୩୬୮ ।
ମାରକଣ୍ଡେ ବୋଇଲେ ଧର୍ମରାଜାର ବଚନେ
ରାଣୀମାନେ ମାନଧାତାକଇଂ ପାଳନ୍ତି ଅତି ଯତ୍ନେ । ୩୬୯ ।
ଶତଚନ୍ଦ୍ର ଜ୍ୟୋତି ଆଦିତ୍ୟ ତେଜ ଦିଶି
ପ୍ରବାହ ବାହୁ ଚଞ୍ଚଳ ମେଘର ବର୍ଣ୍ଣ ପରକାଶି । ୩୭୦ ।
ତ୍ରଇଲୋକ୍ୟ ମୋହେ ସେ ମାନଧାତାର ଯେ ରୂପ
ତେଜେଣ ବଶ୍ୟାନର ସେ ରୂପେଣ କନ୍ଦର୍ପ । ୩୭୧ ।
ପ୍ରଚଣ୍ଡାବଳୀ କ ମଘବାନ ଦ୍ୱିଲେକ ପଠିଆଇ
ମହାଛନ୍ଦୀ ବିଦ୍ୟା ଭୁ ମାନଧାତାକଇଂ ଆସ ଯା ଶିଖାଇ । ୩୭୨ ।
ବାସବର ଆଜ୍ଞ୍ୟାଂ ପାଇ ସେ ପ୍ରଚଣ୍ଡାବଳୀ
ବାଣେ ବାଣେଶ୍ୱର ସେ ସିଧାଇ ମହାବଳୀ । ୩୭୩ ।
ବହୁତ ଶାହାସ୍ତ୍ରେ ହେ ହୋଇଲେ ଜଗୁଜିତା
ଗନ୍ଧର୍ବ ବିଦ୍ୟା ସେ ଶିଖାଇଲେ ମହାଗ୍ୟାଂତା । ୩୭୪ ।
ଦ୍ୱାଦଶ ବରଷ ଯହୁଁ କୁମର ବଢ଼ିଲେ
ଭାଗ୍ୟବର ଆସି ସେ ଯେ ପ୍ରସନ୍ନ ହୋଇଲେ । ୩୭୫ ।
ଧନୁ ଶସ୍ତ୍ର ଗଦାବିଦ୍ୟା ମାଲ ଯେ ବିଧାଣ
ଯେତେମାନ ଶିଖାଇଲେ ପ୍ରବଳ ବ୍ରାହ୍ମଣ । ୩୭୬ ।
ପଞ୍ଚଦଶ ବରଷେ ସେ ମାନଧାତା ମହାଯୋଧୀ
କଳୀ ମେଘା ଅଶ୍ୱ ଚଢ଼ି ସେ ବନସ୍ତ୍ରେଣ ଖେଦି । ୩୭୭
ଦୁଷ୍ଟଙ୍କୁ ନାଶି ସେ ଦ୍ୱିଗ ବିଜୟେର ମଧ୍ୟେ
ମହା ମହା ଯୋଦ୍ଧାମାନନ୍ତ ଜିଣଇ ସେ ରଣ ସାଧେ । ୩୭୮ ।

ଶୁଣ ହୋ ଯୁଦ୍ଧିଷ୍ଠି କହନ୍ତି ମାରକଣ୍ଡ ଯତି
ଦାନେ ଗୁରୁ ପୁଣ୍ୟେ ସେ ମହାଚକ୍ରବର୍ତ୍ତି । ୩୭୯ ।
ବାହୁ ବଳ ପ୍ରାକ୍ରମେ ଅଛଇ ସେ ରାଜା
ଦୟାଶୀଳ ସେ ପାଳଇ ଜନ ପ୍ରଜା । ୩୮୦ ।
ଦେବ ପିତୃଗଣେ ବ୍ରାହ୍ମଣେ ଭଗତ
ଯାଗ ଯଜ୍ଞ କରି ସେ ପାଳଇ ସମସ୍ତ । ୩୮୧ ।
ଯାହାର ଯିସ ବାଞ୍ଛା ପାଳନ୍ତି ଜାଣ ମେଦେ
ନିଷ୍କଣ୍ଟକ ରାଜ୍ୟ କରଇ ମାହେନ୍ଦ୍ର ମହାଯୋଗେ । ୩୮୨ ।
ସୋମବଂଶର ରାଜା ଭୂମନ୍ୟୁ ନରପତି
ତାହାର ଭାରଯା ନାମ ଅଛଇ ଇନ୍ଦୁମତି । ୩୮୩ ।
ଲୀଳା କମଳା ବୋଲି ତାହାର ଦୁହିତା
ସେ ବେନକନ୍ୟା ପ୍ରଦାନ ହୋଇଲେ ମାନଧାତା । ୩୮୪ ।
ସନ୍ୟ ଶାଖା ମଧରେ ଚଳାଇଲେ ବଳ
ଯେକଛନୀ ଅଛଇ ସେ ଭ୍ରମଇ ମହୀପାଳ । ୩୮୫ ।
ବ୍ରହ୍ମାଯେ ଦିଲେ ସେ ଚନ୍ଦ୍ରମଣ୍ଡଳ ଧନୁ
ଯେବଣ ଧନୁ ନିର୍ମିତ କଲେକ ଶତମନ୍ୟୁ । ୩୮୬ ।
ସେ ଧନୁ ଘେନଣ ରାଜା ଭ୍ରମଇ ତିନିଭୁବନ
ମାରଇ ପିଶୁଣ ରାକ୍ଷସ ଜୀବମାନ । ୩୮୭ ।
ମୃଗୟା କରନ୍ତେ ଦେଖିଲେ କର୍ଣ୍ଣକୂଟ ଗିରି
ତିନି ଯୋଜନ ଆୟତନ ଉଚ୍ଚର୍ଗ ଯୋଜନ ଗିରି । ୩୮୮ ।
ପ୍ରତଗ୍ୟାଂଯେ ଶହସ୍ର ବାଣ୍ଡଲେ ମାନଧାତା
ସେ ପର୍ବତ ଫୁଟି ଶହସ୍ର ଗଳା ଅନ୍ତର୍ଗତା । ୩୮୯ ।
ବିବୁଧେ ସାଧୁ ସାଧୁ କଲେ ମାନଧାତାର ଶର ଦେଖି
ସାଧୁ ସାଧୁ ହୋ ମାନଧାତା ଆମ୍ଭଙ୍କଇଂ ପାରିବୁ ତୁ ରଖି । ୩୯୦ ।
ତ୍ରିଦଶ ଲୋକେ ବସିଲେ ମେରୁପୃଷ୍ଠେ
ନାରଦଙ୍କଇଂ ରାଇ ବୋଇଲେ ସୁରଶ୍ରେଷ୍ଠେ । ୩୯୧ ।
ମାତଳଙ୍କ ରାଇ ଆଗ୍ୟାଂ ଦିଲେ ପୁରନ୍ଦର
ପୁଷ୍ପକ ରଥେ ବସାଇ ମାନଧାତାଙ୍କୁ ଆଣ ମୋର ପୁର । ୩୯୨ ।

ଇନ୍ଦ୍ରର ବଚନେ ମାତଳି ଚଳଇ ବହନେ
ପ୍ରବେଶ ହୋଇଲେ ଯାଇଂ ମାନଧାତା ରାଜାର ସନ୍ନିଧାନେ । ୩୯୩ ।
ଦେବଦୂତ ଦେଖି ମାନଧାତା କରଇ ପୂଜା
ବିନୟ ଭାବେ କୁଶଳ ପୁଚ୍ଛଇ ରାଜା । ୩୯୪ ।
ମାତଳି ବୋଇଲେ ଶୁଣ ତୁରେ ବାବୁ
ଏହି ପୁଷ୍ପକ ରଥେ ତୁ ଦେବସଭାକୁ ଯିବୁ । ୩୯୫ ।
ପୁଷ୍ପକ ଚଢି ସେ ମାନଧାତା ମେରୁ ଆଶ୍ରମେ
ବ୍ରହ୍ମାଙ୍କଇଂ ଦେଖି ପ୍ରଣିପତ୍ୟ ହୋଇଲା ପ୍ରଥମେ । ୩୯୬ ।
ବାସେବ ଚନ୍ଦ୍ର ପବନ ସୂର୍ଯ୍ୟ ଆଦିକରି
ପ୍ରଣିପତ୍ୟ ମାନଧାତା ବବୁଧାଦିଂକ ଚରଣେ ପଡି । ୩୯୭ ।
ବାସବ ବଦନ୍ତି ତୁ ପବିତ୍ର ସୂର୍ଯ୍ୟବଂଶୀ
ଈଶ୍ୱର ବର ପ୍ରସାଦେ ଆମ୍ଭଙ୍କଇଂ ରାବଣ ଧ୍ୱଂସି । ୩୯୮ ।
ତ୍ରଇଲୋକ୍ୟର ରକ୍ଷାପାଳ ତୁ ଆଜହୁଂ ହୋଇବୁ
ରାବଣର ଭୟରୁ ସମସ୍ତେ ରଖିବୁ । ୩୯୯ ।
ସୋମବଂଶ ନରପତି ପୁରରବା ଥିଲା
ରାବଣର ଭୟରୁ ସେ ଆମ୍ଭନ୍ତ ରଖିଲା । ୪୦୦ ।
ପୁଣ ସେହି ବଂଶରେ ଜାତ ହୋଇଲା ଯଯାତି
ଲକ୍ଷେ ଷାଠିଏ ସହସ୍ର ବର୍ଷ ଖଟିଲା ଦେବାରାତି । ୪୦୧ ।
ତୋହୋର ଉପର ବଂଶେ ଦିଲୀପ ରାଏ ଥିଲା
ସେ ଆମ୍ଭଂକୁ ଅସୁର ଭୟରୁ ପାରକଲା । ୪୦୨ ।
ସେହି ସୂର୍ଯ୍ୟବଂଶରେ ତୁ ଉପୁଜିଲୁ ମାନଧାତା
କର୍ତ୍ତିକୂଟ ପର୍ବତ ବନ୍ଧିଲୁ ଦେଖିଲୁଂ ସେ ତୋହୋର ଯୋଗ୍ୟତା ।୪୦୩।
ତୋହୋରେଣ ନିଷ୍ଚିନ୍ତେ ଥିବୁ ଯେ ଆମ୍ଭେ ସ୍ୱର୍ଗେ
ଆଜହୁଂ ରକ୍ଷା କରିବୁ ଭୁବନ ସ୍ୱର୍ଗ ସ୍ୱଭାବେ । ୪୦୪ ।
ମାନଧାତା ବୋଇଲା ମୁଂ ରଖିବି ତ୍ରଇଲୋକ
ସମୁଦ୍ର ପାର ନୋହିବ ରାବଣ କଉଣୋପ । ୪୦୫ ।
ଶୁଣିଣ ସାନନ୍ଦ ଯେ ହୋଇଲେ ଜମ୍ଭଭେଦୀ
ଆପଣାର ଅଭିଷେକ ମୁକୁଟ ନେଇ ମାନଧାତା ଶିରେ ବାନ୍ଧି । ୪୦୬ ।

ଶିରରେ ସୀମନ୍ତିମା ଯେ ବାନ୍ଧୁଛନ୍ତି ଜଗଦଳା
କର୍ଣ୍ଣେ କର୍ଣ୍ଣାଞ୍ଚଳ କୁଣ୍ଡଳ ହୃଦରେ ବନମାଳା । ୪୦୭ ।
ଶ୍ରୀଭୁଜେ ଶ୍ରୀପଦ୍ମରେ ନାନା ବେଶ ଅଳଂକାର ନେଇ
ଅନଙ୍ଗ ଧନୁ ଅକ୍ଷୟେ ତୋଣ ଦେଲେ ନେଇ । ୪୦୮ ।
ଖେଚରୀ ବିମାନ ଯେ ଦୁର୍ଗାଂକ ତନ୍ତ୍ରଂ ଥିଲା
ବେଦବର ମାଗି କରି ମାନଧାତାକଇଂ ଦେଲା । ୪୦୯ ।
ବ୍ରହ୍ମାସ୍ତ୍ରେ ସମର୍ପିଲେ ବ୍ରହ୍ମ ଯେ ଶକତ
ବଜ୍ର ମୁଦ୍ଗର ନେଇ ବଇଶ୍ୟାନରେ ଦେଅନ୍ତ । ୪୧୦ ।
ହେମାବଳୀ ଗଦା ଚନ୍ଦ୍ର ଦେବତା ଦେଲେ
ସୂର୍ଯ୍ୟାବ୍ରତେକ ରଥ ଆଦିତ୍ୟ ସମର୍ପିଲେ । ୪୧୧ ।
କାଳଫାଶୀ କାଳଗଦା ନାଶକର ସେହୁ ପୁଣି
ଜନ୍ନୁନାଥ ପୂଜା କଲା ବହୁତ ଶସ୍ତ୍ର ଘେନି । ୪୧୨ ।
ଧାତା ବୋଇଲେ ତୋତେ ଦେଲି ଦିବା ଚକ୍ଷୁ
ଅମୃତ ହୋଇବ ତୁ ଯେତେ ଦ୍ରବ୍ୟ ଭକ୍ଷୁ । ୪୧୩ ।
ଦେବତାଂକର ଘରେ ମାନଧାତା ସବୁ ଦେଖି
ଯେବେ ଯୁଦ୍ଧକେ ତ୍ରଇଲୋକ୍ୟ ଯାକ ରଖି । ୪୧୪ ।
ତେନେକ ରାବଣ ଲଂକାରେ ବସି
ତାକ ଅନକୂଳ କହି ବିଭୀଷଣକୁ ପେଷି ।୪୧୫ ।
ଦେବଦଳନ ରଥ ସାଜଲା କୁମୁଦ ସାରଥି
ଅଗ୍ନିବ୍ରତେକଂ ରଥ ସାଜଲା ଦକ୍ଷିଣ ମୂରତି । ୪୧୬ ।
ସମଦଣ୍ଡ ସାଜଲା ଶୁଭଲଗ୍ନ ବେଳା
ସଦାଶିବକଇଂ ସୁମରି ରାବଣ ରଥରେ ବସିଲା । ୪୧୭ ।
ବନ୍ତଣ ଅଂକୁଶ ଯେ ରାବଣର ସଇନ
ଉଲ୍କାପାତ ପରାସ୍ତେ ଦିଶିଲା ମେଦିନୀ । ୪୧୮ ।
ଦେବତାସ୍ତେ ପଠାଇଲେ ମାତଳକୁ ରାଇ
ରାବଣ ବିଜେକଲା ବୋଲି କହି ମାନଧାତାକଇଂ ଯାଇଂ । ୪୧୯ ।
ପୁଷ୍ପେକ ଚଢି ସେ ବିଜୟେ ଦେବଦୂତ
ରାବଣ ଦଶବିଜେ ତୁ ସମ୍ଭାଳ ତୁରିତ । ୪୨୦ ।

ଯାଇ କହ ଆକାଶେ ଦେବେ ଥାନ୍ତୁ ସ୍ତୁଷ୍ଟେ
ମାନଧାତା ବିଜେକଲ୍ଲ ଉଚ୍ଚ ଯେ ପର୍ବତେ । ୪୨୧ ।
ମଥାରେ ଜଟା ଶୋଭିବନ କରେଣ କୋଦଣ୍ଡ
ଶରୀରେ ଭସ୍ମ ଭୂଷିତ ତେଜ ଯେ ମାରତଣ୍ଡ । ୪୨୨ ।
ଅକ୍ଷୟେ ତୋଣ ଧନୁ ଘେନ ମାନଧାତା ହୋଇଅଛୁ ଉଭା
ଯେହ୍ନେକା ଉଭା ହୋଇଅଛୁ ଯେସନେ ଚନ୍ଦ୍ର ପ୍ରାୟେ ଶୋଭା । ୪୨୩ ।
ଯେଥୁ ଅନନ୍ତରେ ରାବଣର ସଇନ
ଚରଣ ଧୂଳି ଘ ଯେ ଆଦିତ୍ୟ ଅସ୍ତ ହୋଇଲେକ ପୁଣି । ୪୨୪ ।
ରାବଣକଇଂ କହଇ ସେ ବିଭୀଷଣ ମନ୍ତ୍ରୀ
ସ୍ୱାମୀ ସଉଲେଭ ପର୍ବତେ ମାନଧାତା ଯେ ଅଛନ୍ତି । ୪୨୫ ।
ତାହାର ଆଶ୍ରମ ଘୁଡି ଦିଗବିଜେ କରିବା
ମାନଧାତା କାହିଂ ଅଛୁ ମୋତେ ଦେଖାଇଣ ଦେବା । ୪୨୬ ।
ବିଭୀଷଣ କହଇ ସେ ନିଷ୍କଳଂକ ସୂର୍ଯ୍ୟବଂଶୀ
ମାନଧାତା ଉତ୍ପତ୍ତି ସେ ଯୁବନାଶ୍ୱର ଶିଷି । ୪୨୭ ।
କର୍ଣ୍ଣକୂଟ ପର୍ବତ ସେ ବନ୍ଧିଲୁକ ବଳେ
ଗଙ୍ଗା ବହି ଆସୁଛନ୍ତି ସେ ପର୍ବତର ତଳେ । ୪୨୮ ।
ରାବଣ ବୋଇଲ୍ଲ ମୁଂ ଜଗତରେ ଜିତା
ମୋ ତହୁଂ ପୃଥିବୀରେ କେ ଅଛୁ ସାମରଥା । ୪୨୯ ।
ଆବର ଦିଗବିଜେ ମୁଂ ନ ଡରଇ ତାହା
ସେ ମାନଧାତା ତହିଂକ ରଥ ମୋର ବାହା । ୪୩୦ ।
ବିଭୀଷଣ ବୋଇଲ୍ଲ ବିଚୃର ଆଗ୍ୟାଂ ଦେବା
ତୋହୋର ବାହୁବଳେ ତ୍ରିଭୁବନେ ତୋତେ କରନ୍ତି ସେବା । ୪୩୧ ।
ମାରକଣ୍ଡ ବୋଲନ୍ତି ତୁ ଶୁଣ ଧର୍ମରାଜା
ଜମ୍ବୁମାଳୀକ ବୋଇଲ୍ଲ ତୁ ବହନ ହୋଇ ଯାଅ ଯା । ୪୩୨ ।
ରାବଣର ଆଗ୍ୟାଂଯେ ଜମ୍ବୁମାଳୀ ମାନଧାତାକଇଂ ଭେଟି
ବିଚୃର ବୋଲଇ ଯେ ତପୋଧନ ବେଶଟି । ୪୩୩ ।
ଯେତେକ ବିଚୃର ସେ ଶବ୍ଦସ୍ତ୍ର କଲା ଦୃଷ୍ଟି
ଯେ ତପୋଧନର ମାୟେଂସ ଖାଇଲେ ଶରୀର ହୋଇବ ତୁଷ୍ଟି । ୪୩୪ ।

ରାଗେଣ ଶସ୍ତ୍ର ଯେ ବିନ୍ଧିଲା ଜମ୍ବୁମାଳୀ
ମାନଧାତା ଶିରେ ପଡି ଶର ହୋଇଗଲା ଧୂଳି । ୪୩୫ ।
ବଜ୍ରମୁନା ଶରେକ ମାନଧାତା ବିନ୍ଧି
ଜମ୍ବୁମାଳୀର ଶିରେ ମାନଧାତା ଶର ଭେଦି । ୪୩୬ ।
ଘାୟେଣ ଅସାଷ୍ଟମ ସେ ହୋଇଲା ଦନୁଜା
ଧାମଇଂ ଅକ୍ଷୟକୁମାର ରାବଣ ଆତ୍ମଜା । ୪୩୭ ।
ଅକ୍ଷୟ କୁମାରକଇଂ ଶରେକ ପୂରେଇ
ମାନଧାତା ସଂହର ରହିଲା ସେହିଠାଇଂ । ୪୩୮ ।
ବାହୁଡି ରାବଣ ଆଗେ କହିଲା ଅକ୍ଷୟେ
ମନୁଷ୍ୟ ଶରୀର ତ ନୋହଇ ତାର କାୟେ । ୪୩୯ ।
ଯେ ବାଣ ସହି ନୁଆରନ୍ତି ଦେବତାୟେ
ସେ ବାଣ ସଂହାରଣ କଲା ତାର କାୟେ । ୪୪୦ ।
ଅକ୍ଷୟ ବଚନ ଶୁଣି ଆପଣେ ରାବଣ ଉଠି
ବିଂଶଭୁଜେ ଧନୁ ଧରି କରଇ ଶରବୃଷ୍ଟି । ୪୪୧ ।
ବ୍ରହ୍ମ ଶସ୍ତ୍ର ଯେ ବିନ୍ଧିଲା ମାନଧାତା
ରାବଣର ଶସ୍ତ୍ରମାନ ହୋଇଲା ନାଶାଂଗତା । ୪୪୨ ।
ଶଙ୍ଖଶଲର ପଞ୍ଚାଶ ଲୋହାର ଦଶବାଣ
ମାନଧାତା ଉପରକୁ ବିନ୍ଧିଲା ରାବଣ । ୪୪୩ ।
ହୃଦରେ ବାଣ ଯେ ପଡିଲା ତାହାର
ଅଗ୍ନି ବାହାର ହୋଇଲା ଝଣତ୍କାର । ୪୪୪ ।
ଅସାଷ୍ଟମ ବାଣ ଯେ ମାଇଲା ଲଂକପତି
ମାନଧାତା ଦେହେଂ ପଡି ହୋଇଲା ବିନଶ୍ୱତି । ୪୪୫ ।
ପୁଣ ବେକଲକ୍ଷ ବାଣ ରାବଣେଶ୍ୱର ପେଷି
ମାନଧାତା ଦେହେଂ ପଡି ହୋଇଲା ସର୍ବ ଧ୍ୱଂସି । ୪୪୬ ।
ପଞ୍ଚବେଳ ଶସ୍ତ୍ର ପେଷିଲାକ ରାଜା
ମୋହୋର ଶସ୍ତ୍ର ସମ୍ଭାଳ ବୋଲି ମାନଧାତା କଲାକ ପହ୍ନିଜା । ୪୪୭ ।
ଚନ୍ଦ୍ରମଣ୍ଡଳ ଧନୁ ବୀର ଧଇଲାକ ହାଥେ
ଅମୋଘ ଶକତି ଗୋଟାୟେ ଧରି ମାନଧାତେ । ୪୪୮ ।

ମନ୍ତ୍ରିଣ ଧନୁରେ ବସାନ୍ତେ ଶକ୍ତ ହୋଇଲା ଶତେ
ଉଚ୍ଛୁଡନ୍ତେ ଶକତ ହୋଇଲା ସହସ୍ରେ । ୪୪୯ ।
ହୂରିବନ୍ତେ ଧନୁରେ କୋଟିଏ ମୂରତ
ତମିର ବଦାରଇ କ ଦନକର ଜ୍ୟୋତ । ୪୫୦ ।
ବନ୍ଧନ୍ତେଣ ହୋଇଲା କୋଟି କୋଟି ରଶ୍ମି
ତେଜରେ ରାବଣ ରଥ ହୋଇଲାକ ଧ୍ୱଂସି । ୪୫୧ ।
ମହାତେଜ ଦେଖିଣ ଭାଜଲେ କଉଣୋପେ
ରାବଣ ପଳାଇଲା ନହ୍ରାଦ ତେଜ ଦର୍ପେ । ୪୫୨ ।
ରାବଣ ପଳାବନ୍ତେ ଘୁଞ୍ଚିଲେ ସଇନ
ପାଦଗତ ହୋଇ ପଳାଇ ଅନ୍ୟୋଅନ୍ୟି । ୪୫୩ ।
ଗୋଡାଇଣ ମାନଧାତା ଧଇଲା ରାବଣକୁ
ଭୟେଣ ରାବଣ ବୋଇଲା ଶରଣ ପଶୁଛି ତୁକୁ । ୪୫୪ ।
ଏହ୍ନେ ବଚନ ଶୁଣି ମାନଧାତା ଛାଡିଲା ତାର ଭୁଜ
ପଳାଇ ନୁଆଁରେ ସେ ରାବଣ ଦନୁଜ । ୪୫୫ ।
ରାବଣ ବୋଇଲା ସ୍ୱାମୀ ଲଂକାକୁ ମୁଂ ଯିବ
ତୁ ଯାହା ବୋଲିବୁ ମୁଂ ତାହାହିଂ କରିବ । ୪୫୬ ।
ମାନଧାତା ବୋଇଲେ ମୋର କ୍ଷେମ ଯେତେଦିନ ଏହ୍ନେ ମହୀମଣ୍ଡଳେ
ତୁ ଆଉ ବଜେ କରିବୁ ନାହିଂ ତ୍ରଇଲୋକ୍ୟ ସ୍ଥଳେ । ୪୫୭ ।
ରାବଣ ବୋଇଲା ମୁଂ ନ ଛାଡିବ ଲଂକା
ତୋହୋର ରାଜ୍ୟକଇଂ ମୋହୋର ବଡାଇ ଯେ ଶଂକା । ୪୫୮ ।
ଆକାଶକଇଂ ଦିଗବଜେ କରିବଇଂ ମୁହିଂ
ମହେଶ୍ୱର ପଦ ମୋତେ ଈଶ୍ୱରେ ଛନ୍ତି ଦେଇ । ୫୯ ।
ଆରେ ରାବଣ ତୋତେ ବୋଇଲେ କପାଳୀ
ମହେଶ୍ୱର ପଦ ତୁ ନୁଆଁରିଲୁ ପାଳି । ୪୬୦ ।
ତ୍ର ଦଶ୍ୟ ଦେବତାଏ ଯେ ନ ଭଜଲେ ତୋତେ
ତ୍ରଇଲୋକ୍ୟ ରକ୍ଷା ପାଳକ ବୋଲି ଆରାଧିଲେ ମୋତେ । ୪୬୧ ।
ଲଂକା ଭୁବନୁ ତୁ ବାହାର ହୋଇଲେ
ଅବଶ୍ୟ ମୁଣ୍ଡ କାଟିବ ତୁ ଶରଣ ପଶିଲେ । ୪୬୨ ।

ସଦାଶିବର ଗଣପୁଣ ବୋଲି ତୋତେ ରକ୍ଷାକଲି ବେଳେ
ରହିଲି ଜୀବନ ତୋର ଫଳା ବୋଲି ଗୁଡ଼ିଲେ ତାର ବାଳେ । ୪୬୩ ।
ପଳାଇ ରାବଣ ଯାଇଂ ଲଂକାଗଡ଼େ ପଶି
ମନେ ସୁମରଇ ସେ ବିଶ୍ୱେଶ୍ୱର କାଶୀ । ୪୬୪ ।
ବୃଷଭରେ ମିଳିଲେ ଦେବ ସେ ଲଂକ ଭୁବନେ
ରାବଣ ପ୍ରଣପତ୍ୟ ଦେବ ତ୍ରିଲୋଚନେ । ୪୬୫ ।
ଶୋଣିତ ପ୍ରାୟେ ଲୁଅ ବୋହଇ ଲୋଚନୁଂ
ଦଣ୍ଡ ପ୍ରଣପତ୍ୟେ ଶୁତିଲା ଦଶାନନୁ । ୪୬୬ ।
ବୋଇଲୁ ହେ ସ୍ୱାମୀ ମୁଂ ଯେ ଜଗତରେ ପିତା
ଆଜ ସମରେ ମୋତେ ମାରୁଥିଲା ମାନଧାତା । ୪୬୭ ।
ଈଶ୍ୱର ବୋଇଲେ ଦେବତାପ୍ରେ ଶହସ୍ର ହଳେ
ତ୍ରଇଲୋକ୍ୟ ରକ୍ଷା ପାଳକ ହୋଅ ବୋଲିଣ ବୋଇଲେ । ୪୬୮ ।
ତୁ ମାନଧାତାର ତୁଲେ ଦ୍ୱନ୍ଦ ନ କରିବୁ ବାବା
ନରେ ବାନରେ ତୋର ମୃତ୍ୟୁ ବୋଲନ୍ତି ରୁଦ୍ରଦେବା । ୪୬୯ ।
ପ୍ରେକାଦଶ ଲୋକ ଜିଣିମାକୁ ନ ମାଗିଲୁ
ଦଶଲୋକ ବୋଇଲୁ ନର ବାନରେ ଖାଦ୍ୟ ମଣିଲୁ । ୪୭୦ ।
ମନୁଷ୍ୟ ଅବତାର ମାନଧାତା ସୂର୍ଯ୍ୟବଂଶୀ
ଦେବତାନ୍ତ ଜିଣିମୁଂ ମାନଙ୍କେ ହେବୁ ଧ୍ୱଂସି । ୪୭୧ ।
କହିଣ ସଦାନନ୍ଦେ ଗଲେକ କପିଳାସେ
ରାବଣ ବୋଇଲା ସନ୍ୟ ସଜାଅ ଆକାଶେ । ୪୭୨ ।
ବିଭୀଷଣ ବୋଇଲା ସମପ୍ରେକ ରହିବା
ଇନ୍ଦ୍ରକଇଂ ଶ୍ରୀମୁଖ ଦେଇ ଦୂତ ବରଗିବା । ୪୭୩ ।
ପାତ୍ରଙ୍କୁ ରାଇ ବୋଲଇ ଦଶାନନ
ଅମରଙ୍କୁ ଶ୍ରୀମୁଖ ତୁ ଲେଖ ହୋ ବହନ । ୪୭୪ ।
ପ୍ରତଗ୍ୟାଂ ସ ମରଥ କରି ହୋଇଲା ଲେଖନ
ମୁଦା ସନ୍ତକ ଦେଇ ଦୂତ ପେଷିଲେ ରାବଣ । ୪୭୫ ।
ଆଗ୍ୟାଂ ଦେଇଣ ସେ ପେଷିଲା ଦୂତକାହା
ଶ୍ରୀମୁଖ ଘେନିଣ ଅସୁରେ ଗଲେ ସ୍ୱର୍ଗପୁରୀ । ୪୭୬ ।

ସମ୍ଭର ଆସ୍ଥାନେ ଯେ ବଜାଏ ପୁରୁହୂତେ
ଭରଦ୍ୱର ଖଟଣି ଲାଗିଛି ସମସ୍ତ ସଙ୍ଗତେ । ୪୭୭ ।
ନୃତ୍ୟରଙ୍ଗେ ବୀଣା ବଇଂଶୀ ବାଦ୍ୟକାସ୍ତ
ସମସ୍ତ ଅପସରା ସଭାରେ ବଜେକର । ୪୭୮ ।
ଯେମନ୍ତର ସମୟେ ରାବଣ ଦୂତମାନେ
ଯାଇଂଣ ପ୍ରବେଶ ସେ ଅମର ଆସ୍ଥାନ ସନ୍ନିଧାନେ । ୪୭୯ ।
ବାସବଙ୍କୁ ବୋଇଲେ ରେ ଓଲ୍ହାଡ ସହସ୍ରାକ୍ଷ
ପାଏ ପଡି ଠାକୁରଂକର ଘେନରେ ଶ୍ରୀମୁଖ । ୪୮୦ ।
ବାସବ ବୋଇଲେ ତାର ବଶ ନୋହୁଂ ଦେବତାଏ
ମାନଧାତା ନ ଥିଲା ପ୍ରାଏ କି ବୁଝିଲ ଦଇତଏ । ୪୮୧ ।
ଅସୁରେ ବୋଇଲେ ଯେହ୍ନକ୍ଷଣି ତୋତେ ନେମୁ ଧରି
କାହ୍ନିଂ ତୋର ମାନଧାତା କେ ତୋତେ ରକ୍ଷା କରି । ୪୮୨ ।
ଯେତେ ବୋଲି ଆସ୍ଥାନକୁ ଉଠିଲେ ଦଇତେ
ପୁରନ୍ଦର ବୋଇଲେ ତୁ ନ ଜଠ ମାନଧାତା ଆନ ତୋତେ । ୪୮୩ ।
ଅମରାଧି ନାଥ ଯହୁଂ ଆରତେ ଡାକ ଦିଲା
ଆହୋ ମାନଧାତା ରକ୍ଷାକର ବୋଲିଣ ବୋଇଲା । ୪୮୪ ।
ଏହା ଡାକ ଦିଲା ଅମର ଭୁବନେ
ନିଜ ଦେଶେ ଶୁଭିଲା ମାନଧାତା ନିଜ କର୍ଣ୍ଣେ । ୪୮୫ ।
ଦିବ୍ୟଚକ୍ଷୁରେ ଯେ ଚିହ୍ନିଂଲା ରାଜବରେ
ଇନ୍ଦ୍ରକଇଂ କଠାଳ ପଡିଛି ଯୋଜନ ଲକ୍ଷେ । ୪୮୬ ।
ମାନଧାତାର ଆଗେ ପୁରାଣ ପଢୁଥିଲେ ମାରକଣ୍ଡେ
ଶୁଣୁଥିଲା ମାନଧାତା ପୁରାଣ ଆଦିକାଣ୍ଡେ । ୪୮୭ ।
ଇନ୍ଦ୍ର ମଣ୍ଡଳ ଧନୁ କରେ ନାରାଜ ପୂରେଇ
ବୋଇଲା ରାବଣ ସେନାପତିର ମୁଣ୍ଡ କାଟ ଯାଇଂ । ୪୮୮ ।
ଇନ୍ଦ୍ରକଇଂ କଠାଳ କରୁଅଛନ୍ତି ରାକ୍ଷସେ
ମାନଧାତାର ନାରାଜ ପଡିଲା ଅନ୍ତରୀକ୍ଷେ । ୪୮୯ ।
କନ୍ଧେକ ସାରସା ଆବର ଘାଟ ମୋଟ
ବେନି ଅସୁରଂକର ଗଳା ଶିର କାଟ । ୪୯୦ ।

ମନ୍ଦର ପର୍ବତ ପ୍ରାୟେ ପଡିଲା ଅସୁରଙ୍କ କାୟେ
ସାଧୁ ସାଧୁ ମାନଧାତା ବୋଲି ବୋଇଲେ ଦେବତାୟେ । ୪୯୧ ।
ମକର ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ସୋମବାରେ
ମଘା ନକ୍ଷତ୍ର ସେ ସଂକ୍ରାନ୍ତି ମକରେ । ୪୯୨ ।
ମାନଧାତା ଉତ୍ସବ ବୋଲି କରାଇ ଦୈବତ ଇନ୍ଦ୍ର
ବ୍ରହ୍ମା ସହିତେ ସାନନ୍ଦ ସର୍ବ ଦେବବୃନ୍ଦ । ୪୯୩ ।
କହନ୍ତି ମହାତ୍ମା ସେ ଘଣ୍ଟଋଷିର ତନୁ
ଶୁଣନ୍ତି ଅପୂର୍ବ ରସ ବୈବସ୍ୱତ ମନୁ । ୪୯୪ ।
ଶୁଣ ହୋ ମହାରାଜା ମାନଧାତାର ମହିମାଂ
ତ୍ରଇଲୋକ୍ୟ ଜିଣିଣ ସେ ରୁହାଇଲା ସୀମା । ୪୯୫ ।
ଛତିଲକ୍ଷ ନଉ ସହସ୍ର ବରଷ ପର୍ଯ୍ୟନ୍ତେ
ମାନଧାତା ରାଜ୍ୟ କଲେକ ଯୁଗତେ । ୪୯୬ ।
ତ୍ରିଦଶ ଦେବତାୟେ ଯେ ଉତସଲ୍ୟ କାଳେ
କଲ୍ୟାଣ ବାଞ୍ଛା କରନ୍ତି ଦେବତା ସକଳେ । ୪୯୭ ।
ଚିର ଆଇଷ ମାନଧାତା ହୋଉ ସର୍ବକାଳେ
ଯେମନ୍ତ କଲ୍ୟାଣ ସେ କରନ୍ତି ଆଖଣ୍ଡଳେ । ୪୯୮ ।
ଧାର୍ମିକ ବିବେକ ସେ ମର୍ଯ୍ୟାଦା ପଣ୍ଡିତ
ଦେବତା ବ୍ରାହ୍ମଣେ ରାଜା ସର୍ବଦା ଭକତ । ୪୯୯ ।
ଶୁଣ ହୋ ଯୁଧିଷ୍ଠିର ଯେସନ ମକର ସ୍ନାହାନ କଥା
ମକରେ ମୃତ୍ୟୁ ହୋଇଲେ ଦଣ୍ଡି ନ ପାରେ ଯେ
ନାଶକର ଦେବତା । ୫୦
ପଶ୍ଚିମ ଦେଶେ କୃତାନ୍ତେକ ନାମେ ନଗର
କର୍ଣ୍ଣକେଶରୀ ବୋଲି ତହିଂର ଦଣ୍ଡଧାର । ୫୦୧ ।
ସେ ନଗ୍ରେ ଅଛଇ ଅମ୍ବିକା ନାମେ ହାଡ଼ି
ମୃତ୍ୟୁ ପିଣ୍ଡମାନ ସେ ଉଚ୍ଛିଷ୍ଟ ନଅଇ କାଢ଼ି । ୫୦୨ ।
ପୂର୍ବର ପାତକେ ସେ ପାଇଲା ଘୋର ନର୍କଇ
ଚଣ୍ଡାଳ ଜନ୍ମ ହୋଇଣ ସେ ମକର ସ୍ନାହାନ କରଇ । ୫୦୩ ।

ଆହୋ ମକର ମାସ କୃଷ୍ଣପକ୍ଷ ଅମାବାଇ ଦିନ
ଦାଣ୍ଡେ ମେଞ୍ଜାନ ସେ କରଇ ରନ୍ଧନ । ୫୦୪ ।
ଶ୍ୱାନେକ ମାରଣ ମାଂସ୍ୟେଂସ ତାର କେଳାଇ
ଗୋରୁଚର୍ମ ଗୋଟିଏ୍ଯ ତାହାର ଉପରେ ଅଛଇ ଘୋଡାଇ । ୫୦୫ ।
ମନୁଷ୍ୟର ମୁଣ୍ଡ ଖନଗୋଟା ପଖାଚ୍ଛି କରି
ଗର୍ଦ୍ଦଭ ମୁଣ୍ଡ ଖୋଲାରେ କୁକୁର ମାଂସ୍ୟେଂସ ଭରି । ୫୦୬ ।
ମଦିରା ଫୁଟାଏ୍ଯ ସେ ମାଂସ୍ୟେଂସେଅଛି ଲାଇ
ଅଇଂଠା ପତ୍ର ଜାଳି ସେ ମାଂସ୍ୟେଂସ ସିଝାଇ । ୫୦୭ ।
ତାହାଂ ଘୋଡାଇ ଅଛଇ ଗୋଚର୍ମ ପାଣ୍ଡ୍ରୋଇ ଖଣ୍ଡେ
କଣ୍ଡୁ ମହାଋଷି ଯେ ରହିଲେ ତାହାଂ ଦାଣ୍ଡେ । ୫୦[illegible] ।
ଋଷି ଯେ ବୋଇଲେ ସେ ଚାଣ୍ଡାଳକୁ ଚାହିଂ
ଯେତେ ପରପଞ୍ଚ ଆମ୍ଭର ଦେଖିଲୁତ ନାହିଂ । ୫୦୯ ।
ସେହି ଚାଣ୍ଡାଳ ବୋଇଲା ଶୁଣିମା ମୁନି ହେ
ଯେହାଙ୍କୁ ଘୋଡାଇବାରେ ଅଛି କି ସନ୍ଦେହେ । ୫୧୦ ।
ମକର ସ୍ନାନ ଯେ ନ କରଇ ତାର ପାଦରଜ ପଡିବ ବୋଲି
ଯେହାଙ୍କୁ ବଡ ଦୋଷ ବୋଲି ମୁଂ ତେମନ୍ତେ
ଢେଙ୍କିଉଣି ଘୋଡାଇଲି । ୫୧୧ ।
ଆହୋ ସଂସାର ଜନମାନେ ଯେହା ବିଚାର କର ମନେ
ଜୀବନ ଅକାରଣ ଯେ ନ କରଇ ମାଘ ସ୍ନାହାନେ । ୫୧୨ ।
କଣ୍ଡୁ ମହାଋଷି ବୋଇଲା ତୁ ଶୁଣିମି ଚାଣ୍ଡାଳ
ତୁ କେମନ୍ତେ କରୁ ମକର ସ୍ନାହାନର କାଳ । ୫୧୩ ।

---

୫୦୬।୨ ଗଧର କପାଳ ଗୋଟିକରେ କୁକୁର ମାଂସ୍ୟେସ ଭରି ।—ତ, ଛ, ଝ

୫୦୭ { ମଦ୍ଧର ଫୁଟିସ୍ତେ ମାଂସରେ ମିଶାଇ
ବସ୍ତା ତୃଣ ଜାଳି ସେ ମାସ୍ୟେଂସ ସିଝାଇ ।—ଜ

ସେ ଶୃଗାଳ ବୋଇଲା ମୁଂ ଜନମେ ଅଛଇ ହାଡ଼େ
ମାଘସ୍ନାହାନ କରି ମୁଂ ସମସ୍ତ ଗାତ୍ର ଅଗତକ କାଟି । ୫୧୪ ।
ମୋହୋର ଧର୍ମ କର୍ମେ ଲେଖ କରୁ ତୁମ୍ଭେ
ଶୃଗାଳ ଜନ୍ମ ସିନା ଅଛଇ ହାଦେ ମୁମ୍ଭେଂ । ୫୧୫ ।
ଶୁଣ ହୋ ଯୁଧିଷ୍ଠିର ମାରକଣ୍ଡେ ବୋଇଲେ
ସେ ଶୃଗାଳ ସମୟେ ମକର ମାସେ ନାଶ ଗଲେ । ୫୧୬ ।
ସଞ୍ଜୀବନୀ ପୁରେ ପ୍ରବେଶ ହୋଇଲା ଯାଇଂ
ଚିତ୍ରଗୁପତକଇଂ ବୃହ୍ମଂ ସଞ୍ଜୀବନୀ ନାଥ ପଚ୍ଛରଇ । ୫୧୭ ।
କେବଣ ପାପ ପୁଣ୍ୟ ଯେ ଅଛଇ ଯେହାର
ଚିତ୍ରଗୁପତେ ବୋଇଲେ ପୋଡ଼ିଣ ନେବନକର । ୫୧୮ ।
ଯମ ଦେବତାର ଆଗେ କହଇ ଚିତ୍ରଗୁପତେ
ଆଲୋକ୍ୟ ପାତେକ ଯେହାର କହିବଇଂ କେତେ । ୫୧୯ ।
ଅଖାଇଦ ଖାଇଣ ନର୍କେ ଯେତୁ କାଟି
ଉତ୍ତରବ ନର୍କେ କାଟି ଜନ୍ମେର ଅଛି ହାଡ଼ି । ୫୨୦ ।

---

୫୧୪।୨ ପଦଠାରୁ 'ଠ' ପୋଥି ବା ମୁଦ୍ରିତ ପୁସ୍ତକରେ ଭିନ୍ନ ପାଠ :—

ସେହୁ ଶୃଗାଳ ବୋଇଲା ମୁଂ ହାଡ଼ି ଅଛଇ
ସ୍ୱେ ମାଘ ସ୍ନାନ ସାରଣ ତରିଯିବ ମୁହିଂ
ମୁନି ବୋଇଲେ ଶୁଣରେ ଶୃଗାଳ ଦୁର୍ମତି
ମାଘସ୍ନାନ ହବିଷ୍ୟ କି ଅଛେ ସ୍ୱେହମତି ।
ଶୃଗାଳ ବୋଇଲା ଶୁଣ ହେ ମୁନି ଗୋସାଇଂ
ହାଡ଼ି ମାନେକ ହବିଷ୍ୟ ବିଧି କି ଜାଣେଇ ।
ଯାହା ଦେଖୁଛ ହବିଷ୍ୟ ଜ୍ଞାନ କର ତାକୁ
ଆବର ଅଧିକ କିସ କହିବ ତୁମ୍ଭଂକୁ ।

୫୧୬ { ସଂଜୀବନୀ ପୁରେ ବାହାର ହୋଇଲା
ଚିତ୍ରଗୁପ୍ତେ ନେଇ ନାଶକର ପଚାରିଲା । —ଥ, ଛ, ୯, ଜ, ଘ, ଜ

୫୧୮ { ତୁମ୍ଭେ ଯେ ସ୍ୱେହାର ହୋଇଥିଲ ଚକ୍ଷୁ
ସ୍ୱେତ ପାପୀ ସ୍ୱେହାର ଯେ କେବଣ ପାପ ଦେଖିଅଛୁ ।

ଯେବ୍ରକାମାତ୍ର କଥାଯେ କରଇ ଗ୍ୟାନ ବନ୍ତ
ବାଡିରେ ଡୋଷ୍ଟଳ ଖୋଲ ହେଷ୍ଟ୍ରାନ ଦାନ୍ତ । ୫୨୧ ।
ଶୁଣିଣ ବତ୍ୱର କରଇ ସେ ସଞ୍ଜୀବନ୍ମା ଆଧିପତ୍ତ
ପୁଷ୍କର ପ୍ରସନ୍ନେ ସେ ପାଇଲ ପରମଗତ୍ତ । ୫୨୨ ।
ଯମ ବୋଇଲେ ଫିଟିଲ ନର୍କଗତ୍ତ ସୁଖେ ଭୁରେ ଯା ଯା
ସେହ୍ନି କୃତାନ୍ତକ ନଗ୍ରେ ଭୁ ହୋଅ ଯାଇ ରଜା । ୫୨୩ ।
ବଦଯୂନ୍ତ ମାରକଣ୍ଡେ ଶୁଣ ଧର୍ମବର୍ସି
ମାଘ ସ୍ନାହାନରେ ଯେହେନେନ୍କ ଫଳଶ୍ର ତ୍ତ ଅଚ୍ଛୁ । ୫୨୪ ।
ବଦଯୂନ୍ତ ମାରକଣ୍ଡେ ସୁଦେବର ଶିଶି
ଯଶୋବନ୍ତୀର ନନ୍ଦନ ପରମା ନନ୍ଦନ ଋଷି । ୫୨୫ ।
ବାବୁ ବଇତରଣୀ କୂଳେ ବେଦପୁର ବୋଲ ଶାସନେ
ବ୍ରହ୍ମନାଭ ସ୍ଥାନ ତହିଂ ବସନ୍ତ ଭଲ ଭଲ ବପ୍ରମାନେ । ୫୨୬ ।
କୁଶବନ୍ତ ବୋଲ ପାଟଣା ନଦୀର ଉତ୍ତର ଭଗେ
ମଉଦଧି ତହିଂର ନିକଟ ଥିଲ ସତ୍ୟଯୁଗେ । ୫୨୭ ।
ସେ ପାଟଣାର ସନ୍ନିଧେ ବସଇ ଯେବ୍ରକ ପେଣୁ
ପଚ୍ଛିମ ପାରୁଶରେ ବସଇ ଯେବ୍ରକ ଘାଟ । ୫୨୮ ।
ବାବୁ ସେ ନଗ୍ରରୁ ଆସନ୍ତ ଯେ କୁମାସ୍ତ ଆଠଗୋଟି
ମକର ସ୍ନାହାନ କରନ୍ତ ବଇତରଣୀ ନଦୀଘାଟି । ୫୨୯ ।
ସାତ ସାତ ବରଷ ଅଟନ୍ତ ଉଲଗ୍ନଶାଙ୍ଖ
କେଶ ଦୃଢକର ସମ୍ଭାଳ ନୁଆରନ୍ତ କେହ୍ନି । ୫୩୦ ।
ମକର ମାସ କୃଷ୍ଣପକ୍ଷ ଭଉମବାର ଚତୁର୍ଦ୍ଦଶୀ
ମାଘସ୍ନାନ ସାରି ସେ ଗଙ୍ଗାକୂଳେ ଛନ୍ତ ବସି । ୫୩୧ ।
ବାଳର ଘର ଗୋଟିଯେବ୍ରକ ତୋଳ
ରେଣୁର ଭାତ ତଅଣ ପରଷନ୍ତେ ବାଳୀ । ୫୩୨ ।

---

୫୩୦ { ସାତ ବରଷର ଉତପନ ସେହୁ
ଯାତଜଣ ଆସନ୍ତ ଯେ ଯେବ୍ରକମେଳ ହୋଇ ।—ଖ, ନ, ଚ

କୁଲାଇ କୁଣ୍ଢାଇ ସେ ଘେନଣ ଖେଳ ଖେଳ
କୁଣ୍ଢାଇ ବଣ୍ଟ କରଣ ସେ ଦଅନ୍ତି ହୁଳାହୁଳ । ୫୩୩ ।

ଶୁଣ ଆହୋ ଯୁଦ୍ଧିଷ୍ଠି ଯେସନେକ ସମୟେ
ବୃଷଭ ଚଢ଼ି ହର ଗଉରୀ କଲେକ ବିଜୟେ । ୫୩୪ ।

କଟିତଟେ ଚର୍ମକୁଟି ଗଳାରେ ମୁଣ୍ଡମାଳ
ଉତ୍ତଙ୍ଗ ବ୍ୟାଘ୍ରଚର୍ମ ଲମ୍ବଇ ବକ୍ଷସ୍ଥଳ । ୫୩୫ ।

କୋଳେ କାନ୍ତାମା ଯେ ବିଜୟେ ଦେବୀ ଉମା
ବୃଷଭ ରୁହାଇ ଶୂନ୍ୟରେ ଦେଖନ୍ତି ଖେଳର ମହିମାଂ । ୫୩୬ ।

ଈଶ୍ୱର ପୃଚ୍ଛାକଲେ ଶୁଣ ଗୋ ମାହେଶ୍ୱରୀ
କସ କରନ୍ତି ବସି ସେ ବାଳୁତ କୁମାରୀ । ୫୩୭ ।

ଗଉରୀ ବୋଲନ୍ତି ଯେ ବାଳୁତଂକ ଖେଳଘର
ସାନ ସାନ କୁମାରୀଂକ ରାନ୍ଧଣା ଧୂଳିଖେଳ । ୫୩୮ ।

ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଗଉରୀ
ଯେହାଂକ ଖେଳ ମଧ୍ୟରେ କ ନାହିଂନା ଭିକାରୀ । ୫୩୯ ।

ପାର୍ବତୀ ହାସ୍ୟକଲେ ସଦାନନ୍ଦର ବାକ୍ୟ ଶୁଣି
ବାଳୁତ ଶୁଣଇ କ ସଜ୍ଜନର ଯେ ବାଣୀ । ୫୪୦ ।

ଧୂଳିର ଭାତ ଯେ ଧୂଳିର ତିଅଣ
ଭିକ୍ଷାସୀ ଗଲେ ତହିଂ ପାଇବ କେଉଂଣ । ୫୪୧ ।

ଈଶ୍ୱରେ ବୋଇଲେ ତୁମ୍ଭେ ବୃଷଭ ପିଠିରେ ଥାଅ ଦଣ୍ଡେ ରହି
ଭିକ୍ଷାସୀ ରୂପେ ମୁଂ ଭିକ୍ଷା ମାଗି ଆସେ ତହିଂ ଯାଇ । ୫୪୨ ।

ପାର୍ବତୀ ବୋଇଲେ ତହିଂ ଖେଳୁଛନ୍ତି ବାଳୁତ ଦୋହିତାୟେ
ତୁମ୍ଭନ୍ତ ଦେଖିଲେ ସେହୁ ପଳାଇ ଯିବେ ଭୟେ । ୫୪୩ ।

ଭୋଳାନାଥ ପୁରୁଷ ବିଜୟେ ଦେବକାଶୀ
ତାହାଂକର ସାକ୍ଷେ ଯେ ରୂପ ପରକାଶି । ୫୪୪ ।

ଭସ୍ମ ବିଲେପନ ଯେ କବରୀ ଭାର ଜଟା
ଶୁଦ୍ଧ ସ୍ଫଟିକ ବର୍ଣ୍ଣ ସେ କଉପୀନ କାଛଟା । ୫୪୫ ।

ତ୍ରିଶୂଳ ସମଳା ଲଉଡ଼ ବେନହାଥେ
ଗରଗଡ଼ ରୁଞ୍ଜ ଗୁଞ୍ଜମାଳ ଲମ୍ବିତ ହୃଦଗତେ । ୫୪୬ ।
ଚିତ୍ର କଉଡ଼ି ଚାମ୍ବର ତହିଂ ସର୍ପ୍ପଙ୍କ ହାଡ଼ମାଳା
ସର୍ପଂକର ଅସ୍ଥି ଲମ୍ବଇ ଦେବ ଗଳା । ୫୪୭ ।
ଲଲାଟେ ସୀମନ୍ତ ମା ଗୁଞ୍ଜର ରେଖ କଜ୍ଜ
ପଦ୍ମ ସର୍ପ୍ପଙ୍କ ସୁନ୍ଦର ଧବଳ ଲଲାଟ ରେଖ । ୫୪୮ ।
ମଉଳେ ବିରାଜନ୍ତି ତାମ୍ରବର୍ଣ୍ଣ ଫେଣି
ଚଳଇ ଧବଳାଙ୍ଗୀ ଶିରେ କୁତୁକ ଜାଣି । ୫୪୯ ।
ପ୍ରବାଳ ବାଳ ପୁଞ୍ଜିରେ ଶୋଭିତ ଦେବ କଟି
ପଶୁ ଚର୍ମ ଉପରେ କକ୍ଷା କରପଟୀ । ୫୫୦ ।
ଜାନୁରେ ମେଖଳ ମଜୂର କଣ୍ଠ ପକ୍ଷୀ
ଡିବ ଡିବ ଡମ୍ବରୁ ସୁସ୍ୱରେ ବାଜୁଅଛି । ୫୫୧ ।
ରେଣୁଘର କରଣ ଖେଳନ୍ତ ସର୍ବବାଳୀ
ଅଦଭୁତେ ପ୍ରବେଶ ହୋଇଲେ କୁଆଂଳୀ । ୫୫୨ ।
ଜାଗରେ ଜାଗ ମାଈ ବୋଲ ବୋଲନ୍ତ ସଦାନନ୍ଦେ
ହସିଲେ କୁମାରୀମାନେ ଡମ୍ବରୁ ଶବଦେ । ୫୫୩ ।
ମିଛିକା ଘରକୁ କାହିଂ ସଞ୍ଚକା କୁଆଂଳୀ ଭିଖାରୀ
ଦେଖିଣ ପୁଣି ହସିଲେ ବାଳୁତ କୁମାରୀ । ୫୫୪ ।
ଯେମନ୍ତ କୁଆଂଳୀ ଗୋ ଆମ୍ଭର ଦେଖିଲୁତ ନାହିଂ
କେଉଂଣ ଭିକ୍ଷା ଦେବା ଧୂଳିଛୁଂ ଆନ ନାହିଂ । ୫୫୫ ।
କୁଲଇ ଗୋଟିକରେ ଧୂଳି ଗୁଡ଼ିଏ ସଞ୍ଚ କରି
ବଡ଼ ସୁସଞ୍ଚ କରି ଗୁରୋଇ ପାଗ୍ଲେଡ଼ି । ୫୫୬ ।
ଅନେକ ସାନନ୍ଦେ ହେଲେ ସଦାନନ୍ଦ କରପାବେ
ଦେଖିଣ ହିପୁତ୍ର ଭଜଲେ ଦେବ ବିଶ୍ୱନାଥେ । ୫୫୭ ।

---

୫୪୭।୨   ଅନନ୍ତ ନାଗ ସର୍ପ କଟିରେ ମେଖଳା ।—କ, ଡ

ଆଠ ଗୋଟି ଦୁହିତା ବିପୁଳ କରଣ ମନେ
ଆଠ ମୁଠି ଧୂଳି ଦେଲେ ହରର ଉଦୁଯାନେ । ୫୫୮ ।
ଧୂଳି ଭିକ୍ଷା ପାଇଣ ହୋଇଲେ ଦେବ ସାମ୍ୟ
ମଣ୍ଡନ ଫିଟିଲା ପଚାରିଲେ କସ ତୁମ୍ଭର ନାମ । ୫୫୯ ।
ସେ ବୋଇଲେ ରମ୍ଭା ଉର୍ବଶୀ ମେନକା ଚିତ୍ରରେଖା
ମୋହିନୀ କାମସେଣା ମଦାଳସା ମଦନିକା । ୫୬୦ ।
ଅଷ୍ଟ କନ୍ୟାଏ କହିଲେ ସର୍ବୁଙ୍କର ନାମ
ହରଷେ ମହାଦେବ ହୋଇଲେ ଅତି ସାମ୍ୟ । ୫୬୧ ।
ଦିଗାମ୍ବର ନାଥ ତାଙ୍କୁ ଦେଲେ ସିଦ୍ଧ ଶିକ୍ଷା
ତୁମ୍ଭର ସତମନେ ଆମ୍ଭକଇଂ ଦେଲ ଭିକ୍ଷା । ୫୬୨ ।
କଳ୍ପ କଳ୍ପ ଆୟୁଷ ତୁମ୍ଭର ହୋଉଂ ଯୁଗେ ଯୁଗେ
ଅଷ୍ଟ ଅପସରା ହୋଇ ତୁମ୍ଭେ ବସ ଅମର ସ୍ୱର୍ଗେ । ୫୬୩ ।
ତ୍ରଇଲୋକ୍ୟ ମୋହିନୀ ତୁମ୍ଭେ ହୁଅରେ ସୁନ୍ଦରୀ
କାଳେ କାଳେ ଯୁବା ବୟସୁଂ ଆନ ନୋହିବ ତୁମ୍ଭର । ୫୬୪ ।
ଯଦ୍ୟପି ହଟପଟ ହୋଇବେ ସୁରପତି
ଯୁବା ବୟସୁଂ ତୁମ୍ଭର ନୋହିବ ଆନ ଗତି । ୫୬୫ ।
ଶୁଣ ବାବୁ ଯୁଧିଷ୍ଠି ବଦଯନ୍ତି ମାରକଣ୍ଡେ
ମକର ମାସ ସ୍ନାହାନର ଫଳଶ୍ରୁତି ହାଦେ ଯେତେ । ୫୬୬ ।

---

୫୫୮।୨ 'ଆଠମୁଠି ଧୂଳି ଦେଲେ ହରର ଉଦୁଯାନେ" ଏହି ପଦପରେ
କେତେକ ପୋଥିରେ ଭିନ୍ନପାଠ :—
ନିଷ୍ପୁଢ ହୋଇଲେ ସେ ଦେଖିଣ ବିଶ୍ୱନାଥେ
ଧୂଳିଭିକ୍ଷା ପାଇଣ ସେ ନାଚନ୍ତି ଅତି ସୁଖେ ।
କେବଳ କନ୍ୟା ଧୂଳି ପୂରେଇଣ କୋଟି (କୁଟି)
ଆନନ୍ଦେ ଦେଲେ ସେ ଘେନଲେ ଧୂର୍ଜଟି ॥
ଧୂଳିରୁ ଆଠମୁଠି ଦେଲେ ହର ସନ୍ନିଧାନେ
ଆଠଗୋଟି ବାଳକାଙ୍କ ପ୍ରସନ୍ନ ହେଲେ ମନେ ।

୫୬୦।୨ କାମସେଣୀ ମଦନିକା ମୋହିନୀ ଅମ୍ବିକା ।— ଠ, ଝ, ଥ, ଜ୍ଞ

ବାବୁ ବିଶ୍ୱାବସୁ ଗନ୍ଧର୍ବର ଭାରିଯା ହାରିବନ୍ତି
ଜାତ ହୋଇ ମରଇ ତାର ପୁତ୍ର ଯେ ଦୁହିତା । ୫୬୭ ।
ଅଗସ୍ତିଙ୍କ ପୁଛାକଲେ କେବଣ ମୋର ପାପ
ପୁତ୍ର ଦୁହିତା ନ ବ୍ରତନ୍ତି କେବଣ ଦୋଷ ଅନରୂପ । ୫୬୮ ।
ଅଗସ୍ତି ବୋଇଲେ ଅଦୋଷୀ ପ୍ରାଣୀକି ମାରଇ ଯେ ପୂର୍ବେ
ତଦ ଦୋଷେ ସନ୍ତାନ ହାନି ହୋଇ ଯେ ପ୍ରେତେ । ୫୬୯ ।
ଅଗସ୍ତି ବୋଇଲେ ହରଅଳେ ପଶି ହୋ କରନ୍ତି ନଯ୍ନମ
ତାଂକର ସନ୍ତତି ନାଶ ଯାଇ ପାପକର୍ମର ଯେହ୍ନ ଧର୍ମ । ୫୭୦ ।
ଅଗସ୍ତି ବୋଇଲେ ପୂର୍ବେ ଯେ ହରଇ ଗୋ ଚନ୍ଥ
ତାହାଂକର ସନ୍ତାନ ହାନି ହୋଇ ଯଥାର୍ଥ । ୫୭୧ ।
ଅଗସ୍ତି ବୋଇଲେ ଯେ ଶାହାସ୍ତ୍ର ବିଧି ବରଣେ
ସର୍ବ ହନ୍ଦ୍ୱ ତେଜ ଶାହାସ୍ତ୍ର ଶୁଣି ଶ୍ରବଣେ । ୫୭୨ ।
ରାମାୟଣ ଭାଗବତ ଶ୍ରୀ ମହାଭାରଥ
ଶ୍ରବଣେ ଆପ୍ୟାନ କଲେ ଖଣ୍ଡିବ ସର୍ବ ଦୁଷ୍କୃତ । ୫୭୩ ।
ହେବ ଶାହାସ୍ତ୍ରେ ଅନେକ ପାତକ ଧ୍ୱଂସି
ବଦଯ୍ନନ୍ତି ମାରକଣ୍ଡେ ଶୁଣ ହୋ ସୋମବଂଶୀ । ୫୭୪ ।
ଶାସ୍ତ୍ର ଆଦରଣ କର ଧର୍ମପନ୍ଥ ଶନ୍ତ୍ରବ
ପାତକ ଧ୍ୱଂସି ହୋଇ ସନ୍ତତି ଲଭିବ । ୫୭୫ ।
ହାରିବନ୍ତି ବୋଇଲା ମୁଂ ଅଗ୍ୟାଂନେ ପାପ କଲି ପୂର୍ବେ
ଯେଥକଇଂ ପ୍ରତିକାର କର ଦେବ ଯେବେ । ୫୭୬ ।
ଅଗସ୍ତି ବୋଇଲେ ତୁ ଯେବେ ମାଘସ୍ନାହନ କର
ଗତଜନ୍ମର ପାତକ ଖଣ୍ଡିବ ତୋହୋର । ୫୭୭ ।
ତିରିଶ ହିବସ ପର୍ଯ୍ୟନ୍ତେ ନ ଯିବୁ ପୁରୁଷର ପାଶ
ମିଥ୍ୟା ନ କହିବୁ ନ ଭୁଞ୍ଜିବୁ ଆମିଷ । ୫୭୮ ।
ଅକଟା ଅବଟା ପରିବା ଯେ କରିବୁ ହବିଷ ଭୋଜନ
ପରେ ଅପବାଦ ହିଂସା ନ ପଶିବ ପାପମନ । ୫୭୯ ।
ମାଧବ ଦେବତାକଇଂ ଗୁଆଘୃତେ ଜାଗର
ସମସ୍ତ କହିଲେ ଋଷି ଯେତେ ଧର୍ମ ଅଛଇ ଅପାର । ୫୮୦ ।

ସ୍ତ୍ରିଶାଳଙ୍କ ଲୋକକୁ ଯେତେକେ କହିବସି ଧର୍ମ
ଯେତେକ ସମ୍ବାଦରେ ଅଛଇ ବହୁତ କର୍ମ । ୫୮୧ ।
ଗତ ପାତକମାନ ସମସ୍ତ ଯିବ କ୍ଷୟେ
ମନ୍ତ୍ରଟି ଦୋଷ ପାରିଯିବ ଉପୁଜବ ତନୟେ । ୫ ୨ ।
ଅଗସ୍ତିଂକର ବଚନେ ବଶିଷ୍ଠାବସୁଂକର ନାଶ
କଉଶିକ ଗଙ୍ଗାୟେ ସେ ମାଘ ସ୍ନାହାନ କରି । ୫ ୩ ।
ମାଘ ସ୍ନାହାନର ଫଳଶ୍ରୁତିରେ ସମସ୍ତ ପାତକ ହୋୟେ ଧ୍ୱଂସି
ଯେହାର ଦୁହିତା ଉପୁଜିଲା ମଦାଳସୀ । ୫୮୪ ।
ସେ ମଦାଳସୀ ସ୍ନାହାନ କରଇ ମକର ମାସେ
ଋଷିପୁତ୍ର ଉତପତ୍ତି ହୋଇଲା ଧର୍ମର ଉଦ୍ଦେଶ୍ୟେ । ୫୮୫ ।
ସେ ମଦାଳସୀର ତହୁଂ ଋଷିପୁତ୍ର ହୋଇଲେ ଉତପତ୍ତି
ବହୁତ ଧର୍ମ ଉପୁଜିଲା ପାଇଲା ପରମଗତି । ୫୮୬ ।
ବାବୁ ମକର ମାସ ସ୍ନାନ ଫଳେ ଧର୍ମପାଳ ନାମେ ପକ୍ଷୀ
ମକର ମାସେ ପ୍ରାଗର୍ଥେ ଉଡନ୍ତେଣ ମୀନ ଦେଖି । ୫୮୭ ।
ମୀନର ଲୁବ୍ଧେ ସେ ପକ୍ଷୀ ଜଳକଇଂ ଦାଧେ ଖେପି
ତ୍ରିବେଣୀ ସଂଗମେ ସେ ପଡିଲା ତେଜ ବ୍ୟାପି । ୫୮୮ ।
ସଂଗମେ ପଡିଣ ପକ୍ଷୀ ସେ ସେ ନୁଆରିଲା ଉଠି
ମହାତତେ ପଡିଣ ଶରୀର ତାର ଫୁଟି । ୫୮୯ ।
ଗୃଧ୍ରଖଣ୍ଡ ହୋଇଲା ସେ ଧର୍ମପାଳ ତଡାଇ
ଋଷିମୂର୍ତ୍ତି ହୋଇଣ ସେ ବିକାଶିଲା ତହିଂ । ୫୯୦ ।
ସାରଥି ସ୍ତମ୍ଭ ବ୍ରାହ୍ମଣ ମଇଷାନ୍ତ ପକ୍ଷୀଗୃଧ୍ର
ମକର ମାସ ସ୍ନାହାନ ଫଳେ ଯୋଗେଣ ଅବତରି । ୫୯୧ ।
ଶୁଣ ହୋ ଯୁଧିଷ୍ଠିର ବଦଯନ୍ତି ମାରକଣ୍ଡେ
ମକର ମାସେ ପୁଣ୍ୟକଲେ ପାପତାପ ଖଣ୍ଡେ । ୫୯୨ ।

---

୫୮୧।୨ ଯେତେକ ସମ୍ବାଦରେ ଅଛଇ ବହୁତ ଧର୍ମ ।

୫୮୬ { ସେ ମଦାଳସୀଠାରୁ ଋଷି କୁମର ଉତପତ୍ତି
ପାପେ ବର୍ଜିତ ହୋଇଲେ ପାଇଲେ ସଦଗତି ।—କ, ତ,ଣ,ନ,ଖ }

୫୮୯ ଜଳବ୍ୟୂହେ ପଡିଣ ଶରୀର ଗଲା ତାର ତୁଟି ।—ଘ, ଙ

ବାବୁ ମକର ମାସେ ଉଦ୍ଧିଛ ଯେ ଅନନ୍ତ ଆଦିତ୍ୟ
ବିଷ୍ଣୁ ବ୍ରାତ ନାମେଣ ସେ ବହଇ ମରୁତ । ୫୯୩ ।
କହନ୍ତେ ଅସଂଖ୍ୟ ମକର ମାସର ମହିମାଂ
ତୁ ଯେହ୍ନା ସଂକଳ୍ପ କର ହେ ମହାତମା । ୫୯୪ ।
ପୁଷ୍କର ପ୍ରସନ୍ନେ ପାଅ ତୁ ପରମ ଗତି
ଅସଂଖ୍ୟ ସାଗର ଯେହ୍ନା ବୋଇଲେ ଅଗସ୍ତି । ୫୯୫ ।
ଯହୁଂ ମାରକଣ୍ଡେ ଦେଖାଇଲେ ପୁଷ୍କର ପୁରୁଷକୁ
ଯୁଧେଷ୍ଟି ଦେବ ଯେ ତୁସ୍ତି ଆରମ୍ଭିଲେ ତାଂକୁ । ୫୯୬ ।
ଜୟ ତୁ ପୁଷ୍କର ନୀଳାମ୍ବର ଆଦିରୂପୀ
ଜୟ ତୁ ପୁଷ୍କର ଧବଳ ଭୁବନ ବ୍ୟାପୀ । ୫୯୭ ।
ଜୟ ତୁ ପୁଷ୍କର ଅଭେଦ୍ୟ ଅଭେଦା
କର୍ମଣ ପୁରୁଷ ତୁ ବାକ୍ୟେଣ ମହାସିଦ୍ଧା । ୫୯୮ ।
ଜୟତୁ ପୁଷ୍କର ପୁରୁଷ ଅଭେଦ୍ୟ ଅକାମ
ସୁର ସିଦ୍ଧ ସାଧେ ବଦନ୍ତି ଯାହାର ନାମ । ୫୯୯ ।
ଜୟତୁ ପୁଷ୍କର କଳିତ ଅରବିନ୍ଦ
ଶୟୂଳ ଜନ ଚିନ୍ତାମଣି ସଂସାର ସଦାନନ୍ଦ । ୬୦୦ ।
ଜୟତୁ ପୁଷ୍କର ଦେବ ଅଗାଧ ଜଳବାସୀ
ଜୟତୁ ପୁଷ୍କର ଦୁଷ୍କୃତ ଯାହାର ନାମେ ହୋଇଯେ ଧ୍ୱଂସି । ୬୦୧ ।
ଶୁଦ୍ଧ ସଷ୍ଟିକ ଅର୍କ ଦଇତ ବଦାର
ଯାବତ ଦୁଷ୍କୃତ ହରନ୍ତା ଦିବାକର । ୬୦୨ ।
ଅଗାଧ ସାଗର ତହିଂ କାହାକୁହିଂ ନ ଦେଖି
ହରନ୍ତା ତାରନ୍ତା ପୁରୁଷ ତୁହି ସେ ସର୍ବ ସାକ୍ଷୀ । ୬୦୩ ।
ଯାବତ ଚନ୍ଦ୍ର ଦିବାକର ତୁହି ସେ ଅଭିନ୍ନ
ତନୁ ବର୍ଣ୍ଣ ଶିଖା ବୟୁଣ ଧୃତାପାଙ୍ଗ । ୬୦୪ ।

---

୫୯୭।୨ ଜୟତୁ ପୁଷ୍କର ଧବଳ ବଦନବ୍ୟାପୀ ।—ତ, କ
୬୦୪।୨ ତନୁ ବର୍ଣ୍ଣ ଶଂଶାଙ୍କ ଯେଣ ବୃତଅଙ୍ଗ । —ଘ

ସର୍ବଭୂତ ଆତ୍ମାଂକର ତୁମ୍ଭ ସେ ପ୍ରାଣଗୁରୁ
ଜାନାମି ନ ଜାନାମି କେ ଅନ୍ତ କରିପାରୁ । ୭୦୫ ।
ସେହିକା ମୂର୍ତ୍ତି ତୋର ଶତକୋଟି ତୀର୍ଥ ବ୍ୟାପି
କର ଗଣ୍ଡସ୍ଥଳେ ସମସ୍ତ ସାଗର ମାପି । ୭୦୬ ।
ସୁରସିଦ୍ଧ ନାଥ ପ୍ରସନ୍ନ ପାଦୁକା
ଅନାଗତ ଶପୂନ ଧାରଣ ପୁରୁଷ ସେହିକା । ୭୦୭ ।
ସ୍ୱାମୀ ଅନନ୍ତ କୋଟି ତୀର୍ଥ ଯାର ହୃଦ କମଳେ
ପ୍ରସରୁ ତବ ନାମ ସ୍ୱାମୀ ସର୍ବକାଳେ । ୭୦୮ ।
ଅନାଗତ ପାତକ ଅକର୍ମେଣ ପଣି
ଛଛନ୍ଦେ କୃତାନ୍ତକ ଦର୍ପ ଦ୍ରଣନେ ବିଧ୍ୱଂସି । ୭୦୯ ।
ଦୁସହ ଦୁରନ୍ତକ ସଦ୍ୟନକ ବାହୁ
ଅକାରଣ ପୁରୁଷ ତୁ ଛେଦନେ ଅଠୁ ରାହୁ । ୭୧୦ ।
ପାଞ୍ଚକୋଟି ତୀର୍ଥ ଯାର ମୁଖ ଅରବିନ୍ଦେ
ନାରିକୁଳ ମଣି ବିରାଜଇ ଯାର ହୃଦେ । ୭୧୧ ।
ନବକୋଟି ତୀର୍ଥ ଯାହାର ଦକ୍ଷିଣ ଭୁଜେ ବହଇ
ସାହୋର ମଣ୍ଡଳ ସଙ୍ଗମେ ଯାଇ ରହଇ । ୭୧୨ ।
ସପତ କୋଟି ତୀର୍ଥ ଯାହାର ବାମକରେ
ନବ କୋଟି ତୀର୍ଥ ବସଇ ଉଦରେ ।୭୧୩।
ଦ୍ୱାଦଶ କୋଟି ଯେ କଣସେ ଧବଳୀ
ଜାନୁ ଭେଦଣ ଯାହାର ଗମଇ ମେରୁସ୍ଥଳୀ । ୭୧୪ ।
ପଞ୍ଚକୋଟି ତୀର୍ଥ ବହଇ ଯାହାର କଣ୍ଠାରୂଢ଼େ
ଗର୍ଭେ ସଙ୍ଗମ ବିଂଶକୋଟି ତୀର୍ଥ ଅଙ୍ଗ ଆଢେ । ୭୧୫ ।
ଭାବେଣ ଭାବଇ ଅମାପ କୁଣ୍ଡଳୀ
ନମସ୍ତେ ନାରାୟଣ ପୁଷ୍କର ମଣ୍ଡଳ । ୭୧୬ ।

---

୭୦୬।୨ କର ଗଣ୍ଡସ୍ଥଳେ ସମସ୍ତ ସାଗରବ୍ୟାପୀ । ଘ,ଥ
ବପୁଣ—
ଧୃତାପାଙ୍ଗ—

ଯଦ୍ୟପି ପରଂବ୍ରହ୍ମ ହୋଇବ ଦଇବତ
ତବ ଅବିଷେକେ ସେ ହୋଇବ ମୁକତ । ୭୧୭ ।
ଶ୍ରୀ ପୁଷ୍କର ଦେବତାଂକର ଅବିଷେକ ଶିରଗତେ
ଶୂଦ୍ରମୁନି ସାରେଳ ଦାସ ପ୍ରତିକ୍ଷଣ କରଇ ନତ୍ୟେ । ୭୧୮ ।
ମ'ରକଣ୍ଡେ ଯାହା କହିଲେ ଧର୍ମରାଜା ଅଗ୍ରତେ
ମୁଂ ତାହା ବଖାଣିଲି ପୁରାଣ ସଙ୍ଗତେ । ୭୧୯ ।
ଋଷିମାନନ୍ତ ଯେମନ୍ତ ଧର୍ମରାଜ୍ୟେ ଶିଷି
ଶ୍ରୀ ମାଳସୁନ୍ଦର ପରବତେ ଅଛନ୍ତି ସେ ବସି । ୭୨୦ ।
ମକର ମାସ କୃଷ୍ଣପକ୍ଷ ପଞ୍ଚମୀର ଅନ୍ତେ
ମାରକଣ୍ଡେ ବଖାଣିଲେ ପୁରାଣ ସଙ୍ଗତେ । ୭୨୧ ।
ବାବୁ ପୃଥିର ପଚ୍ଛିମ ଦିଗେ ନିଷାଦର ପୁରୀ
ତିନିଶତ ଯୋଜନ ଆୟତନ ସେହୁ ନଗରୀ । ୭୨୨ ।
ମାତାର ବଚନେ ତାହା ଗରୁଡ଼ ନାଶକଲା
ମହା ସମ୍ପଦ ସେ ରାଜା କ୍ଷୀରୋଦ୍ରେ ପକାଇଲା । ୭୨୩ ।
ଯୁଧିଷ୍ଠିରେ ଦେବ ବୋଇଲେ କହିବା ମାରକଣ୍ଡେ
ନିଷାଦର ପୁରକୁ କଂପେ ଗରୁଡ଼ର କୋପ ପ୍ରେତେ । ୭୨୪ ।
। ୯୧୧୮ ।

---

୭୨୩।୨ ମହା ସମ୍ପଦ ସେ ରାଜ୍ୟ ସମୁଦ୍ରେ ମାଡିଲା ।—ତ, କ

## ଗଜ କଚ୍ଛପର ଯୁଦ୍ଧ

ମାରକଣ୍ଡେ ବୋଇଲେ ତୁମ୍ଭେ ଶୁଣିମା ଯୁଧିଷ୍ଠି
ଯହିଂ ନିମନ୍ତେ ନିଷାଦର ପୁରେ ଉପୁଜିଲି ଅରିଷ୍ଟି । ୧ ।
କଦ୍ରୁ ବିନତା ଯେ ଦୁହେଂ ହୋଇଲେ ବିବାଦୀ
ନାଗଂକର ଦର୍ପେ ଗରୁଡ଼ ଗଲା ଖେଦି । ୨ ।
ହୋଡ଼େ ହାରିଲା ବିନତା ବଡ଼ ହୋଇ
କଦ୍ରୁ ବିନତାକୁ ସାତବେଣି କଲା ମଉଦଧି କୂଳେ ନେଇ । ୩ ।
ଦାସୀପଣ କରି ବିନତାକୁ ଆଣନ୍ତେ
କଦ୍ରୁ ହାକନ୍ଦିଲା ବାଞ୍ଛଣ ବେନି ହାଥେ । ୪ ।
ପ୍ରପଞ୍ଚ ରୂପ ଦେଖି ନିଷାଦପୁର ନରନାରୀ
କଦ୍ରୁର ବଚନେ ଗାଲଭୁଷି ଦେଇ ବାରୁଆଳ ବୋଲି ପାଡ଼ି । ୫ ।
ଭଲ ବସ୍ତ୍ର ଖଣ୍ଡି ପାଲଟାଇ ନେଲେ
ଚିରକୂଟୀ ଖଣ୍ଡି ପିନ୍ଧାଇଣ ଅନେକ ଶାସ୍ତି ଦିଲେ । ୬ ।
ବେଟୀଚେରୀ ବୋଲିଣ ପାଡ଼ିଲେ ବହୁତ ବୋଲି
ତେଣୁକରି ମହାରାଗ ସେ ବହିଲା ମହାଦେବୀ । ୭ ।
ଉମାବସୁ ବିଭାବସୁ ବୋଲିଣ ଭାଇ ବେନି
ତାହାକଇଂ ଶାପ ଦିଲେ ଉତ୍ତଂକ ମହାମୁନି । ୮ ।
ବାଲଖିଲ୍ୟା ମହା ବ୍ରହ୍ମଋଷିଂକର ଶାପେ
ଗଜ କଚ୍ଛପ ହୋଇ ସେ ଅଗ୍ୟାନ ହୋଇଲେ ଋଷିର ଗରୁତାପେ ।୯।
ମାରକଣ୍ଡ ମହର୍ଷିଂକ ପୁଚ୍ଛା କଲେକ ଯୁଧିଷ୍ଠି
କେବଣ ଦୋଷେ ଯେତେ କୋପ କଲେ ତପୋନିଷ୍ଠି । ୧୦ ।
ମାରକଣ୍ଡେ ବୋଇଲେ ବାବୁ ଶୁଣସି ଧର୍ମରାୟେ
ବହୁତ କାଳର ତୋତେ କହିବା କଥାୟେ । ୧୧ ।
ଦେବନିକ ବୋଲି ସେ ଯେକଇ ସତ୍ୟଯୁଗେ
ସେହି ଯୁଗେ ତପ ହାଦେ ସାଧିଲେ ଉତଙ୍ଗେ । ୧୨ ।

ଋଷଭ ଶୁକଳ ଦଶମୀ ଚନ୍ଦ୍ରବାରେ
ହସ୍ତା ନକ୍ଷତ୍ରକୁ ଭୋଗ ସେ ଦିନରେ । ୧୩ ।
ଉତ୍ତଂକ ମହର୍ଷି ଗଲେ ଅମର ସ୍ୱର୍ଗକୁ
ଇନ୍ଦ୍ର ଦେବତା ବସିତେ ନ ଦିଲେ ତାହାଂକୁ । ୧୪ ।
ବଇରତା ପ୍ରାପ୍ତେ କରି ବୁଝିଲେ ଉତ୍ତଂକକୁ
ହୃଦଗତେ ବିଚାରିଲେ କଂପେ ଯେ ସ୍ଥିର ଅଇଲା ସଭାକୁ । ୧୫ ।
ଯୁଦ୍ଧେଷ୍ଟି ପଚାରିଲେ ସେ ଉତ୍ତଂକ ବ୍ରହ୍ମଯୋଗୀ
ତାହାକଇଂ ଇନ୍ଦ୍ର କଂପେ ହୋଇଲେ ଯେତେ ବଇରାଗୀ । ୧୬ ।
ଶୁଣ ଭୁହୋ ଯୁଦ୍ଧେଷ୍ଟି ଗଉତମ ମହର୍ଷି
ତାହାଂକର ପତ୍ନୀ ଯେ ଅହଲ୍ୟା ଶୁଭ୍ରକେଶୀ । ୧୭ ।
ଇନ୍ଦ୍ର ଯେ ହରିଲା ଗଉତମଂକ ପତ୍ନୀ
ପିତାର ଅଗ୍ରତେ ତାହା କହିଲା ଅଞ୍ଜନୀ । ୧୮ ।
ଅଞ୍ଜନାକଇଂ ପ୍ରଦାନ ହୋଇଲେ ଉତ୍ତଂକ ମହାମୁନି
ତେଣୁ କରି ଇନ୍ଦ୍ରଦେବତା ବଇରାଗ ଭାବ ଘେନି । ୧୯ ।
ଗଉତମଂକ ଶାପେ ଇନ୍ଦ୍ର ହୋଇଲେ ସହସ୍ରଯୋନି
ତେଣୁକରି ଉତ୍ତଂକକୁ ସେ ଅଚ୍ଛନ୍ତି ରାଗ ଘେନି । ୨୦ ।
ଗତ କଥାକୁ କଳ୍ପି କରି ସୁରରାୟେ
ବସିତେ ନ ଦିଲେ ଉତ୍ତଂକକୁ ସୁରି ସଭାୟେ । ୨୧ ।
ରାଗେଣ ଉତ୍ତଂକ ମୁନି ଅଇଲେ ଯେ ଚହ୍ଣଂ କୋପେ
ଇନ୍ଦ୍ରପଦ ଘେନମି ବୋଲି ବସିଲେ ଘୋର ତପେ । ୨୨ ।
ନିରାହାର ହୋଇଣ ସେ ଚୂରିଯୁଗ ବଞ୍ଚି
ଇନ୍ଦ୍ରପଦ ନେମ ବୋଲି ତପସ୍ୟାଏ ସଞ୍ଚି । ୨୩ ।

---

୨୨। "ଇନ୍ଦ୍ରପଦ ଘେନମି ବୋଲି ବସିଲେ ଘୋରତପେ" ପରେ "ଛ" ପୋଥିରେ "ଅଧିକ ପାଠ" :—
ସ୍ନେହ ପୁଷ୍କର ତୀର୍ଥେ ତପ ଆରାଧିଲା
ଶରୀର ନିରାଶ୍ରେ କରି ପବନ ନିରୋଧିଲା ।
କଷ୍ଟୋର ତପେ ବିଷ୍ଣୁଂକୁ କଲା ଆରାଧନା
ନିଷ୍ଟୟେ ସ୍ୱର୍ଗରେ ହୋଇବ ପାକଶାସନା ।

ନାରଦ କହିଲେ ଯାଇ ଇନ୍ଦ୍ରର ଅଗ୍ରତେ
ଉତ୍ତଂକ ଋଷିର କଥା ଶୁଣ ହେ ସୁରନାଥେ । ୨୪ ।
ତୋହୋର ଆଗେଣ ମୁଂ କହଇ ଆଖଣ୍ଡଳ
ଉତ୍ତଂକ ଘେନୁଅଛୁ ତୋହୋର ଅମର ମଣ୍ଡଳ । ୨୫ ।
ଏହା ଜାଣିଣ ଚିନ୍ତା ତୁ କର ଦେବରାଜ
ଉପାଏ କରିଣ ତୁ ତାହାର ତପ ଭଂଜ । ୨୬ ।
ନାରଦଂକ ବଚନ ଶୁଣିଣ ସହସ୍ରଯୋନ
ସନ୍ନିଧେ ହକାରଲେ ଉମାବସୁ ବିଭାବସୁ ବେନ । ୨୭ ।
ତୁମ୍ଭେ ଦୁହେଂ ବାବୁ ଏହିକ୍ଷଣି ଯିବ
ନାନା ଅବସ୍ଥା ଦେଇ ଉତ୍ତଂକ ଋଷିର ତପସ୍ୟା ଭଂଜିବ । ୨୮ ।
ସୁରନାଥଂକ ବଚନେ ଗଲେ ବେନବସୁ
ମୃତ୍ୟୁମଣ୍ଡଳ କଂପିଲା ସେ ଦୁହିଂକର ଆସୁ ଆସୁ । ୨୯ ।
ନାନାରୂପ ଦୁହେଂ କଲେକ ପରତେଜ୍ୟା
ଅମାପ ମୂରତି ହୋଇଲେ ଗଜ କଚ୍ଛପ ପଜା । ୩୦ ।
ଉମାବସୁ ହୋଇଲା ମହାନାଗ ଗୋଟାଏ
ବିଭାବସୁ ହୋଇଲାକ କଚ୍ଛପ ରୂପ କାଏ ୩୧ ।
ମତ୍ତଗଜ ହୋଇଣ ସେ ଭଂଜଲେ ଆଶ୍ରମ
ସ୍ନାହାନ କାଳେ ବେଦ କରଣ୍ଡି ହରିଲା କୁରୁମ । ୩୨ ।
ଦୁରାପଦ କୃତ୍ୟ ଦେଖିଣ କୋପିତ ବ୍ରହ୍ମଋଷ
ଗଜ କଚ୍ଛପ ଦେଖିଣ ମନେ ମନେ ହାସି । ୩୩ ।
ଯୁଗତେ ଯେବେ ତୁମ୍ଭେ ଗଜ କଚ୍ଛପ ଅଟ
ଏ ମୃତ୍ୟୁ ମଣ୍ଡଳେ ତୁମ୍ଭେ ହୋଅ ରେ ମହା ବଳିଷ୍ଠ । ୩୪ ।

---

୩୦।୨ ଅମାପ ମୂରତି ଧଇଲେ ବେନି ବାସବ ଆତ୍ମଜା ।—ଡ, ଥ, ଞ

୩୩।୨ ଗଜ କଚ୍ଛପ ଦେଖିଣ ମନେ ମନେ ପରମେଷ୍ଠି ।
( ପରଶଂସି, ଉପଲେଣି ଆକ୍ଷେପି, ତୋଷି )
ପ୍ରଭୃତି ଭିନ୍ନ ଭିନ୍ନ ପାଠ ଅଛି ।

ନୋହିଲେ ଯେବେ ମୋହୋର ତପ ଭାଂଜିଲେ କାମରୂପୀ
ଗଜ କଚ୍ଛପ ହୋଇ ତୁମ୍ଭେ ଥାଅରେ ଅଦ୍ୟାପି । ୩୫ ।
ତୁମ୍ଭର ଦୁଷ୍ଟପଣେ ମୃତ୍ତୁମଣ୍ଡଳ ଭାଂଜୁ
କାଳ ଅବସାନେ ଗରୁଡ଼ ତୁମ୍ଭକଇଂ ଗଂଜୁ । ୩୬ ।
ମାରକଣ୍ଡେ ବୋଇଲେ ହାଦେ ଉତଂକ ଋଷିର ଶାପେ
ତପ ଦୋଷେ ହୋଇଲେ ସେ ଗଜ କଚ୍ଛପ ସରୂପେ । ୩୭ ।
ଜଗଦଳନ କଚ୍ଛପ ରହିଲା ବାରାନଧି କୂଳେ
ଦୁଷ୍ଟ ଗଂଜନ ଗଜ ରହିଲା ଦ୍ରୁମନ ଗିରି ମଉଳେ । ୩୮ ।
ସେ ମହାଗଜ ଉଡଇ କଚ୍ଛପ ନିଶ୍ୱାସେ
ଉଡିଣ ପଡିଲା ଯାଇ କର୍ଣ୍ଣାଟ ନାମ ଦେଶେ । ୩୯ ।
ଯେଉଂଣ ଦେଶରେ ଗଜ ପଡଇ ଯେ ମାଡି
ଗିରି କନ୍ଦର ରାଜ୍ୟ ସମସ୍ତ ହୋଏ ଚୂର୍ଣ୍ଣ । ୪୦ ।
ଅନେକ ଦେଶ ଗ୍ରାମ ରାଜ୍ୟ ନଗ୍ର ଗଲା
କୃଷ୍ଣ ଶୁକଳ ଷଷ୍ଠୀ ଦିନ କଚ୍ଛପ ଦକ୍ଷିଣ ମୂର୍ତ୍ତି ହେଲା । ୪୧ ।
ପୁଣ କଚ୍ଛପକଇଂ ଯେ ଭେଟିଲା ମହାନାଗ
ଥୋରହସ୍ତେ ଦରାଣ୍ଡି ଧଇଲା ତାକୁ ବେଗ । ୪୨ ।
ବୁଲାଇଣ କରିଡିଲା ଦ୍ରୁମନ ଗିରି କନ୍ଦରେ
ସେ କଚ୍ଛ ପଡନ୍ତେ ଚୂର ହୋଇଲା ଶବଦରେ । ୪୩ ।
ପଞ୍ଚଷଠୀ ଯୋଜନ ଯେ ଦ୍ରୁମନ ଗିରିସ୍ଥଳୀ
କଚ୍ଛପ ପଡନ୍ତେ ତାହା ହୋଇଲାକ ଧୂଳି । ୪୪ ।
ଗଜକୁ କଚ୍ଛପ ଧଇଲା ଚଉପାଦ ଦରାଣ୍ଡି
ଗଜର ପିଠିରେ ସେ ପଡିଲା ବେଗେ ମାଡି । ୪୫ ।
କଚ୍ଛପର ଭାର ଗଜ ନୁଆଇଲା ସହି
ତଳଣ ମହାନାଗ ପଡିଲାକ ମହୀ । ୪୬ ।

---

୩୮।୨ ଦୁଷ୍ଟଗଞ୍ଜନ ଗଜ ରହିଲା ଦ୍ରୁମନ ଗିରି ମେଖଳେ ।—ଚ
୩୮।୨ ଦୁଷ୍ଟଗଞ୍ଜନ ଗଜ ରହିଲା ପର୍ବତ ମେଟଳେ ।—କ
୪୧।୨ କୃଷ୍ଣ ଶୁକଳ ଷଷ୍ଠୀ ଦିନ ଗଜ ଗଚ୍ଛପର ଗୋଳ ହୋଇଲା ।—ଟ, ଗ

ଗଜ କଚ୍ଛପର ଅନ୍ୟୋଅନ୍ୟ ହୁଅନ୍ତେ ଯୁଦ୍ଧେ
ପଡନ୍ତ ଉଠନ୍ତ ଗଡନ୍ତ ସେ କୁଶଦ୍ୱୀପର ମଧ୍ୟେ । ୪୭ ।
ମହା ବିଶ୍ୱରୂପୀ ସେ ଅନନ୍ତ କାମରୂପୀ
ନବଦ୍ୱୀପ ସପତ ସାଗର ତେଜ ବ୍ୟାପି । ୪୮ ।
ଅନେକ ବନ କନ୍ଦର ଦେଶ ଗଲା ଚୂର
ସପତ ଭାଙ୍ଗିଲା ହାନ୍ଦୋଳ ହୋଇଲା ସପତ ସାଗର । ୪୯ ।
ଦିଗପାଳମାନେ ଯାଇଂ କହିଲେ ପଦ୍ମଯୋନି
ସ୍ୱାମୀ ନାଶ ଯାଉଅଛୁ ତୋହୋର ସମସ୍ତ ମେଦିନୀ । ୫୦ ।
ସ୍ୱାମୀ ମହୀ ନାଶଗଲା ଗଜ କଚ୍ଛପର ବିବାଦେ
ଜନଜନ୍ତୁ ନଶିଲେକ ଦୁହିଂକର ପ୍ରମାଦେ । ୫୧ ।
ତୁ ଦେବ ନବସୃଷ୍ଟି କରତା ବିଧାତା
ସଚରାଚର ମହୀକି ତୁହି ସେ ଉଦ୍ଧାରନ୍ତା । ୫୨ ।
ଶୁଣିଣ ଚିନ୍ତା ଯେ ବସିଲା ହୃଦେ ବେଦବର
ବିନତା ନନ୍ଦନକଇଂ ରାଇ ବୋଇଲେ କୁଶଧର । ୫୩ ।
ତୁ ବାବୁ ଖଗେଶ୍ୱର ମୃତ୍ୟୁମଣ୍ଡଳକୁ ବହନ ହୋଇ ଯାସି
ଗଜ କଚ୍ଛପକଇଂ ପକାଅ ବେଗେ ନାଶି । ୫୪ ।
ପିତାର ବଚନେ ସେ ଚଳଇ ଖଗସ୍ୱାମୀ
ଆଜ୍ଞାଂ ପ୍ରେ ଗରୁଡ ଯେ ବିକାଶିଲା କାୟା । ୫୫ ।
ଆକାଶରେ ଥାଇ ମଧ୍ୟଭୁବନକଇଂ ଦିଲା ଦୃଷ୍ଟି
ଦେଖିଲା ଗଜ କଚ୍ଛପର ଯେ ସମର ଅରିଷ୍ଟି । ୫୬ ।
ଧାଡିକାରେ ବଇନେତ୍ର ପଡିଲା ଆକାଶୁ
ବ୍ରହ୍ମାଣ୍ଡ କଂପିଲା ସେ ଖଗସ୍ୱାମୀ ଆସୁ ଆସୁ । ୫୭ ।
ରଡିଘାତେ କଂପିଲା ଯେ ସପତ ସାଗର
ତ୍ରାସେ ଉରଗଂକ ବଳ ପଶିଲେ ପାତାଳର । ୫୮ ।
ଗଜ କଚ୍ଛପ ବିବାଦ ଗରୁଡର ଦେଖି
ପଳାବନ୍ତ ଜନମାନେ ଘରଗ୍ରାମ ଉପେକ୍ଷି । ୫୯ ।
ସମର କାଳେ ତାହା ଦେଖିଲେ ମହାଗଜେ
ବୋଇଲା ଘୁଞ୍ଚ ଘୁଞ୍ଚ ହୋ କଚ୍ଛପ ଗରୁଡ କଲା ଦିଗବିଜେ । ୬୦ ।

ଅରୁଣ ପର୍ବତେ ଆସି ବଜୟେ ଖଗସ୍ବା
ଦେଖଇ ଗଜ କଚ୍ଛପର ମନ୍ଦର ଜାଣି କାୟ୍ବା । ୭୧ ।
ମହା ବଳବନ୍ତା ସେ ସମର ମତ୍ତଗର୍ବେ
ଲଗନ୍ତି ମାଲଯୁଦ୍ଧ ଯେହ୍ନେ ଶାପ୍ୟ ପୂର୍ବେ । ୭୨ ।
ଗଜ କଚ୍ଛପର ବେନି ମୁଣ୍ଡେ ପ୍ରହାର ବାଜ
ମହା ଅନଳ ତେଜ ଉଠିଲ୍ଲ ଗଳଗାଜ । ୭୩ ।
ଦେଖିଣ ହାସେ ପଳାଇଲେ ସମସ୍ତ ଦିଗପାଳେ
ଅନେକ ରାଜ୍ୟ ଦହନ ହୋଉଅଛି ମହା ଅନଳ ଜାଳେ । ୭୪ ।
ରହ ରହ ଗଜ କଚ୍ଛପ ବୋଲି ବୋଲଇ ଖଗେଶ୍ୱର
ସଂସାର ନାଶଗଲାନ ସେ ଦୁହିଂକର ସମର । ୭୫ ।
ଯେମନ୍ତେ ଅନେକ ମାଧୁର୍ଯ୍ୟ ବଚନ ବୋଇଲ୍ଲ ଗରୁଡ ବାଗେ
ନ ଶୁଣନ୍ତି ଗଜ କଚ୍ଛପ ସମର ମହାଗ୍ରାଗେ । ୭୬ ।
ଡାକ ଦେଇ ବିମୁଖ ହୋଇଲ୍ଲ କେଶବ ବାହନ
ତା ତହୁଂ ବଳବନ୍ତା ନ ବୁଝଇ ଆନ । ୭୭ ।
କୋପେଣ ଖଗେଶ୍ୱର ଯେ ଅନନ୍ତ କାମରୂପୀ
ଗଜ କଚ୍ଛପ ଉପରେ ପଡିଲ୍ଲ ବେଗେ ଝେପୀ । ୭୮ ।
ଆକାଶେ ବାଣୀ ଶୁଭିଲ୍ଲ ହେ ଗରୁଡ କିଂପେ ହେଳା କରୁ
ବ୍ରହ୍ମାଣ୍ଡ ନାଶ ଯାଉଛି ତୁ କସ ବିଗ୍ରରୁ । ୭୯ ।
ସନ୍ନିଧେଣ ଗରୁଡ ଯେ ବହୁତ ବାକ୍ୟ ବୋଲି
ଦୁଇ ପକ୍ଷ ବୁଲାଇଣ ଦୁହିଁନ୍ତି ପକାଇଲି ପେଲି । ୮୦ ।
କୋପେଣ କଚ୍ଛପ ଯେ ଗ୍ଭଡିଲ୍ଲ ନିଶ୍ୱାସେ
ଗରୁଡ ପଡିଲ୍ଲ ଯାଇଂ ଯୋଜନ ପଞ୍ଚଦଶେ । ୮୧ ।

---

୭୨ { ମହାତେଜ ବଳବନ୍ତା ଅତ୍ୟନ୍ତ ପ୍ରଚଣ୍ଡ
ଲଗିଛନ୍ତି ମହାଯୁଦ୍ଧେ ଯେହ୍ନେ ବେନି ଷଣ୍ଢ ।—ଙ୍କ, ୪

୭୩ { ଗଜ କଚ୍ଛପ ବେହିଂକ ଯୁଦ୍ଧେ ମୁଣ୍ଡ ବାଜ
ମହା ମହା ଗିରମାନେ ପଡୁଛନ୍ତି ଭଜ ।—ଙ୍କ

ଆହୋ ମୁନୀନ୍ଦ୍ରେ ନିଷାଦପୁର ବୋଲଣ ଯେତେଣ ନଗ୍ରି
ଅସମ୍ଭାଳ ହୋଇକରି ଗରୁଡ଼ ତହିଂ ପଡ଼ି । ୭୨ ।
ବିସ୍ତରଇ ଖଗେଶ୍ୱର ଲାଘବ କଲା ତହିଂ ଯୁଦ୍ଧ
ପୁର ବୋଲଣ ହେଳାକଲ କାଳେ ଗଲା ବଧ । ୭୩ ।
କୋପେଣ ବଇନେୟ ସେ ମହା କାମରୂପୀ
ଶାଷ୍ଟ୍ରମୂର୍ତ୍ତି ହୋଇ ସେ ମହାକାଶେ ବ୍ୟାପି । ୭୪ ।
ବେଦପକ୍ଷୀ ବିସ୍ତାରି ସେ ଉଡ଼ିଲା ବଇନେୟ
ନିଷାଦର ପୁର ଭାଙ୍ଗିଣ ହୋଇଲା ଭଗନସ୍ତ । ୭୫ ।
ମହାବାତେ ଯେସନେକେ ଭାଙ୍ଗଇ ନଗ୍ର ଦେଶ
ସମୁଦ୍ରେ ଉଡ଼ି ପଡ଼ିଲେ ଜନ ଜନ୍ତୁଏ ନ ରହିଲେ ଲେଶ । ୭୬ ।
ବଇବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତି
ଗରୁଡ଼ର ଯେତେ କୋପ କିଂପେ ନିଷାଦପୁର ନଗ୍ରିକି । ୭୭ ।
ଅଗସ୍ତି ବୋଇଲେ ହୋ ଯେ ପୂର୍ବର ବହୁତ କଥା
ଯେବଣ କାଳେ କଦ୍ରୁ ହୁଡ଼େକ ଜାଣିଲେ ବିନତା । ୭୮ ।
ସାତବେଣି କରି ନେଲା ସେ ନିଷାଦପୁର ଦାଣ୍ଡେ
କଦ୍ରୁର ବଚନ କରି କୁରୁଳବଣ୍ଡା ମାଇଲେକ ଗଣ୍ଡେ । ୭୯ ।
ସେ ରାଗ ବିନତା ଯେ ହୃଦରେ ଧରିଥିଲା
ଗରୁଡ଼ ଆଗେ ଯାଇଂ କାନ୍ଦଣ କହିଲା । ୮୦ ।
ବାବୁ କଦ୍ରୁ ଆଣନ୍ତେ ମୁଂ କାନ୍ଦଣ ଆସଇ ଶୋକେ
ଅନେକ ଅବସ୍ଥା କଲେ ମୋତେ ନିଷାଦପୁର ଲୋକେ । ୮୧ ।
ତାହା ଶୁଣି ନନ୍ଦନ ରେ ହୃଦରେ ଧରିଥିବୁ
ନିଷାଦପୁର ନଗ୍ର ତୁ ଅବଶ୍ୟ ଉଜାଡ଼ କରିବୁ । ୮୨ ।
ମାତାର ବଚନ ସେ ଯେ ହୃଦେ ଧରିଥିଲା
ମହା କୋପକାଳେ ସେ ପ୍ରୁମୁରେ ପଡ଼ିଲା । ୮୩ ।

---

୭୯।୨ କଦ୍ରୁର ବଚନ କରି କୁରୁଳ ବଣ୍ଡା ମାଇଲେ ସେ ବିନତାର ମୁଣ୍ଡେ ।— କ, ଛ

ନଗ୍ର ନାଶକଲା ଆବର ତାଳେକ ଗମ୍ଭୀର
ମୃତ୍ତ କା ସହିତେ ଉଡ଼ି ପଡ଼ିଲା ସାହେର ଭିତର । ୮୪
କହନ୍ତି ଅଗସ୍ତି ପଣ୍ଡିତ ମହାବୁଦ୍ଧି
ସେହିସ୍ଥାନେ ଶଳକା ହୋଇଲନ୍ତି ଦକ୍ଷିଣ ମଉଦଧି । ୮୫ ।
ଧାମଇଂ ଗରୁଡ଼ ଯେ ଅତ୍ୟନ୍ତ ମହାକୋପେ
ଯାଆନ୍ତେଣ ଗଜକୁ ଧଇଲା ଗରୁତାପେ । ୮୬ ।
କଚ୍ଛପକୁ ଭେଟିଲା ମହିଷା କୂଦ କାଛେ
ଦକ୍ଷିଣ ମୂରନ୍ତରେ ସେ ରହିଛି ପ୍ରତକ୍ଷେ । ୮୭ ।
ବାମପାଦେ ନାଗକୁ ଧଇଲା ଖଗେଶ୍ୱର
ମାଡ଼ିଣ ବସିଲା ଯାଇଂ କଚ୍ଛପ ଉପର । ୮୮ ।
ମହାଗଜ ଯେନ ବଜେ ଗରୁଡ଼ ମହାକାୟେ
କଚ୍ଛପ ବୁଡ଼ିଲା ତାହା ଗିରିରାଜ ପ୍ରାୟେ । ୮୯ ।
ଜଳର କୂଳରେ ସେ କଚ୍ଛପ ପଡ଼ିଥିଲା
ଗରୁଡ଼କୁ ଦେଖି ସେ ସାଗରେ ପଡ଼ିଲା । ୯୦ ।
ଗରୁଡ଼ ନାହୁଡ଼େ ଧଇଲା ତାର ତଣ୍ଟି
ବାମପାଦେ ଗରୁଡ଼ ଧରିଛି ମହା ଗଜଗୋଟି । ୯୧ ।
ଯେତେକ ଭରାୟେ ସେ କୁରୁମ ମହାବଳୀ
ଅଗାଧ ସାଗରେ ସେ ପଶିଲା ଯାଇଂ ଟେପଳି । ୯୨ ।
ସହସ୍ର ଯୋଜନ ଗମ୍ଭୀରେ ଯାଇଂ ପଶି
ତଦ୍ୟାପି ଗରୁଡ଼ ଧରିଛି ଆକ୍ରୋଷି । ୯୩ ।
ବଳରେ କଚ୍ଛପ ପଶଇ ଅଗାଧ ଜଳକୁ
ଯେହ୍ନଣ ଗରୁଡ଼ ଯେ ଉଡ଼ଇ ଆକାଶକୁ । ୯୪ ।
ବାମପାଦେ ଗଜ ଦକ୍ଷିଣ ପାଦେ କଚ୍ଛପଇ
ଯେହ୍ନଣ ବିନତା ନନ୍ଦନ ଆକାଶକୁ କ୍ଷେପଇ । ୯୫

---

୮୪।୧ ଗର୍ଜନର ନାଦେ ଲସିଲା ତାଲେକ ଗମ୍ଭୀର ।—କ, ଚ
୮୯।୨ କଚ୍ଛପ ବୁଡ଼ିଲା ତାହା ଗଳାଲ ଜୀବପ୍ରାୟେ ।—ଘ, ଥ, ଛ

ଶୁଣ ଆହେ। ଯୁଧିଷ୍ଠି ବଦନ୍ତି ମାରକଣ୍ଡେ
ଗଜ କଚ୍ଛପ ଦୁହେଂ ବାନ୍ଧି ମନ୍ଦର ଗିରି ଯେତେ ଯେତେ । ୯୬ ।
ତାହାନ୍ତ ଘେନଣ ଯେ ବିନତାର ବାଳେ
ଅନ୍ତରୀକ୍ଷେ ଗରୁଡ଼ ଉଡ଼ିଲା ଅବନଳେ । ୯୭ ।
ଅନେକ ଭାର ବୋଲି ତାକୁ ନୁଆରିଲା ଘୁଡ଼
ଲୋଚନ ଗିରି ପର୍ବତେ ବସିଲା ଯାଇଂ ମାଡ଼ି । ୯୮ ।
ବିଂଶଶତେ ଯୋଜନ ସେ କନ୍ଦରର ସ୍ଥଳୀ
ଚଡ଼ଚଡ଼ବଡ଼ ଗିରି କନ୍ଦର ପାତାଳେ ଗଲା ଗଳି । ୯୯ ।
ଭୟେଣ ବିନୋପ୍ତୀ ଯେ କହଇ ବସୁନ୍ଧରୀ
ରକ୍ଷାକର ମୋତେ ତୁମ୍ଭେ ନାଗଂକର ଅରି । ୧୦୦ ।
ତୁ ସେ ଖଗେଶ୍ୱର ବଳେ ଅଛୁ ମହାବଳୀ
ବିଶେଷେ ଗଜ କଚ୍ଛପ ପାଦେ ଧରିଅଛୁ ତୋଳି । ୧୦୧ ।
ପୃଥିବୀ ସମ୍ଭବ କି ସ୍ୱେ ତୋହୋର ଭାର
ମୁଖେଣ ରୋଧିର ଯେ ବହଇ ବସୁନ୍ଧରୀ । ୧୦୨ ।
ପୃଥିବୀର ବିକଳେ ସେ ନ ବସଇ ମହୀ
ଗିରି ଡିଙ୍ଗର ମାନେ ଭାର ନୁଆରିଲେ ସହି । ୧୦୩ ।
ଅନନ୍ତ ଦ୍ୱୀପେ ପ୍ରବେଶ ହୋଇଲା ବଇନେଇ
ଦେଖିଲା ବୃକ୍ଷେକ ଅଛଇ ଯୋଜନ ଶତ । ୧୦୪ ।
ପଞ୍ଚବିଂଶ ଯୋଜନ ଆୟେତନ ତହିଂର ମୂଳ
ବିସ୍ତାର ତହିଂର ଶତେ ଯୋଜନ ଡାଳ । ୧୦୫ ।
ମହା ବିସ୍ତୀର୍ଣ୍ଣ ଦେଖିଣ ସେ ବିନତାର ସୁତ
ସେ ବୃକ୍ଷର ଡାଳେ ଯାଇଂ ବସିଲା ତୁରିତ । ୧୦୬ ।
କୁଶଦ୍ୱୀପକୁ ସେ ବୃକ୍ଷ ଯେ ଧାରଣ
ଅନଳବନ୍ତ ବୋଲିଣ ତାହାର ନାମ ଜାଣ । ୧୦୭ ।
ମୀଳ କଳପବନ୍ତ ସେ ବହୁତ କାଳର ଜାଣ
ପୃଥୀ ସଞ୍ଚିଲା କାଳେ ତାହା ଆଣିଲେ ନାରାୟଣ । ୧୦୮ ।
ତାହାର ସିକଡ଼େ ସେ ଖଞ୍ଜିଲା ଅଛି ମହୀ
ଗରୁଡ଼ର ଭାର ସେ ଯେ ନୁଆରିଲା ସହି । ୧୦୯ ।

ଯେତେବେଳେ ଗରୁଡ ବସିଲା ଗଳରାଜ
ପଞ୍ଚାଶ ଯୋଜନ ଡାଳ ପଡିଲାକ ଭାଜ । ୧୧୦ ।
ସେ ଡାଳର ତଳେ ଉଦେପାଟଣା ବୋଲି ନଗ୍ରି
ସେ ଡାଳ ପଡନ୍ତେ ସେ ନଗ୍ର ହୋଇବେକ ଚୂରି । ୧୧୧ ।
ଜନଜନ୍ତୁ ଆଦିକରି ସମସ୍ତେ ହୋଇବେ ନାଶାଂଗତ
ସକଳ ବିକଳ ଦେଖି ଥଣ୍ଟେ ଧଇଲା ବଇନେଥ । ୧୧୨ ।
ଗଜ କଚ୍ଛପ ବେନପାଦେ ଥଣ୍ଟେ ଡାଳ ଧରି
ଉଡଇ ବିନତା ନନ୍ଦନ ଆକାଶ ମାର୍ଗେ କରି । ୧୧୩ ।
ସାଧୁ ଖଗେଶ୍ୱର ବୋଲି ଉଠିଲାକ ଧ୍ୱନି
ଆକାଶେ ଜୟେ ଜୟେ କରନ୍ତି ସର୍ବସୁର ମୁନି । ୧୧୪ ।
ବସିତେ ଠାବ ନାହିଂ ଆସଇ ଶୂନ୍ୟେ ଭ୍ରମି
ଉଡଇ ଗଗନେ ସେ ଖେପଇ ମହାଶ୍ରମୀ । ୧୧୫ ।
ଡାଳ ପକାଇଲେ ନାଶଯିବେ ପଞ୍ଚାଶତ ଯୋଜନ ପରିଯନ୍ତେ
ଗଜ କଚ୍ଛପ ପଡିଲେ ନାଶଯିବ ଯୋଜନ ଶତେ । ୧୧୬ ।
ଯେମନ୍ତେ ବଇନେଥ ନ ଗୁଡଇ ତିନମନ୍ତ
ମହାଭାରା ବହିକରି ବସଇ ଚଉକଣ୍ଠ । ୧୧୭ ।
ଗରୁଡର ମହାଶ୍ରମ ପକ୍ଷର ବିଘାତେ
ସମୋଦ୍ର ହାନ୍ଦୋଳଇ ବ୍ରହ୍ମାଣ୍ଡ ଖଣ୍ଡ ସାତେ । ୧୧୮ ।
କ୍ଷୀର ସମୋଦ୍ର ଯେ ହୋଇଲା ବେନଭାଗ
ଗରୁଡର ଆତଙ୍ଗ ଯେ ଜାଣିଲେ ଶ୍ରୀରଙ୍ଗ । ୧୧୯ ।
ଶୂନ୍ୟେଣ ଗମିଲେ ଯେ ଦେବ ଶିଶୁବର
ଅଦଭୂତେ କ୍ଷୀରୋଦ୍ର ସମୁଦ୍ରୁଂ ବାହାର ହୋଇଲା ବିଷ୍ଣୁ ବୃକ୍ଷ । ୧୨୦ ।
ଚୁରିଶତ ଯୋଜନ ଆୟେତନ ବୃକ୍ଷର ଚୁରିଡାଳ
ବେନଶତ ଯୋଜନ ଅଟଇ ସେ ବୃକ୍ଷର ମୂଳ । ୧୨୧ ।

---

୧୧୬।୧ ଡାଳ ପକାଇଲେ ନାଶଯିବେ ପଞ୍ଚବିଂଶ ଯୋଜନ ପରିଯନ୍ତେ ।—କ,ଟ
୧୧୬।୨ ଡାଳ ପକାଇଲେ·ନାଶଯିବେ ପଞ୍ଚଦଶ ଯୋଜନ ପରିଯନ୍ତେ ।—ଚ, ଛ
୧୧୯।୨ ଗରୁଡର ଚରିତ ସ୍ୱାମୀ ଦେଖିଲେ ଶ୍ରୀରଙ୍ଗ ।—ଅ, ଟ, ଛ, ଙ

ଅଦଭୂତେ ବାଣୀ ଯେ ଶୁଭିଲା ଆକାଶର
ଯେତୁ ବୃକ୍ଷେ ବିଶ୍ରାମ ତୁ କର ହୋ ଖଗେଶ୍ୱର । ୧୨୨ ।
ଶୂନ୍ୟର ଶବଦ ଶୁଣି ପ୍ରଜାପତିର ନାତି
ବୃକ୍ଷର ସଳଖେ ବୀର ଖସି ଅଇଲାକ ଝାନ୍ତି । ୧୨୩ ।
ଗଜ କଚ୍ଛପ ଡାଳ ଘେନଣ ପଚ୍ଛୀବର
ଗରୁଡ ବିଜେକଲା ସେ ବିଷ୍ଣୁ ବୃକ୍ଷର ଉପର । ୧୨୪ ।
ଦୁଇଡାଳେ ଦୁଇପାଦ ଦେଇଣ ବୀର ରହି
ନାରାୟଣ ବୃକ୍ଷ ରୂପେଣ ପାରଲେ ତାହା ସହି । ୧୨୫ ।
ଅଣ୍ଟରେ ଯେତୁକଡାଳ ଅଛି ଗଜ କଚ୍ଛପ ବେନିପାଦେ
ସୁସ୍ଥ ହୋଇ ବଇନେଇ ଯେ ବସିଲା ଚହ୍ନିଂ ହାଦେ । ୧୨୬ ।
ସେ ବୃକ୍ଷ ବୋଇଲା ଶୁଣ ହୋ ମହାବଳ
ଅଣ୍ଟରୁ ମହାତମା ଥୋଉ କନା ଡାଳ । ୧୨୭ ।
ଗରୁଡ ବୋଇଲା ହୋ ଯେତେବଡ ଡାଳ ଥୋଇଲେ
ପୁଣ କସ କରିବ ତୋହୋର ଭାଙ୍ଗିଲେ । ୧୨୮ ।
ବିଷ୍ଣୁ ବୃକ୍ଷ ବୋଇଲା ମୁଂ ନ ଭାଙ୍ଗିଇ ବାବୁ
ଗଜ କଚ୍ଛପ ସହିତେ ଥିଅସି ଯେତେ ସବୁ । ୧୨୯ ।
ଅଣ୍ଟ ବିଥାଇବନି ତୋର ବିଥାଇବନି ପାଦ ବେନି
ଶତେ ବରଷ ହୋଇଲାନି ବାବୁ ତୁ ବୁଲୁଅଛୁ ଯେତ୍ହା ଘେନି । ୧୩୦ ।
ବୃକ୍ଷର ବଚନ ଶୁଣିଣ ସେ ଗରୁଡ ମହାବଳ
ସେ ବୃକ୍ଷର ଉପରେ ନେଇ ଥୋଇଲା ମହାଡାଳ । ୧୩୧ ।
ଗଜ କଚ୍ଛପ ପକାଇଲା ଚହ୍ନିଂର ଉପରେ
ମାଡିଣ ବିକ୍ଷଥଳେ ବସିଲା ଚହ୍ନିଂ ଗାଢେ । ୧୩୨ ।
ଗରୁଡ ପଚ୍ଚରଇ ବୃକ୍ଷ ହୋ ଜୀବନ ତୋର ସାଧୁ
ଯେତେ ଭାର ସହିଲୁ ଧନ୍ୟ ତୋର ବୀରଧୃ । ୧୩୩ ।

---

୧୨୫।୨ ନାରାୟଣ ବୃକ୍ଷ ରୂପେଣ ତାହାଙ୍କଇଂ କହି ।—ତ, ଥ

୧୩୩ { ଗରୁଡ ପଚ୍ଚରଇ ବୃକ୍ଷ ହୋ ଜୀବନ ତୋର ଧନ
ଯେତେ ଭାର ସହିଲୁ ବୃକ୍ଷ ମହାଗ୍ୟାନ ।—ଟ, ଠ, ଝ

ସେ ବୃକ୍ଷ ବୋଇଲ୍ଲ ଶୁଣ ହୋ ସାବଧାନେ ଶୁଣ
ତୁମ୍ଭ ସେ ଗରୁଡ଼ ବାବୁ ମୁହିଂ ନାରାୟଣ । ୧୩୪ ।
ବହୁତ ଭାର ତୁ ପାଇଲୁ ଅଦଭୁତେ
ମୁହିଂ ବୃକ୍ଷେକ ହୋଇଲି ସଂସାର ଜନହିତେ । ୧୩୫ ।
ଗଜ କଚ୍ଛପ ଡାଳ ସବୁମନ୍ତ ଘେନ ବସୁ
ଯେଣେ ଯାଉ ତେଣେ ଜନ ନଗ୍ର ନାଶୁ । ୧୩୬ ।
ଶୁଣିଣ ବିନତାର ନନ୍ଦନ କଲା ମହାଭୟେ
ଡାଳରୁ ଉଭୁର ସେ ହୋଇଲା ଶୂନ୍ୟମୟେ । ୧୩୭ ।
ଭୟେଣ ଉଡ଼ାଇ ସେ ଆକାଶ ବିହରି
ଛଡ଼ଲକ୍ଷ ଯୋଜନେ ସେ ରହିଲା ବିଶ୍ରାମି । ୧୩୮ ।
ଗରୁଡ଼ର ମୂର୍ତ୍ତି ଦେଖିଣ ମଘବା
ଅମର ଆସ୍ଥାନ ତେଜିଲା ଭୟେ ସୁରନାଥ ଦେବା ।୧୩୯ ।
ଯୁଧିଷ୍ଠିର ଦେବେ ପଚାରିଲେ ଶୁଣିମା ମାରକଣ୍ଡେ
ଗରୁଡ଼କୁ ଦେଖି ଇନ୍ଦ୍ର କଂପେ ଭୟେ ଯେତେ । ୧୪୦ ।
ମାରକଣ୍ଡେ ବୋଇଲେ ବାବୁ ଶୁଣସି ପୂର୍ବକଥା
ତୁ ଯାହା ପଚାରିଲୁ ଆଦ ଅନ୍ତର ବାରତା । ୧୪୧ ।
ଦକ୍ଷ ପ୍ରଜାପତିଂକର ଯେ ଷାଠିଏ ଦୁହିତା
ଧର୍ମଙ୍କଇଂ ପ୍ରଦାନ କଲା ଦଶଗୋଟି ସୁତା । ୧୪୨ ।
ଶ୍ରୁତି ମୂର୍ତ୍ତି ବୁଦ୍ଧି ସିଦ୍ଧ ମେଧା ଯେ ସୁମେଧା
ତନ ଦାନ ଶାଁଶି ଶାନ୍ତ ଯେ ଶରଧା । ୧୪୩ ।
ଏ ଦଶକନ୍ୟା ଧର୍ମଙ୍କଇଂ ପ୍ରଦାନ
ଉମା କନ୍ୟାକଇଂ ପ୍ରଦାନ ହୋଇଲେ ତ୍ରିଲୋଚନ । ୧୪୪ ।
ବ୍ରହ୍ମାକଇଂ ସାବିତ୍ରୀ ଯେ ଆଦିତ୍ୟେଣ ସଂଜ୍ଞାଂ
କୁବେରରେ ହାରିବନ୍ତି ବରୁଣେ ନିଭଗ୍ୟାଂ । ୧୪୫ ।

---

୧୪୨।୨ କେତେକ ପୋଥିମାନଙ୍କରେ ଧର୍ମଙ୍କ ପତ୍ନୀ ରୂପେ—ତନୁ, ଦାନୁ, ଶାନ୍ତ, [ସୁମେଧା, ଶ୍ରୁତି, ମୂର୍ତ୍ତି, ଋଦ୍ଧି, ସିଦ୍ଧି ପ୍ରଭୃତି ନାମ ଦେଖାଯାଏ ।

ଅଗ୍ନି ଦେବତାଙ୍କୁ ସ୍ୱାହା ସ୍ୱଧା ଦେଲ
ବୃହସ୍ପତିଙ୍କ ତାର ଚନ୍ଦ୍ରେ ସତାଇଶ ନନ୍ଦନୀ । ୧୪୬ ।
କଶ୍ୟପ ଋଷିଙ୍କୁ ଦେଲେ ତେର ଯେ କୁମାରୀ
କାଳା ଅପ୍ସେଂଳା ଗନ୍ଧର୍ବା ଇଚ୍ଛା ଯେ ସୁନ୍ଦରୀ । ୧୪୭ ।
ଅରିଷ୍ଟା ଗୁହ୍ୟକା ସିଂହିକା ସୁରଭି
ଅଦିତି ଦକ୍ଷା କଦ୍ରୁ ବିନତା ଯେ ଯେ ତେରଦେବୀ । ୧୪୮ ।
ଏମନ୍ତେ ଅଣଷାଠି ଦୁହିତା ଯେଗାର ଜ୍ୱାଇଂକ ଦେଲି
ହେମାକନ୍ୟା ପରମ ଯୋଗିନୀ ହୋଇ ଭ୍ରଥା ନ ଇଛିଲି । ୧୪୯ ।
ଦିତିର ତହୁଂ ଉପୁଜଲେ ଦେବତାଏ
ଅଦିତିର ତହୁଂ ପବନ ଜାତ ହୋଏ । ୧୫୦ ।
କଦ୍ରୁର ତହୁଂ ଯେ ନାଗେ ହୋଇଲେକ ଜାତ
କାଳାଉଂ କାଳକେୟ ଲୋକ ହୋଇଲେ ସମ୍ଭୂତ । ୧୫୧ ।
ଅପ୍ସେଂଳାରୁ ଉପୁଜଲେ ଆଠଲକ୍ଷ ପର୍ବତ
ଗନ୍ଧର୍ବାଉଂ ଗନ୍ଧର୍ବ ଯେ ହୋଇଲେ ସମ୍ଭୂତ । ୧୫୨।
ଦକ୍ଷାଉଂ ଉପୁଜଲେ ଦକ୍ଷ ଯେ ପୁରୁଷେ
ଇଚ୍ଛାଉଂ ତରୁପାପ୍ୟା ଜୀବ ପରକାଶେ । ୧୫୩ ।

---

କେତେକ ପୋଥିରେ—ଅପ୍ସେଂଳା, ଗନ୍ଧର୍ବା, ଦକ୍ଷା, ରକ୍ଷା, ଅରିଷ୍ଟା, ଗୁହ୍ୟକା, ସୁରଭି, ସୁନ୍ଦରୀ, ଶୋଭା, କମଳା, ଇଳା, ଇଚ୍ଛା, କାଞ୍ଚୀ, ସୁରବଲ୍ଲୀ, ବାଞ୍ଛା ପ୍ରଭୃତି କପୋଳକଳ୍ପିତ ନାମମାନ ଅଛି ।

୧୪୬।୨ ସଂସ୍କୃତ ମହାଭାରତରେ ଦଶକନ୍ୟାଂକ ନାମ:—
କୀର୍ତ୍ତି, ଲକ୍ଷ୍ମୀ, ଧୃତି, ପୁଷ୍ଟି, କିମ୍ବା ଯେ ଶରଧା
ମତି, ଲଜ୍ଜା, ବୁଦ୍ଧି ପୁଣ ଅଟେ ଯେହୁ ମେଧା ॥

୧୪୭।୨ ସଂସ୍କୃତ ମହାଭାରତରେ ତେର କନ୍ୟାଙ୍କ ନାମ :—
ଦିତି, ଅଦିତି, ଦନୁ, କାଳା, ଦନାୟୁ, ସିଂହିକା, ବିଶ୍ୱା, କପିଳା, କ୍ରୋଧା, ମୁନି, କଦ୍ରୁ, ବିନତା, ପ୍ରଧା ।

ଅଶ୍ୱାଙ୍ଗଂ ଅଶ୍ୱିକେ ହୋଇଲେ ଉତପତ୍ତି
ଗୁହ୍ୟକାଙ୍ଗଂ ଗୁହ୍ୟକେ ସମ୍ଭୂତ ହୁଅନ୍ତି । ୧୫୪ ।
ସିଂହିକାଙ୍ଗଂ ଉପୁଜିଲେ ରାହୁ ଯେ ରାକ୍ଷସେ
ସୁରଭିଙ୍ଗଂ ଗୋଧନ ହୋଇଲେ ପ୍ରକାଶେ । ୧୫୫ ।
ଦ୍ୱାଦଶ କନ୍ୟାଂକର ପୁତ୍ର ଯେ ହୋଇଲା
ବିନତାର ତହୁଂ ପୁତ୍ର ଦୁହିତା ନ ଉପୁଜିଲା । ୧୫୬ ।
କଶ୍ୟପଙ୍କଇଂ ତେଜ୍ୟା କଲା ସେ ବିନତା
ଗୃହ ବାସ ତେଜ ହୋଇଲା କଶ୍ୟପେ ଅଭଗତା । ୧୫୭ ।
ବ୍ରହ୍ମାଂକର ମାଘ ସ୍ନାହାନର କାଳେ
ଜଳ ଘାଟନକ ନିର୍ମଳ କରଇ ପ୍ରଭାତର କାଳେ । ୧୫୮ ।
ବାଟ ପଥଂରଇ ସେ ପକାବଇ ଛତ୍ର
ଆସିବାର ବେଳେ ଦେଖି ଜଗଇ ପଦ୍ମେଂଗ୍ର । ୧୫୯ ।
ତିରିଶ ଦିବସେ ପ୍ରସନ୍ନ ହୋଇଲେ ତାକୁ ଧାତା
ବୋଇଲେ କିମର୍ଥେ ମୁକୁ ଖଟୁରେ ବିନତା । ୧୬୦ ।
ଅପାର ଦୁଖ ତୁ ପଡ଼ିଲୁ ମକର ମାସେ
ତୋହୋର ପଦ୍ମମଳ ପଥେ ହେଲୁ ଆଜ ହରଷେ । ୧୬୧ ।
କେବଣ ଆଧାନ ତୋର ମାଗ ରେ ଯୁବତି
ବିନତା ବୋଇଲା ଅପୁତ୍ରିକ ମୁଂ ହୋଇଲି ବେଦପତି । ୧୬୨ ।
ସବୁଂକର ପୁତ୍ର ହୋଇଲା ମୋହୋର ପୁତ୍ର ନାହିଂ
ଜନହୀନ ହୋଇଲି ମୁଂ କଶ୍ୟପନ୍ତ ଦାହି । ୧୬୩ ।
ବିନତାର ବଚନେ ସେ ଦେବ ବେଦପତି
ଆରୋପିଲା ମହାତମା ସନ୍ତତି ଆହୁତି । ୧୬୪ ।
ପ୍ରଣିପତ୍ୟ ହୋଇଣ ସେ ବୋଲଇ ବିନତା
ପୁତ୍ର ହୋଇବ ମୋର ବଡ଼ାଇ ବଳବନ୍ତା । ୧୬୫ ।
ଅଦିତିର ନନ୍ଦନ ଯେ ହୋଇଲା ଅମରାଧି
ତାହା ତହୁଂ ବଳବନ୍ତା ହୋଇବ ପୁତ୍ର ମୋର ମହାଯୋଧୀ । ୧୬୬ ।

ପିତାଂକୁ କହିଲେ ହେଣ ଆମ୍ଭେ ଅଭିମାନୀ
ଆମ୍ଭନ୍ତ ନ ଦେଖଇ ଦେବ ସପ୍ତଯୋନ । ୧୬୭
ଅତି ଉତକର୍ମ ତାହାର ସହିତ ନୁଆର
ତୋହୋର ପୁତ୍ର ହୋଉ ଅମରେ ଦଣ୍ଡଧାରୀ । ୧୬୮ ।
ଖଗବର ମନ୍ତ୍ରେ ଆହୁତି ଦିଲେ ଧାତା
ଚରୁଂ ଫୁଟାଇଣ ବୋଇଲେ ଗ୍ରାସକର ଗୋ ବନିତା । ୧୬୯ ।
ଚରୁ ଭୁଞ୍ଜନ୍ତେ ପିତାର ମହାମନ୍ତ୍ରେ
ସଇନ୍ଦ ତତକ୍ଷଣାନ୍ତ ଉପୁଜିଲେ ବେନିପୁତ୍ରେ । ୧୭୦ ।
ମହା ଖ୍ରୀଷ୍ଟରୂପ ସେ ପ୍ରଚଣ୍ଡ ମହାବଳୀ
ହାସେ ଅଦୃଶ୍ୟ ହୋଇଲେ ଦେବ ଅଂଶୁମାଳୀ । ୧୭୧ ।
ବିହମିଣ ଖେପିଲେ ସେ ଦୁହେଂ ଶୂନ୍ୟ ପଥେ
ମାଡିଣ ବସିଲେ ଦୁହେଂ ଆଦିତ୍ୟର ରଥେ । ୧୭୨ ।
ଦିନକର ନାଥ ମହାଭୟେ କରି
ରଥ ଗୁଡି ହୋଇଲେ ସେ ମେରୁରେ ଓହାଡି । ୧୭୩ ।
ବନିତାର ଆଗେ କହିଲେ ବେଦ ବ୍ରହ୍ମା
ଅରୁଣ ଗରୁଡ ହୋଇଲା ତୋହୋର ପୁତ୍ରଂକର ନାମ । ୧୭୪ ।
ବିରଞ୍ଚି ନାରାୟଣ ଯହୁଂ ପଳାଇଲେ ହାସି
ବ୍ରହ୍ମାଂକର ପଛକତରେ ଲୁଚଣ ଯାଇଂ ବସି । ୧୭୫ ।
ଆଦିତ୍ୟ ବୋଇଲେ ଧାତା କେଉଂଣ ତୋରମାୟା
କାହୁଂ ଭିଆଇଲୁ ଦେବ ଯେ ଖ୍ରୀଷ୍ଟରୂପ କାୟା । ୧୭୬ ।
ପିତାୟେ ବୋଇଲେ ଆମ୍ଭେ ଇନ୍ଦ୍ରର ବିବାଦେ
ଅମର ସ୍ୱର୍ଗ ଭୁବନକଇଂ ଗଲୁ କଥାୟେ ନ କହିଲୁ ହାଦେ । ୧୭୭ ।
ଆଦିତ୍ୟ ବୋଇଲେ ତୋତେ ଇନ୍ଦ୍ର କଲା ହିଂଘାସ
ମୋତେ ଯେ ଘୋଟିଲା ସେ ମୋହୋର କସ ଦୋଷ । ୧୭୮ ।

---

୧୬୭।୧ ପିତା ବୋଇଲେ ଆମ୍ଭେ ହୋଇଲୁ ଅଭିମାନୀ ।—ଝ, ଥ ଜ
୧୬୯।୨ ଚରୁ ଫୁଟାଇଂଣ ବୋଇଲେ ପ୍ରାଶ ନକର ଗୋ ବନିତା ।—କ, ଚ
୧୭୦।୨ ସଦ୍ୟୁଂ ତତକ୍ଷଣେ ଜାତ ହୋଇଲେ ବେନିପୁତ୍ରେ ।—ତ, ଞ

ଶୁଣ ହେ ଯୁଧିଷ୍ଠିର ବଦଯନ୍ତି ମାରକଣ୍ଡେ
ଆଦିତ୍ୟ ଲୁଚିଲେ ଦିବସ ହୋଇଲା ଅରୁଣ ତେଜ ଯେତେ । ୧୭୯ ।
ଧାତାର ପଞ୍ଚ ବଦନେ ଲୁଚିଲେ ବିରଞ୍ଚି
ଚତୁର୍ଥ ସେ ବିରଞ୍ଚି ବଦନ ବେକାଣ ଧାତାର ସଞ୍ଚି । ୧୮୦ ।
ବିରଞ୍ଚିକ ଯେନ ଯେ ଦେବ ଚତୁର୍ଯାନ
ଗଗନ ମଣ୍ଡଳେ ଭେଟିଲେ ଅରୁଣ ଗରୁଡ ବେନ । ୧୮୧ ।
ଆଦିତ୍ୟ ଦେବତା ଅରୁଣଙ୍କୁ ଭୃସ୍ତି କଲା
ବ୍ରହ୍ମା ଗରୁଡଙ୍କୁ ବହୁତ ଶାନ୍ତିବାକ୍ୟ ବୋଇଲା । ୧୮୨ ।
ଜୟନ୍ତୁ ଅରୁଣ ହେ ମହାଅଗ୍ନି ତେଜା
ସପ୍ତଲ ହାସେଣ ତୋର ହୋଇଛନ୍ତି ଦହୁଜା । ୧୮୩ ।
ଜୟନ୍ତୁ ଅରୁଣ ହେ ଅକ୍ଷୟେ ଅବ୍ୟୟେ
ଜୟନ୍ତୁ ଅରୁଣ ତୁ ବିଦିତ ମହାକାୟେ । ୧୮୪ ।
ଜୟନ୍ତୁ ଅରୁଣ ହେ ଅକାଳ ଅକାମ
ଜୟନ୍ତୁ ଅରୁଣ ଜାତ ଅନ୍ତ ବିଶ୍ରାମ । ୧୮୫ ।
ଜୟନ୍ତୁ ଅରୁଣ ହେ ମହାତେଜାନଳ କାୟେ
ଜୟନ୍ତୁ ଅରୁଣ ପ୍ରସନ୍ନେ ବରଦାୟେ । ୧୮୬ ।
ଜୟନ୍ତୁ ଅରୁଣ ସ୍ୱରୁପା ବକନେହା ପ୍ରଜାପତିର ନାତି
ତିମିର ବିଦାରଣ ନାଥ ଯାହାଙ୍କୁ ନାହିଂ ବିବାରନ୍ତି । ୧୮୭ ।
କାଞ୍ଚନ ମୂର୍ତ୍ତି ଯାର ଦିବାଂକ ମୂର୍ଦ୍ଧନା
ପରମ ମଉଷଧି ନାନାଜାବେ ବଜ୍ରସେହ୍ନା । ୧୮୮ ।
ଅରୁଣ ଅବର୍ଣ୍ଣ ତୁ ଅନାଦି ରୂପ ସଞ୍ଜା
ଜୟନ୍ତୁ ଅରୁଣ ପ୍ରସନ୍ନ ଦିନ ବଞ୍ଜା । ୧୮୯ ।

---

୧୮୩।୨ ହାସେଣ ଅରୁଣ ତୁ ଅଭୟେ ବ୍ରହ୍ମଦୁଜା ।—କ
୧୮୪।୨ ଜୟନ୍ତୁ ଅରୁଣ ବ୍ୟାପିତ ମଦନ କାୟେ ।—ଚ, ଘ, ଝ
୧୮୫।୨ ଜୟନ୍ତୁ ଅରୁଣ ଜାତ ରକ୍ତବର୍ଣ୍ଣ ।—କ
୧୮୮।୧ କାଞ୍ଚନ ମୂର୍ତ୍ତି ଯାର ଦିଗାଙ୍ଗ ମୂର୍ଦ୍ଧନା ।— କ, ଡ, ଛ

ଜୟତୁ ଅରୁଣ ସଇଲୋକ୍ୟ ଗୁଣନିଧି
ଜୟତୁ ଅରୁଣ ପ୍ରସନ୍ନେ ସର୍ବସିଦ୍ଧି । ୧୯୦ ।
ଜୟତୁ ଅରୁଣ କାମ୍ୟକ ଗୁଣବନ୍ତା
ଜୟତୁ ଅରୁଣ ନମସ୍ତେ ଶୂନ୍ୟ ଦେବତା । ୧୯୧ ।
ଜୟତୁ ଅରୁଣ ଅଭୟେ ଉଦୟେ ମେଖଳ
ଜୟତୁ ଅରୁଣ ହରଣ ରୋଗ ସମୂଳୀ । ୧୯୨ ।
ଜୟତୁ ଅରୁଣ ସତତ ବଜେ ମମ ହୃଦେ
ନ ଦେଖିଲ ନ ପାଇଲ ଭଜିଲ ଶବଦେ । ୧୯୩ ।
ତବ ପାଦପଦ୍ମେ ତଳୟେ ମମ ପଞ୍ଚଭୂତେ
ବିନତାର ନନ୍ଦନ ନମସ୍ତେ ନମସ୍ତେ । ୧୯୪ ।
ଗୁଣସାଗର ନାଥ ଚରଣେ ଦୟିମା
ମାଘମାସ ମାହାତ୍ମ୍ୟ ଭାବଲ ସାରଳା ଦାସ ମୁନି । ୧୯୫ ।
। ୮୩୭ ।

# ନୀଳଗିରି ପୂର୍ବ ବୃତ୍ତାନ୍ତ ଏବଂ ଶ୍ରୀକୃଷ୍ଣଙ୍କ
# ମୃତପିଣ୍ଡ ଦହନ ବର୍ଣ୍ଣନ

ବଇବସ୍ୱତ ମନୁଙ୍କୁ ଯେ ଅଗସ୍ତି କହିଲେ
ବହୁତ ଅପୂର୍ବ କଥା ଶୁଣ ରାୟେ ଭଲେ । ୧ ।
ଅନେକ ବନସ୍ଥ ଯହୁଂ ଅଂଶୁମାଳୀ
ବନଚାର ନନ୍ଦନ ଭଗନ୍ତ ପ୍ରତିପାଳ । ୨ ।
ପ୍ରସନ୍ନେ ବୋଇଲେ ହୋ ଶୁଣ କରତାର
ବିପୁତ୍ର ହୋଇଲ ମୁଂ ଯେବେ ମାଗି ଘେନ ବର । ୩ ।
ଆଦିତ୍ୟ ବୋଇଲେ ଯେବେ ହୋଇଲୁ ବିପୁତ୍ର
ବର ଯେବେ ଦେବୁ ବଚନ କର ସତ୍ୟ । ୪ ।
ଅରୁଣ ବୋଇଲେ ମୁଂ ହୋଇଲ ପ୍ରସନ୍ନ
ଯାହା ବାଞ୍ଛା କରିବୁ ତାହା ହାଦେ ଦେବ ସତ୍ୟ ଯେ ବଚନ । ୫ ।
ଆଦିତ୍ୟ ବୋଇଲେ ମୁଂ ଉଦେ ହୋଇବ ନିତ୍ୟ
ତୁ ମୋହୋର ରଥେ ଯେ ହୋଇବୁ ସାରଥି । ୬ ।
ମୁହିଂ ହାଦେ ତୋତେ କଲଇ ମହାଭୟେ
ମୋହୋର ତହୁଂ ପଞ୍ଚ କିରଣ ଘେନ ତୋର କାୟେ । ୭ ।
ଆଦିତ୍ୟର ବଚନେ ଅରୁଣ ବିପୁତ୍ର
ବୋଇଲେ ତୋହୋର ବଚନେ ମୁଂ ହୋଇବ ସାରଥି । ୮ ।
ନିଶାକାଳେ ନ ଥିବା ଆମ୍ଭେ ବେନି
ପୁଣ ଉଦେ ହୋଇବା ତୁମ୍ଭଙ୍କର ତେଜ ଘେନି । ୯ ।
ପ୍ରଥମ ପ୍ରଭାତ କାଳେ ଯେଉଂଣ ଉଦେଶ
ଚନ୍ଦ୍ରାୟୁଣ ଥିବା ଯାକେ ଅରୁଣ ପ୍ରକାଶ । ୧୦ ।
ଆହେ ଅରୁଣ, ଆଗେ ତୁ, ମୁଂ ପଛେ ହୋଇବ ଉଦେ
ମୋହୋର ତହୁଂ ପଞ୍ଚ କିରଣ ତୋହୋରେ ଉଦେ ହୋଇ ହାଦେ ।୧୧।

ବଳ ପ୍ରତାପେ ଯେ ଉଦେ ଦିନକର ନାଥେ
ବିଜୟେ ବିରଞ୍ଚି ନାରାୟଣ ଅରୁଣ ସଙ୍ଗତେ । ୧୨ ।
ଆହୋ ଯୁଧିଷ୍ଠି ଦେବ ଶୁଣ ପୂର୍ବର କଥା
ତୁ ଯେ ପୁଚ୍ଛାକଲୁ ମାଘମାସର ବାରତା । ୧୩ ।
ମାଘମାସେ ଦାଣ୍ଡ ଛେରାପହଂରା ସେ କଲା
ଅରୁଣ ଗରୁଡ଼ ବେନିପୁଅ ସେ ପାଇଲା । ୧୪ ।
ପିତାୟେ ବିନୟେ ଯେ ହୋଇଲେ ଗରୁଡ଼ଙ୍କୁ
ତୁ ଯେବେ ବିଜେକର ହୋ ଅମର ସ୍ୱର୍ଗକୁ । ୧୫ ।
ବାସବର ତୁଲେ ଯେବେ ହୋଅ ଯା ବିବାଧୀ
ଆଜନ୍ମୁଂ ଅମର ସ୍ୱର୍ଗେ ତୁ ହୁଅ ଜନ୍ମୋଭେଦୀ । ୧୬ ।
ପିତାର ବଚନେ ସେ ଖେପଇ ଖଗେଶ୍ୱର
ପ୍ରବେଶ ହେଲା ଯାଇଂ ଅମର ସ୍ୱର୍ଗପୁର । ୧୭ ।
ମହା ବଳବନ୍ତା ଗରୁଡ଼ ରୂପ ଦେଖି
ଇନ୍ଦ୍ର ଦେବତା ବାହାର ଆସ୍ଥାନ ଉପେକ୍ଷି । ୧୮ ।
ବିଜୟେ ମଘବାନ ମହାନାଗ ପିଠି
ଶ୍ରୀ ଭୁଜେଣ ବଜ୍ର ଆୟୁଧ ଧରିଣ ମହାଯଷ୍ଟି । ୧୯ ।
ଧାମଇଂ ଗରୁଡ଼ କରିଣ ମହାନାଦେ
ତ୍ରଇଲୋକ୍ୟ କମ୍ପିଲା ଯେ ଖଗୟାର ବିବାଦେ । ୨୦ ।
ଶ୍ରୀଭୁଜେଣ ବଜ୍ର ବୁଲାଇ ମଘବାନ
ଗରୁଡ଼ ଉପରେ ପିଟିଲା ପାକ ଯେ ଶାସନ । ୨୧ ।

---

୧୬।୨ "ଆଜନ୍ମୁଂ ଅମର ସ୍ୱର୍ଗେ ତୁ ହୁଅ ଜନ୍ମୋଭେଦୀ"
ପରେ (ତ) ପୋଥିରେ ଅଧିକା ପାଠ :—
ଇନ୍ଦ୍ରକୁ ମାରିଣ ତୁ ହୁଅ ଜନ୍ମୋଭେଦୀ
ବିନତା ନନ୍ଦନକୁ ବୁଝାଇ କହନ୍ତି ବ୍ରହ୍ମଯୋଗୀ ।
ଗରୁଡ ତୁହି ଅମରେ ଯାଅ ତତକ୍ଷଣାନ୍ତ
ଅମରେ ଇନ୍ଦ୍ରକଇଂ ନାଶକର ଝାଡ଼ ।
ପିତାର ବଚନେ ଯେ ଗମଇ ଖଗେଶ୍ୱର
ପ୍ରବେଶ ହୋଇଲା ଯାଇଂ ଅମର ସ୍ୱର୍ଗପୁର ।

ବଜ୍ର ଶକତ ପଡନ୍ତେ ଦେଖିଲା ଖଗରାଣ
ବଜ୍ରସେହ୍ନା ପକ୍ଷ ନେଇ କଲାକ ଆବରଣ । ୨୨ ।
ବାସବର ଶକତ ଗରୁଡ ପିଠିରେ ବାଜ
ବଜ୍ର ଶକତ ଯେ ହୋଇଲାକ ଭଙ୍ଗ । ୨୩ ।
କୋପେଣ ଖେପିଲା ସେ ଖଗେଶ୍ୱର ମହାବଳୀ
ଅଇରାବତ ନାଗର ମାଡି ବସିଲା ଗଣ୍ଡସ୍ଥଳୀ । ୨୪ ।
ତ୍ରାସେଣ ଇନ୍ଦ୍ର ଦେବତା ବାହାନ କଲା ତେଜ୍ୟା
ଧାତାର ପଚ୍ଛକତ ଲୁଚିଲା ଦେବରାଜା । ୨୫ ।
ଶରଣ ଫୁକାରଇ ଦେବ ମଘବାନ
ସ୍ୱାମୀ ସଂକଟୁ ପାରକର ମୋତେ ଚତୁର ବଦନ । ୨୬ ।
ବହୁତ ବିନୟୀ ସେ ହୋଇଲେ ଜନ୍ମୋଦ୍ଭବ
ଯେ ପୁରୁଷ କେଉଁ ହୋ ମୋତେ ଆସୁଅଛି ଖେଦ । ୨୭ ।
ପିତା ବୋଇଲେ ହାଦେ ନୋହଇ ଯେ ରାହୁ
ବିନତାର ନନ୍ଦନ ଯେ ଗରୁଡ ସହସ୍ରବାହୁ । ୨୮ ।
ରାଜଗର୍ବେ ତୁ ଆମ୍ଭନ୍ତ କଲୁ ଅପମାନ
ତେନ୍ୟାସ୍ତୁ ବିନତା ତହୁଂ ଆମ୍ଭେ ସୃଜିଲୁ ପୁଣ ବେନ । ୨୯ ।
ଯତନେ ବିନତା ଆମ୍ଭନ୍ତ ଖଟିଲା ପୁଣ୍ୟକାଳେ
ତାହାର ନନ୍ଦନ ଆକାଶେ ହୋଇବ ଦିଗପାଳେ । ୩୦ ।
ଅନେକ ବିନୟୀ ସେ ବୋଇଲେ ମଘବା
ମୋହୋର ଅମର ସ୍ୱର୍ଗ ମୋତେ ଦେବ ଦେବା । ୩୧ ।
ହେ ଦେବ ସଚରାଚର ନବସୃଷ୍ଟିର କରତା
ଉଦ୍ଧାରଣ ପୁରୁଷ ତୁ ବିହନ୍ତା ବିଧାତା । ୩୨ ।
ଜମ୍ଭୁ ଦଇତକୁ ମାରି ମୁଂ ଅମର ଆଧିପତି
ସେଠାରୁ ଆନ ଠାବରେ ମୁଂ ନୁଆରଇ ବ୍ରତ । ୩୩ ।
ଅନେକ କଷ୍ଟେରେ ଯହୁଂ ବାସବ ବିନୟେ
ନବସୃଷ୍ଟି କରତା ନାଥଂକ ବସିଲା ସହୟେ । ୩୪ ।
ଗରୁଡଂକ ସନ୍ନିଧେ ରାଇଲେ ବେଦପତି
ତ ବାବା ଯେବେ ନାଶ ନ କର ଯେ ଅଇରାବତ ହାଥୀ । ୩୫ ।

ତୋତେ ଇନ୍ଦ୍ରପଦ ଦେବୁଂ ଯେ ବୋଇଲୁ
ଆଜହୁଂ ମହାବୀର ତୁ ପକ୍ଷୀ ଇନ୍ଦ୍ର ହୋଇଲୁ । ୩୬ ।
ଶୁଣ ହୋ ଯୁଦ୍ଧେଷ୍ଟି ବଦଏନ୍ତି ମାରକଣ୍ଡେ
ତୁ ଯାହା ପୁଚ୍ଛାକଲୁ ହେ ଗରୁଡ଼ ଜନ୍ମ ଖଣ୍ଡେ । ୩୭ ।
ଗଜ କଚ୍ଛପ ବିବାଦେ ଗରୁଡ଼ ମହାବୃତ୍ତି
ତେଣୁକରି ହାସିଲେ ଯେ ଦେବ ସୁରପତି । ୩୮ ।
ଗରୁଡର ବଧଁତେ ନାଶଗଲେ ଗଜ କଚ୍ଛପେ
ରହିଲେ ଆକାଶେ ଯେ ପାଇଣ ନିଜ ରୂପେ । ୩୯ ।
ଯୁଦ୍ଧେଷ୍ଟି ଦେବେ ବୋଇଲେ ଶୁଣିଲ ଏହୁ କଥା
ଏବେ ସଙ୍ଗପି କହିବା ମୋତେ ମାଲଗିରର ବାରତା । ୪୦ ।
କେତେ କାଳହୁଂ ଏଥେ ସପୂଳ ସ୍ଥାପନ
କେମନ୍ତେ ନାରାୟଣ ଏଥକୁ କରିବେ ଆଗମନ । ୪୧ ।
ମାରକଣ୍ଡେ ବୋଇଲେ ହୋ ଅପାର କାଳର କଥା
ଅନେକ ଅବତାରେ ହରି ବିଜଏ ସର୍ବଥା । ୪୨ ।
ସତ୍ୟ ତ୍ରେତୟା ଯେ ଦ୍ୱାପର ଯୁଗ କଳି
ଚାରି ଯୁଗରେ ଜାଣ ଯେ ଗଣ୍ଡାଏକ ବୋଲି । ୪୩ ।
ଏକସ୍ତରୀ ଗଣ୍ଡାରେ ଯେ ବୋଲି ଏକ ମନୁ
ଚଉଦ ମନୁରେ କଲ୍ପେକ ହୁଅଇ ତନୁ । ୪୪ ।
ନବକଳ୍ପ ଅନ୍ତରେ ପୃଥିବୀ ହୋଅଇ ନାଶ
ଷୀରେଦ୍ରହ୍ନଂ ରାଜ୍ୟ କରଇ ଏତେକ ବରଷ । ୪୫ ।
ଜଳ ଅନ୍ତରେ ପୁଣି ଉତପତ୍ତି ହୁଅଇ ଶୂନ୍ୟଂ
ଅଣାକାର ପୁରୁଷଂକ ବିକାଶଇ ହାଦେ ତନୁ । ୪୬ ।
ସେ ମହତମା ନବ ପୁରୁଷକଇଂ କରଇ ଯାଏ
ମେଘ ପବନ ଅଗ୍ନି ଚନ୍ଦ୍ର ସୂର୍ଯ୍ୟକଇଂ କରଇ ଉପାଏ । ୪୭ ।

---

୪୭ { ସେ ମହାପୁରୁଷ ଏକ କରଇ ଉପାଏ
ପାର୍ଥିବ ପଦାର୍ଥମାନ କରଇ ସଞ୍ଚଏ । ଖ, ଜ, ଠ

ଯେଉଁ ନବପୁରୁଷ ଜାତ କରଇ ନବସୃଷ୍ଟି
ମେଦାସୁର ମର୍ଦ୍ଦିକରି ଉଆଇଲେ ପୃଥ୍ବୀଗୋଟି । ୪୮ ।
ଯେଉଁ ପୃଥ୍ବୀର ଭାରଭର ସଞ୍ଚୟେ ଘଟଣା
ଧାରଣା ପୁରୁଷ ଯେହ୍ନା ସ୍ରିଜନ୍ତକ ବ୍ରହ୍ମା । ୪୯ ।
ପୁଣି ସ୍ରିଜନ୍ତ ସେ ଯେ ବିଷ୍ଣୁ ମହେଶ୍ବର
ଯେହ୍ନୁଂ ଉପୁଜଇ ଜଙ୍ଗମ ଥାବର । ୫୦ ।
ବ୍ରହ୍ମା ନିଗଳ ହୋଇନ୍ତକ ବ୍ରହ୍ମ ସାଧି
ଈଶ୍ବର ଯୋଗେ ବସିଲ୍ଲ ଆତ୍ମା ଯେ ନିରୋଧି । ୫୧ ।
ସୁଖଭୋଗ ଇଚ୍ଛାକଲେ ଦେବ ନାରାୟଣ
ସୁଖେ ଜାତ ହୋଇଲେ ମୃତ୍ୟୁ ଲୋକେ ପୁଣ ପୁଣ । ୫୨ ।
ସୁର ପାବକ ବୋଲଣ ନାମ ସତ୍ୟ ଯେ ଯୁଗର
ସୋହୋଇ ନାମେ ପୃଥ୍ବୀ ବହ୍ନିଲ୍ଲ ମହାଭାର । ୫୩ ।
ନରାନ୍ତକ ନାମେ ଭୋଗ କରଇ ସେ ମନୁ
ସ୍ବାୟମ୍ଭୁ ବୋଲି ନାମ ବ୍ରହ୍ମାଂକର ସୁନୁ । ୫୪ ।
ବୃଦ୍ଧକ ନାମେଣ ଯେ ତ୍ରେତୟା ଯୁଗ ଋଷି
ବୃନ୍ଦାଅର୍କ ବୋଲି ଦ୍ବାପର ଯୁଗ ପରକାଶି । ୫୫ ।
ସେ ଯୁଗେ ନାରାୟଣ କ୍ରୀଡାରେ ଯୁଗଭୁଂ
ମଥୁରା ନଗ୍ରେ ଉପୁଜବେ ଗୋପେ ରସଖେଡ ହେତୁ । ୫୬ ।

---

୫୨ { ସୁ କ୍ଷ୍ମ ଅଭିଳାଷ କଲେକ ଯହୁଂ ନାରାୟଣ / ମୁଖରୁ ଅମୃତ ଜାତ ହୋଇଲ୍ଲ ପୁଣ ପୁଣ । ଛ, ଙ,ନ,ଖ,ଠ }

୫୩।୧ ସେହ୍ନ ଶର ପାବକ ବୋଲଣ ନାମ ସତ୍ୟ ଯେ ଯୁଗର ।—ନ,ଠ,ଛ,ଣ,ଖ

୫୪।୧ ଯମ ଦେବତାଂକ ନାମେ ଭୋଗ କରଇ ମନୁ ।—ନ,ଖ,ଛ,ଣ

୫୪।୨ ଗତ ଆଗତ ଜାଣଇ ଯେ ବ୍ରହ୍ମାଂକର ତନୁ ।— ତ

୫୪।୨ ଅଣାକାର ପୁରୁଷ ବିକାର ହୁଅଇ ତନୁ ।—କ

୫୪।୨ ଆଗ କାଲରୁ ରୂପ ଧରିଥାଇ ତନୁ ।—ଞ

୫୬।୨ ଯମୁନା ନଗ୍ରେ ଉପୁଜବେ ଗୋପେ ରସ ଖେଡ ହେତୁ—ଝ,ଢ,କ,ଚ,ଣ

ଅମ୍ବ ଧାରଣ କୋଳଣ ସ୍ନେକଇ କନ୍ଦର
ଇନ୍ଦ୍ର ଶବାଦେ ହର ଚୋଳ ଧରିବେ ବ ମକର । ୫୭ ।
ପରଦାର ନମନ୍ତେଣ ଧର୍ମ ତେଜ୍ୟାକର
କୁଟମ୍ବ ଲୋଚ୍ଚୃପ୍ତେ ଉପୁଜାଇବେ କୋହ ମୋହେ ଘନ । ୫୮ ।
କାଦମ୍ବଷ୍ପ ରସ ଭୋଳେ ମତ୍ତିରଙ୍ଗ ରସ ଖେଳେ
କୋହ ମୋହେ ବସିବେ ଶିଆଳଲତା ତଳେ । ୫୯ ।

---

୫୯।୨ "କୋହ ମୋହେ ବସିବେ ଶିଆଳ ଲତା ତଳେ" ଏହାପରେ "ଠ" ପୋଥିରେ ଅଧିକା ପାଠ —
ଶୁଣ ବାବୁ ଯୁଧିଷ୍ଠିର ପୂର୍ବର ସ୍ନେ କଥା
ପୁରାଣେ କହନ୍ତି ସ୍ନେହା ନାନା ମୁନି ବକ୍ତା ।
ବାମନାବତାରେ ବାମପାଦ ଆକାଶକୁ
ଗଙ୍ଗାଙ୍କୁ ଢାଳିଲେ ବ୍ରହ୍ମ ଉଦକ ପାନକୁ ।
ଲୁଚିଲେ ସେ ଗଙ୍ଗା ତାଂକ ନଖର କୋଣରେ
ଉଦକ ନ ପାଇ ବ୍ରହ୍ମା ରାଗିଲେ ଅନ୍ତରେ ।
ଉଦକ ପାଇବା ଆଶେ ଢାଳିଲେ ଗଙ୍ଗାକୁ
ନଖ କୋଣରେ ଲୁଚ୍ଚାଇ ରଖିଲେ ତାହାଂକୁ ।
ମୋହୋଠାରେ ସ୍ନେତେ ମାୟା କଲୁ ତୁ ମନରେ
କାଳେ ନାରିଚେକ ପଡୁ ତୋର ସ୍ନେ ପାଦରେ ।
ମାରକଣ୍ଡ ବୋଇଲେ ଯେ ହେ ଯୁଧିଷ୍ଠି ଶୁଣ
ଧାତା ବାକ୍ୟ ଗୋବିନ୍ଦଂକୁ ନୋହିଲା ମେଣ୍ଟଣ ।
ଅଜ ଶବରର ପୁତ୍ର ଜାରା ନାମ ଗୋଟି
ତା ନାରାଚେ ଶ୍ରୀକୃଷ୍ଣଂକ ବାମପାଦ ଫୁଟି ।
ଭରତ ନାମରେ ଧାତା ମର୍ତ୍ତ୍ୟ ଜନମିଲ
ଅଙ୍ଗଦ ତା ନାଥ ହୋଇ ଶରଘାତ କଲ ।
ସେ ଧାତାକୁ ଶାପ ଦେଲେ ଶମନ ଦେବତା
ବୋଇଲେ ଅନୀତି କଲୁ ତୁ ଜଗତ ପିତା ।
ମୋ ଧର୍ମ ଶାସ୍ତ୍ରରେ ଅଛି ଯେମନ୍ତ ବିଚାର
ସେ ନ୍ୟାୟେ ଜନମ ତୁ ଶବରଣୀ ଘର ।

[ ଅବଶିଷ୍ଟାଂଶ ପରପୃଷ୍ଠାରେ ]

ତହିଂ ଆସି ବେଦବତ ହୋଇଲେ ପ୍ରବେଶ
ଗୃଶମୁଖେ ଗୃଶବେଧ କରନ୍ତ ଅଭ୍ୟାସ । ୭୦ ।
ହରିଂକ ବୋଇଲେ ଧାତା କୋହବାକ୍ୟ ବାଣୀ
ପୁରାଣ ପୁସ୍ତକ ଫେଡି କହିଲେ ପୁଣି ପୁଣି । ୭୧ ।
କଲୁ ତୁହି ପରଦାରା ଲୋଭ କ କଣ ହେଲେ
ସେ ପୁରାଣ ପୁସ୍ତକୁଂ କୃଷ୍ଣ ତୁ ବାହାର ହେଲୁ ବଳେ । ୭ ।

---

[ ପୂର୍ବପୃଷ୍ଠାର ପାଠାନ୍ତର ]

ଗଙ୍ଗାଂକୁ କଉଣ୍ଡ କୃଷ୍ଣେ ଶାପ ଦିଲୁ ହାଦେ
ତୋ ନାଭ ଜନମି ଶର ବନ୍ଧୁ ତାଂକ ପାଦେ ।
ଯୁଧିଷ୍ଠିରେ ଆଗେ କହନ୍ତ ସୁଦେବ ନନ୍ଦନ
କଉଶିକ ବ୍ରହ୍ମା ହେଲେ କରାତ ନନ୍ଦନ ।
ସେହୁ କରାତ ଯେ ଅଜ ନାମକ ଶବର
ଅଜର ନାମେ ହୋଇଲା ତାହାର କୁମର ।
ଜର ଶବର ଯେ ଅଜପତିଂକର ନ ତି
ରୋହିଣୀ କୁଣ୍ଡ ମଉଦଧି ଦକ୍ଷିଣେ ଉତ୍ପତ୍ତି ।
ସେ ଜରା ଶବର ତାଂକୁ କଲା ଶରାଘାତ
ଗ୍ୟାନ ଲଭି ପିଣ୍ଡକୁ ସେ ପୂଜିଲା ନିଯୁତ ।
ଯୁଧିଷ୍ଠିର ବୋଇଲେକ ମାରକଣ୍ଡ ମୁନି
କରାତ ହୋଇ ସେ ହେଲା କେଉଁ ବଡ ଗ୍ୟାନୀ ।
କୃଷ୍ଣଂକୁ ସେ ଦହିବାକୁ ହୋଇଲା ଶକତା
ସେ ପିଣ୍ଡକୁ ପୂଜିବାକୁ ହେଲା ପୁଣି ଗ୍ୟାଂତା ।
ଯୁଧିଷ୍ଠି ବାକେ କହନ୍ତ ବ୍ରହ୍ମାଂକ ଆତ୍ମଜ
ମନଯୋଗ କରି ଶୁଣ ପାଣ୍ଡବ ଅଗ୍ରଜ ।
ତ୍ରେତ୍ୟାଯୁଗେ ମଧୁକର ନାମରେ ଶବରୀ
ସୁନ୍ଦରୀ ସେ ସୁଲକ୍ଷଣୀ ଆସେ ସ୍ନାନକରି ।
ମିଥୁନ ମାସ ଶୁକଳ ପକ୍ଷ ଯେ ଚଉଠି
ନକ୍ଷତ୍ର ଆରଦ୍ରା ବେଳ ନବଘୋଟି ଘଟି ।

ଧାତାର ପ୍ରେସନକ କଠୋର ବାକ୍ୟ ଶୁଣି
କୋପେ କଂପି ଉଠିଲେ ଦେବ ଚକ୍ରପାଣି । ୭୩ ।
ବୋଇଲେ ତୁ ହୋଇବୁ ଅମର ମୁଂ ମରିବ ଲୋଭ ମୋହେ
ବ୍ରହ୍ମାକଇଂ ବାମପାଦେ ପ୍ରହାରିଲେ କୋହେ । ୭୪ ।
ବ୍ରହ୍ମାହେ ବୋଇଲେ ମୁଂ ସରୂପ କହିଲି ତୁ ମୋତେ କୋପ କରୁ
ସେହି ବାମପାଦେ ନାରୀଜ ତୋର ପଡ଼ । ୭୫ ।
ମାରକଣ୍ଡେ ବୋଇଲେ ବାବୁ ଶୁଣ ହୋ ଯୁଧିଷ୍ଠି
ପିତାର ଶାପେ ନାରାୟଣ ଚରଣେ କରନ୍ତି ନାରୀଜ ଫୁଟି । ୭୬ ।
ଜାର ନାମେ ଶବର କରିବ ଶରଘାତ
ଗ୍ୟାନ ପାଇ ସେ ପିଣ୍ଡକୁ ପୂଜା କରିବା ନିଯୁତ । ୭୭ ।
ଯୁଧିଷ୍ଠି ଦେବେ ବୋଇଲେ ଶୁଣିମା ମାରକଣ୍ଡେ
କିରାତ ହୋଇଣ କରି କାହିଂ ଗ୍ୟାନ ତାର ପ୍ରେଣ୍ଡେ । ୭୮ ।
ବିଷ୍ଣୁକଇଂ ବିନ୍ଧିବାକୁ ସେ ହୋଇଲା ଶକତା
ସେହି ପିଣ୍ଡ ପୂଜିବାକୁ ପୁଣ ହୋଇବ ମହାଗ୍ୟାଂତା । ୭୯ ।
ଶୁଣସି ଯୁଧିଷ୍ଠି ଦେବ ବଦନ୍ତି ବ୍ରହ୍ମଋଷି
ସୁରପାବକ ନାମେ ସତ୍ୟଯୁଗେ ବ୍ରହ୍ମଋଷି । ୭୦ ।
ମନୁକର୍ମଣ ବୋଲଣ ପ୍ରେକଇ ସମ୍ବତ୍ସରେ
ସମାଦେକ ବୋଲି ପ୍ରେକ ମାସ ଆଷାଢରେ । ୭୧ ।
ମିଥୁନ ମାସେ ଯେ ଶୁକଳ ପକ୍ଷ ଚଉଠି
ଅର୍କବାର ମଘା ନକ୍ଷତ୍ର ବେଳ ନବଘୋଟି । ୭୨ ।
କଉଶିକ ବ୍ରହ୍ମା ତହିଂ ଆସନ୍ତି ଜଳ ହେବ
ନିତ୍ୟକର୍ମ ବିଧାନେ ସେ ଧାତା ଆହାର୍ଣ୍ଣିକ କରି । ୭୩ ।
ବାହୁଡଇ ବେଦବର ଆହାର୍ଣ୍ଣିକ ସ୍ନାନୁ
ଶବରୁଣୀପ୍ରେ ଦେଖିଲେ ଅସକନ୍ଦ ବନ ନିର୍ଜନୁ । ୭୪ ।
ନିରେପଇ ବେଦବର ଦେଖିଣ ସେ• ବରାଙ୍ଗନା
କାମବଶେ ଅଚେତନ ହୋଇଲେ ମହାତମା । ୭୫ ।
ସେ କିରାତୁଣୀ ନାମ ଅଟଇ ବିଭ୍ରଗୀ
ବେଦବର ନାଥ ଯାଇଂ ଆହେଷିଲେ ବେଗ । ୭୬ ।

ନର୍ଜନ ଦେଖି ଧାତା ଶୃଙ୍ଗାର କଲେ ଇଚ୍ଛା
ଶବରଣୀ ମେଳେ ଧାତା ପୂର୍ବବନ୍ତ ମନବାଞ୍ଛା । ୭୭ ।
କୃତାନ୍ତକ ନାମେଣ ଶବର ତାହାର ପତି
ଘୃର୍ଯ୍ୟା ଲେଡିଣ ସେ ଧାମଇ କୋପମୂର୍ତ୍ତି । ୭୮ ।
ଅନୁଷ୍ଟୁକ ପର୍ବତେ ଥାଇ ଦେଖିଲା ଶବର
ହେଠଗାଢ ଶୃଙ୍ଗାର ଦେଖିଣ କୋପଭର । ୭୯ ।
ପ୍ରତକ୍ଷେ ଓଡ଼ୋଭେଟ ଦେଖିଲା ଶବର
ବାନ୍ଧିଲା ନାରାଜ କୋପେ ମହାବୀର । ୮୦ ।
ରସେଣ ଶୃଙ୍ଗାର ସେ କରନ୍ତେ କଉତୁକେ
କରାତ ନାରାଜ ଯାଇଂ ପଡିଲା ବାମ ଅଙ୍ଗକେ । ୮୧ ।
ବାମଅଙ୍ଗେ ପଡିଣ ଦକ୍ଷିଣ ଅଙ୍ଗ ଫୁଟି
ସେ ମହାଶର ଭେଦି ଭୂମିରେଣ ଯାଇ କଣ୍ଟି । ୮୨ ।
କରାତ ଶରରେ ସେହି ଧାତା ଶବରୁଣୀ
ଯେତିକା ପ୍ରହାରକେ ଅଚେତନ ହୋଇଣ ତଳ ପଡିଲେ ଧରଣୀ । ୮୩ ।
ତାହା ଦେଖି ବର୍ବର କଲେ ଯମ ଦାଇବନ୍ତ
ମାତବନ୍ତ ପୁରୁଷ ହୋଇ ଅମାନ୍ତ କଲୁ ହେ ଧାତା । ୮୪ ।
ଯେତେହେ ମୋର ପୁରାଣରେ ଅଛଇ ବେଭାର
ତୁ ଯାଇଂ ଜାତ ହୁଅସି ଶବରଣୀ ଉଦର । ୮୫ ।
ନାରାୟଣ ଯେ ତୋତେ ପ୍ରହାର କଲା ବାମପାଦ
ନାରାୟଣ ପାଦେ ତୋର ବାଣ ହୋଉ ଭେଦ । ୮୬ ।

---

୭୯ { ଅନୁଷ୍ଟୁକ ପର୍ବତେ ଥାଇ ଦେଖଇ ଆପଣେହେଂ
ହେଠ ଉଭୁରା ଶୃଙ୍ଗାର ଦେଖଇ ସଂକେହେ ।—ଙ୍, ଛ

୮୨ { ଯେତିକ ଶରେ ବେଢନ୍ତଂକର ଅଙ୍ଗ ଗଲା ଫୁଟି
ଅନୁଷ୍ଟ କନ୍ଦରେ ଯାଇଂ ଶର କଣ୍ଟି ।

ନାରଦୂଣଂକର ଅନେକ ଅଛୁ ଅପ୍ରାଧ ବହନ୍ତା
ତୁ ତାହାଂଙ୍କୁ କରାତ ରୂପେ ଶରଘାତ କର ଯା ବଧାତା । ୮୭ ।
ପାଣ୍ଡବଂକ ଅଗ୍ରତେ କହିଲେ ସୁଦେବର ଶିଷି
ସେ କଉଶିକ ବ୍ରହ୍ମା ଜାତ ହୋଇଲେ କରାତ ରୂପେ ଆସି । ୮୮ ।

ଜାରା କରାତ ରୂପେ ସେ ଶ୍ରୀକୃଷ୍ଣେ ଶରଘାତ କରି
ସେହି ପିଣ୍ଡଗୋଟି ନେଇ ପୂଜାକଲେ ଆଦରି । ୮୯ ।

ତୁ ଯାହା ପୁଚ୍ଛାକଲୁ ଆହୋ ଧର୍ମରାଜା
ବୋଇଲା ଶବର କେସନକେ ବିଷ୍ଣୁ ପାଷାଣ କରଇ ପୂଜା । ୯୦ ।
ପୂର୍ବେ ସ୍ରିଜନା ଯାହା କଲେ ଧାତା ମହାତମା
ସେ ଜାରା ଶବର ପ୍ରତକ୍ଷେ କଉଶିକ ବ୍ରହ୍ମା । ୯୧ ।
ବେଳେ ବେଳେ ଶରଘାତ କରଇ ସେ ପ୍ରେମମତେ
ପ୍ରେଥେ ପୂଜା ଘେନକଲେନ ଜଗନ୍ନାଥେ ଚୂରିଲକ୍ଷ ବତିଶ ସହସ୍ର ବର୍ଷ
ପରିଯନ୍ତେ । ୯୨ ।

ଆଦହୁଂ ପ୍ରେ ବାଲୁଇ ପର୍ବତ ଦଶ ସହସ୍ର ଯୋଜନ
ଯେତେବେଳେ ବିଷ୍ଣୁ ପ୍ରତିମା ବର୍ଜ କରନ୍ତି ହୁଅଇ ତନୁ କ୍ଷୀଣ । ୯୩ ।
ପୂର୍ବେ ବଟେକେଶ୍ୱର ପଶ୍ଚିମେ ରୁଦ୍ରନଦୀ
ଉତ୍ତରେ ବଇତରଣୀ ଦକ୍ଷିଣେ ମଉଦଧି । ୯୪ ।
ଦ୍ୱାଦଶ ଯୋଜନ ପ୍ରେ ବିଷ୍ଣୁର ପୁରସ୍ଥଳୀ
ବେଳେ ବେଳେ କ୍ରୀଡାରଙ୍ଗେ ପ୍ରେଥେ କରନ୍ତି ବନମାଳୀ । ୯୫ ।

ଯଦ୍ୟପି କାମନା ହୋ କରିବୁ ଧର୍ମସୁତ
ବିଷ୍ଣୁ ଅଂଶଲୋକେ ଉତପତ୍ତି ହୁଅନ୍ତି ଜାଣ ପ୍ରେଥ । ୯୬ ।
ପ୍ରେ ପଞ୍ଚ ତୀର୍ଥେ ଯେବେ ମକର ସ୍ନାହାନ କରି
ଜୀବନ୍ତେ ମହେଶ୍ୱର ପଦ ମଲେ ବିଷ୍ଣୁପୁରୀ । ୯୭ ।
ମଉଦଧି ଶ୍ୱେତଗଙ୍ଗା ଯେ ରୋହିଣୀର କୁଣ୍ଡ
ଇନ୍ଦ୍ରଦ୍ୟୁମନ ଆବର ଅଛଇ ମାରକଣ୍ଡ । ୯୮ ।
କେତିପ୍ରେ ତୀର୍ଥକପ୍ରେ ଯେତେକ ଫଳଶ୍ରୁତି
ପ୍ରେକା ମକର ସ୍ନାହାନ କଲେ ସେହି ଫଳ ପ୍ରେଥି । ୯୯ ।

ଯଦ୍ୟପି ମାସେକ କରି ନୁଆରିବ ଅଦକ୍ଷ ପଣେ
ଆଦ୍ୟନ୍ତେ ସ୍ନାନ କରିବ ମକର କୁମ୍ଭ ସଂକ୍ରମଣେ । ୧୦୦ ।
ଯେତେକେଇଂ କର୍ମ ଯେବେ କରି ନୁଆରିବୁ
ମକର ମାସେ ବେଳେ ସ୍ନାହାନ କର ବାବୁ । ୧୦୧ ।
ଆନ ଜଳେ କୋଟିଯେ ସ୍ନାନ କଲେ ଫଳ ଯେତେ
ଯେଥେ ଯେକଦନ ସ୍ନାହାନ କଲେ ଫଳଶ୍ରୁତି ତେତେ । ୧୦୨ ।
ଯେ ତୀର୍ଥରେ ହାଦେ ପଞ୍ଚୁବଟ ଅଛି
ଯେ ନାଳ କଳ୍ପବଟ ଗୃହଯୁଗେ ଗଛ । ୧୦୩ ।
ବାବୁ ଶ୍ୱେତ ନାମେଣ ସେ ସତ୍ୟଯୁଗେ ହାଦେ ମହାରାଜା
ଶ୍ୱେତ ମାଧବ ଦେବପ୍ରତିମା କଲା ସେହୁ ପୂଜା । ୧୦୪ ।
ଯେ ମାଧବ ଅଗ୍ରତେ ଯେ ହୁଅନ୍ତି ଅବସାନ
ବ୍ରହ୍ମା ଇନ୍ଦ୍ର ପଦକୁ ସେ ହୁଅନ୍ତି ଭାଜନ । ୧୦୫ ।
ତାକୁ ଦେଖିଣ ହାସ ଯେ କରଇ ନାଶକର
ସେହି ପ୍ରତିମା ମୂର୍ତ୍ତି ଗୋପ୍ୟ ହୋଇଲା ଯେ ରୋହିଣୀ କୁଣ୍ଡ ଭିତର ।୧୦୬।
ବାଞ୍ଛାବଟ ଅଛି ବାବୁ ସେହି ଶ୍ୱେତଗଙ୍ଗା କୂଳେ
ପିତା ଅନ୍ତରୀକ୍ଷେ ତାହା ରଚନା କଲେ ବୁଦ୍ଧିବଳେ । ୧୦୭ ।
ଇନ୍ଦ୍ରଦ୍ୟୁମନ ବୋଲିଣ ଯେ ଯେକଇ ନୃପତି
ସେ ରାଜା ଉଦ୍ଧେଶ କରିବ ତାହା ଦେଖି ହାଦେ ଯେଥି । ୧୦୮ ।
ଶୁକମୁନି ମୁଖୁଂ ତହୁଂ ପୁରାଣ ବାଣୀ ଶୁଣି
ଜାରା ଶବର ଶରେ ନାଶିବେ ଚକ୍ରପାଣି । ୧୦୯ ।
ଏହା ଶୁଣି ପଚାରିଲେ ଧର୍ମ ନୃପବର
ହେ ମୁନି ମାରକଣ୍ଡେ କଳପୀ ଶରୀର । ୧୧୦ ।
କହିଲ ଯେ ମୁନି ଜାରା ଶବର ଚରିତ
ସେ ସତ୍ୟଯୁଗେ କଉଣିକ ବ୍ରହ୍ମା ଯେ ନିଯୁତ । ୧୧୧ ।

---

୧୦୦ { ଯଦ୍ୟପି ଅଦକ୍ଷପଣେ ନ କରନ୍ତି ସ୍ନାନ
ମକର କୁମ୍ଭ ଯାତା କରିବ ଦୁଇଦନ ।— ତ, ନ

ତ୍ରେତା ଯୁଗେ ସେ ବାଳସୁତ ଅଙ୍ଗଦର ରୂପେ ଜାତ ହୋଇ
ଦ୍ୱାପର ଯୁଗରେ ଜାତ ଶବସ୍ତ ଉଦରେ ଯାଇଂ । ୧୧୨ ।
ତିନିଜନ୍ମ ଯାଇ ସେ ଲଭିଲା ନିଜ ଦେହ
ତୋହୋର ମୁଖୁଂ ଶୁଣି ମୁନି ଫିଟିଲା ସନ୍ଦେହ । ୧୧୩ ।
ଗହନ ସନ୍ଦେହ କଥା ଲାଗିଥିଲା ମୋତେ
ତବ ମୁଖୁଂ ଶୁଣି ମୁନି ପାଇଲି ସମ୍ପ୍ରତେ । ୧୧୪ ।
କହନ୍ତି ଅଗସ୍ତି ଶୁଣ ମୋର ମନୁରାୟେ
ପୁରାଣ ଛନ୍ଦେ କହନ୍ତି ସୁଦେବ ତନୟେ । ୧୧୫ ।
ଭବିଷ୍ୟ ବର୍ତ୍ତମାନ ଜାଣନ୍ତି ଯେଉଂ ମୁନି
ତାହାଂକର ମୁଖରୁ ଶୁଣିଣ ମୁହିଂ ଗ୍ୟାନି । ୧୧୬ ।
କହନ୍ତି ମାରକଣ୍ଡେ ଯୁଷ୍ଠେଷ୍ଟି ଅଗ୍ରତେ
ଇନ୍ଦ୍ରଦ୍ୟୁମନ ବୋଲି ଯେକ ରାଜାୟେ ବଖ୍ୟାତେ । ୧୧୭ ।
ସେ ଯେ ଉଦ୍ଦେଶ୍ୟ କରଣ ତାର ମତ
ଶୁଣ ତୁମ୍ଭେ ଯେକମନେ ବ୍ୟାସଂକର ନାତ । ୧୧୮ ।
ଜାରା ଶବର ବାଣରେ ନାଶ ଯିବେ ଚକ୍ରପାଣି
ଆପଣେ ସ୍ୱଦେହ ଛାଡି ଯିବେ ଯଦୁମଣି । ୧୧୯ ।
ସେ ପିଣ୍ଡ ଅର୍ଜୁନ ନେଇ କରନ୍ତେ ଦହନ
ଆକାଶେ ଧ୍ୱନିଯେକ କରିବେ ପଦ୍ମଯୋନି । ୧୨୦ ।
ତୁହୋ ନାଶ ସେ ପିଣ୍ଡ ନ କର ଧନୁର୍ଜୟେ
କଳିଯୁଗେ ନାରାୟେଣ ପୂଜାପାଉ ଯେହି କାୟେ । ୧୨୧ ।
ଅଗ୍ନିରୁ କାଢି ଅର୍ଜୁନ ପକାଇବ ସିନ୍ଧୁଜଳେ
ସେ ପିଣ୍ଡ ଲାଗିବ ଆସି ମାଳସୁନ୍ଦର ଶୟଳେ । ୧୨୨ ।
ସେ କଗତକୁ ପ୍ରସନ୍ନ ହୋଇବେ ଦେବରାଜା
ଜାରା ଶବର କରିବ ସେ ପିଣ୍ଡକଇଂ ପୂଜା । ୧୨୩ ।
ସେ ଜାରା ଶବରକୁ ନାରାୟଣ ଦେବେକ ଆଦେଶ
ତାହାକଇଂ ଆମ୍ଭନ୍ତ ଥିବାର ନ କରିବୁ ପ୍ରକାଶ । ୧୨୪ ।

---

୧୧୫।୨ ପୁରାଣ ଗୀତେ ମୁନି କହଲେ ସନ୍ଦେହେ ।— ଣ

ତୁ ଯେବେ ମୋତେ ଜାଣନ୍ତା କରିବୁ ଶବର
ସ୍ୱବର୍ଗ ସହିତେ ଚୋର ହେବେ ଅପହାର । ୧୨୫ ।
ଲଳିତା ନାମେ ଶବରୁଣୀ ତାର ଘରଣୀ
ଦୁଇଜଣହିଁ ଆନ କେହି ତାହା ନ ଜାଣି । ୧୨୬ ।
ଗୋପ୍ୟାନ କରି ସେ ଯମନକ ବନମାର୍ଗେ
ପଞ୍ଚଷଠୀ ବରଷ ସେ ପୂଜିଲା କଳିଯୁଗେ । ୧୨୭ ।
ସୋମବଂଶେ ରାଜା ଯେ ଗାଲମାଧବ ନୃପତି
ସେହି ସେ ସୋମବଂଶେ ଧରାଇବ ଛତି । ୧୨୮ ।
ଇନ୍ଦ୍ରଦ୍ୟୁମନ ବୋଲିକରି ତାହାର ସନ୍ତତି
ସେ ରାଜାର ଅଛଇ ଯେ ଯେତ୍ପୁ ଖ୍ୟାତି । ୧୨୯ ।
ଗୁଣ୍ଡିକେଶ୍ୱରୀ ନାମେ ଯେ ତାହାର ପାଟ ମହାଦେଈ
ଶାକଲ୍ୟ ଘାପେ ନରେନ୍ଦ୍ର ହୋଦେ ସେହି । ୧୩୦ ।
ଶୁକମୁନି କହିଲେ ସାର୍ଥୁକ ଯେତ୍ପୁ କଥା
ବିଷ୍ଣୁର କଳେବର ରାଜା ଲୋଡ଼ଇ ସର୍ବଥା । ୧୩୧ ।
ଚଣ୍ଡ କଉଶିକ ନାମେ ଯେ ବେଦଶ୍ରବଣ
ବସୁକର ମୂଳ ଯେତ୍ପୁ ଗୃହ ଯେ ବ୍ରାହ୍ମଣ । ୧୩୨ ।
ଗୃହ ଦ୍ୱିଜଙ୍କଇଂ ଦୂତ ରାଜା ପେଷିଲେ ଗୁପତେ
ବୁଲିଲେ ଅନେକ ଦେଶ ତୀର୍ଥ ଯେ ବନସ୍ତେ । ୧୩୩ ।
ବସୁକର ବୋଲି ଯେତ୍ପୁକଇ ଦ୍ୱିଜବର
ସେ ଯାଇ ଭେଟିବ ସେ ଗିରି ନୀଳସୁନ୍ଦର । ୧୩୪ ।

---

୧୨୫।୨   ବଂଶଯାକ ଚୋର ହୋଇବାକ ଧ୍ୱଂସର ।—ଚ, ଝ

୧୨୬।୧   ଲଳିତା ନାମେ ସେ ଯେ ତାହାର ନନ୍ଦନୀ ।—ଘ, ଛ

୧୩୨।୨   ଯଜୁର୍ବେଦ ମୂଳେ ଯେତ୍ପୁ ଗୃହ ଯେ ବ୍ରାହ୍ମଣ ।—ଘ, ଜ, ଝ

ଇନ୍ଦ୍ରଯାମୁନ କୂଳେ ଦ୍ୱିଜବର ଯାଇଂ ବୁଲି
ଉତ୍ତର କଇଗୁଡେ ଦେଖଇ ଶବରର ପଲ୍ଲୀ । ୧୩୫ ।

ତହୁଂ ସେ ଶବର ଗ୍ରାମେ ପ୍ରବେଶ ହୋଇଲେ
ଯେବେ ଶବରୁଣୀକି ସେ ଯାଇଂ ପଥରେ ଦେଖିଲେ । ୧୩୬ ।

ବଂଗ୍ରେଷିତେ ବ୍ରାହ୍ମଣ କଲ୍ୟାଣ ତାକୁ ବାଞ୍ଛି
କରାତୁଣୀ ବୋଇଲା ପଣ୍ଡା ହୋ ସ୍ୱାମୀ ମୋର ବନସ୍ତକୁଇଂ ଯାଇଅଛି
। ୧୩୭ ।

କରାତୁଣୀ ରଖାଇ ସେହ୍ନ ଯେ ବ୍ରାହ୍ମଣ
ହାଣ୍ଡି ତଣ୍ଡୁଳ ଦିଲା ପାକ ଯେ ବଧାନ । ୧୩୮ ।

ଶଳଗ ବନ୍ଧଣା ବଧି ବ୍ରାହ୍ମଣ କଲାକ ଭିଆଣ
ପାଚଣ ବ୍ରାହ୍ମଣ କଲା ସ୍ନାହାନ ଭୋଜନ । ୧୩୯ ।

ଶବର ପ୍ରବେଶ ଯେ ମୃଗଭାର ଘେନ
କଲ୍ୟାଣ ବାଞ୍ଛା ତାହାକଇଂ କଲେ ଦ୍ୱିଜମଣି । ୧୪୦ ।

ଶବର ବୋଇଲା ପଣ୍ଡା ହେ କାହିଂ ତୁମ୍ଭର ବାସ
ବ୍ରାହ୍ମଣ ବୋଇଲା ଶାକଲ୍ୟ ଦ୍ୱୀପେ ଅଟଇ ମୋ ନିବାସ । ୧୪୧ ।

ଭିକ୍ଷା ଆଧାରେ ମୁଂ ବୁଲଇ ତୀର୍ଥବାସୀ
ଧାର୍ମିକ ବୋଲଣ ତୋତେ ପ୍ରାର୍ଥନା କଲୁ ଆସି । ୧୪୨ ।

ଅନେକ ଭଗତ ଯେ ହୋଇଲା କରାତ
ସୁଶ୍ଳେଷଣ ବ୍ରାହ୍ମଣ ତହିଂ ରହିଲା ମାସ ସାତ । ୧୪୩ ।

ଜାରା ନାମେ କରାତ ଯେ ବସୁ ନାମେ ଦ୍ୱିଜ
ବେଦନାମ ଯେବେକତ ମଇଷ ଅଇଶ୍ୱର୍ଯ୍ୟ । ୧୪୪ ।

ବ୍ରାହ୍ମଣ ପଚ୍ଛରଇ ଶୁଣ ଗୋ ମିତଣୀ
ନିତ୍ୟାପ୍ରତି ମଇଷ କାହିଂ ଅନ୍ନପାଣି । ୧୪୫ ।

---

୧୪୩।୨ ସୁଶ୍ଳେଷଣ ରହିବ ବ୍ରାହ୍ମଣ ସାତବରଷ ପଣଯନ୍ତ ।—ଡ, ଛ, ଥ

ଶବରୁଣୀ ବୋଇଲା ହୋ ଶୁଣିମା ପଣ୍ଡାଯେ
ଗୁପତେ ଅଛୁ ଆମ୍ଭର ପାଷାଣ ଦେବତାଯେ । ୧୪୬ ।
ବ୍ରାହ୍ମଣ ବୋଇଲେ ମିତଣୀ ତୋତେ କରିବଇଂ କଲ୍ୟାଣ
ଆମ୍ଭ ପାଇଂ ତୁମ୍ଭେ କହିବ ମିତ ଅଗ୍ରେଣ । ୧୪୭ ।
ସେ ଦେବତାକଇଂ ଦର୍ଶନ କରାଇବେ ନେଇ
ନୋହିଲେ ମିତଣୀ ମୋର ହତ୍ୟାଦୋଷ ତୁମ୍ଭକଇଂ । ୧୪୮ ।
ସେ ଶବରଣୀ ବୋଇଲା ଆସୁ ମୋହୋର ନାଥ
ତାହାଂକର ଆଗେ ଏବେ ସ୍ତ୍ରୀ କହିବ ବହୁତ । ୧୪୯ ।
ଶବର ଅଇଲା ଯେ ମୃଗଯାର ଘେନ
ଗୃହରେ ପ୍ରବେଶନ୍ତେ ତାହାକଇଂ କହିଲା ଶବରୁଣୀ । ୧୫୦ ।
ଦେବତା ଦେଖିତେ ଶରଧା କରନ୍ତି ତୁମ୍ଭ ମିତ
ଶୁଣିକରି ଚକିତ ସେ ହୋଇଲା କିରାତ । ୧୫୧ ।
ପଣ୍ଡା ବୋଇଲେ ଦୃଶକରୁ କିନା ପାଷାଣ ଦେବତା
ଶବର ବୋଇଲା ମଇତ ଯେ ବଡ଼ାଇ ଗୁପତ ଯେ କଥା । ୧୫୨ ।
ଆନକୁ କହି ନୁଆରଇ ଯେ ବଡ଼ାଇ ବିଶ୍ୱାସ
ଯେ କଥାରେ ମଇତ ହୋ ତୁମ୍ଭେ ନ ଭରସ । ୧୫୩ ।
ଶବରୁଣୀ ବୋଇଲା ଯେ ବ୍ରାହ୍ମଣ ଆମ୍ଭର ଧର୍ମସାଖୀ
କଷ୍ଟୋର ନ କର ସ୍ୱାମୀ ବ୍ରାହ୍ମଣକଇଂ ବହନ ନେଇ ଦେଖା । ୧୫୪ ।
ତୁଳମାସ ଶୁକ୍ଳପକ୍ଷ ଅଷ୍ଟମୀ ଗୁରୁବାର
ଶ୍ରବଣା ନକ୍ଷତ୍ର ଯେ ଭୋଗ୍ୟ ସେ ଦିନର । ୧୫୫ ।
ବାଳବ ନାମେ କରଣ ବୃଦ୍ଧି ନାମେ ଯୋଗ
ସେଦିନ କିରାତ ବ୍ରାହ୍ମଣକଇଂ ନେଲା ସଙ୍ଗ । ୧୫୬ ।
ବିପ୍ରର ମୁଖେ ବାନ୍ଧିଲା ଅନ୍ଧ ଯେ ପଟଳ
ନଅନ୍ତେ ବ୍ରାହ୍ମଣ ଯେ ବୁଣଇ ମାଗିଥିଲ । ୧୫୭ ।
ଚନ୍ଦନ ବନକାଯେ ଅଗ୍ରବୃକ୍ଷ ତଳେ
ଦେଖାଇଲା ପାଷାଣ ଫେଇଣ ଅନ୍ଧ ଯେ ପଟଳେ । ୧୫୮ ।
ଦେଖିଣ ଦ୍ୱିଜବର ହୋଇଲା ପରଣାମି
ବୋଇଲା ଯେତେ ଆସି ବିଜେ କରିଛୁ ଦେବସ୍ୱାମୀ । ୧୫୯ ।

ବାହୁଡନ୍ତେ ଅନ୍ଧପଟଳ ବାନ୍ଧଇ କବାଟ
ଆଗରେ କବାଟ ଚଳଇ ପଛେ ଧରଣ ବିପ୍ର ହାଥ । ୧୬୦ ।
ପ୍ରବେଶ ହୋଇଲା ଶବର ଆପଣା ପଲ୍ଲୀର
କଲ୍ୟାଣ କରଣ ସେ ବୋଇଲା ଦ୍ୱିଜବର । ୧୬୧ ।
ସପ୍ତମାସ ହୋଇଲାନ ମଉନ ଚେଜ୍ୟାକଲି ଗୃହବାସ
ଏତେକ ଦିନ ତୁମ୍ଭ ସଙ୍ଗେ ବଞ୍ଚିଲି ହରଷ । ୧୬୨ ।
ଆମ୍ଭେ ଯାଉଅଛୁଂ ମଉନ ହୋ ନିଜ ଭୁବନେଣ
କହଣ ଗମନ କଲା ବସୁକର ବ୍ରାହ୍ମଣ । ୧୬୩ ।
ଆସ୍ଥାନେ ବିଜେ କରଛୁ ରାଜା ଇନ୍ଦ୍ର ସେ ଦ୍ୟୁମନ
ବ୍ରାହ୍ମଣ ଭେଟିଲା ବୃଷଭ ଶୁକଲ ଗୁରୁ ପଞ୍ଚମୀର ଦିନ । ୧୬୪ ।
ଶୁଣ ଦେବ ରାଜନ ପ୍ରସନ୍ନ ଧାଷାଗୁରୁ
ମୁହିଂ ଠାବକଲା ଦେବ ତୁହି ଯାହା ଲୋଡାକରୁ । ୧୬୫ ।
ପଞ୍ଚବଂଶ ରାଜା ତୁଲେ ଇନ୍ଦ୍ର ସେ ଦ୍ୟୁମନ
ପ୍ରବେଶ ଯାଇଂ ଯମନିକ ଖର୍ଥେ ଅଜମୀଢ ବନ । ୧୬୬ ।
ସେ ବିପ୍ର ନେଇ ଦେଖାଇଲା ଶବର ପଲ୍ଲୀ
ତୁମ୍ଭରେ ମିଳ କବାଟ ଅନେକ ବନୋଯ୍ତୀ ବୋଲି । ୧୬୭ ।
ବୋଲନ୍ତି ରାଜନ କବାଟ ରେ ଜୀବନ ଚୋର ସାଧୁ
ଆମ୍ଭନ୍ତ ନେଇ ଦର୍ଶନ କର ଜଗବନ୍ଧୁ । ୧୬୮ ।
କବାଟ ବୋଇଲା ମୁଂ ବନଚର ଜାତି
ମୁଂ କେହ୍ନେ ଜାଣିମି ଚୋର ପାଷାଣ ବୋଲି କେବଣ ମୂରତି । ୧୬୯ ।
ଶୁଣିଣ ରାଜନ ମନେ କ୍ରୋଧ ଯେ ସମ୍ପାଦ
କୁମ୍ଭୀପାକ ଚୋର ଶବର ରେ ଅସିଘାଏ ପକାଇବି ଛେଦ । ୧୭୦ ।
ବ୍ରାହ୍ମଣ ବୋଇଲା ରାଜନ ଶୁଣ ମୋ ଉତ୍ତର
ପଥରେ ସନ୍ତକଗୋଟି ରଖିଅଛୁ ମୋର । ୧୭୧ ।
ବ୍ରାହ୍ମଣର ସନ୍ତକ ତିଳ ଅଛୁ ଉଠି
କଢ଼ାଇ ନଅଇ ଦ୍ୱିଜବର ସେହୁ ବାଟଗୋଟି । ୧୭୨ ।
ଚନ୍ଦନ ବନକାୟେ ଅଗର ବୃକ୍ଷର ତଳେ
ନାରାୟଣ ଅଦୃଶ୍ୟ ଗଲେ ଗଗନ ମଣ୍ଡଳେ । ୧୭୩ ।

ବ୍ରାହ୍ମଣ ବୋଇଲା ଯେହ୍ନ ଠାବରେ ଥିଲେ ଦେବଦ୍ଦର
ସମସ୍ତ ସଜ୍ଞାମାନ ତହ୍ନଂ ଦେଖିଲେ ଦଣ୍ଡଧାର । ୧୭୪ ।
କରିତଲୁ ନୃପତି ବହୁତ କଷ୍ଟୋର କଲେ
ଚୋଦ୍ଦୋର ଶିର ଛେଦବଇଂରେ ଉପୁଣୀ ପାହ୍ନଲେ । ୧୭୫ ।
କାହ୍ନଂ ଗୋପ୍ୟାନ କଲୁରେ ନାରାୟଣ ମୁରତି
ଦେଖାଅ ଅନେକ ଧନରତ୍ନ ଦେବୁଂ ହୋଇବୁ ପୀରତି । ୧୭୬ ।
ରାତ୍ରେ ନାରାୟଣ ରାଜାକଇଂ କହ୍ନଲେ ବାରତା
ତୁ କଷ୍ଟୋର ନ କର ଆମ୍ଭର ସଖା ଯେ କରାତ । ୧୭୭ ।
ତୁ ତାହାକଇଂ ଦୁଃଖ ନ ଦଅ ହୋ ଇନ୍ଦ୍ରଦ୍ୟୁମନ ରାଯେ
ଅନେକ ପୂଜା ହୋଇଲା ଆମ୍ଭନ୍ତ ଧର୍ମ ସଭ୍ରାୟେ । ୧୭୮ ।
ରଜନୀ ପ୍ରଭାତେ ଯାଅ ତୁ ବାରନିଧି କୂଳେ
ଦାରୁଯେକ ହୋଇ ଲଗିବ ମୁଂ ଶୁଣ ହୋ ମହୀପାଳେ । ୧୭୯ ।
ସପନ ଚେତି ରାଜା ଉଠିଲା ଧାଡକାରେ
ଆପଣେ ପ୍ରବେଶ ହୋଇଲା ମଉଦଧି କୂଳେ । ୧୮୦ ।
ଦେଖଇ ଦାରୁଯେକ ଦଶଇ ଲୋହିତ ବର୍ଣ୍ଣ
ଆକୋଷି ତୋଳି ତାକୁ ନୁଆଇଲେ ସର୍ବଜନ । ୧୮୧ ।

---

୧୭୪।୨ ସମସ୍ତ ଶକୁନାମାନ ତହ୍ନଂ ଦେଖିଲେ ଦଣ୍ଡଧାରୀ ।—ଖ, ନ, ଣ

୧୭୭।୧ ରାତ୍ରେ ନାରାୟଣ ରାଜାକଇଂ କହ୍ନଲେ ସପନ ଚେତା ।—ତ, ଟ, ଣ

୧୭୮।୨ ଅନେକ ପୂଜା ହୋଇଲା ଆମ୍ଭନ୍ତ ଯମ ଧର୍ମସଭ୍ରାୟେ ।
—କ, ତ, ଶ, ଟ, ଜ

୧୭୯।୨ ଦାରୁ ଗୋଟିଯେ ଲଗିଥିବ ମହୋଦଧିର ଉଛୋଳେ ।—ଛ

୧୮୦।୨ ଆପଣେ ମିଳିଲା ସେ ଶ୍ୱେତଗଙ୍ଗା ଜାଣି ମହୋଦଧିର ଉତ୍ତର ତୀରେ ।
—ଟ, ଥ

୧୮୧।୨ ଆକୋଷି ତୋଳି ତାକୁ ନୁଆଇଲେ ସର୍ବସନ୍ୟ ।—ଠ, ଜ, ଟ, ଚ

ଜାବଶବର ଯେ ବସୁକର ବ୍ରାହ୍ମଣ
ଦୁହେଁ ତୋଳନ୍ତେ ସେ ଦାରୁ ଉଠିଲେ ତତକ୍ଷଣ । ୧୮୨ ।
ବାମେଣ କରାଚ ଯେ ଡାହାଣେ ଛତ୍ର ଧରି
ନେଇଣ ଉଭାକଲେ ମାଳଷ୍ଚନ୍ଦର ଗିରି । ୧୮୩ ।
ଶୁଣ ହୋ ଯୁଦ୍ଧେଷ୍ଠି ବଦସ୍ତନ୍ତି ମାରକଣ୍ଡେ
ସେ ଦାରୁ ପ୍ରତକ୍ଷେ ନାରାୟଣ ପିଣ୍ଡେ । ୧୮୪ ।
ସ୍ନେକବଂଶ ଦଣ୍ଡ ଉଚ୍ଛର୍ଗ ବସ୍ତାର ପାଞ୍ଚଦଣ୍ଡ
ବୋଲନ୍ତି ନୃପତି କେହୁ ସ୍ତ୍ରିଜବ ସ୍ନେହୁ ପିଣ୍ଡ । ୧୮୫ ।
ସ୍ନେହେନେକ ବୋଲି ରାଜା ଭଲଇ ହୃଦଗତେ
ବୃଦ୍ଧ ବନ୍ଧାଣି ଗୋଟିଏ୍ମ ମିଳିଲ୍ଲ ଅଦଭୁତ । ୧୮୬ ।
କୋଠାର ବାରେସି ଯେ ବହାଣ ଘଟଣା ଘଟଣି
ସେ ବୋଇଲ୍ଲ ସ୍ନେହା ମୁଂ ଦେବଇ ବଦାଣି । ୧୮୭ ।
ପ୍ରସାଦ ଭିତରେ ସେ ପଶିଲ୍ଲ ବଶ୍ୱକର୍ମା
ଦେବଦାରୁ ଧରି ବୋଲି ଆଗ୍ୟାଂ ଦଲେ ମହାତମା । ୧୮୮ ।
ଲକ୍ଷେକ ବଳ ଯେନ ଧଇଲ୍ଲ ଇନ୍ଦ୍ର ଯେ ଦ୍ୟୁମନ
ଗୃଳ ନୁଆଇଲ୍ଲ ସେ ବସ୍ତୁ ଦାରୁବ୍ରହ୍ମ । ୧୮୯ ।
ବୃଦ୍ଧ ବନ୍ଧ ଣି ବୋଇଲ୍ଲ ହୋ ଛାଡ଼ ତୁମ୍ଭେମାନେ
ଜାବଶବର ବସୁଦ୍ୱିଜ ଆସନ୍ତୁ ସ୍ନେହସ୍ଥାନେ । ୧୯୦ ।
ଆଗ୍ୟାଂ ପାଇଣ ଦୁହେଁ ଯାଇଂ ଦାରୁ ଧରିଲେ ଆକ୍ରୋଷି
ଉଠଣ ମହାଦାରୁ ପ୍ରସାଦେ ଯାଇଂ ବସି । ୧୯୧ ।
ବନ୍ଧାଣି ଦାରୁ ଦହୁନ୍ତି ଭଇଲେ ଭିତରେ
ଜାବ ବସୁକର ବ୍ରାହ୍ମଣ ଅଛନ୍ତି ସଙ୍ଗତରେ । ୧୯୨ ।

---

୧୮୪ { ଶୁଣ ହୋ ଯୁଦ୍ଧେଷ୍ଠି ବଦସ୍ତନ୍ତି ମାରକଣ୍ଡେ
ସ୍ନେକବଂଶ ଦଣ୍ଡ ଉଚ୍ଛର୍ଗ ବସ୍ତୀର୍ଣ୍ଣ ପ୍ରଥ ପଞ୍ଚଦଣ୍ଡେ ।—କ, ଚ

୧୮୫ { ବୋଲଇ ନୃପତି କେ ସ୍ତ୍ରିଜବ ସ୍ନେହୁ ପିଣ୍ଡ
ସସାର ଜନେ ଦେଖି ତେଜିବେ ଯମଦଣ୍ଡ ।—କ, ଚ

ଦିବସ ଅର୍ଦ୍ଧ ଆବର ସମ୍ପୂର୍ଣ୍ଣ ଯେ ରାତ୍ରି
ଯେବକା ଦାରୁ ହୋଇଲାକ ତିନିଗୋଟି ମୂର୍ତ୍ତି । ୧୯୩ ।
ଗୁପତେ ନିର୍ମାଣ କରୁଅଛି ବିଶ୍ୱକର୍ମା
ନିଜ ନିର୍ମାଣେ ବିନ୍ଧାଣି ପୁରୁଷ ଉତ୍ତମା । ୧୯୪ ।
ଇନ୍ଦ୍ରଦ୍ୟୁମ୍ନ ରାଜ୍ୟେ ଯେ ଭାଳଇ ବିଷାଦେ
ଦେଉଳେ ନ ଶୁଭିଲା ତ ବିନ୍ଧାଣି ଶବଦେ । ୧୯୫ ।
ସ୍ୱଭାବେ ଦେଉଳତ ହୋଇଅଛି ମୁଦ
କିଛିହିଂ ନ ଶୁଭଇ ଠୁକୁଠାକ ଶବଦ । ୧୯୬ ।
ବିନ୍ଧାଣି ହୋଇଲେ ତ ବାରେସି ନାଦ ଶୁଭି
ଫେଡସି କପାଟ ହୋ ବଳେ ଦେଖିବା ପ୍ରାଭବି । ୧୯୭ ।
ବୃଦ୍ଧ ବିନ୍ଧାଣି ଅବା ପଡିଣ ସେହୁ ମଲା
ଯେବେ ମୋହୋର ବିସ୍ମୃତି ମନ୍ଦିର ତ ନିଷ୍ଫଳ ହୋଇଲା ।୧୯୮ ।
ଯେତେ ବୋଲି ରାଜା ଯାଇଁ ଫେଇଲା କପାଟ
କହିତ ବ୍ରାହ୍ମଣ ଦୁହିନ୍ତ ପାଇଲାକ ଭେଟ । ୧୯୯ ।
ଦେଖିଲା ପ୍ରତକ୍ଷେ ପାଷାଣ ଯେ ହୋଇଛି ତିନିମୂର୍ତ୍ତି
କୃଷ୍ଣ ଶୁକଳ ହାରିତ ବିରାଜଇ ଜ୍ୟୋତି । ୨୦୦ ।
ସତ୍ତ୍ୱ ରଜ ତମ ଯେ ତିନିଗୁଣ କାୟେ
କର ଚରଣ ନାହିଁ ଅଙ୍ଗୁଳି ନାହିଁନା ଉପାୟେ । ୨୦୧ ।
ନାସା କର୍ଣ୍ଣ ନୟନ ଲଲାଟ ଯେ ନ ଦିଶଇ ଶିଖା
ମହା ବଉଦ ମୂର୍ତ୍ତି ବିକାଶଇ ତିନିଶାଖା । ୨୦୨ ।
ଜାରାଶବର ବୋଇଲା ହୋ ମନ୍ଦକୃତ୍ୟ କଲୁ ରାଜ୍ୟେ
ଆଜକ ଥିଲେ ଦେଖନ୍ତୁ ଜଗନ୍ନାଥଂକ ପଦ୍ମପାୟେ । ୨୦୩ ।

---

୧୯୩।୧ ଦିବସେ କପାଟ ପାଡନ୍ତେ ଅନ୍ଧାରମୟ ଦେଉଳ ଦିବସରେ ରାତ୍ର ।
—ଞ, ଟ

୨୦୦।୨ ଶୁକଳ କୁଂକୁମ କୃଷ୍ଣ ବିରାଜଇ ଜ୍ୟୋତି ।—ଛ, ଣ, ଠ

୨୦୦।୨ ଶୁକଳ କୁଂକୁମ ନୀଳ ବିରାଜଇ ଜ୍ୟୋତି ।—ଘ, କ, ଡ, ଝ, ଜ

ଦେଖନ୍ତୁ କରସ୍ଥଳ ଅଙ୍ଗୁଷ୍ଠି କର୍ଣ୍ଣ ନାସା ଆଖି
କଳିକାଳ ଜନେ ଯେ ହୋଅନ୍ତେ ବଡ ସୁଖୀ । ୨୦୪ ।
ପଞ୍ଚନଦ ପଞ୍ଚ ଅଙ୍ଗୁଷ୍ଠି ହରର ବର୍ଣ୍ଣ ଶିଖା
ଆହୁଠ ଦଣ୍ଡ ବକାଶଇ ହରର ବକ୍ଷସ୍ଥଳ ରେଖା । ୨୦୫ ।
ସତ୍ତ୍ୱେ କୁଂକୁମ ବର୍ଣ୍ଣ ସେ ବ୍ରହ୍ମାର ମୂରତି
ତମେ ଶୁକଳ ମହାତମା ମହାଦେବ ଉତପତ୍ତି । ୨୦୬ ।
ରଜେ ନାରାୟଣ ସେ କୃଷ୍ଣବର୍ଣ୍ଣ କଳା
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଯେ ତିନ ଯେ ମେଖଳା । ୨୦୭ ।
ବଳଭଦ୍ର ସୋହୋଦ୍ରା କୃଷ୍ଣ ହୋଇଲେ ତିନରୂପ
ବଉଦ ବାମନ ଯେହ୍ନା କେ କରୁ ସଂଚେପ । ୨୦୮ ।
ଯେ ରୂପ ସେ କଲ୍ପିଲେ ଦେବସ୍ୱାମୀ
ତିନମୂର୍ତ୍ତିଂକ ପଞ୍ଚଭୂତେ ଶନ୍ତ ଆମି । ୨୦୯ ।
ଯେହ୍ନି ସରୂପେଣ ତିନ ତିନ ମୂର୍ତ୍ତି
ଯେହ୍ନି ନୀଳଗିରରେ ବିଜୟେ ଦଶ ସହସ୍ର ଘାନ୍ତ । ୨୧୦ ।
ଶୁଣିଲୁ ଧର୍ମରାଜା ନୀଳସୁନ୍ଦର କଥା
ଇତ୍ଥଂ [illegible] କଥୟନ୍ତି ମାରକଣ୍ଡ ମୁନି ଯେବଣ ବାରତା । ୨୧୧ ।
ସେ ନୀଳସୁନ୍ଦର ନାଥ ଚରଣେ ମୋର ସେବା
ଯେ [illegible]ଯାପ ସଂସାରୁ ତାରି ମୋତେ ବିଷ୍ଣୁ ଭୁବନ ଦେବା । ୨୧୨ ।
ତିନଦେବ ରାମକୃଷ୍ଣ ବ୍ରହ୍ମା ଚନ୍ଦ୍ରପାଦେ
କଳିକାଳ ବଞ୍ଚିଲି ଦେବ ତବ ପରସାଦେ । ୨୧୩ ।
ଭୁଜଙ୍ଗା [illegible] ଚରଣେ ତଳଯେ ମମ ମତେୟ
ଶୂଦ୍ରମୁନି ସାରଳା ଦାସ ବଦୟନ୍ତି ସଂସାର ଜନ ହିତେ । ୨୧୪ ।

---

୨୦୫ { ପଞ୍ଚ ଅଙ୍ଗୁଷ୍ଠି ପଞ୍ଚଲହ ପଞ୍ଚଶିଖା
ଆଉ ଦଣ୍ଡକେ ବିକାଶନ୍ତି ଅଷ୍ଟ ଅଙ୍ଗରେଖା ।—ଡ

୨୦୮ { ବଲଭଦ୍ର ସୋହୋଦ୍ରା ଶୁକ୍ଳ ହରେତ ରୂପ
ବଉଦ ବାବନ ଯେହ୍ନା ନ କର ସଂକ୍ଷେପ ।—ଚ

ସନ୍ତତେ ନମଇଂ ମୁଂ ନର୍ମଦା ସରସ୍ୱତୀ
କଳିକାଳ ଧ୍ୱଂସିନୀ ସାରେଳା ଚଣ୍ଡୀ ମୂର୍ତ୍ତି । ୨୧୫ ।
ଅସଙ୍କ୍ୟ ସାଗର ଗୋ ଶ୍ରୀମହାଭାରଥ ମହାବଳୀ
ଗହନ ବନଲତା ମୁଂ ନୁଆରଇ ପଶିକଳି । ୨୧୬ ।
ଗଣନ୍ତେ ନ ସରଇ ଯେହ୍ନେ ସାହେର ତଟ ବାଳି
ତହିଂକି ସମାନ ମୁଂ ମହାଭାରଥ କହିଲି । ୨୧୭ ।
ଇଦଂ ପୃଥକ ପୃଥକ ବହୁତ ବହୁତ ଯେ କଥା
ହୃଦଗତେ ଝଳଶିଲେ ମୋର କନ୍ଦର ଦୁହିତା । ୨୧୮ ।
ପ୍ରସନ୍ନେ ଅପର୍ଣ୍ଣା ଯେ ସାରେଳା ଚଣ୍ଡୀ ଦେବୀ
ସେ ଯାହା କହିବେ ମୁଂ ତାହା ଲେଖନେ ଲେଖିବି । ୨୧୯ ।
ନ ଶୁଣି ନ ଦେଖି କେ ପାରିବ କହିପି
ଅଥବା ମୂର୍ଖପଣେ ମୁଂ କହିଲି ଅଦ୍ୟାପି । ୨୨୦ ।
ଆହୋ ବୁଧଜନମାନେ ଅଟ ମହାଭାଗ୍ୟଂ
ବେଦ ଶାହାସ୍ତ୍ରେ ନିର୍ଜିତ ସର୍ବଗୁଣେ ଗୁଣଗ୍ୟଂ । ୨୨୧ ।
ବିଷ୍ଣୁ ଅଂଶେ ଜାତ ହୋଇଲେ ନୃପତି
ମହେଶ୍ୱର ଅଂଶେ ଜାତ ହୋଇଲେ ହୋଅଇ ଧନପତି । ୨୨୨ ।
ଗନ୍ଧର୍ବ ଅଂଶେ ଜାତ ହୋଇଲେ ହୋଅଇ ନାନା ବାଦ୍ୟ ଗୀତ ପ୍ରାପତ
ବିଶ୍ୱକର୍ମା ଅଂଶେ ଜାତ ହୋଇଲେ ଘଟଣ ବିଦ୍ୟା ଉପଗତ । ୨୨୩ ।
ଅଶ୍ୱିନୀ ଅଂଶେ ଜାତ ହୋଇଲେ ଧାତୁବିଦ୍ୟା ଗାରୁଡ଼ି ହୋଅଇ ସାଧି
ଭୈରେ ଅଂଶେ ଜାତ ହୋଇଲେ ହଠମନ୍ତ୍ର ବିଦ୍ୟା ସାଧି । ୨୨୪ ।
ବିଦ୍ୟାଧର ଅଂଶେ ଜାତ ହୋଇଲେ ତାଣ୍ଡବ ଭରହ ଋଷି
ଅସୁର ଅଂଶେ ଜାତ ହୋଇଲେ ହୋଅଇ ଭୋଜନେ ଅସନ୍ତୋଷି ।୨୨୫।
ବିନାୟେକ ଅଂଶେ ଜାତ ହୋଇଲେ ହିଣଇ ଗଜମର୍ମ
କୁବେର ଅଂଶେ ଜାତ ହୋଇଲେ ପ୍ରାପତ ହୋଅଇ ଧନ । ୨୨୬ ।

---

୨୧୬।୧ ଅଶକ୍ୟ ମହାଭାରତ ସାଗର କହିଲି ।—କ୍ଷ, ତ, ଖ; ନ
୨୧୯।୧ ପ୍ରସନ୍ନେ ପିଙ୍ଗଳାକ୍ଷୀ ଗୋ ସାରେଳା ଚଣ୍ଡୀ ଦେବୀ ।—ପାଠାନ୍ତର

ବୃହସ୍ପତି ଅଂଶେ ଜାତ ହୋଇଲେ ସପ୍ତାଙ୍ଗ ପାରଇ ସାଧି
ସହଦେବ ଅଂଶେ ଜାତ ହୋଇଲେ ହଣଇ ସର୍ବବୁଦ୍ଧି । ୨୨୭ ।
ନକୁଳ ଅଂଶେ ଜାତ ହୋଇଲେ ପାରଇ ଅଶ୍ୱବିଦ୍ୟା ସାଧଇ
କୁମାର ଅଂଶେ ଜାତ ହୋଇଲେ ଔଷଧ ବୃକ୍ଷ ଦୃଶ୍ୟହୋଇ । ୨୨୮ ।
ଭୃଗୁଅଂଶେ ଜାତ ହୋଇଲେ ଗୋ ଲକ୍ଷଣ ବିଦ୍ୟା ପ୍ରକାଶି
ନଇରତ ଅଂଶେ ଜାତ ହୋଇଲେ ହୋଅଇ ବାତୁଳ ଋଷି । ୨୨୯ ।
ଶଲ୍ୟକାର ଅଂଶେ ଜାତ ହୋଇଲେ ଚର୍ଜ୍ଜ କର୍ମ କରଇ ଠାବ
ଶନୈଚର ଅଂଶେ ଜାତ ହୋଇଲେ ହୋଅଇ ରୋଗ ଭୋଗ । ୨୩୦ ।
ବାସବ ଅଂଶେ ଜାତ ହୋଇଲେ କରଇ ମହାଭୋଗୀ
ଗୋରେଖ ଅଂଶେ ଜାତ ହୋଇଲେ ହୁଅଇ ପରମଯୋଗୀ । ୨୩୧ ।
ଯମ ଅଂଶେ ଜାତ ହୋଇଲେ ହୋଅଇ ନିର୍ଦ୍ଧୟେ
ଭୀମ ଅଂଶେ ଜାତ ହୋଇଲେ ହୋଅଇ ନିର୍ଭୟେ । ୨୩୨ ।
ପ୍ରହ୍ଲାଦ ଅଂଶେ ଜାତ ହୋଇଲେ ବଇଷ୍ଣବ ହୁଏ । ୨୩୩ ।
ମୁନି ଅଂଶେ ଜାତ ହୋଇଲେ କାବ୍ୟ ପାରଇ କହି
ନ ପଢିଣ ବିଦ୍ୟା ଯେ ସାଧନ କଲା ମୁହିଂ । ୨୩୪ ।
ଝିଂକଣ୍ଡ ପୁର ବାସୀ ସିଦ୍ଧ ସାରଳା ଯାର ନାମ
ସେ ମୋତେ ବଖାଇଲା ଧର୍ମ ଅର୍ଥ ମୋକ୍ଷ କାମ । ୨୩୫ ।
ଅନୁବ୍ରତେ ଦାତବ୍ୟ ଯେବଣ ଦେଖାର ପ୍ରକୃତି
ପରଦୁଖ ଦେଖି ନୁଆରଇ ସଦସ୍ୟେ ଭୂତନେତ୍ରୀ । ୨୩୬ ।
ତାହାକଇଂ ଭଗତ ମୁଂ ହୋଇଲଇଂ ଜନ୍ମେ ଜନ୍ମେ
ବାତୁଳ ରୂପେ ମୋତେ କହଇ ସକଳ ଧର୍ମେ । ୨୩୭ ।

---

୨୩୪।୨ { ଅରୁଣ ଅଂଶେ ଜାତ ହୋଇଲେ ଅନ୍ୟୋଅନ୍ୟ ତୋଷି
ରବି ଅଂଶେ ଜାତ ହେଲେ ହୋଅଇ ବହୁଦର୍ଶୀ । —ଓ

୨୩୬।୨ ପରଦୁଖେ ଦୁଖିତ ଯେ ବିନସ୍ଥ ଭକତ ନତ ।— ଣ, ନ, କ, ଡ

ପ୍ରସନ୍ନେ ଅପର୍ଣ୍ଣା ଗେ, ଅଭୟେ କାନ୍ତାମ୍ମି
ତାହାର ଆଗ୍ୟାଂଙ୍ଗ୍ୟ ମୁଂ ସାରୋଳା ଦାସ ମୁନି । ୨୩୮ ।

——— ୯୫୫୧

---

୨୩୮।୨ "ତାହାର ଆଗ୍ୟାଙ୍ଗେଂ ମୁଂ ସାରୋଳା ଦାସ ମୁନି"
ପରେ 'ଥ' ପୋଥିରେ ଅଧିକା ପାଠ :—

ବଦନ୍ତି ଯୁଦ୍ଧେଷ୍ଟି ଶୁଣିମା ମହାମୁନେ୍ୟ
ଗରୁଡ ରହିଲା ହେ ଛଡଲକ୍ଷ ଯୋଜନେ ।

କେବଣ କୃତ୍ୟ ସେ କଲେକ ଖଗେବର
ସଞ୍ଚପି କହିବା ମୋତେ ସମସ୍ତ ମୁନିବର ।

ବହୁତ ବିନୟ ଯେ ଗରୁଡ ହୋଇଲା
ପଦ୍ମପାଦ ଚହ୍ନିଣ ଯେ ନମସ୍କାର କଲା ।

ମହାଭାର ଦେବ ନୁଆଣଲେ କେହି ସହି
ତୁ ସେ ସହିଲୁ ମୋତେ ଦେବ ଭାବଗ୍ରାହୀ ।

ବ୍ରହ୍ମାଦି ବୋଇଲେ କେ ପାରୁ ଗରୁଡ ଭାର ସହୁ
ନାରାୟଣ ସହିଲେ ଯେ ସେ ମହାବାହୁ ।

ଶୁଣ ବାବୁ ଯୁଦ୍ଧେଷ୍ଟି ହୋ ଧର୍ମର ନନ୍ଦନ
ଗରୁଡ ବାହନ କଲେ ତେଣୁ ଜନାର୍ଦ୍ଦନ ।

# ସଂକ୍ଷିପ୍ତ ରାମାୟଣ

ଶୁଣ ବଇବସୁତ ମୁନି ବଦଯ଼ନ୍ତ ବ୍ରହ୍ମଋଷି
ଶ୍ରୀ ମହାଭାରଥେ ଯେ ଆରଣ୍ୟେକ ପର୍ବ ଅଗସ୍ତି ଯାହା ଭଷି । ୧ ।
ମହା ବ୍ରହ୍ମଋଷି ଯେ ଅଗସ୍ତ ବକତା
ବଲଂକ ଦେଶ ଆଧିପତି ବଇବସୁତ ମନୁଶ୍ରୋତା । ୨ ।
ମାରକଣ୍ଡ ଶାହାସ୍ତ୍ର ବାକ୍ୟ ଯଗତେ ଯେହ୍ନେ ବଧି
ମକର ମାସେ ସ୍ନାହାନ କଲେ ଲବଣ ମଉଦଧି । ୩ ।
ଚଳନ୍ତ ଧର୍ମନନ୍ଦନ ମଉଦଧି ଉତ୍ତର କୂଳେ
ମହାଗହନ କରଞ୍ଜ ବନେ ପଶିଲେ ପଚ୍ଛିମ କୋଣଲେ । ୪ ।
ମହାପରମଳ ଦଶନ୍ତ ଉଚଶିଖା ବୃକ୍ଷମାନେ
ନାନା ପକ୍ଷୀ କ୍ରୀଡା କରନ୍ତ ସେହୁ ବନେ । ୫ ।
ଅନେକ କନ୍ଦର ଘୋର ଗିରି ବନ ଲତା
ଅତିଯ଼ ଉଚ୍ଚର୍ଗ ଶିଖା ଗଗନେ ଘୋଟିତା । ୬ ।
ସେ ବନ ତେଜି ଗଲେ ଚମ୍ପାଙ୍ଗ ନାମେ ବନ
କାମଭଦ୍ରା ନଦୀର ଉତ୍ତର ସନ୍ନିଧାନ । ୭ ।
ମାରକଣ୍ଡ ବୋଇଲେ ବାବୁ ଯେ ବନ ପଞ୍ଚବଟୀ
ଯେଥେ ଯାଗ ହାନବ କଲେ ଋଷଶିଂଗ ତପନଷ୍ଟ । ୮ ।
ବାବୁ ଅପୁତ୍ରିକ ହୋଇ ରଜା ଦଶରଥ ଥିଲା
ଋଷିଶିଙ୍ଗ ପ୍ରସନ୍ନେଣ ଚ୍ୟରି ପୁତ୍ର ପାଇଲା । ୯ ।
ଯୁଦ୍ଧେଷ୍ଟି ଦେବେ ବୋଇଲେ ସେ ଦଶରଥ ମହାରାଜା
ଯେକୋଇଣ କୋଟି ଚାରି ଅଟନ୍ତ ଭରଯ଼ଃ । ୧୦ ।
ସେ ରଜା ଅପୁତ୍ରିକ ହୋଇଲା କସ ଅର୍ଥେ
କାହାକୁ କେଉଂଣ ଦୋଷ କଲକ କେମନ୍ତେ । ୧୧
ଶୁଣ ହୋ ଯୁଦ୍ଧେଷ୍ଟି ଦେବ ବଦଯ଼ନ୍ତ ମାରକଣ୍ଡେ
ଦଶରଥ ମହାରାଜା ହାଦେ ଦୋଷ କଲା ଯେତେ । ୧୨ ।

ଇନ୍ଦ୍ର ଦେବତାର ଦଶରଥ ଅଟଇ ମଇତ୍ର
ଶନିଷ୍ଟର କଣ୍ଟାଳିଲା ଇନ୍ଦ୍ରଙ୍କୁ ରୋହିଣୀ ନକ୍ଷତ୍ରେ
ରକ୍ଷାକଲା ଦଶରଥ । ୧୩ ।

ଇନ୍ଦ୍ର ଦଶରଥଂକର ତେଣୁ ବଢାଇ ପୀରତି
ଅନୁବ୍ରତେ ଅଛେଦ ଅଭେଦ ଯେକମତି । ୧୪ ।
ବଇଶାଖ ଶୁକଳପକ୍ଷ ଯେ ତୃତୀୟାର ତିଥି
ଅମ୍ବରେ ଉଚ୍ଛବ ଯେ କଲକ ଯୁରପତି । ୧୫ ।
ଚନ୍ଦ୍ରବାର ନକ୍ଷତ୍ର ରୋହିଣୀ ବିଦ୍ୟମାନ
ସେ ଦିନ ଇନ୍ଦ୍ର ଦେବତାର ସ୍ୱନକ୍ଷତ୍ର ବନ୍ଦାପନା ବିଧାନ । ୧୬
ମାତଳୀକି ଡାକିଣ ବୋଲନ୍ତି ସୁରପତି
ପୁଷ୍ପକ ଘେନି ଅଯୋଧ୍ୟାକଇଂ ଯାଅ ଯା ତତ୍ତତି । ୧୭ ।
ଅମରେ ଉଚ୍ଛବ ବୋଲି କହିବୁ ମିତ ଆଗେ
ଦଶରଥ ରାଜାକଇଂ ତୁ ଘେନିଆସ ବେଗେ । ୧୮ ।
ଆଗ୍ୟାଂଯେ ମାତଳୀ ଧିଙ୍କାଯେ ପରବେଶ
ଦଶରଥ ରାଜାକଇଂ ବାରତା ପ୍ରକାଶ । ୧୯ ।
କୟେକୟୀ ରାଣୀ ସନ୍ନିଧେ କହିଲେ ମହୀପାଳ
ରାଜ୍ୟ ସମ୍ଭାଳ ଥାଅସି ଗୋ ମୁଂ ଯିବି ସ୍ୱର୍ଗଆଳ । ୨୦ ।
ବିବାନେଣ ବସିଣ ସେ ଅଯୋଧ୍ୟା ନରପତି
ପ୍ରବେଶ ମହାରାଜା ଅମର ବାରସ୍ୱନ୍ତି । ୨୧ ।

ଦଶରଥକଇଂ ଦେଖି ବାସବ ଅନେକ କଲା ଗଉରୋବ
ବହୁତ ଉଚ୍ଛବ ଯେ କରାଇଲେ ବାସବ । ୨୨ ।

ଅମରେ ଦଶରଥ ଅନେକ ପୂଜା ପାଇ
ସାନନ୍ଦେ ନୃପବର ଅଛୁ ତହିଂ ରହି । ୨୩ ।

ଦଶରଥ ଗବନ ତୃତୀୟାର ଦିନ
କୟେକୟୀ ହୋଇଲେ ପାକା ପରଶନ । ୨୪ ।
ମନ୍ଥରିକଇଂ ହକାରି ବୋଇଲେ କୟିକେୟୀ
ଦଶରଥ ରାଜାକଇଂ ଯେ ଘେନିଆସ ଯାଇଂ । ୨୫ ।

ଶୁଦ୍ଧ ସ୍ନାହାନ କାଳେ ସ୍ୱାମୀ ପାଶରେ ନ ଥିଲେ
ବହୁତ ପାତକ ଲଭଇ ପୁରାଣେ କହିଲେ । ୨୬ ।
କପିକେଶୀଂକ ବଚନେ ଚଳବଇଂ ମନ୍ତ୍ରି
ପ୍ରବେଶ ହୋଇଲା ଯାଇଂ ଅମର ସ୍ୱର୍ଗପୁରୀ । ୨୭ ।
ବଜେପୁ ଦଶରଥ ଅମର ସ୍ୱର୍ଗଆଳ
ମନ୍ତ୍ରିକଇଂ ଦେଖି ସେ ଉଠିଲେ ମହୀପାଳ । ୨୮ ।
ସନ୍ନିଧେଣ ସୁଲଭ କହଇ ନିଜ ଦାସୀ
ପାକା ଘରଣନ ଦେବ ହୋଇଲେ କପିକେଶୀ ଶୁଭ୍ରକେଶୀ । ୨୯ ।
ସପ୍ତମ ଦିନେ ଦେଖା ହୋଇବେ ଶୁଦ୍ଧସ୍ନାନ
ଇନ୍ଦ୍ର ଦେବତାକଇଂ କହି ରାଜା କରସି ଗମନ । ୩୦ ।
ଦାସୀର ବଚନେ ରାଜା ସାନନ୍ଦ ହୋଇଲା
ଇନ୍ଦ୍ରକଇଂ କହି ରାଜା ବିମାନେ ବସିଲା । ୩୧ ।
ବିମାନେ ବସିଣ ରାଜା ଆସଇ ଆନନ୍ଦେ
ହେଲେଣ ଯାଉଛି ରାଜା ଲମ୍ଭାଇଣ ବେନପାଦେ । ୩୨ ।
ଦେବମାତା କପିଳା ଶୋ.ଅଛି ଶୂନ୍ୟେ
ଉପରେ ବିମାନ ତାର ଗଲା ଅନ୍ତର୍ଧ୍ୟାନେ । ୩୩ ।
ଦଶରଥ ଚରଣ ବାଜିଲା ତାର ଶିଂଗେ
ଊର୍ଦ୍ଧ୍ୱମୁଖ ହୋଇ ଦେଖା ଗୃହିଂଲେ ଅପାଙ୍ଗେ । ୩୪ ।
ଆରେ ଦଶରଥ ହେଳ ହୋଇଲୁ ରମଣୀ ରସ ଅର୍ଥେ
ଯାଅ ଯା ଅପୁତ୍ରିକ ହୋଅ ଦଶରଥେ । ୩୫ ।
ଗୋମାତାର ବଚନେ ବିରସ ନରେନ୍ଦ୍ର
ଅଜ୍ଞାନେ ପାମର ମୁହିଂ କଲି ବଡ ମନ୍ଦ । ୩୬ ।
ଆଦିମାତାର ଶାପ ଯାଇ କି ମେଣ୍ଟଣ
ଆବର ଅଯୋଧ୍ୟାରେ ମୋର କେଉଂଣ କାରଣ । ୩୭ ।
ମନ୍ତ୍ରିକଇଂ ପଠିଆଇ ଚଳାଇ ନୃପବର
କପିଳାସେ ଖଟିଲ ସେ ଭଗନ୍ତ ଅପାର । ୩୮ ।
ଶୟନଥାନ ପରିମଳ ବାଟ ଭୁଠ ନିକଆଇ
ଶୟନ ଥାନେ ଧର୍ମ କୁଡେକ ଲଗାଇ । ୩୯ ।

ଯତନ କରି ରାଜା କାଟଇ ଗ୍ଭରଣ ଲୋଡାଏ
ଏହିମନ୍ତେ ଖଟିଲା ରାଜା କାଳ ବରଷ ଶହେ । ୪୦ ।
କପିଳାର ଦୟା ସେ ନ ବସିଲା କଦାଚିତେ
ପୁଣିହିଁ ଖଟିଲା ରାଏ ସହସ ବରଷ ପର୍ଯ୍ୟନ୍ତେ । ୪୧ ।
ତଥାପି ପ୍ରସନ୍ନ ନୋହି ବଚନ ନ ଫିଟି
ପୁଣ ବେନି ସହସ୍ର ବରଷ ପର୍ଯ୍ୟନ୍ତେ ରାଜା ଅଛି ଖଟି   ୪୨ ।
ପୁଣ ଏକବିଂଶ ଶତ ବରଷ ରାଏ ଯେ ଖଟିଲା
ଏତେମତେ ଗୋମାତାର ଦୟା ନ ବସିଲା । ୪୩ ।
ଗୋମାତା ବିଗୃହଇ ନନ୍ଦବନ ଖଣ୍ଡାଏକ ଧରି
ମୋତେ ମାରିବା ନିମନ୍ତେ ଅବା ଏ ଗୋଡାଏ କୋପକରି । ୪୪ ।
କୃତ ନାମେ ତ୍ରେତୟା ଯୁଗ ଭାନୁ ନାମେ ଅବଦ
ସୁଗନ୍ଧମ ନାମେ ମାସ ଅଟେ ଦିବସହ । ୪୫ ।
ଆଷାଢ କୃଷ୍ଣପକ୍ଷ ଯେ ପ୍ରତିପଦା ତିଥି
ମୂଳା ନାମେ ନକ୍ଷତ୍ର ଯେ ବାର ବୃହସ୍ପତି । ୪୬ ।
ବାଳବ ନାମେ କରଣ ଶୁଭ ନାମେ ଯୋଗ
ସେ ଦିନ କପିଳା ଚରିଗଲା ଯେ ଗହନ ବନମାର୍ଗ । ୪୭ ।
ଶ୍ରୀଭୂଜେ କୃପାଣେକ ଧରିଣ ନରସାଇଂ
କପିଳା ପଛକତି ରାଜା ଅଛଇ ଗୋଡିଆଇ । ୪୮ ।
ଆରେକ ମୂର୍ତ୍ତିରେ ଦେଖା ବ୍ୟାଘ୍ରେକ ଅବତରି
କପିଳା ଉପରକୁ ଧାମଇଂ ଗର୍ଜନ ନାଦ କରି । ୪୯ ।
ପଛେ ଥାଇ ଦେଖଇ ଅଜ ନୃପତିର ବଳା
ବ୍ୟାଘ୍ର ଆସୁଅଛି ମାତା ଗୋ ବଦନ ହୋଇ ପଳା । ୫୦ ।
ଆଧାର ରସେ ଦେଖା ନ ଶୁଣଇ ବାଣୀ
ମତ୍ତବ୍ୟାଘ୍ର କଣ୍ଠାଳ କଲାକ ହାଦେ ପୁଣି । ୫୧ ।
ଗାଈକ ପଛକରି ରାଜାର ତେଜ ଦିକାଶି
ଖଣ୍ଡାଏକ ଦେନ ରାଜା ବ୍ୟାଘ୍ରକଇଂ ଆକ୍ରୋଷି । ୫୨ ।
କାଞ୍ଚିତ ବ୍ୟାଘ୍ର ନୋହଇ ସେ କପିଳାର ମାୟା ସିନା
ଶ୍ରୀରେ ପଡି ଦଶରଥ ଅସିବର ହୋଇଲା ଶଚେତନା । ୫୩ ।

ଦଶରଥଙ୍କଇଂ ଧରି ପାଡ଼ିଲା ବ୍ୟାଘ୍ରବର
ମୋତେ ପଛେ ଭକ୍ଷ ଗାଈକି ରକ୍ଷାକର । ୫୪ ।
ମୋତେ ଧରି ବ୍ୟାଘ୍ର ରେ ମହ୍ମମାଂସ ଭକ୍ଷ
ଚଳାଉ କିନା କପିଳା ଗୋ କମ୍ପାଇ ରହିଅଛୁ । ୫୫ ।
ଯେସନେକ ବାକ୍ୟ ଯହୁଂ ବୋଇଲେ ଦଶରଥ
ଶୁଣି କପିଳା ଯେ ସଦୟେ ହୃଦଗତ । ୫୬ ।
ବ୍ୟାଘ୍ରର ରୂପ ଦେଖି ତତକ୍ଷଣେ କଲେ ତେଜ୍ୟା
ବାବୁ ତୋହୋର ଯେତେ ସତ ରେ ଦଶରଥ ମହାରାଜା । ୫୭ ।
ମୋତେ ଭଗତି ନିମନ୍ତେ ତୁ ଯେତେ ଦୁଃଖ ପାଇ
ଯାଅ ଯା ଦଶରଥ ରେ ତୋହୋର ଚାରିପୁତ୍ର ହୋଉ । ୫୮ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଚାରି ଦିଗପାଳେ
ରାମ ଲକ୍ଷ୍ମଣ ଭରଥ ଶତ୍ରୁଘନ ହୋଇ ଉପୁଜନ୍ତୁ ଚାରି କୋଳେ । ୫୯ ।
ବଦସ୍ପନ୍ତି ମ ରକଣ୍ଡ ଶୁଣ ହୋ ଯୁଧିଷ୍ଠି
କପିଳା ବର ପାଇ ଦଶରଥ ଋଷିଶିଙ୍ଗଙ୍କଇଂ ଖଞ୍ଜି । ୬୦ ।
ଚମ୍ପବାହାନ ରଜା ଯେ ଲୋମପାଦେ ବିବାଦୀ
ତେଣୁକରି କୋପ ହେ କଲେକ ଜନ୍ମୋଭେଦୀ । ୬୧ ।
ଲୋମପାଦ ରାଜ୍ୟ ନୋହିଲା ଜଳବୃଷ୍ଟି
ଶସ୍ୟଜାତ ନୋହିବାରୁ ପ୍ରଜା ମହାକଷ୍ଟି । ୬୨ ।
ବ୍ୟାସମୁନି କହିଲେ ଯେ ଋଷ୍ୟଶୃଙ୍ଗର କଥା
ପାଇବୁ କାରଣ ଆଣୁ ଯେବେ ବିଭାଣ୍ଡେକ ପୁତା । ୬୩ ।
ବେଶ୍ୟାନ୍ତ ପଠାଇ ଆଣିବୁ ବାଳଶିଷି
ନଉକାରେ ବସାଇ ଆଣ ବେଗେ ଋଷିଶିଙ୍ଗ ଋଷି । ୬୪ ।

---

୬୧।୧ ଅଙ୍ଗଦେଶର ରଜା ହେଲା ବ୍ରାହ୍ମଣେ ବିବାଦୀ ।—ଚ, ଠ, ଓ

୬୩।୨ { ଦୁଭସ୍ୟା ବ୍ୟାସେ କହିଲେ ଋଷିଶୃଙ୍ଗର କଥା
ପାଇବୁ କାରଣ ରଜା ଆଣ ତପୋବନ୍ତା ।—ଚ, ଠ, ଓ

ନିତ୍ୟକର୍ମ କାଳେ ମୁନି ଲୋଡ଼ିବେକ ପାଣି
ମେଘେ ବରଷିବେ ଯେ ମୂଷଳ ଧାର ଜାଣି । ୬୫ ।
ଏମନ୍ତ ଶୁଣି ଲୋମପାଦ ଜରତାକୁ ଗାଇ
ଋଷିଶିଂଗଂକ ନିକଟେ ଦଲେ ପଠିଆଇ ।୬୬ ।
ଜରତା ମୁନି ପାଶରେ ପ୍ରବେଶ ହୋଇଲେ
ନାନା କଉଶଳରେ ତାର ମନ ଭୁଲାଇଲେ । ୬୭ ।
ଜରତା ନିକଟୁ ମୁନି ସ୍ୱାଦୁ ଫଳ ଖାଇ
ଲୋମପାଦ ରାଜ୍ୟରେ ପ୍ରବେଶ ହେଲେ ଯାଇଂ । ୬୮ ।
ନିତ୍ୟକର୍ମ କାଳେ ମୁନି ଲୋଡ଼ିଲେକ ପାଣି
ମେଘେ ଯେ ବରଷିଲେ ମୂଷଳ ଧାର ଜାଣି । ୬୯ ।
ଦେଖିଣ ଲୋମପାଦ ଯେ ସାନନ୍ଦ ହୋଇଲା
ଶାନ୍ତା କନ୍ୟାକଇଂ ନେଇ ମୁନିଂକ ପ୍ରଦାନ କଲା । ୭୦ ।
ଦଶରଥ କୁମାରୀ ସେ ଯେ ଅଟଇ ଶାନ୍ତା
ଋଷିଂକ ଲଗିଲା ସେ ଦଶରଥର ପୁତ୍ର ଚିନ୍ତା ।୭୧ ।
ତେଣୁକରି ଦଶରଥ ସନ୍ତାନ ନିମନ୍ତେ
ଚରୁ ଘୁଞ୍ଚାଇଲେ ମୁନି କୁମାର ଜାତ ଅର୍ଥେ । ୭୨ ।
ଋଷିଶିଙ୍ଗ ବୋଇଲେ ଯେତେ ତୋହୋର ପ୍ରିୟବନ୍ତ
ଏହି ଚରୁ ନେଇ ତାହାନ୍ତ ହାତେ ଦିଅ ହୋଇବ ପୁତ୍ର ଆକୃତ । ୭୩ ।
ଘେନିଣ ମହାରାଜା ତତକ୍ଷଣ ଆଇଲା
ବୋଇଲା ଏହି ଚରୁ ଗ୍ରାସକର ଗୋ କଉଶଲ୍ୟା । ୭୪ ।
ବୋଲଇ କଉଶଲ୍ୟା କୟିକେୟୀ ମୋର ସଖୀ
ଅପୂର୍ବ ପଦାର୍ଥ ପାଇଲେ ପ୍ରିୟଲୋକକୁ ନ ଉପେଖି । ୭୫ ।
ଚରୁ ଅର୍ଦ୍ଧେକ ଘେନିଣ ଦଲେ କୟିକେୟୀଂକୁ
ଗ୍ରାସର କାଳେ ଯାଇଂ ସୁମିତ୍ରା ଦେଖିଲେ ତାହାଂକୁ । ୭୬ ।

---

୬୮ { ଜରତା ପଠାଆଇ ଭଣ୍ଡି ଲୋଡ଼ିଲା ମହାଯଜ୍ଞ
ନଉକାଏ ବସାଇ ଆଣିଲେ ଋଷିଶୃଙ୍ଗକଇଂ ବେଶ୍ୟାବୃତ୍ତି ।—ଣ

୭୫।୧ ବସ୍ତୁରନ୍ତ କଉଶଲ୍ୟା ସୁମିତ୍ରା ମୋର ସଖୀ ।—ଠ, ଚ, ଓ

ତୁ ଆମ୍ଭର ସଖୀ ଅଟନ୍ତି ଯୁଗତେ
ଦୁହେଁ ମୁଠିଏ ମୁଠିଏ ଦେଲେ ସୁମିତ୍ରାଙ୍କ ହାଥେ । ୭୭ ।
କଉଶଲ୍ୟାର ଗର୍ଭେ ଯେ ଶ୍ରୀରାମ ହେଲେ ଜାତ
କଇକେୟୀର ଗର୍ଭୁଂ ଭରତ ହୋଇଲେ ଧର୍ମଯୁତ । ୭୮ ।
ସୁମିତ୍ରାଂକୁ ମୁଠିଏ ମୁଠିଏ ଦୁହେଂ ଦେଲେ ବାଣ୍ଟି
ସେ ନିମନ୍ତେ ଲକ୍ଷ୍ମଣ ଶତ୍ରୁଘ୍ନ ପୁତ୍ର ବେନିଗୋଟି । ୭୯ ।
ମାରକଣ୍ଡେ ବୋଇଲେ ବାବୁ ଶୁଣ ଧର୍ମରାୟେ
ଯେ ବିଧିରେ ଦଶରଥଂକର ପୁତ୍ର ଯେ ତନୟେ । ୮୦ ।
ଯୁଦିଷ୍ଠି ବୋଇଲେ କପିଳା ଦଶରଥକଇଂ ବର ଦେଲା
ପୁତ୍ର ଦିଗପାଳଂକ କଥା କେମନ୍ତେ ହୋଇଲା । ୮୧ ।
ମାରକଣ୍ଡେ ବୋଇଲେ ବାବୁ ଶ୍ରୀରାମ ବିଷ୍ଣୁ ଜନ୍ମ ହୋଏ
ଭରଥ ଯେ ଇନ୍ଦ୍ର ଅବତାର ଅଟଇଟି ସ୍ୱୟଂଏ । ୮୨ ।
ଲକ୍ଷ୍ମଣ ପ୍ରତ୍ୟକ୍ଷେ ଅଟନ୍ତି ଈଶ୍ୱର ଦେବତା
ଶତ୍ରୁଘ୍ନ ଅଟନ୍ତି ସେ ଯେ ସାକ୍ଷାତେ ବିଧାତା । ୮୩ ।
ଯୁଦିଷ୍ଠି ଦେବ ବୋଇଲେ ଶୁଣିମା ମାରକଣ୍ଡେ
ଋଷିଶିଙ୍ଗର ମହିମାଂ କାହୁଂ ହୋଇଲା ଯେତେ । ୮୪ ।
ଶୁଣ ହୋ ପଣ୍ଡୁ ନନ୍ଦନ ସୋମବଂଶୀ
ଆଦିବ୍ରହ୍ମା ତହୁଂ ଉପୁଜିଲେ ପାଠ ମହାଋଷି । ୮୫ ।
ପାଠଋଷିର ନନ୍ଦନ ଅଟଇ ଜପେମୁନି
ଜପେମୁନି ନନ୍ଦନ ଯେ ବିପ୍ର କାଶୀପନି । ୮୬ ।
କାଶୀପନିର ନନ୍ଦନ ଦେବନିକ ମହାଯତି
ଉଗ୍ରନିକ ମହଋଷି ଯେହାଂକର ସନ୍ତତି । ୮୭ ।
ଉଗ୍ରନିଂକର ନନ୍ଦନ ଅଜନିକ କଇତପା
ଯେହାଂକର ନନ୍ଦନ ଅଟନ୍ତି ସତ୍ୟପା । ୮୮ ।
ସତ୍ୟପାର ନନ୍ଦନ କୁଣ୍ଡଳ ମହଋଷି
ଭାଣ୍ଡେକ ବୋଲାକର ତାହାଂକର ଶିଷି । ୮୯ ।
ଭାଣ୍ଡକର ନନ୍ଦନ ଯେ ବିଭାଣ୍ଡକ ଋଷି
ମହାତେଜା ମୁନି ଜାଣି କପିଳ ମହଋଷି । ୯୦ ।

ଅନେକ ସ୍ୱର୍ଗ ଭୁବନକଇଂ ଗଲେ ଅଷ୍ଟାବକ୍ର ମୁନି
ଇନ୍ଦ୍ର ଦେବତା ତାହାଙ୍କଇଂ ମାନ୍ୟ ନ କଲେକ ପୁଣି । ୯୧ ।
ଅମର ଅସ୍ଥାନେ ତାଙ୍କୁ ନ ଅଲେକ ବସି
ତହୁଂ ଅଭିମାନେ ବାହୁଡ଼ିଲେ ଅଷ୍ଟାବକ୍ର ଋଷି । ୯୨ ।
ଯେତେଣ ବୋଇଲେ ତାଂକୁ ଅଷ୍ଟାବକ୍ର ମୁନି
ଇନ୍ଦ୍ରପଦ ଯେନମଇଂ ଯେଁ ମୋର ସତ୍ୟବାଣୀ । ୯୩ ।
କାଳ କାମ ନିଦ୍ରା ଯେ ସମସ୍ତ କଲେ ତେଜ୍ୟା
ପୁଣ୍ୟତୋୟା ନଦୀ କୂଳେ ବସିଲେ କରଣ କୁଶଶଯ୍ୟା । ୯୪ ।
ବସିଲେକ ମହାତମା ଯେ ସକଳ ନିରାଶି
ପରମ ନିରାକୁଳ ଅଭୟେଁ ନାଥଂକୁ ସେ ତୋଷି । ୯୫ ।
ପାପ ଆତ୍ମା ବୁଡ଼ାଇ ନିରାଶି ତପୋବନ୍ତ
ନବଦ୍ୱାର ନିରୋଧି ଯେମେ ପିବଇ ବାତ । ୯୬ ।
ସମସ୍ତ ପ୍ରକୃତି ଯେ ଛାଡ଼ିଲା ଯେଁକଆତ୍ମା
ମହାଲୟେଁ ରହଇ ସେ ନିରାକାର ମହାତ୍ମା । ୯୭ ।
ହୃଦଗତେ ଚକ୍ଷୁ ବିସ୍ତୀର୍ଣ୍ଣ ଶୋଷିଲେ ପବନକାୟେଁ
ଶତେ ସହସ୍ର ବରଷ ସେ ବସିଲେ ଯେଁକଳୟେଁ । ୯୮ ।
ଋଷିଂକର ନିରାଶକୁ ଜାଣିଲେ ନାରଦ
କଷ୍ଟୋର ଦେଖିଣ ସେ ଜଣାଇଲେ ଦେବଇନ୍ଦ୍ର । ୯୯ ।
ଆହେ। ସୁରନାଥ ଅମରପୁରେ ତୋର ପଡ଼ିଲା ପ୍ରମାଦ
ଗୃହଅନେ ଅଷ୍ଟାବକ୍ର ଆସି ହୋଇବ ଦେବ ଇନ୍ଦ୍ର । ୧୦୦ ।
ନାରଦଂକ ମୁଖୁଂ ଯେଁସନେକ ବାକ୍ୟ ଶୁଣି
ଅଳମ୍ବୁଷା ଅପ୍ସରାଙ୍କ ପେଷିଲେ ବଜ୍ରପାଣି । ୧୦୧ ।
ତୁ ଯାଅ ଅଳମ୍ବୁଷା ଗୋ ପୁଣ୍ୟତୋୟା ନଦୀ କୂଳେ
ଅଷ୍ଟାବକ୍ର ତପ ଭଗ୍ନ କର ତୋହୋର ବୁଦ୍ଧିବଳେ । ୧୦୨ ।
ଜାନୁ ସ୍ତନ ଯଉବନ ଦେଖାଇଣ ତପୋଧନୀ
ଅଥବା ଆସ ତାଙ୍କୁ କୋଳକର ଯେନ । ୧୦୩ ।

---

୧୦୦।୨ ପରଅନ ଅଷ୍ଟାବକ୍ର ଆସି ହୋଇବ ଦେବ ଇନ୍ଦ୍ର ।—କ, ଟ

ସ୍ୱାମୀର ବଚନ ଶୁଣି ଚଳଇ ଅସକନ୍ଧା
ମନକାମନା କରି ତହିଁ ପାଡଲାକ ଛନ୍ଦା । ୧୦୪ ।
ଗାନରସ ଓଁକାର ମଧୁରସ ବାଣୀ
ପିକମାନେ ବନ ତେଜ୍ୟାକଲେ ତାହାର ବାଣୀ ଶୁଣି । ୧୦୫ ।
ଗୃହିଁଙ୍କ ମହାତମା ଯେ ଅବଲୋକନ କରି ଦୃଷ୍ଟି
ମଯ୍ହୁାଣ ଶର ବଜାତେ ଶରୀର ତାର ଫୁଟି । ୧୦୬ ।
ଅସକନ୍ଧାର ବଦନ ଗୃହିଁଙ୍କ ବିଭଣ୍ଡେ
ଛଳିଲ ମହାତମାର ଅମୋଘ ରେତ ଖଣ୍ଡେ । ୧୦୭ ।
ରେତ ମନ୍ଦାଯ୍ୟେକ ପଡନ୍ତେ ଯେ କର୍ମ ଲ ମେଦ୍ଦିନୀ
ଆରେକ ମନ୍ଦାକ ଯେ ଧଇଲେ ମହାମୁନି । ୧୦୮ ।
ରାଗେ ବୋଇଲେ ତୁ ଲେ ଦୁଷ୍ଟ ଯେ ଦୃଭାଗୀ
ଦୁଖେ ଅରଜିଲ ତପ କର୍ମେ ମୋର ଭାଗୀ । ୧୦୯ ।
ଯ୍ୟେ ମୃତୁ ମଣ୍ଡଳେ ତୁ ଲେ ଲେଞ୍ଚସ୍ତି ସ୍ତ୍ରୀ ହୋଇ
ମୁଖେ ରେତ କରଅ ତୁ ବ୍ରତ ହେତୁ ପାଇ । ୧୧୦ ।
ଯୁଢେଷ୍ଟି ପୃଚ୍ଛାକଲେ ଶୁଣିମା ମାରକଣ୍ଡେ
ଆରେକ ଧାତୁମନ୍ଦା କ କଲେ ବିହ୍ମଣ୍ଡେ । ୧୧୧ ।
ମାରକଣ୍ଡେ ବଦୟନ୍ତି ଯୁଢେଷ୍ଟି ବାକ୍ୟ ଶୁଣି
ଆରେକ ମନ୍ଦା ନଦୀରେ ପକାଇଲେ ଆଣି । ୧୧୨ ।
ଇସ୍କିନ୍ଦା ନାମେଣ ସେ ଯ୍ୟେକଇ ମୃଗୁଣୀ
ସେହୁ ତୃଷାଯ୍ୟେ ଜଳଘାଟେ ପିବନ୍ତେଣ ପାଣି । ୧୧୩ ।
ଶୁଦ୍ଧ ସସ୍ତ୍ର କ ପ୍ରାଯ୍ୟେ ଉପୁଟଆଉଂ ଥିଲା ନଳେ
ସେ ଯାଇଂ ବସିଲ ମୃଗୁଣୀ ଗର୍ଭସ୍ଥଳେ । ୧୧୪ ।
ଯେବଣ ଅମୋଘ ରେତ ସେ ଅଟଇ ମହାକଳ୍ପି
ସଇନ୍ଦୁ ପୁତେକ.ଯେ ହୋଇଲା ଉତପତ୍ତି । ୧୧୫ ।
ଲଖ ମୁଖ ନାସିକା ଗୃରୁଚରଣ ମନୁଷ୍ୟର ପିଣ୍ଡ
ରୋମାଞ୍ଚିତ ପିଙ୍ଗଳ ହରିଣ ଯେହ୍ନେ ମୁଣ୍ଡ । ୧୧୬ ।
ମୃଗୁଣୀ ଉପେକ୍ଷିଲା ଦେଖି ମନୁଷ୍ୟର ଭାବ
ପଡିଛି ବାଳଶିଶି ସେ ନଦୀର ପଚ୍ଛିମ ଠାବ । ୧୧୭ ।

ମାରକଣ୍ଡ କହିଲେ ଯୁଧେଷ୍ଠି ଦେବଂକ ଆଗ
ସେହି ସେ ମହାତମାଟି ଅଟଇ ଋଷିଶିଙ୍ଗ । ୧୧୮ ।
ଯୁଧେଷ୍ଠି ବୋଇଲେ ଶୁଣିମା ମାରକଣ୍ଡ ଦେବ
ଅମୋଘ ରେତ କେମନ୍ତେ ସଂହରିଲା ମୃଗୁଣୀର ଗର୍ଭ । ୧୧୯ ।

ମାରକଣ୍ଡେ ବୋଇଲେ ଶୁଣ ତୁମ୍ଭେ ତହିଂର କଥା
ବିଷ୍ଣୁ ଗର୍ଭ ବୋଲି ସତ୍ୟଯୁଗର ବାରତା । ୧୨୦ ।

ଋତୁପା ନାମେଣ ସେ ବୃହସ୍ପତି ଯାସ୍ତେ
ନିତ୍ୟକର୍ମ ବିଧାନେ ସେ ପଞ୍ଚୁବେଣୀ ଗଙ୍ଗାସ୍ତେ । ୧୨୧ ।

କାଳହୀନ ନାମେଣ ବ୍ରହ୍ମା କୃପାଜଳ ନାମେ ରୁଦ୍ର
ମାର୍ତ୍ତିଣ୍ଡ ନାମେ ଆଦିତ୍ୟ ଶଶାଂକ ନାମେ ଚନ୍ଦ୍ର । ୧୨୨ ।

ଶୁଚୀ ନାମେଣ ସେ ଅଟଇ ବସୁନ୍ଧରା
କଉଣ୍ଡଳ ନାମେ ବାତ ଗୃତକ ନାମେ ଅଙ୍ଗିରା । ୧୨୩ ।

ମଳୟୁବସନ୍ତ ବୋଲି ସମ୍ଭଛର ପ୍ରଭବ
ଅନନ୍ତ ନାମେ ବାସୁକ ଧର୍ମ ନାମେ ସୁଦେବ । ୧୨୪ ।

ବଳାକ୍ରମ ନାମେ ସେ କୁମ୍ଭମାସ ଆଦି
ଶୋଳକ ନାମେଣ ସେ ଦିବସ ସମ୍ପାଦି । ୧୨୫ ।

ସେ ଦିନ ବୃହସ୍ପତି ଗଲେ ପଞ୍ଚଧାରା ତୀର୍ଥେ
ହରିତା ନାମେ ରାକ୍ଷସୀକି ଭେଟିଲେ ବନସ୍ତେ । ୧୨୬ ।

ମାନିନୀ ରୂପ ସେ ଯେ ଅଟଇ ବରାଙ୍ଗନା
ଦେଖିଣ ପଣ୍ଡିତେ ଯେ ହୋଇଲେ ମୋହୋମନା । ୧୨୭ ।

---

୧୨୧।୧ ନିତ୍ୟକର୍ମ ବିଧାନେ ସେ ପଞ୍ଚୁବଟୀ ଗଙ୍ଗାସ୍ତେ ।—କ, ଛ

୧୨୪।୧ ମଳୟ ବସନ୍ତ ବୋଲି ବିଷ୍ଣୁ ପ୍ରଭବ ।—ଚ, ଞ

୧୨୨।୨ ମାର୍ତ୍ତିଣ୍ଡ ନାମେ ଆଦିତ୍ୟ ସତ୍ୟନାମେ ଚନ୍ଦ୍ର ।—ଞ, ଠ, ଚ, ଛ

୧୨୩।୨ ନହୁଷ ନାମେ ବାତ କରଞ୍ଜ ନାମେ ଅଙ୍ଗିରା ।—କ, ଡ, ଥ, ଞ

ମୋହେ ବଶ ହୋଇଣ ଯେ ଚଳିଲେ ପଣ୍ଡିତେ
ହରିତା ରାକ୍ଷସୀକି ଧରିଲେ କୋଳାଗ୍ରତେ । ୧୨୮ ।
ବୃହସ୍ପତିଙ୍କ ଦେଖି ସାନନ୍ଦ କଉଣୋପୀ
ମୁଖେ ରତିକରି ସେ ଲେଉଟଇ ଦୁରାପୀ । ୧୨୯ ।
ଅସୁକର ପୁତ୍ରଙ୍କେ ବୋଇଲେ ଶୁଣ ହୋ ବୃହସ୍ପତି
ମୁଖେ ରେତ କରାଇଲେ ହୋଇବଟି ଅମୋତ । ୧୩୦ ।
ରାକ୍ଷସୀ ବଚ୍ଚରିଇ ଆହେଷିବ ମହାଧାତୁ
ନପ୍ରାଣ କରାଇବ ବ୍ରାହ୍ମଣ ପାଉ ମୃତ୍ତୁ । ୧୩୧ ।
ମଲେଣ ମାଂସ ଯେବ୍ହାର ଖାଇବାଇଂ ଦ୍ଵିଜ
ମୁଖେ ଉପସ୍ଥ ଭରି ଲେଉଟଇ ମନ୍ଦ ହେଜ । ୧୩୨ ।
କଣ୍ଟୋର ଦେଖିଣ ଶାପ ଦେଲେ ପ୍ରଜାପତି
ତୁ ଲେ ରାକ୍ଷାସୁଣୀ ମୃଗୁଣୀ ହୋଇ ହୁଅ ଉତପତ୍ତି । ୧୩୩ ।
ଯେ୍ବ ବୃହସ୍ପତି ଜାତ ହେଉ ବଭାଣ୍ଡକ ଋଷି ହୋଇ
ଋଷ ନାମେ ହେତଯ୍ରା ଯୁଗେ ଯେ୍ବହାର ଧାତୁ ମୁଖେ ଭକ୍ଷ ଭୁହି
। ୧୩୪ ।

ଶୁଣ ହୋ ପାଣ୍ଡବେ ପ୍ରଜାପତିର ଶାପେ
ସେ ହରିତା ରାକ୍ଷସୀ ଜାତ ହୋଇଲା ମୃଗଣୀ ସରୁପେ । ୧୩୫ ।
ଯେ ସେ ବୃହସ୍ପତି ବଭାଣ୍ଡକ ହୋଇଅଛୁ
ପୂର୍ବର ଶାପେ ସେ ମୃଗୁଣୀ ଋଷିର ରେତ ଭକ୍ଷି (ଭକ୍ଷ୍ଲି) । ୧୩୬ ।
ଯୁଦ୍ଧେଷ୍ଠି ବୋଇଲେ ମାରକଣ୍ଡେ ଋଷିଶିଙ୍ଗ ଉପୁଜିଲା
ମୃଗୁଣୀ ନ ପାଳିଲା ସେ କେମନ୍ତେ ବ୍ରତିଲା । ୧୩୭ ।
ଶୁଣ ହୋ ଧର୍ମରାଜା ବଦଯ୍ଯନ୍ତ ମାରକଣ୍ଡେ
ଆହ୍ନିକ କାଳେ ଆମି ଦେଖିଲେ ବଭାଣ୍ଡେ । ୧୩୮ ।
ଅପୂର୍ବ କୁମାର ସେ ଅଟଇ ବେନ ଜାତି
ମାତା ପିତା ସଖା ତାର କେହି ନାହିଂ କତି । ୧୩୯ ।
ଧ୍ୟାନେଣ ଜାଣିଲେ ଯେ୍ବତ ଅଟଇ ଆତ୍ମର ବୀର୍ଯ୍ୟ
ମୃଗୁଣୀ ଭକ୍ଷନ୍ତେ ଉତପତ୍ତି ସଇନ୍ଦ୍ରୁ ଆତ୍ମଜ । ୧୪୦ ।

ବଭଳାତ ଦେଖି ସେ ଇଷ୍କ୍ୱାନ୍ୟା ଛାଡ଼ିଲା
ଧର୍ମେ କୁମର ମୋର ଯେତ୍କା ସେ ବ୍ରତିଲା । ୧୪୧ ।
କ୍ଷୀର ଅନ୍ୱେଷଣ ସେ ବ୍ରତଇ କେମନ୍ତେ
କମଣ୍ଡଳୁ ପାଣି ମନ୍ଦାଯେ ଦିଲେକ ଗର୍ଭଗତେ । ୧୪୨ ।
ସାଷ୍ଟାମ ହୋଇଲା ଯେ କୁମାର ଜଳପାନେ
ମେଘନ୍ତ ଗାଇଣ ଯେ ବୋଇଲେ ତପୋଧନେ । ୧୪୩ ।
ଯେତେବେଳେ ନନ୍ଦନ ଲୋଡ଼ିବ ମୋର ଜଳ
ଧାତକାରେ ଆସି ଜଳ ବରଷିବୁ ଆଖଣ୍ଡଳ । ୧୪୪ ।
ପାଣି ନ ପାଇ ପୁତ୍ର ମୋହୋର କରିବ ଯେବେ କୋପ
ଅମର ଦହନ ହୋଇବଟି ଯେହ୍ୱାର ଦିଲେ ଅଭିଶାପ । ୧୪୫ ।
ସେ ଋଷିଶିଙ୍ଗ ଯେବଣ ଭୂବନେ ଥାଇ
ଅନୁବ୍ରତେ ମେଘମାନେ ପଛେ ପଛେ ଗୋଡ଼ାଇ । ୧୪୬ ।
ମେଘଛନ୍ଦ ବନ୍ଧଇ ଋଷିଶିଙ୍ଗ ବ୍ରହ୍ମବେତ୍ତା
ତାହାର ଆଗ୍ୟାଂଯେ ଜଳବୃଷ୍ଟି କରଇ ବାସେବ ଦେବତା । ୧୪୭ ।
ଯେବଣ ମାହେନ୍ଦ୍ର ବେଳେ ଦେଖିଲୁ ଗୋକର୍ଣ୍ଣେଶ୍ୱର
ସେ ଋଷିଶିଙ୍ଗ ଅଟଇ ରୁଦ୍ର ଅବତାର । ୧୪୮ ।
ଲୋମପାଦ ରାଜ୍ୟରେ ହୋଇଲା ଅନାବୃଷ୍ଟି
ତାହାର ପ୍ରସାଦେ ରକ୍ଷାଗଲେ ଜୀବକୋଟି । ୧୪୯ ।
ଯୁଧେଷ୍ଠି ଦେବେ ବୋଇଲେ ତାକୁ ନଲେକ କେମନ୍ତେ
ଯେହ୍ୱା ସଞ୍ଚପି କରି କହିବା ମୁନି ମୋତେ । ୧୫୦ ।
ଶୁଣନ୍ତେ ଫିଟୁ ଯେ ସଂସାର ମୋହବ୍ୟଥା
ବଡ଼ାଇ କଉତୁକ ଯେ ଅମୃତ ରସ କଥା । ୧୫୧ ।
ଅଥବା ପାତେକ ଯେବେ କରିଥାନ୍ତି ପ୍ରାଣୀ
ହୋଇବେ ମୁକତ ଋଷିଶିଙ୍ଗ କଥା ଶୁଣି । ୧୫୨ ।
ମାରକଣ୍ଡେ ବୋଇଲେ ସେ ଦଶରଥର କୁମାରୀ
ପ୍ରଶୁରାମଂକର ଡରେ ନୁଆରିଲା ବାପକର । ୧୫୩ ।
ପିତା ଘରେ ଦୋହିତା ଅବଧାଇ ରଜୋବନ୍ତୀ ହୋଇଲେ
ବହିଲା ଶୋଣିତ ପିତୃଲୋକ ପିବନ୍ତି ଭଲେ । ୧୫୪ ।

ଦଶରଥ ନଆଇଲେ ତାହା ତଦ ନମନ୍ତୁ
ଲୋମପାଦ ପୁରେ ଥୋଇଲେ ମଇତ୍ର ହେତୁ । ୧୫୫ ।
ମେଘେ ବୋଇଲେ ହୋ ଲୋମପାଦ ମନ୍ଦ କଲ୍ଲ
ଅପୁତ୍ରିକ ରାଜାର ଯେ ଦୁହିତା କନ୍ୟା ସଂଘରଲ୍ଲ । (ସଂଭରଲା) । ୧୫୬ ।
ଲୋମପାଦ ରାଜାଙ୍କୁ ଦେବଗଣେ ଦୋଷ ଯେ ବହିଲେ
ତେଣୁ କର ରାଜ୍ୟରେ ତାର ବୃଷ୍ଟି ଯେ ନ କଲେ । ୧୫୭ ।
ଋଷିମାନଙ୍କ ଘେନ ରାଜା ଅନେକ ଯାଗଯଗ୍ୟଂ କଲ୍ଲ
ତଦ୍ୟାପି ରାଜ୍ୟ ତାର ଜଳବୃଷ୍ଟି ନୋହିଲ୍ଲ । ୧୫୮ ।
ମେଘେ ନ ପାଳିଲେ ପାଞ୍ଚବର୍ଷ ପର୍ଯ୍ୟନ୍ତେ
ଧନବନ୍ତ ଲୋକେ ବଞ୍ଚିଲେ ପୂର୍ବର ସୁକୃତେ । ୧୫୯ ।
ନଦୀରୁ ଖମା ଖୋଳାଇ ଜଳ ଆଣିଲେ ନରପତି
ରାଜ୍ୟଯାକ ବେଢ଼ାଇଣ ଖଣା ଖୋଳାଇଲେ ପ୍ରତିପ୍ରତି । ୧୬୦ ।
ତହୁଂ ପାଣି ଦେଇ ପ୍ରଜାଯେ ଶସ୍ୟକର
ଭୁଞ୍ଜନ୍ତି ସେ ପ୍ରଜାଜନେ କର୍ମକୁ ଆଦର । ୧୬୧ ।
ବ୍ୟାସେ ବୋଇଲେ ରାଜା ତୋର ରାଜ୍ୟେ ଯେବେ ନ ବରଷିଲ୍ଲ ପାଣି ।
ଜଳବୃଷ୍ଟି କରାଉ କନା ତୁ ଋଷିଶିଙ୍ଗକଇଂ ପାରୁ ଆଣି । ୧୬୨ ।
ଜରତା ନାମେଣ ବେଶ୍ୟା ଯେକଇ ପୀନସ୍ତନୀ
ସେ ଗଲ୍ଲ ବନସ୍ତେ ନାବେ ଅନେକ ବେଶ୍ୟାଗଣନ୍ତ ଘେନ । ୧୬୩ ।
ସଞ୍ଚପି କରଣ ତାହାଙ୍କୁ କହିଲେ ମୁନିବ୍ୟାସେ
ସରସ୍ୱତୀ କୂଳରେ ପ୍ରବେଶ ହେଲେ ପଞ୍ଚୁ ଦିବସେ । ୧୬୪ ।
ହର ହରଣୀ ବରହିଣୀ ହରିତା ହରିଣାକ୍ଷୀ
ମୋହିନୀ କାମସେଣୀ ଆବର ପଦ୍ମାକ୍ଷୀ । ୧୬୫ ।
ଜରତାର ଭୁଲେଣ ଅଷ୍ଟ ଯେ ଚଳୁଣ
ପୁଣ୍ୟତୋୟା ନଦୀକୂଳେ ଭେଟିଲେ ଋଷିଶିଙ୍ଗ ବ୍ରହ୍ମଗୃହ । ୧୬୬ ।

---

୧୫୯।୧ ମେଘେ ନ ପାଳିଲେ ବାର ବର୍ଷ ପର୍ଯ୍ୟନ୍ତେ ।—ଚ
୧୫୯।୧ ମେଘେ ନ ପାଳିଲେ ପଞ୍ଚଦଶ ବର୍ଷ ପର୍ଯ୍ୟନ୍ତେ ।—ଙ
୧୫୯।୨ ଧନବନ୍ତ ଲୋକେ ରାଜ୍ୟେ ବଞ୍ଚିଲେ ବଡସୁଖେ ।—ଛ, ଡ

ଦେଖିଲେ ଋଷଶୀଙ୍ଗ ଅଗ୍ୟାନ ବାଳଶିଷି
ନର୍ଧୂମ ଅଗ୍ନି ଜାଣି ତେଜ ପରକାଶି । ୧୬୭ ।
ବ୍ୟାଘ ଭଲ୍ଲୁ ଯେ ନାନା ଜୀବମାନେ
ତେଜେ ରହି ନୁଆରଲେ ଏକାଦଶ ଯୋଜନେ । ୧୬୮ ।
ଅନେକ ଅଳଂକାର ଘେନ ଭେଟିଲେ ସୁନ୍ଦରୀ
ଦେଖିଣ ଆଶ୍ରିଜ ଯେ ହୋଇଲେ ବ୍ରହ୍ମଋଷି । ୧୬୯ ।
ବୋଇଲେ କେବଣ ଦେଶର ତୁମ୍ଭେ ଅଟ ଗୋ ତପୋଧନୀ
ମନୋହର ବନେ ଥାଉଂ ବୋଲି ବୋଇଲେ କାମିନୀ । ୧୭୦ ।
ବନସ୍ତର ଫଳ ଗୁଡ଼ାଏ ଦିଲେ ଋଷଶୀଙ୍ଗ
ବୋଇଲେ ଏହା ବାଣ୍ଟିଣ କର ତୁମ୍ଭେ ଭୋଗ୍ୟ । ୧୭୧ ।
ଜରତା ବେଶ୍ୟା ବୋଇଲା ଏତ ଦିଶଇ ଅନ୍ୟାକୃତ
ଏହା ଆହାରେ ତୁମ୍ଭେ କେହେନେକ ଅଛ ବ୍ରତ । ୧୭୨ ।
ଆମ୍ଭ ବନସ୍ତର ତୁମ୍ଭଂକୁ ଦେଇ କିନା ଫଳ
ଖଣ୍ଡ ଶାକର ମିଶାଇ ଦିଲେ ଅମୃତପାଣି କଦଳ । ୧୭୩ ।
ଗୋଟିଏ ମୁଖେ ଭୁଞ୍ଜିଣ ମୁନି ପାଇଲେ ମହାରସ
ସୁଶୀତଳ ପଣା ଦିଲେ କର୍ପୂରର ବାସ । ୧୭୪ ।
ଆମ୍ଭ ବନସ୍ତର ଫଳ ଏ ଆମ୍ଭ ବନସ୍ତର ପାଣି
ଚନ୍ଦନ ଚତୁସମ ଲେପନ କଲେକ ଅଙ୍ଗେ ଆଣି । ୧୭୫ ।
ବୃକ୍ଷର ଲସା ବୋଲି ଲଗାଇଲେ ଜୁଆଦ କସ୍ତୁରୀ,
ବନପୁଷ୍ପ ବୋଲି ଆଭରଣ କଲେ ଆଣି କନକର ମାଳୀ । ୧୭୬ ।
ସିନ୍ଧୁଆ ନେତର ଯେ ଶେଯେକ ଦିଲେ ନେଇ
ଆମ୍ଭ ବନସ୍ତ ଜୀବମାନଂକର ଗୁଳ ଅଟଇଟି ଏହି । ୧୭୭ ।
ଆଉଜିବାକୁ ଦିଲେ ସେ ନେତର ମୁଚୁଳି
ବହୁ ଭକ୍ତିରେ ଗୁମୁରେ ଖଟିଲେକ ବାଳୀ । ୧୭୮ ।

---

୧୭୫।୨ ଚନ୍ଦନ କସ୍ତୁରୀ ବାଳୀ ଲେପିଲେ ବଭୂତ ବୋଲି ଆଣି ।—କ, ଚ

ଶୁଣିଲେ ଋଷିଶିଙ୍ଗ ଅପସରାଙ୍କୁ ଆଜ୍ଞକ
ବୋଇଲେ ତୁମ୍ଭ ବନସ୍ତକୁ ଯିବା କ ଯେମନ୍ତ ବନସ୍ତ ତେଜ । ୧୭୯ ।
ଯେମ୍ନ ବନର ଜଳ ଫୁଟିଯେ଼ ଯେବେ ଖାଇ
ଶରୀର ଦୁଖୀ ହୋଇ ଶଳକ୍ଷମା ବାଧଇ । ୧୮୦ ।
ଯେମ୍ନ ବୃକ୍ଷମାନଂକର ଲସି ଲେପିଲେ
ହାଡ ମାଯେ଼ଂସ ମିଳାଇ ଶରୀରେ ପଡ଼ିଲେ । ୧୮୧ ।
ଋଷିଶିଙ୍ଗ ବୋଇଲେ ଆମ୍ଭନ୍ତ ଦଯ଼ା କରିବ କ ତପୋଧନୀ
ତୁମ୍ଭ ତପ ବନସ୍ତକଇଂ ଆମ୍ଭନ୍ତ ଯାଂଅ କନା ଘେନ । ୧୮୨ ।
ଅନ୍ୟାକର ବନ ଯେମ୍ଥି ଦନ୍ତେହେଂ ନ ଥାଇ
ତୁମ୍ଭର ବନରେ ଯେମ୍ହେନ୍ନେକ ପଦାର୍ଥ ଯେବେ ପାଇ । ୧୮୩ ।
ଜରତା ବୋଇଲା ଆମ୍ଭେ ବେଗେ ଯେମ୍ଥୁ ଯାଉଂ
ଜନାଦନ ଅନ୍ତରେ ପ୍ରବେଶ ଆସି ହୋଉଂ । ୧୮୪ ।
ଋଷିଂକ ହାଥ ଦେଇ ଚଳିଲା ନାଗରୀ
ଲୋମପାଦ ଆଗେ କହିଲେ ଶେଷ କରି । ୧୮୫ ।
ବଡ଼ାଇ ଆଶ୍ରି ଜ ସେ ଋଷିଶିଙ୍ଗର ମହିମା
ପରମ ନାରୀକୁଳ ସେ ଅଟଇ ମହାତମା । ୧୮୬ ।
ବଳାତକାରେ ଦେବ ତାଂକୁ ଆଣିତ ନୁଆର
ନ ଯିବ ବୋଲ ବୋଇଲେ ମନ୍ଦର ଗିରିସର । ୧୮୭ ।
ଜଟଳେଣ ନାଉକା ମେଲ ହୋ ଦଣ୍ଡସାଇଂ
ଚକିତ ଚକିତ କରି ଆଣୁ ନାବରେ ବସାଇ । ୧୮୮ ।
ସ୍ବପନାବ ଗୋଟିଯେ଼ ମେଲିଲେ ନଦୀଜଳେ
ଫଳନ୍ତ ବୃକ୍ଷମାନେ ନାବରେ ରୋପିଲେ କୁଚୋଡ଼ାଳେ । ୧୮୯ ।
ନାବର ଉପରେ ମେଡ଼ ମଣ୍ଡୋପଜଗତି
ଖଞ୍ଜିତ ମଣି ମାଣିକ୍ୟ ଭୁବନ ବାରସ୍ୱତି । ୧୯୦ ।

---

୮୧।୨ ମାଯେ଼ଂସ ମିଳାଇ ତା ହାଡ ଗଳାଇ ହାଦେ ଭଲେ ।—ଣ
୧୮୫।୨ ଲୋମପାଦ ଆଗେ କହିଲେ ବେଗକରି ।—ନ, ଣ,

ଅନେକ ଚନ୍ଦ ପିତୁଳୀ କଲେକ ଲେଖନ
ବିବିଧ ରତ୍ନମାନ ଝଲକନ୍ତି ପାଟାଂଗ ନେତ ଚନ୍ଦ୍ର । ୧୯୧ ।
ବହୁତ ଅପୂର୍ବ ଦ୍ରବ୍ୟମାନ ପୂରେଇଲେ ନାବେ
ଚଳିଲେ କାମିନୀମାନେ ବହୁତ ମଣ୍ଡଗର୍ବେ । ୧୯୨ ।
ପ୍ରେକଲ୍ଲବରେ ପଡଇ ଶତେକ ଆହୁଲା
ପବନଠୁଂ ବେଗ ହୋଇ ଜରତା ସେ ଗଲା । ୧୯୩ ।
ଶୁଣ ହୋ ଯୁଧିଷ୍ଠି ବଦୟନ୍ତି ମାରକଣ୍ଡେ
ଋଷିଶିଙ୍ଗ ସନ୍ନିଧେ ବିଜୟେ ବିଭାଣ୍ଡେ । ୧୯୪ ।
ଆମୋଦିତ ଗନ୍ଧ ଚନ୍ଦନ କର୍ପୂର ଜଆଦ କସ୍ତୁରୀ
ମଣି ମାଣିକ୍ୟ ମାଳ ଗୋଟିୟେ ହୃଦରେ ଅଛି ଭରି । ୧୯୫ ।
ବିଭାଣ୍ଡେକ ବୋଇଲେ ବାବୁ ଯେତ ବଡ଼ାଇ ଅପୂରୁବ
ଯେମନ୍ତ କାହିଂ ତୁ ପାଇଲୁ ରେ ବନସ୍ତରେ ଯେବ । ୧୯୬ ।
ଋଷିଶିଙ୍ଗ ବୋଇଲେ ବାଭ୍ୟେ ଦେଖିଲୁ ବଡ ତପୀ
ବଡ ସୁସଞ୍ଜ ସୁନ୍ଦର ଦିଶନ୍ତି ବ୍ରହ୍ମରୂପୀ । ୧୯୭ ।
ତାହାଂକର ତପ ମହିମାଂ ଅଟଇ ଦେବ ଧନ
ଆମ୍ଭନ୍ତ ନେଇଣ ସେ ଲୋଡନ୍ତି ସଙ୍ଗେ ଘେନ । ୧୯୮ ।
ଧ୍ୟାନେଣ ଜାଣିଲେ ସେ ବିଭାଣ୍ଡେକ ମହାଋଷ
ଜଳଦାନ ନିମନ୍ତେ ଜରତା ଲୋମପାଦ ପେଷି । ୧୯୯ ।
ଉପାୟେ ବୁଦ୍ଧି ରଞ୍ଜି ଭଣ୍ଡିଗଲେ ଚତୁରୀ
ଯେତେ ବାଳପଣ୍ଡି ପଡିଲା ନାଗରୀ ବଚନେ କରି । ୨୦୦ ।
ଋଷିଶିଙ୍ଗ ବୋଇଲେ ବାଭ୍ୟେ ଯେମନ୍ତ ବୋଲ ମହିମାଂ
ତାହାଂକର ତପକୁ ସରି ନୋହନ୍ତି ବେଦବ୍ରହ୍ମା । ୨୦୧ ।
ତୁମ୍ଭେ ଯେ ନ ଥିଲ ସେ ଅଇଲେ ଯେବଣ ଦିନେ
ମୂକତ ହୁଅନ୍ତି ନା ସେ ମୁନିଂକ ଦରଶନେ । ୨୦୨ ।

---

୧୯୩।୧ ଯେକାଲ୍ଲବରେ ପଡଇ ଶତେକ ଆହୁଲା ।— କେତେକ ପୋଥି
୧୯୫।୨ ଯେଣୁ ତ୍ରିଗୁଣରୂପ ଜନମୁଂ ଦୃଷ୍ଟି ନ କରି । —ଖ, ନ

ଆସିବେ ବୋଲି ବୋଇଲେ ସେ ଦ୍ୱାଦଶ ଅନ୍ତରେ
ଦେଖିବଟିକି କେମନ୍ତ ମହିମା ତାହାଙ୍କରେ । ୨୦୩ ।

ବିଭାଣ୍ଡିକ ବୋଇଲେ ବାବୁ ତାହାଙ୍କ ତୁଲେ ଯାଅ
ସେହି ତପୋବନେ ତୁ ସମୟେ ଯାଇ ରହ । ୨୦୪ ।

ପୂର୍ବକଇଂ ସେହି ବନେ ଗୁଡିଗଲେ ତପୋଧମୀ
ଚଳନ୍ତ କାମିନୀମାନେ ନାଉକା ବେଗେ ଯେନ । ୨୦୫ ।

ବିଳମ୍ବ ଦେଖି ଋଷିଶୀଙ୍ଗ ବିଚାରିଲେ
କି ଅବା ଋଷିମାନେ ଆମ୍ଭନ୍ତ ପାଶୋରିଲେ । ୨୦୬ ।

ହୃଦଗତେ ବିଚାରିଣ ବାଟ ସେ ଗୃହାନ୍ତେ
ନାବ ଲଗିଲା ଯାଇଂଣ ଗହନ ଗିରି ବନସ୍ତେ । ୨୦୭ ।

ଯେତେବେଳେ ନାବରୁ ବାହାର ହୋଇଲେ ବାଳୀ
ଋଷିଶୀଙ୍ଗ ବୋଇଲେ ତୁମ୍ଭେ ଅଟ ତପଶାଳୀ । ୨୦୮ ।

ଅନେକ ଗନ୍ଧ ଚନ୍ଦନ କଲେକ ଲେପନ
ଅମିୟୂରସ ମୁନିଂଙ୍କ କରାଇଲେକ ଆପ୍ୟାନ । ୨୦୯ ।

ବେଗେ ଯିବା ବୋଲି ଯେ ସନମତ କଲେ ବାଳଯତି
ଚଳାଇ ନାବରେ ନେଇ ବସାଇଲେ ଯୁବତୀ । ୨୧୦ ।

ବେଗ ବେଗ କରିଣ ସେ ବାହିଲେ ନାଉକା
ଦେଖାଇଲେ ସୁନ୍ଦରୀଏ ଅନେକ ଚିତ୍ରରେଖା । ୨୧୧ ।

କୋଳେ ସୁନ୍ଦରୀଏ ଯେ ବସାଇଲେ ନେଇ
ହୃଦରେ ଲଗାଇ ମୁଖେ ଚୁମ୍ବନ ସେ ଦେଇ । ୨୧୨ ।

---

୨୦୭।୨ ନାବ ଲଗିଲା ଯାଇଂଣ ପ୍ରାଗବେଣୀ ବନସ୍ତେ ।—କ

୨୦୮।୨ "ଋଷିଶିଙ୍ଗ ବୋଇଲେ ତୁମ୍ଭେ ଅଟ ତପଶାଳୀ ।
ପରେ 'ଖ' ପୋଥିରେ ଅଧିକା ପାଠ :—
ଋଷ୍ୟଶୃଙ୍ଗ ପାଶରେ ବାରବେଶ୍ୟା ପ୍ରବେଶିଲେ
ପ୍ରଣିପତ୍ୟ ହୋଇଣ ଯେ ମାନ୍ୟଧର୍ମ କଲେ ।

ବିବସନ ହୋଇଣ ସେ ଦେଖାନ୍ତି ସ୍ତନ ଜାନୁ
ଦେଖିଣ ସାନନ୍ଦ ହୋଇଲେ ତପୋଧନୁ । ୨୧୩ ।
ଋଷିଶିଙ୍ଗ ଅଛନ୍ତି ସେ ଜରତା କୋଳେ ବସି
ବୋଲନ୍ତି ମହାତମା ଯେ ତାର ସ୍ତନକୁ ଆଙ୍ଗୁଳି । ୨୧୪ ।
ତୁମ୍ଭର ହୃଦୟରେ ଯେ କସ ସୁସଞ୍ଚ
ତାଙ୍କ ପ୍ରାୟେକ ତ ଦିଶନ୍ତି ଯେହ୍ନ ଉଚ୍ଚ ଉଚ୍ଚ । ୨୧୫ ।
ଜରତା ବୋଇଲା ଯେ ଆମ୍ଭର ଗାଢତପେ କର
ମହାଲିଙ୍ଗ ଦେବତାଯେ ବିଜୟେ କିମ୍ବା ଉର । ୨୧୬ ।
ଋଷ ଶିଙ୍ଗ ହସି ବୋଇଲେ ବାବୁ ତୁମ୍ଭର ତପସିଦ୍ଧି
କେତେକାଳ ତପେ ସଦାନନ୍ଦଙ୍କୁ ହୋଦେ ବୋଧି । ୨୧୭ ।
ଗୃହପାଖ ଆଙ୍ଗୁଳି ବୋଲନ୍ତି ଯେତେ ଉଚ୍ଚ
ବେନ ପଞ୍ଜରା ଭେଦ ଦିଶନ୍ତି ଅଗ୍ରାଯୁ ସୁସଞ୍ଚ । ୨୧୮ ।
ଜରତା ବୋଇଲା ପ୍ରଣପତ୍ୟ ହୋଇଁ ନତ ନିୟୁନେହ
ତେଣୁ କର ତାଙ୍କ ଆମ୍ଭର ଫଳିତ ଅଙ୍ଗଗାହ । ୨୧୯ ।
ପଚ୍ଛଘୁଞ୍ଚା ଦେଇଣ ସେ ବୋଲଇ ବାଳଶିଷି
କରପଦ୍ମ ଯୋଡି ବୋଇଲେ ସାହା ସାହା ଦେବକାଶୀ । ୨୨୦ ।
କରପଦ୍ମ ଯୋଡିଣ ବିନୟ ଭଗତେ
ପୁଣ ପୁଣ ଋଷିଶୃଙ୍ଗ ହୁଅନ୍ତି ପ୍ରଣପତ୍ୟେ । ୨୨୧ ।
ପଚ୍ଛରଇ ବାଳପତ ଯେ ଯେବେ କାଶୀପତ
ତାଙ୍କ ଅଛୁ ଯେଥେ ନାହିଁ ଯେ ଶକତ । ୨୨୨ ।
ଋଷିଶିଙ୍ଗ ବଚନେ ସେ ହୋଇଲେ ଉଲଗ୍ନଶାହା
ଜାନୁ ବସ୍ତ୍ର ଦେଖାଇଲେ ଶକତ ଅଟଇ ଯେହ୍ନ । ୨୨୩ ।

---

୨୨୩।୨ "ଜାନୁ ବସ୍ତ୍ର ଦେଖାଇଲେ ଶକତ ଅଟଇ ଯେହ୍ନ"
ପରେ 'ଖ, ଣ, ନ' ପୋଥିରେ ପାଠ :—
ଜାନୁଦ୍ୱୟ ବଦାର ଦେଖାଇଲେ ଯେଥେ ଆଇଁ ଶକତ ରହ୍ନ ।
ଋଷ୍ୟଶୃଙ୍ଗ ବୋଇଲେ ଶୁଣ ହୋ ମୁନିବର
କେମନ୍ତେ କଣ ତୁମ୍ଭେ ଉପମାନ କର ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ଋଷିଣୀଙ୍କୁ ବୋଇଲେ ଶୁଣ ହୋ ମୁନିବର
କେମନ୍ତେ କର ତୁମ୍ଭେ ଜପମନ୍ତ୍ର କର । ୨୨୪ ।

ପୁଣି ଋଷିଣୀଙ୍କୁ ବସାଇଲେ ବେନିଜାନୁ ମଧ୍ୟେ
ଇନ୍ଦ୍ରୀ ବୁଡ଼ାଇଲେ ନେଇ ଭଗକୁଣ୍ଡେ ସଧେ । ୨୨୫ ।

କଟି ଚୋଳଣ ଯେ ଚଳାବନ୍ତ ବେନି କରେ
ଶୃଙ୍ଗାର ସୁନ୍ଦରୀ କରାବନ୍ତ କୁଚସ୍ଥରେ । ୨୨୬ ।

ରମଣେ କ୍ଷୁନ୍ତରେ କରାଇଲେ ସୁଖଜାତ
ଏହୁ ସେ ଜପମନ୍ତ୍ର ତୁମ୍ଭର ଧନ୍ୟ ହେ ମହତ । ୨୨୭ ।

ଆମ୍ଭର ପିତାଏହୁ କରୁଥାନ୍ତି ଜପ
ତାହାଂକର ଦେଖିଲା ନାହିଂତ ଏହୁସନେକ ସ୍ୱରୂପ । ୨୨୮ ।

ଯପମନ୍ତ୍ର ଧର୍ମେ ଅଛଇ ବଡ ସୁଖ
ଆମ୍ଭର ତପଧର୍ମେ ଅଛଇ ମହାଦୁଖ । ୨୨୯ ।

---

[ପୂର୍ବପୃଷ୍ଠାର ପାଠାନ୍ତର]

ଇନ୍ଦ୍ରୀମୁଖେ ଭଗ ବିବିଧ ଯେ ଘଷି
ଏହୁ ସେ ଜପମନ୍ତ୍ର ଆମ୍ଭର ମହର୍ଷି ।

ତନ୍ଦ ଉପରେ ଭଗଇନ୍ଦ୍ରୀ ଯେ ଲଗାଇ
କର ଚୁଳଣ ସେ ମୁନିଂକ ଶିଖାଇ ।

ରମଣରେ ସେ କୁମରର ହୋଇଲା ସୁଖଜାତ
ବଣ୍ୟାଂକର ମେଲେ ସେ ହୋଇଲା ମୋହିତ ।

ସକଳ ଜପମନ୍ତ୍ର ଅଛଇ ମହାଦୁଖ
ଜପମନ୍ତ୍ର ମଧ୍ୟେ ଏହୁ ବଡ ସୁଖ ।

ଭଲାଇ କଲୁ ଆମ୍ଭେ ସୁଜନେ କଲେ ଗୋଷ୍ଠୀ
ତପମନ୍ତ୍ର ଜୀବନ ସାର୍ଥକ ସାସୃଗୋଟି ।—ଗ, ଣ, ନ

୨୨୭ { ଯେସନେକ ପ୍ରଭାବେ ରମଣ ପ୍ରଭାବ
ତେସନ ସରୂପ କର କରାନ୍ତ ନାସ୍ତିବେଗ ।—କ, ତ

ଭଲହିଁ ସେ କଲୁ ଆମ୍ଭେ ସୁଜନେ ପାଇଲୁ ଗୋଷ୍ଠି
ଜପମନ୍ତ୍ର ସାର୍ଥକ ଯେ ଜୀବନ ଗୋଟି । ୨୩୦ ।
ଅନେକ ହରଷେ ନାଗରୀ ସେ କରାଇଲେ ରତି
ସଇନ୍ଦୁ ପୂର୍ବେକ ତହିଁ ହୋଇଲା ଉତପତ୍ତି । ୨୩୧ ।
ନାଉକା ବଦାନେ ସେ ମହାତମାର ତନୁ
ସେ ପୁତ୍ର ନାମଗୋଟି ଦିଲେ ଶତମନୁ । ୨୩୨ ।
ଚକଟେ ଚକଟେ କରି ସେ କରାଇଲେ ରତି
ବାହାନ୍ତି ନାଉକା ଯେ ପବନୁଂ ଆପାତି । ୨୩୩ ।
ପ୍ରବେଶ ହୋଇଲେ ଯାଇଂ ଲୋମପାଦ ଦେଶେ
ଦଣ୍ଡ ଘେନ ନରେନ୍ଦ୍ର ଆସଇ ହରଷେ । ୨୩୪ ।
ଆଲମ୍ବ ପାଟଛତ୍ର ଉଡଇ ଗହଣେ
ରଥ ଗଜ ଅଶ୍ୱ ଅନେକ ସନ୍ୟମାନେ । ୨୩୫ ।
ଚକିତ ଚକିତ ହୋଇ ନାବରୁ ଓହ୍ଲାଇ
ଉଚ୍ଛବ ନବରେ ମୁନିଂକ ବସାଇଲେ ନେଇ । ୨୩୬ ।
ଅନେକ ଅମନାତ୍ୟ ସେବଇ ଲୋମପାଦେ
ଲଭିଲ ପରମଗତି ଭୃମୁର ପରସାଦେ । ୨୩୭ ।
ଋଷିଶିଙ୍ଗ ବୋଇଲେ ଯେତେ ବତାଇ କୂଟୋହୋଇ
ଯେତେବେସ୍ଥାନେ ଜରତା ଭୃମୁ ତପସ୍ଥାନ ଚିରକାଳ । ୨୩୮ ।
ଜରତା ବୋଇଲା ଯେ ଲୋମପାଦ ରାଯେ
ଭୃମୁର ଦେଖିବା ନିମନ୍ତେଣ ସନ୍ୟ ଘେନ ଆଯେ । ୨୩୯ ।
ଋଷିଶିଙ୍ଗ ବୋଇଲେ କମ୍ପେ ଘୋଡାଇଲ ଭୃମୁ ଅଂଗ
ଯେ ସଂସାର ଜନମାନେ ଦେଖନ୍ତି ନାହିଂ କ ଭୃମୁ ଲିଂଗ ! ୨୪୦ ।
ଜରତା ବୋଇଲା ଯେତେ ଗୋପ୍ୟାନର୍ଥେ ଗୋପ୍ୟାନ ଦେବତା
ଗୋପ୍ୟାନ କଥା ଯେତେ ନ କର ଉଦ୍ଧତା । ୨୪୧ ।
ଆହାନକ କର୍ମ ଯେବେ ସାର ମହଉଷି
ଜରତାର ଭୁଲେ ଅଛନ୍ତି ମୁନି ଋଷି । ୨୪୨ ।

---

୨୩୩ { କଷ୍ଟତେ କଷ୍ଟତେ ସେ କରାଇଲେ ରତି
ବାହାନ୍ତି କଇବର୍ତ୍ତେ ନାବ ପବନୁଂ ଆପାତି ।—ଛ, ଘ, ଛ

ପାଣି ଆଣ ଋଷ ବୋଇଲେ କରିବା ତ୍ରିକାଳ ସନ୍ଧ୍ୟା
ଲୋମପାଦ ପ୍ରଣପତ୍ୟ ହୋଇ କହଇ ମହାକ୍ରୋଧା । ୨୪୩ ।
ମୋହୋର ରାଜ୍ୟେ ମୁନି ହେ ନାହିଂ ଜଳବୃଷ୍ଟି
ଶୁଣିଣ ଋଷିଶିଙ୍ଗ ଆକାଶକଇଂ ଦିଲେ ଦୃଷ୍ଟି । ୨୪୪ ।
ବୋଇଲେ ଋଷିଶିଙ୍ଗ ସତ୍ୟ ଘେନ ଲୋମପାଦ ଯାଅ ଯା ନିଜପୁରେ
ମହାବୃଷ୍ଟି ସେହିକ୍ଷଣି ହୋଇବ ସମ୍ପୂରେ । ୨୪୫ ।
ଋଷିଶିଙ୍ଗ ଗୃହାନ୍ତେ ଗର୍ଜିଲେ ମେଘମାଳେ
ଧି ଧି କାର କରି ବୃଷ୍ଟି ହୋଇଲା ପୃଥିବୀ ମଣ୍ଡଳେ । ୨୪୬ ।
ନଦୀଖାଲ ପୁଷ୍କରଣୀ ପୂରିଲା ହୋଇ ସେକଖଣ୍ଡ
ଖାଲ ଠିକର ପୂରଣ ହୋଇଲାକ ଗଣ୍ଡ । ୨୪୭ ।
ଶୁଣ ହୋ କୌନ୍ତେ ବଦଯୁନ୍ତ ମାରକଣ୍ଡେ
ଋଷିଶିଙ୍ଗଙ୍କ ମହିମାଂ ସେସନେକ ବ୍ରହ୍ମାଣ୍ଡେ । ୨୪୮ ।
ଶ୍ରୀମାର୍କଣ୍ଡ ବଚନେ ପାଣ୍ଡବେ ମନେ ଶାନ୍ତ ଭଜ
ତହୁଂ ଯେ ଚଳିଗଲେ ଶାକଲ୍ୟ ବନ ତେଜ । ୨୪୯ ।
ଚିତ୍ରକୂଟ ବୋଲାଣ ଯେ ସେକଇ ପର୍ବତେ
ତହିଂ ଯାଇଂ ପ୍ରବେଶ ଯେ ହୋଇଲେ ପଣ୍ଡୁସୁତେ । ୨୫୦ ।
ବଡ଼ାଇ ସୁସଞ୍ଚ ପଚିମେକ ସେହୁ ବନ
ତହିଂର ମଧ୍ୟସ୍ଥଳେ ଦଣ୍ଡକ ଅରଣ୍ୟ । ୨୫୧ ।
ଯେତେକ ବୃକ୍ଷ ତହିଂ ଦେଖିଲେ ପଣ୍ଡ ନାନା
କୁଂକୁମ ବର୍ଣ୍ଣ ପ୍ରାପ୍ତେକ ଦିଶନ୍ତ ସେହୁ ବନ । ୨୫୨ ।
ଶୁଦ୍ଧ କଣପୁମପୁ ଦିଶନ୍ତ ଧରଣୀ
ଦିବସ ପ୍ରାପ୍ତେକ ଯେ ଦିଶଇ ରପୁଣୀ । ୨୫୩ ।
ଯୁଧିଷ୍ଠି ଦେବ ପୁଚ୍ଛାକଲେ ସେ ବନସ୍ତର କଥା
ବଡ଼ାଇ ସୁନ୍ଦର ଦିଶଇ ମାରକଣ୍ଡେ ହେ ସେ ବନସ୍ତ ବ୍ୟବସ୍ଥା ।୨୫୪ ।
ବଦଯୁନ୍ତ ମାରକଣ୍ଡେ ଶୁଣ ହୋ କୌନ୍ତେୟାର ସୁତ
ତ୍ରେତାୟୁଗେ ରାମଚନ୍ଦ୍ରେ ପୁଣ୍ୟକୁଟୀ ରଞ୍ଚି ରହିଥିଲେ ସେଥ ।୨୫୫।
ସେ ଗୋଦାବରୀ ନଦୀରେ ସ୍ନାହାନ କରନ୍ତ ଜନକ ନନ୍ଦନୀ
ବନଜୀବମାନେ ପିବନ୍ତ ସେ ସ୍ନାହାନର ପାଣି । ୨୫୬ ।

ସେ ରାମ ସୀତାସ୍ଥା ଉଦକ ସମ୍ଭାଇଣ କାଯ୍ୟେ
ତେନ୍ୟାଯ୍ୟେରୁ ହାଣନ୍ତି ସେ କୁଂକୁମ ବର୍ଣ୍ଣ ପ୍ରାଯ୍ୟେ । ୨୫୭ ।
ସ୍ୟେ ବନେ ରହିଲେ ରାମଚନ୍ଦ୍ର ପଞ୍ଚ ଯେ ଅବଦ
ଜାନକୀ ହରଣେ ଯ୍ୟେଥେ ପଡିଲା ବଡାଇ ପ୍ରମାଦ । ୨୫୮ ।
ଯୁଦ୍ଧେଷ୍ଠି ପୁଛାକଲେ ମାରକଣ୍ଡଂକ ଅଗ୍ରତେ
କେସନେକେ ସୀତା ହରନେଲା ରାବଣ ଶ୍ରୀରାମ ଥାଆନ୍ତେ । ୨୫୯ ।
ମାରକଣ୍ଡେ ବୋଇଲେ ଭୁ ଶୁଣ ହୋ ଧର୍ମବର୍ଷି
ଲକ୍ଷ୍ମଣ ଅନୁବ୍ରତେ ସୀତାଂକୁ ଥାନ୍ତି ରଖି । ୨୬୦ ।
ଶ୍ରାବଣ କୃଷ୍ଣପକ୍ଷ ପଞ୍ଚମୀ ଶକ୍ରବାର
ଲକ୍ଷ୍ମଣ ମୃଗଯ୍ୟା ହିଜଯ୍ୟେ ଯେ ଦକ୍ଷିଣ ଭାଗର । ୨୬୧ ।
କେଶୀ ଦଇତର ପୁତ୍ର ଜପା ଯେ ଅସୁର
ରାବଣର ଭଣଜା ସୂର୍ପଣଖା ମାତା ତାହାର । ୨୬୨ ।
ଜପା କଲକଲା ଇନ୍ଦ୍ରଜିତର ଭୁଲେ
ମାତା ପୁତ୍ର ଦୁହେଂ ଲଂକାଉଂ ବାହାର ହୋଇଲେ । ୨୬୩ ।
କଣଯ୍ୟ ବଲାସୁଣୀ ବୋଲି ବହଇ ନଦୀଗୋଟି
ନର୍ମଦା ଭାଗିନୀ ଉତ୍ତର ବାହିନୀର ଫୁଟି । ୨୬୪ ।
ବଜଯ୍ୟେ ଜପାସୁର କଦମ୍ବ ବୃକ୍ଷ ତଳେ
ରହିଲା ଆଶ୍ରମେକ କଣଯ୍ୟ ବଲାସୁଣୀ ନଦୀକୂଳେ । ୨୬୫ ।
ଏଞ୍ଚ ଅବ୍ଦବ୍ରତ ବରଷ କଲାକ ମହାତପ
ଶରୀର ମିଳାଇଲା ଛାଡିଲା ସରୂପ । ୨୬୬ ।
ଖଣ୍ଡି ଖଣ୍ଡ ହୋଇ ଯେ ମିଳାଇଲା ଶରୀର
ଭୁଦାଯ୍ୟେକ ହୋଇଲା ବର୍ଣ୍ଣ ଚହ୍ନ ନାହିଂ ତାହାର । ୨୬୭ ।

---

୨୬୭ { ଖଣ୍ଡେ ଖଣ୍ଡି କର ରହିଲେକ ପୁକଉର
ଟିକର ଗୋଟିଯ୍ୟେ ହୋଇଲା ଚହ୍ନ ବର୍ଣ୍ଣ ତାର ନାହିଂ ।—ଢ

୨୬୭।୨ ବରୂପ ହୋଇଲା ବର୍ଣ୍ଣ ଚହ୍ନ ତାର ନାହିଂ ।—ପାଠାନ୍ତର

ତପର ଗାତେ ପୁଣ କଅଁଳଲା ତନୁ
ପୁଣ ଉତପତ୍ତି ହୋଇଲା କୁରୁସାନୁ । ୨୬୮ ।
ବୁଦାର ଭିତରେ ଅଛୁ ତାର କାୟେ
ରପୁଣୀ ପ୍ରସବଲେ ଅମରେ ହୋଇବ ଦେବରାୟେ । ୨୬୯ ।
ଆହେ। ଯୁଦ୍ଧେଷ୍ଟି ଶୁଣ ପୂର୍ବର ଯେ କଥା
ଜାଣିଣ ମାୟାକଲା ଇନ୍ଦ୍ର ଯେ ଦେବତା । ୨୭୦ ।
ଗଣ୍ଡାପ୍ରାୟେକ ହୋଇଲା ସେ ଲକ୍ଷ୍ମଣ ଦେଖନ୍ତେ
ଧାଇଁଣ ଲକ୍ଷ୍ମଣ ଯେ କଟିଲା ବନସ୍ତେ । ୨୭୧ ।
ଗଣ୍ଡା ପଳାଇଣ ଯାୟେ ଗୋଡାୟେ ସଉମିତ୍ରି
ସେହି ବୁଦାର ଭିତରେ ପଶିଲା ଯାଇଁ ଧାଡି । ୨୭୨ ।
କାଟିଲା ଲକ୍ଷ୍ମଣ ଅସିପତ୍ର ଟାଣି
ଊର୍ଦ୍ଧ୍ୱବାହୁ କରି ବୁଦାରେ ସେ ହାଣି । ୨୭୩ ।
ତହିଁର ଭିତରେ କୁମାର ଥିଲା ଜପା
ବେନିଖଣ୍ଡ ହୋଇଣ ସେ ଛୁଟିଲା ରକ୍ତଶୋପା । ୨୭୪ ।
ଗୋକ୍ଷୀର ବର୍ଣ୍ଣ ପ୍ରାୟେକ ବହଇ ତାର ଶ୍ରୋଣି
ଦେଖିଣ ବିସ୍ମରଇ ସେ ଲକ୍ଷ୍ମଣକୁମାର ମଣି । ୨୭୫ ।
ବାହୁଡି ଲକ୍ଷ୍ମଣ ଆଶ୍ରମେ ପ୍ରବେଶ
ସ୍ୱାମୀଙ୍କ ସନ୍ମୁଖରେ ଯାଇଁ କହିଲା ସନ୍ଦେଶ । ୨୭୬ ।
ଶୁଣିଣ ରାମଚନ୍ଦ୍ର ମନେଣ ବିରସ
ଆକାଶବାଣୀ ଶୁଭିଲା ସେ ଅଟଇ ରାକ୍ଷସ । ୨୭୭ ।
ଆହେ। ଅସକନ୍ଦ ବନେ ଥାଇ ସୂର୍ପଣଖୀ
ବରଷକେ ଅଇଲା ସେ ପୁତ୍ରକଇଁ ଦେଖି । ୨୭୮ ।
ସେ ବନ ଦେଖିଲା ଯେ ପୁତ୍ରର ବିନାଶି
ହା ହା ନନ୍ଦନ ବୋଲି ଯେ ଭ୍ରମଇ ନୃଭଂକେଶୀ ।୨୭୯ ।

---

୨୬୮।୨ ପୁଣ ଉତପତ୍ତି ହୋଇଲା ଜପାସୁର ତନୁ ।—ଛ, ପ
୨୭୫।୨ ଦେଖିଣ ବିସ୍ମରଇ ସେ ଇକ୍ଷ୍ୱାକୁବଂଶ ମଣି ।—ଥ, ଜ

ଉତ୍ତର ପ୍ରଶସ୍ତେ ରହିଛନ୍ତି ରାମ ଯେ ଲକ୍ଷ୍ମଣ
ସୀତାଙ୍କୁ ଦେଖିଲା ସୂର୍ପଣଖୀ ପୁଣ୍ୟକୁଟୀ ଆଶ୍ରମ । ୨୮୦ ।
କାମରୂପୀ ଦାନବୀ ହୋଇଲା ବରାଙ୍ଗନା
ଅନେକ ରତ୍ନ ଆଭରଣ ପରିହରଣ ବସ୍ତ୍ରହୀନା । ୨୮୧ ।
ସୀତାଂକୁ ଭେଟିଲା ମାନବୀ ରୂପ ଧରି
ଦେଖି ପଚାରନ୍ତି ଯେ ଜନକ କୁମାରୀ । ୨୮୨ ।
ଆହ୍ମି ଗୋ ତୋହୋର ରୂପ ଦେଖି ଯେ ଚମକୁଛନ୍ତି କାମ
କାହାର ଝିଅବେମା ଆହ୍ମି କହ ତୋର ନାମ । ୨୮୩ ।
ମୁହିଂ ଅମର ସ୍ୱର୍ଗର ଅଟଇ ବାରାଂଗନା
ଶୃଙ୍ଗାରକୁ ଡରିଲି ମୁଂ ଇନ୍ଦ୍ର କଲ୍ଲକ ଭ୍ରୁଚ୍ଛନା । ୨୮୪ ।
ସହି ନୁଆରିଲି ମୁଂ ପ୍ରଭୁଂକ ହିଂସାସ
ପୁରୁଷେ ଭୟେ କରି ମୁଂ ପଶିଲି ବନବାସ । ୨୮୫ ।
ସୀତାୟେ କହିଲେ ଭଲହିଂ କଲୁସି ଆହ୍ମି
ମୋହୋର ଦେଅର ଗୋଟିଏ ଅଛୁ ସ୍ୱାମୀଂକର ସାନଭାଇ । ୨୮୬ ।
ସକ୍ଷମ ସୁସଞ୍ଚ ସୁନ୍ଦର ସର୍ବଗୁଣେ ସୁଲକ୍ଷଣ
ପ୍ରଜାପତି ସ୍ରିଜଲେ ତୋହୋର କାରଣ । ୨୮୭ ।
ପାତଲା କୁଟପାଶି ସୂର୍ପଲେଖୀ ରାକ୍ଷାସୁଣୀ
ବୋଇଲା ପ୍ରୀତି ବଢାଇ ଯେହାଂକୁ ଖାଇ ନୁଆରିବ ପୁଣି । ୨୮୮ ।
ହୋଧେଣ ଗଦ ଗଦ ହୋଇ ପଡିଲା ଆସି ପାୟେ
ତୁମ୍ଭନ୍ତ ଦେଖିଲି ଗୋସାମଣି ମୋହୋର ନିଜ ମାୟେ । ୨୮୯ ।
ଯେସନେକ କଥା ମାନ ହୋଅନ୍ତେଣ ବେନି
ଲକ୍ଷ୍ମଣ ପ୍ରବେଶ ଆସି ମୃଗଯାର ଘେନି । ୨୯୦ ।
ଭାର ଓହ୍ଲାଇଣ ବସିଲେ ସଉମିତ୍ରି
ସୀତାୟେ ପ୍ରବେଶ ହୋଇଲେ ଲକ୍ଷ୍ମଣର କତି । ୨୯୧ ।
ଆହୋ ଲକ୍ଷ୍ମଣ ତୁମ୍ଭେ ପୁଣ୍ୟବନ୍ତ ଭାଗ୍ୟବନ୍ତ ଅଟ ବାବୁ
ଅପୂର୍ବ କନ୍ୟା ଗୋଟିଏ ଅଇଲା ତାହାକୁ କେମନ୍ତ କରିବୁ । ୨୯୨ ।
ତୁମ୍ଭେ ସର୍ବଗୁଣେ ସୁଲକ୍ଷଣ ସେ ସର୍ବଗୁଣେ ଗୁଣବନ୍ତୀ
ଯେସନେକ କରି ତାକୁ ସ୍ରିଜିଲା ପ୍ରଜାପତି । ୨୯୩ ।

ଶୁଣି ହେଠମାଥେ ଲକ୍ଷ୍ମଣ ନ ଦଅଇ ସମ୍ମତି
ଯେମନ୍ତର ସମୟେ ଶ୍ରୀରାମଚନ୍ଦ୍ରେ ମିଳିଲେକ ଆସି । ୨୯୪ ।
ଦେଖିଣ ରାକ୍ଷସୀ ଯେ ଗଲା ଦୂରେ ସରି
ମାନସୀ ଅବସ୍ଥାଯେ ସେ ଗୃହେଂ ବନ୍ଧ କରି । ୨୯୫ ।
ବଦଯୂନ୍ତ ଜାନକୀ ସ୍ୱାମୀ ବଡ଼ାଇ ଅପୂରୁବ
ଆକାଶର କନ୍ୟାଯେ ଅଇଲା ହାଦେ ଯେବ । ୨୯୬ ।
ସ୍ୱାମୀ ନାଗରୀ ଚତୁରୀ ନୋହଇ ଦୁର୍ଭାର
ଭଲକରି କଥା କହି ନୁଆରଇ ସେ ଅଟଇ ଉଦାର । ୨୯୭ ।
କୁଳନ ଗୁଣବନ୍ତୀ ବଡ଼ାଇ ଭାଗ୍ୟେ ପାଇ
ବଡ଼ ଭାଗ୍ୟବନ୍ତ ଦେବ ଅଟଇ ତୁମ୍ଭର ଭାଇ । ୨୯୮ ।
ଅନେକ ଅଳଂକାର ଦେବ ଶରୀରେ ଅଛୁ ଭରି
କଣ୍ଠହିଂ ଲଗୁଛି ନୋହିବ ସମସ୍ତ ଅଛୁନ ତାହାରି । ୨୯୯ ।
ଶ୍ରୀରାମ ବୋଇଲେ ଯେ ଗହନ ବନସ୍ତେ
ଜନ ଆତାଗମନ ନାହିଂ ଯେହା ଜାଣିଲା କେମନ୍ତେ । ୩୦୦ ।
କି ଅବା ରାକ୍ଷସୀ ଯେ ବଣର ଦେବତୀ
ଅପରିଚ ସଙ୍ଗେ ଭାବ କେମନ୍ତେ ବଢ଼ାଇବା ପୀରତି । ୩୦୧ ।
ଯଦ୍ୟପି ଦେବସ୍ତ୍ରିରୀ ହୋଇବ ଅପର୍ଣ୍ଣା
ଅଗ୍ୟାନୀ ପିଣ୍ଡ ଯେ ଭାବ ପ୍ରକୃତି ସିନା । ୩୦୨ ।
ସୀତାୟ୍ୟ ବୋଇଲେ ସେ ନୋହଇ ମନ୍ଦବାଣୀ
ଅହେଯେ ସୁଲକ୍ଷଣୀ ବାଳୁତ ଭାବ ନେଟି । ୩୦୩ ।
ସ୍ୱାମୀ ସୁବୁଦ୍ଧି ଲୋକଂଙ୍କୁ କୁବୁଦ୍ଧି ହୋଇଲେ
ଆପଣା ଧର୍ମନାଶ ଯାଇ ସୁଜନ ନିନ୍ଦା କଲେ । ୩୦୪ ।

---

୨୯୫।୨ ମାନସୀ ଅବସ୍ଥାରେ ସେ ରହିଲା ଗୋପ୍ୟ କରି ।—ଘ, ଟ, ଚ, ଝ, ଛ

୨୯୯ { ଅନେକ ଅଳଂକାର ଦେବ ଶରୀରେ ଆଭରଣ
କଣ୍ଠହିଂ ଲଗନ୍ତା ନାହିଂ ଦେବସ୍ତ୍ରିରୀ ସୁନ୍ଦର ରୂପେଣ ।
—(କେତେକ ପୋଥି(

୩୦୩।୨ ଲଜ୍ଜା ସୁଲକ୍ଷଣୀ ବାଳୁତ ମନ୍ଦ ନୋହଇଟି ।—ଚ

୩୦୪।୧ ସ୍ୱାମୀ ସୁବାଣୀ ଲୋକଂଙ୍କୁ କୁବୁଦ୍ଧି ବୋଇଲେ ।—ଟ, ଜ, ଚ

ତୁମ୍ଭେ ବେନଭ୍ରାଥ ଯେ ଯାଅ ବନ ହେବ
ଯେବ୍କା ବନସ୍ତେ ମୁଂ ବସିଥାଇଂ ଝୁରି ଝୁରି । ୩୦୫ ।
ଦୁଖକୁ ସଖି ମୋତେ ହୋଇଲୁ ଯତନେ
ମୁହିଂ ତାହା ଉପେକ୍ଷା କରିବ କେସନେ । ୩୦୬ ।
ଆହୋ ଲକ୍ଷ୍ମଣ ସପତ ତୋତେ ମୋର ଠାକୁରଂକର ଆନ
ବାବୁ ସୁସ୍ତ୍ରିଶ୍ଚ ଗୋଟି ସେ ଯେ ପାଇବୁ କାରଣ । ୩୦୭ ।
ସୀତା ବୋଇଲେ ସ୍ୱାମୀ ଆନ ନ ବୋଲିବା କିଛୁ
ମୁହିଂ ଜାଣେ ଲକ୍ଷ୍ମଣର ମନ ଯେଉଁଠାରେ ଅଛୁ । ୩୦୮ ।
ସ୍ୱାମୀ ତେର ବରଷ ହୋଇଲା ଲକ୍ଷ୍ମଣର ନାହିଂ ଭିଶମେଳ
ମୁହିଂ ଲକ୍ଷ୍ମଣକୁ ଦେଖି ବଡ ବିକଳ ହେଉଛୁ ତୁମ୍ଭର କଂପାଇଂ
ହେଳ । ୩୦୯ ।
ଯତନ ପ୍ରକାରେଣ ଘଟଣ କର ଯେହା
ଲକ୍ଷ୍ମଣର ଯେହାର ହୋଇବ ବଡାଇ ସେନେହା । ୩୧୦ ।
ସୀତାଯ୍ୟା ଦେବୀଂକର ଯହୁଂ ଅନେକ କଷ୍ଟୋର
ଶ୍ରୀରାମ ଆଗ୍ୟାଂଦିଲେ ଲକ୍ଷ୍ମଣ ଯେହାକଇଂ ସଂହାର । ୩୧୧ ।
ଲକ୍ଷ୍ମଣ ବୋଇଲେ ମୋର ନ ବଳଇ ମତ
ପରସ୍ତ୍ରିଶ୍ଚ ହରଣେ ନର୍କରେ ପଡନ୍ତ । ୩୧୨ ।
ଶୁଣିଣ ଶ୍ରୀରାମ ଯେ ହୋଇଲେ ମଉନ
ନୋହଇ କି ଆନେ ଯାହା ବୋଲଇ ଲକ୍ଷ୍ମଣ । ୩୧୩ ।
ଯେସନେକେ କେତେହେଂ ବନ ଯହୁଂ ଗଲା
ମୃଗଯ୍ୟା ବନୋଦେ ଯେ ଲକ୍ଷଣ ଗମିଲା । ୩୧୪ ।

---

୩୦୬ { ଦୁଖକୁ ସାଖା ମୋତେ ହୋଇଲୁ ବନସ୍ତେ
ମୁହୁଂ ଉପେକ୍ଷା ତାହା କରନ୍ଧ କେମନ୍ତେ ।—ଚ

୩୦୮ { ସୀତା ବୋଇଲେ ସ୍ୱାମୀ ନ ବୋଲିବା ଆନକଥା
ମୁହୁଂ ଜାଣଇ ଲକ୍ଷ୍ମଣର ମନ ହୋଇଛୁ ସର୍ବଥା ।—କ, ଡ, ଛ

ଶ୍ରୀରାମ ବଚନେ ଗମିଲ ଲକ୍ଷ୍ମଣ
ବିଷମ ରୂପ ଧରି ସୂର୍ପଣଖୀ ମିଳିଲା ଆଗେଣ । ୩୧୫ ।
ରାଘେଣ ଲକ୍ଷ୍ମଣ ଉତ୍ତମଶାସ୍ତ୍ର କରି ପାଡ
ନାସିକା ଛେଦନ ଯେ କଲେକ ତାହାର । ୩୧୬ ।
ଶ୍ରୀରାମଂକର ବଚନ ଶୁଣିଣ ଲକ୍ଷ୍ମଣ
ସୂର୍ପଣଖୀକି ଧରି ପାଡିଲେ କନ୍ଦର ଉହାଡେଣ । ୩୧୭ ।
ଆକ୍ଷେପି କରି ଧରି ଉତ୍ତମଶାସ୍ତ୍ର କରି ପାଡ
ନାସା ଶ୍ରବଣ ଛେଦନ କଲ୍ଲକ ତାହାର । ୩୧୮ ।
ଅଳଂକାରମାନ ଯେ ସବୁ ପକାଇଲେ କାଟି
ପଳାଇଲା ରାକ୍ଷସୀ ଯେ ଦେଇଣ ଘୋର ରଡି । ୩୧୯ ।
ଲଂକା ଭୁବନେ ପ୍ରବେଶ ହୋଇଲା ଯାଇଂ ବେଗେ
ସୂର୍ପଣଖୀ ମିଳିଲାକ ରାବଣେଶ୍ୱର ଆଗେ । ୩୨୦ ।
ଲଂକେଶ୍ୱର ବିଷାଦ ହୋଇଲା ତାକୁ ଦେଖି
କେ ଏଡେ ତୋତେ ଏହି କର୍ମ କଲାରେ ସୂର୍ପଣଖୀ । ୩୨୧ ।
ସୂର୍ପଣଖୀ ବୋଇଲା ତପସୀ ବେନିଭାଇ
ତ୍ରୈଲୋକ୍ୟ ମୋହନୀ କନ୍ୟାଏକ ଅଛଇ ତାର ତହିଂ । ୩୨୨ ।
ତୋତେ ଆଣିଦେବା ପାଇଂ ମୁଂ ଗଲଇଂ ବହନ
ମୋହୋର ନାସା ଶ୍ରବଣ ଛେଦିଲେକ ପୁଣ । ୩୨୩ ।
ଶୁଣି ମହାପ୍ରତାପୀ ଅଧର୍ମୀ ଅସୁର
ସନ୍ଧ୍ୟେ ହକାରିଲା ଖର ଦୂଷଣ ତ୍ରିଶିରା । ୩୨୪ ।
ରାଜାର ବଚନେ ଯେ ଅଇଲେ ବୀର ତିନ
ଆସଇ ସୂର୍ପଣଖୀ ରାକ୍ଷସ ବଳନ୍ତ ଘେନ । ୩୨୫ ।
ମୃଗୟା ବିନୋଦେ ଆସିଥିଲେ ଲକ୍ଷ୍ମଣ ବିପିନେ
ଦେଖିଲା ସିଂହନାଦ ଘୋଷ ଜାଣି ଆସନ୍ତ ଅସୁର ସଇନେ । ୩୨୬ ।
ସୂର୍ପଣଖୀ ଦେଖାଇଲା ଏହି ତପସିଆ
ମୋତେ ନାଶକଲା ଏହି ବେଗେ ମାର ଯୋଦ୍ଧା । ୩୨୭ ।

---

୩୨୩।୧ ଗର୍ବିତ ରାବଣେଶ୍ୱର ଅଟଇ ଅସୁର ।—ଣ, ନ, ଠ

ଦେଖିଣ ଦାନବ ବଳ ଧଲେ ସିଂଘରନ୍ତି
ଲକ୍ଷ୍ମଣ ଉପରକୁ ପଡିଲେ ସର୍ବେ ମାଡ଼ି । ୩୨୮ ।
ଶୁଣ ହେ। ପାଣ୍ଡବେ ଲକ୍ଷ୍ମଣର ମହିମା
ଯେବା ଜଣକେ ମର୍ଦ୍ଦିଲ୍ଲ ସବୁଂକର ଗରିମା । ୩୨୯ ।
ଶତେ ନର୍ଭୁଛ ବଳ ରାକ୍ଷସ ସଇନ
ଲକ୍ଷ୍ମଣ ଭେଦିଲ୍ଲ ତାହାକଇଂ ନାରାଜଗୋଟି ତିନ । ୩୩୦ ।
ଯେସନେକେ ବନସ୍ତ ଦହଇ ଅନଳ
ଲକ୍ଷ୍ମଣ ବାଘାତେ ପଡିଲେ ଦୁରାନ୍ତକ ବଳ । ୩୩୧ ।
ଖର ଦୂଷଣ ଯେ ତ୍ରିଶିର ତିନବୀର
ହେଲେ ଦାଶରଥି ଯେ ଛେଦିଲେ ସର୍ବବୀର । ୩୩୨ ।
ପୁଣହିଂ ଯେବକ ବାନେ ଚଳଇ ସୂର୍ପଲେଖୀ
ବଛୋହେ ପଳାଇଲ୍ଲ ସେ ରାବଣ ଛଟ୍ଟିଂକ । ୩୩୩ ।
ସହୋଦ୍ର ନଧନ ସେ ବୋଲ୍ଲିଣ ଜଣାଇ
ଶୁଣିଣ ଅସାଷ୍ଟମ ଯେ ହୋଇଲ୍ଲ ଲଂକସାଇଂ । ୩୩୪ ।
ମାରୀଚ ସୂର୍ପଲେଖୀକି ବସାଇଣ ରଥେ
ହିନ୍ଦୁଳଣି ଗମଇ ସେ ଉତ୍ତର ଦିଗ ପଥେ । ୩୩୫ ।
ମାରୀଚ ଦଇତ ମାୟାମୃଗ ରୂପ ଧରି
ଯେବା କାୟୁ ବେଳଶିର କନକ ଆବୋର । ୩୩୬ ।
ବଜସ୍ରେ ଅମଳାଣବଂଶୀ ପର୍ଣ୍ଣକୁଟୀ ଦ୍ୱାରେ
ପଶାହିଡା ବନୋଦେ ଶ୍ରୀରାମ ସୀତାସ୍ୱାରେ । ୩୩୭ ।
ଯେମନ୍ତର ସମୟେ ଯେ ଅଇଲ୍ଲକ ମୃଗ
ଅନେକ ମାୟାରୂପ ଧରି ସେ ଆସଇ ବେଗ ବେଗ । ୩୩୮ ।

---

୩୩୩।୨ ବଛୋହେ—ବକ୍ଷୋଭେ ।

୩୩୭।୧ ବଜସ୍ର ।ଅମଲାଣ ବସ୍ତ୍ର ଆଭରଣ କରି ବଚେଳଲ ପୂର୍ଣ୍ଣକୁଟୀ ଆଶ୍ରମେ—ଘ, ଡ. ଚ

ସୀତାୟୀ ବୋଇଲେ ଶ୍ରୀରାମ ବଦନକଇଂ ଗୃହ୍ନିଂ
ଅପୂର୍ବ ମୃଗ ଗୋଟିକ ଦେବ ଧରକନା ଯାଇଂ । ୩୩୯ ।
ଜାନକୀର ବଚନ ରାମ ନୁଆଁରଲେ ଭାଞ୍ଜି
ଶ୍ରୀଭୁଜେ କୋଦଣ୍ଡ ଧରି ପଯ୍ୟେତ୍ତ କଲେ ବେଗି । ୩୪୦ ।
ପଳାଇ ପଶିଲା ସେ ମୃଗ ବହୁତ ଦୁର୍ଗମେ
ଆକ୍ଷେପି ଗୋଡ଼ାଇ ନାରାଜ ବିନ୍ଧଲେ ଶ୍ରୀରାମେ । ୩୪୧ ।
ବେନି ମୁଣ୍ଡ ଛୁଡନ୍ତେ ବାହାର ମାରୀଚ
ଲକ୍ଷ୍ମଣ ପ୍ରତିକାର କର ବୋଲ ଶୁଭିଲାକ ଊର୍ଦ୍ଧ୍ୱ ବାଚ । ୩୪୨ ।
ଲକ୍ଷ୍ମଣକଇଂ ହକାରିଣ ବୋଇଲେ ଦେବୀ ସୀତେ
ସ୍ୱାମୀଂକ ପରମାଦ ମୋର ଚଉଳ ଯାଉକନା ବନସ୍ତେ । ୩୨୩ ।
ଲକ୍ଷ୍ମଣ ବୋଇଲେ ମାଗୋ ଜଗତ କଣଇଂ ତୋର ନାହା
ଅନନ୍ତ କୋଟି ବ୍ରହ୍ମାଣ୍ଡେ କେ ଜାଣିପାରୁ ତାହା । ୩୪୪ ।
ତୁମ୍ଭେ ତ ଗୋସାମଣି ଜାଣ ବଭାକାଳେ
ପରଶୁରାମ ଦର୍ପ ଯେ ମର୍ଦ୍ଦିଲେ ବାଳକାଳେ । ୩୪୫ ।
ତଇଲୋକେ ତାହାଂକୁ ସମ ନଜଣ କେହୁ
ତୁ ସବଂଗୀଂ ମାହେଶ୍ୱରୀ ଅଦ୍ଭୁତ କାଂପେ କହୁ । ୩୪୬ ।
ସୀତାୟୀ ବୋଇଲେ ମୁଂ ଜାଣିଲି ତୋର ହିଆ
ଶ୍ରୀରାମ ଅଭାବେ ତୁ ହୋଇବୁ ମୋର ନାହା । ୩୪୭ ।
ଅନେକ କୂଟବାଣୀ ଜନକନନ୍ଦନୀ ବୋଇଲେ
ଯେଥକୁ ସେ ଗୋଡ଼ାଇ ଅଇଲୁ ଶ୍ରୀରାମଂକ ତୁଲେ । ୩୪୮ ।
ଶ୍ରୀରାମର ଚଉେ ତୋତେ କେବେହେଂ କଳଂକ ଭାବ ନାହିଂ
ପୁଣ ସାବତ ତନୟେ ସୋଦର ହୋନ୍ତି କାହିଂ । ୩୪୯ ।
ଶୁଣି ସଜମିଢ଼ୀ ଥରହର ହୋଇ ଦୂଣ୍ଡି
ମୋହୋର ଚଉେ ଗୋ ଯେସନେକେ ନାହିଂ କଚ୍ଛୁ । ୩୫୦ ।
କୁଂକୁମ ଶ୍ୟାମବର୍ଣ୍ଣ କ ଗଉରୀ ତୋହୋର ବର୍ଣ୍ଣ
ମୋହୋର ଦେଖିଲା ନାହିଂ ଗୋ ତୋହୋର ବର୍ଣ୍ଣ ଚହ୍ନ । ୩୫୧ ।

---

୩୪୦।୨ ଶ୍ରୀଭୁଜେ କୋଦଣ୍ଡ ଧରି ପସ୍ଥାଣ କଲେ ବେଗି ।— ଘ, ଛ

ଯେକାମାବ ଠାକୁରାଣୀ ତୋହୋର ଦେଖିଲ୍ଲ ଅଛଇ ବେନପାଦ
ଅନମିତେ ବଲ୍ଲୁଂ ମୋତେ ଯେତେକ ଅପବାଦ । ୩୫୨ ।
ମୋହୋର ଶବେ ଯେବେ ସ୍ୱାମୀଂକ ଯେତେ ନିର୍ଦ୍ଦ୍ୟେ
ଯେବ୍ରକ୍ଷଣି ଗୋସାମଣି ଜନ୍ମ ମୋର କାଯେ । ୩୫୩ ।
ଅନମିତେ ଦୂଷିତ ଯେବେ ବୋଇଲୁ ନ ଜାଣି
ଘର ପର୍ଭବ ତୁ ହେ ଅ ଯେବ୍ରକ୍ଷଣି । ୩୫୪ ।
ସୀତାୟାଂକ ଦୁର୍ଦ୍ଧଷ ବଚନ ଶାର ମନେ ମନେ ଗୁଣି
ହଇଲୋକ୍ୟ ପାଳଂକୁ ସାକ୍ଷୀ କରଇ ସେ ପୁଣି । ୩୫୫ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନଗାର କାଟି
ନ ଡେଇଂବୁ ସୀତାୟା ଗୋ ତିନଗାର ଗୋଟି । ୩୫୬ ।
ତୁମ୍ଭେ ଯେବେ ଯେ ଗାର ଡେଇଂବ ଗୋ ଶ୍ରୀରାମେ ନ ଦେଖିବ
ଆନ ଯେ ଗାର ଡେଇଂଲେ ଭସ୍ମ ହୋଇଯିବ । ୩୫୭ ।
ଧାମ... ଲକ୍ଷ୍ମଣ ସ୍ୱାମୀର ଗନ୍ତପଥ ଉପନେସି
ଶୂନ୍ୟ ମନ୍ଦିର ଦେଖିଣ ରାବଣ ଯେ ଆସି । ୩୫୮ ।
ଯେକଶିର ବେନପାଦ ବେନଭୁଜ
ତପୋଧନ ରୂପ ଯେ ଧରିଛୁ ଦନୁଜ । ୩୫୯ ।
ଅଂଗେ ବାଲପନ ତାର ଶ୍ୱେତବର୍ଣ୍ଣ ପାଉଂଶୁ
କର୍ଣ୍ଣେଣ ତମ୍ବ୍ରମୁଦ୍ରା ଶିରରେ ସୀତାଂଶୁ । ୩୬୦ ।
ଗୋପୀ ଚନ୍ଦନ ଟିକା ରୁଦ୍ରାକ୍ଷ ଜାପାମାଳୀ
କଷାବାସ ପରିହରଣ କୁକ୍ଷିଦେଶେ ଝୁଲା । ୩୬୧ ।
ଯେକହାଥେ ଡାକଆ ଆରେକ ହାଥେ ଶୂଳ
ନାଚଇ ଗାବଇ ଯେ ତାଣ୍ଡବ କୁତୋହୋଳ । ୩୬୨ ।
ଯେସନେକ ପ୍ରପଞ୍ଚ ରୂପ ଯେ ମଯ୍ୟା ତପୋଧନୀ
ନଇଂ ଗୃହ୍ନାଂଲେ ଦେଖା ଜନକ ନନ୍ଦନୀ । ୩୬୩ ।

---

୩୬୬।୧ ସତ ରଜ ତମ ଯେ ...ନଗାର କାଟି —ଟ. ଙ୍କ, ଘ, ଡ, ଚ, ଥ ଜ
୩୬୧।୨ କଷାବାସ ପରିହରଣ ଧଉମ୍ଭ ଛୀନ୍ନ ଓଲ—। କ,

କ୍ଷୁଧାର୍ତ୍ତୀ ତପୋଧନୀ କଡାଇ ଲୁଦ୍ରଭିକ୍ଷା
ଆଶ୍ରମୁଂ ବାହାର ଦେଖୀ କରେ ଯେନ ଭିକ୍ଷା । ୩୬୪ ।
ମହାବାକ୍ୟ ମେଣ୍ଟି ସେ ଡେଇଂଲେ ଗାର ତିନ
ବାତୁଳ ବୁଦ୍ଧି ସେ ଜନକ ନନ୍ଦନୀ । ୩୬୫ ।
ଭିକ୍ଷା ଦିଅନ୍ତେଣ ସେ ରାକ୍ଷସ ମହାବଳ
ଆକ୍ରୋଷିଣ ଧଇଲା ସେ ସୀତାଂକ କରସ୍ଥଳ । ୩୬୬ ।
ନେଇଣ ବସାଇଲା ସେ ଆପଣାର ରଥେ
ଯେନଣ ଲଂକାରାଜ ଚଳଇ ଦକ୍ଷିଣ ପଥେ । ୩୬୭ ।
ଶୁଣ ହେ। ପାଣ୍ଡବେ ମାରକଣ୍ଡେ ବୋଇଲେ
ଭାଦ୍ରବ କୃଷ୍ଣ ଅଷ୍ଟମୀ ଦିନ ରାବଣ ସୀତାଂକୁ ହରନେଲେ । ୩୬୮ ।
ଅର୍କବାର ରୋହିଣୀ ନକ୍ଷତ୍ର ସେ ଦିନର
ସେ ଦିନ ସୀତାଷ୍ଟମୀ ବୋଲନ୍ତି ହାଦେ ନର । ୩୬୯ ।
କଉବଳ ନାମେ କରଣ ଧ୍ରୁବ ନାମେ ଯୋଗ
ସିଂହ ସଂକ୍ରାନ୍ତିକ ଯେ ପାଞ୍ଚ ଦିବସ ଭୋଗ । ୩୭୦ ।
ବେଳ ଦଶଦଣ୍ଡରେ ରାବଣ ହରନେଲା ସୀତା
ଜଟାୟୁ ପକ୍ଷୀ ସେ ରଥ କଲା ଗର୍ଭଗତା । ୩୭୧ ।
ଶ୍ରୀରାମ ଶ୍ରୀରାମ ବୋଲି ଯହୁଁ ସୁମରିଲେ ସତୀ
ମାନଭ ବୋଲି ରଥ ଉଦୁଗାରିଲା ତତକ୍ଷଣାନ୍ତ । ୩୭୨ ।
ଯାନ ଭଗ୍ନ ଦେଖିଣ ରାବଣ ମହାରାଗେ
ଜଟାୟୁର ଡେଣା ଛେଦିଲା ଚନ୍ଦ୍ରହାସ ଖଡଗେ । ୩୭୩ ।
ଯେନଣ ଏଡିକ ଯେ ଗଲାକ ଯାତୁଧାନେ
ଲଂକା ପୂର୍ବଭାଗେ ଥୋଇଲା ସେ ଅଶୋକ ବପିନେ । ୩୭୪ ।
ଯୁଧିଷ୍ଠିର ପୁଚ୍ଛାକଲେ ଶୁଣିମା ମାରକଣ୍ଡେ
ମାରୀଚ ନାଶଗଲା ଶ୍ରୀରାମର କୋଦଣ୍ଡେ । ୩୭୫ ।

---

୩୭୦।୨ କକଡା ସଂକ୍ରାନ୍ତିକ ଦଶଣ ଦିନ ଭୋଗ ।—କ
୩୭୨।୨ ରାମ ନାମ ଶୁଣି ରଥ ଉଦୁଗାରିଲା ତତଢ ।—ଙ୍ଗ
୩୭୩।୧ ରାମରେ ଭଗଢ ଦେଖି ରାବଣ ମହାରାଗେ ।—ଚ
୩୭୪।୧ (କପିବନ, କୁମ୍ଭବନ, ଜମ୍ବୁବନପ୍ରଭୃତି ପଠାନ୍ତରମାନ ଦେଖାଯାଏ)

ମାୟାମୃଗ ମାରି ଶ୍ରୀରାମ କଲେକ କେମନ୍ତ
ସଞ୍ଜପି କହିବା ମୋତେ ପଣ୍ଡିତ ଭଗ୍ୟଂବନ୍ତ । ୩୭୬ ।
ଲେଉଟିଲେ ରାମ ଘେନି ମୃଗଭାର ଗୋଟି
କଲ୍ପବନେ ଆସି ଲକ୍ଷ୍ମଣଙ୍କଇଂ ଭେଟି । ୩୭୭ ।
ଦେଖିଣ ବିସରିଲେ ଦେବ ରଘୁନାଥ
ବାବୁ ସୀତାୟାଂଙ୍କୁ ଛେଡଣେ ଛାଡିଲୁ ପଡିଲା ବିପଦ । ୩୭୮ ।
ମନେ ଭ୍ରାନ୍ତ କରିଣ ଆଇଲେ ଶ୍ରୀରାମ
ନ ଦେଖିଲେ ସୀତାଙ୍କ ସେ ନିଜ ଯେ ଆଶ୍ରମ । ୩୭୯ ।
ଅନେକ ବିକଳ ହୋଇ ଶବ୍ଦ ତୋଳନ୍ତି ଷ୍ଟାରୁ ବେନି
ଉପଲେସନ୍ତ ଗଡପଥ ରାକ୍ଷସ ସଇନ । ୩୮୦ ।

---

୩୭୭ { ଧନୁରେ ଭାରକଲେ ମୃଗ ଶିରଗୋଟି
ଅଧବାଟେ ଲକ୍ଷ୍ମଣ ଯାଇଂ ତାଂକୁ ଭେଟି ।—ଠ, ଣ

୩୮୦।୨ "ଉପଲେସନ୍ତ ଗଡପଥ ରାକ୍ଷସ ସଇନ"
ପରେ 'ଣ' ପୋଥିରେ ଅଧିକା ପାଠ—
ମନରେ ଦୁଃଖ କରି ବୋଲନ୍ତି ଶ୍ରୀରାମ
ନ ଦେଖି ସୀତାଂଙ୍କ ରାମ କରନ୍ତି ରୋଦନ ।
ଅନେକ ବିକଳ ଯେ ହୋଇଲେ ଦାଶରଥି
ସୀତାଂଙ୍କୁ ନ ଦେଖିଣ ଲକ୍ଷ୍ମଣ ରୋଦନ୍ତି ।
ରାମ ବୋଇଲେ ଜାନକୀ ଗୋ ତୁ ପୁଣି କେଣେ ଗଲୁ
ଘୋର ବନସ୍ତରେ ମୋତେ ଦୁଃଖ କର୍ମେ ଦେଲୁ ।
ତୁ ଯେ ମାହେଶ୍ୱରୀ ନ କଲୁ ବିଚାର
ଭାଇଂଙ୍କ ରଖିଗଲ, ଛାଡିଗଲୁ ପୁର ।
ଆମ୍ଭେ ବେନିଭାଇ ଗୋ କି କରିବୁ ଜାଣ
ଆମ୍ଭର ଆଆନ୍ତେ କେ ନେଲା ଆମ୍ଭର ପରାଣ ।
ବନସ୍ତେ କାହାକଇଂ ପଚାରିବୁ ଆମ୍ଭେ
ସାହାପକ୍ଷ ନାହିଂ କେହୁ ବିପୁନ୍ୟ ଆରମ୍ଭେ ।
ବହୁତ ମନକ୍ରୋଧେ ମୃଗଭାର ଥୋଇ
ଦୁଇ ଜଣଂଙ୍କ ବିକଳ ବା କେ ପାରିବ କହି ।
ଖାଇବା ବସିବା ଠାରୁ ଦରିବେଲେ ସୀତା ସୀତା
ଜଟାୟୁଷ କହଇ ତାହିଂର ବାରତା ।

ତାମ୍ର ଚୂଡ଼ାପକ୍ଷୀ ଯେ କହିଲା ବାରତା
ସ୍ୱାମୀ ରାବଣ ରାକ୍ଷସ ଯେ ହରିନେଲା ସୀତା । ୩୮୧ ।
ସନ୍ଦେଶ ବାରତା ପାଇଲେ ଯଦୁଂ ରଘୁନାଥେ
ମୁକୁଟ ବାନ୍ଧିଲେ ନେଇ ତମ୍ର ଚୂଡ଼ର ମାଥେ । ୩୮୨ ।
ତହୁଂଣ ସ୍ୱାମୀ ଯେ ଚଳିଗଲେ ଘୋରବନେ
ଚକ୍ରବାକ ପକ୍ଷୀକି ଦେଖିଲେ ଫଲ୍ଗୁ ନଦୀସ୍ଥାନେ । ୩୮୩ ।
ଶ୍ରୀରାମ ପଚାରନ୍ତେ ସେ କହିଲା ଅଭାବ
କୋପେଣ ଶାପ୍ୟ ତାକୁ ଦହିଲେ ରା ଦେବ । ୩ ୪ ।
ଚଳନ୍ତି ଶ୍ରୀରାମ ଯେ ବନ କନ୍ଦର ଭାଗେ
ବକଯୂଥ ଦେଖିଲେ ରାମ ବାଭାସୀ ନଦୀର ପୂର୍ବ ଭାଗେ । ୮୫ ।
ତାହାଂକୁ ପଚାରିଲେ ଦେଖିଲ କି ସତ୍ତା
ସେ ବୋଇଲେ ସ୍ୱାମୀ ତୋହୋର ବଲ୍ଲଭୀକି ହରିନେଲା ଲଂକପତି ।୩୮୬।

---

୩୮୫ { ଚଳନ୍ତି ଶ୍ରୀରାମ ଯେ କରଞ୍ଜ ବନ ଭାଗେ
ବକପକ୍ଷୀ ଦେଖିଲେ ରାମ ବଇତରଣୀର ପୂର୍ବ ଭାଗେ ।
—ଖ, ଣ, ନ, ଡ, ଥ, ଠ, ଟ

୩୮୬। "ସେ ବୋଇଲେ ସ୍ୱାମୀ ତୋହୋର ବଲ୍ଲଭୀକି ହରିନେଲା ଲଂକପତି"
ପରେ 'ଣ' ପୋଥିରେ ଅଧିକା ପାଠ—
ବୋଲନ୍ତି ରାମ ତୁତେ ମାଗ ମୋତେ ବର
ଦେବଇଂ ତୋହୋରେ ଆମ୍ଭ ମନ ଯେ ପୁଷ୍ଟିଲ ।
ବକ ବୋଲେ ବର ଯାଚୁ ଅଛୁ ତୁ କୃପାଳୁ
ବସାରେ ବସି ବସି ଆହାର ମୋତେ ମିଳୁ ।
ବକା ଚଉଷ୍ଠି ତୋର ମାଉଂସ ଆଣି ଦେଉ
ସ୍ୱେହୁ ବର ପ୍ରାପତ ରେ ବକ ତୋତେ ହୋଉ ।
ତାହା ଶୁଣି ବକ ଯେ ବୋଲଇ ଉତ୍ତର
ବଲ୍ଲଭୀ ଉଚ୍ଛିଷ୍ଟ କେହ୍ନେ କରିବ ଆହାର ।
ଶୁଣି ରାମ ବୋଲନ୍ତି ଉଚ୍ଛିଷ୍ଟ ଉତ୍ତର
କହନ୍ତି ପାନକରୁ ଓଷ୍ଠ ଯେ ତାହାର
ଶୁଣିଣ ଆନନ୍ଦ ବକ ଯେ ହୋଇଲା
ମେଲାଣି ମାଗି ବକ ପାଦରେ ପଡ଼ିଲା

ଶ୍ରୀରାମ ଶ୍ରୀରାମ ଯେ ସୁମରଇ ବାଳୀ
ପବନଙ୍କୁ ବେଗେ ରଥ ଯାଉଥାଇ ଚଳି । ୩୮୭ ।
ଅନେକ ସାନନ୍ଦ ସେ ହୋଇଲେ ଯୋଗେଶ୍ୱର
ରାମବରୀ ବୋଲି ଚୂଳ ବାନ୍ଧିଲେକ ମଥା ଉପର । ୩୮୮ ।
ବେଣୀଭଦ୍ରା ନଦୀର ଉତ୍ତର ସନ୍ନିଧାନେ
ଦେଖିଲେ ଜଟାୟୁଷ ପଡିଛି ଖଡଗ ନିଧନେ । ୩୮୯ ।
ଜଟାୟୁଷ ବୋଇଲା ବାବୁ ରାବଣ ରଥ ଥିଲି ଗିଳି
ସୀତା ରାମ ଘରଣୀ ବୋଲି ରଥ ପକାଇଲି ଉଦୁଗାରି । ୩୯୦ ।
ବାବୁ ଦକ୍ଷିଣ ବାରାନିଧିର ଉତ୍ତରେଣ ଲଂକା
ମୁହିଂ ବୁଡିଥିଲେ ତେତେ ଆଣିଦିଅନ୍ତି ସେ‌ୟକା । ୩୯୧ ।
ତୋହର ବଦନ ମୁହିଂ ଗୃହିଂବାର ନିମନ୍ତେ
ତେଣୁକରି ଜୀବନ ମୋ ରହିଛୁ ହୃଦଗତେ । ୩୯୨
କହିଣ ପ୍ରାଣତ୍ୟାଜ ହୋଇଲା ଜଟାୟୁଷ
ତାହାର ପିଣ୍ଡ ରାମ ଦହିଲେ ହୁତାଶ । ୩୯୩ ।
ଗୋରେଖନ୍ତ ଭେଟିଲେ ରାମ ପରମାର୍ଥ ବନେ
ଅନେକ ଯେ ଗାନ୍ତ ସେ କହିଲେ ପ୍ରସନ୍ନେ । ୩୯୪ ।
ତହୁଂ ଯାଇଂ ପ୍ରବେଶିଲେ ମନୋହର ବନେ
ମଣିବନ୍ଧା ଦେଇ ଗୋଗୋଷ୍ଠେ କ୍ଷୀର କଲେକ ଆପ୍ୟାନେ । ୩୯୫ ।
ତହୁଂ ଯାଇଂ ପ୍ରବେଶ ହୋଇଲେ ଅସକନ୍ଦ ବନେ
ଜମ୍ବୁ ଲତାସେ ଭେଟିଲେ ପବନର ନାନେ । ୩୯୬ ।
ଲକ୍ଷ୍ମଣ ହନୁମନ୍ତ ବୋଇଲେ ଦେହେଂ ପ୍ରୀତି
ବଜ୍ର କାଛଟା ଅମୃତ କୁଣ୍ଡଳ ଦେଖି ଚହ୍ନିଲେ ରଘୁପତି । ୩୯୭ ।
ହନୁମାନ ଭଗତି ହେଇଲା ରାମଂକୁ ଯହୁଂ
ଜମ୍ବେବ ସୁଗ୍ରୀବର ଦ୍ରୁଶନ କଲେ ତହୁଂ । ୩୯୮ ।
ସୁଗ୍ରୀବର ବଚନେ ସପତଶାଳ ଛେଦି
ମଇତ୍ର ସପକ୍ଷରେ ବାଳୀର ଦର୍ପ ମର୍ଦ୍ଦି । ୩୯୯ ।
ସୁଗ୍ରୀବର ଅଙ୍ଗଦ ଜମ୍ବେବ ଶତବାଳୀ
ଗନ୍ଧମାର୍ଦନ ସୁଷେଣ ଗବୟେ ଗବାକ୍ଷ ମହାବଳୀ । ୪୦୦ ।

ନଳ ନୀଳ ତାରାକ୍ଷ ଊର୍ଦ୍ଧ୍ୱକେତୁ ପ ଋମ ଯେ ବୀର
ହରିନାଥ ଦୃଢ଼ବନ୍ଧ କଞ୍ଚନକ ସଙ୍ଗନକ ମହାବୀର । ୪୦୧ ।
ଅଷ୍ଟାଦଶ ପଦ୍ମ ବାନର ବଳ ସାହେ
ମାଲ୍ୟବନ୍ତେ ବିଜେକଲେ ରଘୁକୁଳ ନାହେ । ୪୦୨ ।
ଜାନକୀର ନିମନ୍ତେ ଚତୁର୍ଦ୍ଦିଗେ ଦୂତ ପେଷି
ଦକ୍ଷିଣେ ହନୁମନ୍ତ ଲଙ୍କାଗଡ଼ ଧ୍ୱଂସି । ୪୦୩ ।
ଅନେକ ରୂପ ଧରି ଜାନକୀଙ୍କ କଲା ଠାବ
ସମସ୍ତ କୁଶଳ ବାରତା କହିଲା ରାମଦେବ । ୪୦୪ ।
ଲେଉଟି ସନ୍ତେକ ରାମକୁ ହେଲେକ ଜାନକୀ
ଆସନ୍ତେ ମାରୁତି ମଧୁବନ ତୋଡ଼ା ଦେଖି । ୪୦୫ ।
ଦେବାନ୍ତକ ନରାନ୍ତକ ନାଗାନ୍ତକ ତିନି
ଯେହାଙ୍କର ମୂଳେ ଧ୍ୱଂସିଲା ପାଞ୍ଚପଦ୍ମ ସଇନ । ୪୦୬ ।
ପ୍ରଶସ୍ତ ସେନାପତି ଆବର ଜମ୍ବୁମାଳୀ
ଅକ୍ଷୟକୁମାର ତୁଲେ ଅନେକ ଦୈତ୍ୟ ଦଳା । ୪୦୭ ।
ଇନ୍ଦ୍ରଜିତ ନାଗଫାଶ ବନ୍ଧନେ ଦହିଲା ଗଡଲଙ୍କା
ରାକ୍ଷସ ବଳ ମର୍ଦ୍ଦିଲା ରାମଦୂତ ରଣରଙ୍କା । ୪୦୮ ।
ବାହୁଡ଼ି ବାରତା ଯେ କହିଲା ରାମ ପାଶ
ଶୁଣିଣ ରଘୁନାଥ ବହୁତ ହରଷ । ୪୦୯ ।
ଶରଣ ପଶି ବିଭୀଷଣ କହିଲା ଅନେକ ବୁଦ୍ଧ
ଗିରିବର ଉପାଡ଼ି ରାମ ବାନ୍ଧିଲେ ବାରାନିଧି । ୪୧୦ ।
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ, ମହାଜିତ ଯମଘଣ୍ଟ
ବିବାନ ଘେନ ଅନେକ ଊର୍ଦ୍ଧ୍ୱକେଶା ଯେ ବିକୃତ । ୪୧୧ ।
ମନ୍ଦ ମେଖଳା କାଳାନ୍ତକ ଯମଜିତା
ନରାନ୍ତକ ଦୁରାନ୍ତେକ ଲୋହାସୁର ମହାଜିତା । ୪୧୨ ।

---

୪୦୩।୨ ଦକ୍ଷିଣେ ହନୁମନ୍ତ ଲଙ୍କାଗଡେ ପଶି ।—କ, ଅ, ଙ
୪୦୪।୧ ଅନେକ ସନ୍ୟଧ୍ୱଂସି ସଢଂକ କଲା ଠାବ ।—ଙ, ଅ

ସୁମୁଖା ଦୁର୍ମୁଖା ପାରୁଣ ମହାପାରୁଣ
ଶୁକ ସାରଣ କୁମ୍ଭ ନିକୁମ୍ଭ ରାକ୍ଷସ । ୪୧୩ ।
ଯମାନ୍ତକ ବିଦ୍ୟୁଜ୍ଜିହ୍ୱ ମାଲ୍ୟବନ୍ତ ମାଳୀ ଯେ ସୁମାଳୀ
କାଂକ ଥଂକ ବାହୁ ବଜ୍ରାଂକ ଉତ୍ତମ ମହାବଳୀ । ୪୧୪ ।
ଅପାରମୁଖ ଗଜମୁଖ, ଗନ୍ଧର୍ବମୁଖ ଦକ୍ଷବାହୁ
କ୍ଷିତିପୂକାଳ ଶକରମୁଖ ଶୃଗାଳମୁଖ ରୂପବାହୁ । ୪୧୫ ।
ଚନ୍ଦ୍ରଦେଣ ଅଶ୍ୱକର୍ଣ୍ଣ ଜୟନ୍ତକ ଓଷ୍ଟମୁଖ
ଅନ୍ଧକ ଶଙ୍କା କାଳମୁଖ ଜକ୍ରପାକ୍ଷ ଶୃଙ୍ଗପାକ୍ଷ । ୫୧୬ ।
ଅନେକ କଉଣୋପ ରାବଣର ମଲେ
ଅନେକ ସନ୍ୟଭୁଲେ ବଧିଲେ ଲଂକପାଳେ । ୪୧୭ ।
ସୀତାଙ୍କୁ ଅଗ୍ନି ପରୀକ୍ଷା କରଣ ଲଂକାରେ ମୁରାଟ
ମନ୍ଦୋଦରୀ ଭୁଟଲେ ବିଭୀଷଣଙ୍କୁ ଲଂକେ ବାନ୍ଧଲେ ପାଟ । ୪୧୮ ।
ଅନେକ ସାନନ୍ଦ ସେ ବାନର ସଇନ
ଉତ୍ତର ମୂରତ୍ତ ଶ୍ରୀରାମ ହରିବଳ ସଂଗେ ସେନ । ୪୧୯ ।
ମେଦମାର ଭାରଭର ହେଲେଣ ନିବାର
ଅନେକ ସାନନ୍ଦେ ଯେ ବିବୁଧେ ଭୋଗକର । ୪୨୦ ।
ଅଭିଷେକ ଅଯୋଧ୍ୟାରେ ହୋଇଲେ ରଘୁନାଥେ
ଋଷିମାନେ ଅର୍ଘ୍ୟଦେଲୁଂ ଆମ୍ଭେ ସମସ୍ତେ । ୪୨୧ ।
ଶୁଣ ବାବୁ ଯୁଧିଷ୍ଠି ବଦୟନ୍ତ ମାରକଣ୍ଡେ
ଶ୍ରୀରାମ ପରାୟେ ସ୍ୱାମୀଂକ ପ୍ରମାଦ ପଡିଲା ଯେତେ । ୪୨୨ ।
ସେହି ପୁଣି ସହିଲେଟି କର୍ମର ଅବଳେ
ପଶ୍ଚାତେ ପୁଣ ସୁଖ ଭୁଞ୍ଜିଲେ ଚିରକାଳେ । ୪୨୩ ।
ସୁଖ ଦୁଖ ଯେତି ରାତ୍ର ଦିବସ ବୋଲ
ଶୁଣ ଆହେ। ଧର୍ମରାୟେ ମୁଂ ଯାହା କହିଲ । ୪୨୪ ।
ଯେସନେକ ଚରିତ ଅଛିଟି ସର୍ବକାଳେ
ଦୁଖେକ ଅବଶ୍ୟ ହୋଅଇ କର୍ମର ଅବଳେ ୪୨୫ ।

---

୪୨୦।୧. ଅନେକ ସାନନ୍ଦ ତ୍ରିଭୁବନ ପୁରେ ।—ଝ, ଚ, ଅ

ଦୁଖର ଅନ୍ତରେ ପୁଣ ସୁଖ ହୋଇବୁ ଭୋଗୀ
ଯେହୁ. ଯେ ବସୁଅଇ ସେହି ସେ ପ୍ରମଯୋଗୀ । ୪୨୬ ।
ବଦଯୁନ୍ତି ଅଗସ୍ତି ପଣ୍ଡିତ ମହାଗ୍ୟାଂତା
ଆରଣ୍ୟକ ପର୍ବର ଯେତୁ ତତ୍ତ୍ୱ ଅର୍ଥ ବାରତା । ୪୨୭ ।
ଅନେକ 'ସ୍ଥାନଦେଶ ସେ ଧର୍ମ ରାଯେଂକର ତନୁ
ଚଳିଗଲେ କୋନ୍ତେ ଯେ ଦଣ୍ଡକା ଅରଣ୍ୟେଂ । ୪୨୮ = ୧୦-୦୭ ।

## ସତ୍ୟଭାମା ଓ ଦ୍ରୌପଦୀଙ୍କ କଥୋପକଥନ

ସେ ଦଣ୍ଡକା ଅରଣ୍ୟ ଯେ ପଶ୍ଚିମ ପ୍ରଶସ୍ତେ
ବିଷ୍ଣୁଭଦ୍ରା ବୋଲ ଯେବକଇ ବନସ୍ତେ । ୧ ।
ରୁଦ୍ରାଙ୍ଗୀ ବୋଲ ଯେବକଇ ନଦୀଗୋଟି
ବଟବେଣୀ ଭେଦ ଦକ୍ଷିଣ ଭାଗୁଂ ଫୁଟି । ୨ ।
ଅନଳକ ବୋଲଣ ଯେ ଯେବକଇ ପରବତେ
ତହିଂର ଉପରେ ବଜପୁ କଲେକ ପଞ୍ଚୁ ଭ୍ରାଥେ । ୩ ।
ସନ୍ନିଧେ ଅଛନ୍ତି ଦ୍ରୁପଦ କୁମାରୀ
ଋଷିମାନେ ସମସ୍ତେ ଜଳକ୍ରୀଡା କରି । ୪ ।
ବଇଶାଖ ଶୁକଳ ପକ୍ଷ ଦ୍ୱିତୀୟାର ତିଥି
ରୋହିଣୀ ନକ୍ଷତ୍ର ଯେ ବାର ବୃହସ୍ପତି । ୫ ।

୨।୨ ଆବର ବେଣିଭଦ୍ରା ଦକ୍ଷିଣକୋଣୁ ଫୁଟି ।—ଖ, ଣ, ନ
୩।୧ ବିଷ୍ଣୁଗର୍ଭ ବୋଲଣ ଯେ ଯେବକଇ ପରବତେ ।—ଦ, ଅ, ଞ୍ଜ

ବାଲବ ନାମେ କରଣ ଶୋଭନ ଯେ ଯୋଗ
ବୃଷ ସଂକ୍ରାନ୍ତିକ ସତାଇଶ ଦିନ ଭୋଗ । ୬ ।
ସେ ଦିନ ନାରକା ବଧକରି ବନମାଳୀ
ଆଣିଲେ ଧନରତ୍ନ ଷୋଳ ସହସ୍ର କନ୍ୟା ଅଗୁଳି । ୭ ।
ସତ୍ୟଭାମା ସାରଥି ଜଗନ୍ନାଥଂକର ରଥେ
ଯୁଧିଷ୍ଠିରଂକ ଭେଟିଲେ ବିଷ୍ଣୁ ଭଦ୍ରା ବନସ୍ତେ । ୮ ।
ଆସ୍ତାନ ଦେଖି ହରି ନନ୍ଦଘୋଷ କଲେ ତେଜ୍ୟା
ଯୁଧିଷ୍ଠିରଂକ ଚରଣେ ପ୍ରଣମ୍ୟ ତ ଦେବରାଜା । ୯ ।
ନାରାୟଣଂକୁ ଦେଖି ସାନନ୍ଦ ଧର୍ମସୁତ
ଆସ୍ତାନ ତେଜି ଦେବ କଲେକ କୋଳାଗ୍ରତ । ୧୦ ।
ଆଶ୍ରମବଟ ତଳରେ ବିଜୟେ ଦ୍ରୁପଦୀ
ପାଞ୍ଚାଳୀର ସନ୍ନିଧେ ଯାଇଂ ବିଜୟେ ଶତ୍ରୁବନ୍ଧି । ୧୧ ।
ଦ୍ରୁପଦୀ କୋଳାଗ୍ରତ କରନ୍ତି ଯେ ସତ୍ୟଭାମାଂକୁ
କୁଶଳ ବାରତା ଯେ ପଚାରନ୍ତି ତାହାଙ୍କୁ । ୧୨ ।
ସତ୍ୟଭାମାୟେ ବୋଇଲେ ଶୁଣ ଗୋ ମହାଦେବୀ
ସ୍ତିରୀକୁଳେ ଜାତ ହୋଇ ତୁମ୍ଭେ ବଡାଇ ସାଧବୀ । ୧୩ ।
ଯେ ମହୀମଣ୍ଡଳେ ଗୋ ଜୀବନ ତୋର ଧନ୍ୟ
ସର୍ବଗୁଣେ ସୁଲକ୍ଷଣୀ ତୁମ୍ଭେ ପ୍ରତକ୍ଷେ ଅଟ ଯିଦ୍ନସେନୀ । ୧୪ ।
କଥାୟେ ପଚାରିବି ଗୋ ଅଛଇ ମୋର ଇଚ୍ଛା
ଭାବେ କହିବା ଗୋ ତୋତେ କଲଇଂ ମୁଂ ପୁଚ୍ଛା । ୧୫ ।
ଦ୍ରୌପଦୀ ବୋଇଲେ ଗୋ ଯାର ଶ୍ରୀକୃଷ୍ଣ ବଲ୍ଲଭ
କେଉଂଣ କଥାକୁ ତୋତେ ଅବା ହୋଇଛି ଅସମ୍ଭବ । ୧୬ ।
ଅଥବା ମୋହୋର କହନ୍ତେ ଯେବେ ହୋଇବ ତୋହୋର କାର୍ଯ୍ୟସିଦ୍ଧି
କହିବା ତୋହୋର ଗୋ ଅସଖ୍ୟ କେଉଂଣ ବୁଦ୍ଧି । ୧୭ ।

---

୬ { କଉସ୍ତୁଭ ନାମେ କରଣ ଗଣ୍ଡ ନାମେ ଯୋଗ
ମେଷ ସଂକ୍ରାନ୍ତିକ ସତର ଦିନ ଭୋଗ ।—ଜ, ଚ, ଟ, ଢ, ଞ

ପାଞ୍ଚାଳୀର ଅଗ୍ରତେ ପୃଚ୍ଛାକଲେ ଶତ୍ରାବତୀ
ଯେକା ପୁରୁଷକୁ ଆମ୍ଭେ ଲକ୍ଷେକ ଯୁବତୀ । ୧୮ ।
ଯେକକୁ ଆରେକ ଆମ୍ଭେ ରୁପେ ବରାଙ୍ଗନା
ଅନନ୍ତ କୋଟି ବ୍ରହ୍ମାଣ୍ଡକୁ ଆମ୍ଭେ ଅପୂର୍ବ ଅଟୁ ସିନା । ୧୯ ।
ଅନେକ ବନୋୟୀ ଆମ୍ଭେ ଥାଉଂ ଦ୍ୱାରାବତି
ଯେତେ କନ୍ୟାରେ ମନାଇଂ ନୁଆରୁ ଯେକପତି । ୨୦ ।
ତୋହୋର ଚରିତ କେମନ୍ତ ଅଟଇ ଗୋ ମାୟେ
ଯେକାସ୍ତ୍ରୀ ଗୋ ପଞ୍ଚ ପୁରୁଷଂକ ଭଜାୟେ । ୨୧ ।
କେଉଣ ମହୌଷଧି ମନ୍ତ୍ର ଜାଣୁ ଗୋ ଜଡ଼ିଗୁଣ୍ଡି
ଭାବେଣ କହିବା ମୋତେ ତହିଂର ବାକ୍ୟଖଣ୍ଡି । ୨୨ ।
ଯେଉଂଣ ମନ୍ତ୍ରେ ମୁଂ ଗୋ ମୋହିବ ଚକ୍ରପାଣି
ମୋତେ ଯେହା ଭାବେ କହିବା ଗୋ ଗୋସାମଣି । ୨୩ ।
ଅପାର ଅଳଂକାର ଦେଲେକ ସତ୍ୟଭାମା
ବହୁତ ବନୋୟୀ ବୋଲନ୍ତି ଭୃତ୍ୟପଣେ ଅନୁକ୍ରମା । ୨୪ ।
ଅଥବା ଭାବ ଯେବେ ନୋହିବ ତୋହୋର
ତୋତେ କସ ବୋଲିବ ଯିଏ କର୍ମ ମୋହୋର । ୨୫ ।
ବଦନ୍ତି ପାଞ୍ଚାଳୀ ଗୋ ଶୁଣ ସତ୍ୟଭାମେ
ପଞ୍ଚ ପୁତ୍ର ପ୍ରାପତ ମୋତେ ପୂର୍ବର କର୍ମ ଅନୁସମେ । ୨୬ ।

---

୧୮। 'ପାଞ୍ଚାଳୀର ଅଗ୍ରତେ ପୃଚ୍ଛାକଲେ ଶତ୍ରାବତୀ' ପରେ
—ଗ, ଖ, ନ, ଠ ପୋଥିରେ ଭିନ୍ନ ପାଠ :—
ପାଞ୍ଚାଳୀକି ଗୁପ୍ତେ ପୃଚ୍ଛାକଲେ ଶତ୍ରାବତୀ
ପଞ୍ଚ ପୁରୁଷକୁ କପଟ ବଶ କର ଗୋ ଦ୍ରୋପଦୀ ।
ଷୋଡ଼ଶ ସହସ୍ର ଗୋ କୃଷ୍ଣର ଅଟୁ କନ୍ୟା
ସବୁରି ପୁରେ ପ୍ରବେଶ ହୋଅନ୍ତି ନନ୍ଦ କହ୍ନା ।
ଅଷ୍ଟପାଟବଂଶୀ ଆମ୍ଭେ ଥାଉଂ ଦ୍ୱାରାବତି
ଯେତେ କନ୍ୟା ମନାଇଂ ଆମ୍ଭେ ନୁଆରୁ ଶ୍ରୀପତି ।
ଯେଥିର ଚରିତ ମୋତେ କହିବା ଦ୍ରୋପଦୀ
ତୁମ୍ଭେ ପରମ ସାଧ୍ୱୀ ଗୋ ଅଟ ମହାସତୀ ।

ନ ଜାଣଇ ମଉଷଧି ନ ଜାଣଇ ମନ୍ତ୍ରଗୁଣ୍ଡି
ନୁହଇ ଗ୍ୟାନ ଦେଇ ମୁଂ ନ ଜାଣଇ ଭଣ୍ଡି । ୨୭ ।
ବ୍ରତମାନେ ବ୍ରତନ୍ତ ମୋହୋର ନିଜ ପତି
ମୁହିଂ ବର୍ତ୍ତର ଖଟଇ ତାହାଂକର ପ୍ରକୃତି । ୨୮ ।
ନିତ୍ୟ ସାଧ ଅର୍ଥେ ସାଧଇ ନିତ୍ୟକର୍ମ;
ଅନୁବ୍ରତେ ମୋତେ ସଦାଯେ ଇଚ୍ଛା ଦେବଧର୍ମ । ୨୯ ।
ନବ ଅଇବ୍ରତ ସୂପକାର ବଧି
ନିତ୍ୟେ ବୁଝାବଇଂ ରାନ୍ଧଣା ପାକସିଦ୍ଧି । ୩୦ ।
ନବଲକ୍ଷ ଖଟିଥାନ୍ତି ଧାଈ ପରିବାସି
ସବୁନ୍ତହିଂ ଚରଚଇ ମୁଂ ନିତ୍ୟକର୍ମ ବେଭାର । ୩୧ ।
ଅଶ୍ୱଶାଳ ଗଜଶାଳ ସବୁନ୍ତ କରଇ ଚରଚ୍ଚ
ବୁଭୁକ୍ଷିତ ଦେଖିଲେ ସବୁନ୍ତ ଦିଅଇ ସଞ୍ଜା । ୩୨ ।
ଦୁଖୀ ଅଭାଗ୍ୟବନ୍ତ ମୁଂ ନୁଆରଇ ଦେଖି
ଅଥବା ନିରାଶ ନୁଆସଇ ମୋହୋର ବାକ । ୩୩ ।
ମିଥ୍ୟା ବାକ୍ୟ ନଆସଇ ମୋତେ ହାଦେ ଭଳେ
ସମସ୍ୟା ନ ଦିଅଇ ମୁଂ ଅସଜନ ଦେଖିଲେ । ୩୪ ।
ମାତାପିତା ସ୍ୱାମୀ ଗୁରୁ ଅତିଥି ଦେବତା
ଯେହ୍ନାନ୍ତ ଆରାଧନା କରଇ ନିରଭ୍ରାନ୍ତା । ୩୫ ।
ତପୋଧନ ଦେଖିଲେ ବସଇ ମୋର ପ୍ରୀତି
ପରଜାଯେ ନୁଆସଇ ଅବଧି ପରକୃତି । ୩୬ ।

---

୨୮ { ମନ ବଚନ କର୍ତ୍ତବ୍ୟେ ମୋହୋର କିଛୁ ନାହିଂ
 { ସର୍ବଦା ସେଣ୍ଟଇ ମୁଂ ତାହାଂକର ପ୍ରକୃତିକି ଗୁହିଂ ।—ଖ, ଣ, ନ

୩୩।୧ ଦୁଖୀ ଅଭ୍ୟାଗତ ମୁଂ ନୁଆରଇ ଦେଖି ।—ଘ, ଣ, ଖ, ଝ, ନ, ଜ

୩୪ { ମିଥ୍ୟା ବାକ୍ୟ ନୁଆସଇ ମୋହୋର ବଚନ
 { ସତ୍ୟ ଆଚରଣ ମୁଂ ନେଉଥାଇ ଦିନ ।—ଖ, ଣ, ନ

ସ୍ୱାମୀଂକ ଆଦ୍ଧକର ଦାସଦାସୀଗଣ ଯାଏ
ସବୁନ୍ତ ମୋହୋର ହୃଦଗତେ ଏକଧାଏ । ୩୭ ।
ସମସ୍ତେ ଜାଣନ୍ତି ଯେ ମୋହୋର ପଞ୍ଚ ପ୍ରୁତ
ଉଚ ମାତ ମୋର ନାହ୍ୱଂ ସବୁନ୍ତହ୍ୱଂ ଏକ ଭକ୍ତ । ୩୮ ।
ସବା ସର୍ବଦାଏ ବ୍ରତନ୍ତି ଯେଉଂଣ ଜନ
ତାହାଂକୁ ଅଭ୍ୟାଗତ ଧାତା କରିବ କେସନ । ୯ ।
ଧାର୍ମିକ ବିବେକ ପଣ୍ଡିତ ସୁଭାଗ୍ୟ
ଧୃତ ଶ୍ରୃତ ଦେଖିଲେ ଜାଣଇଂ ଯେହ୍ନେ ଭଗ୍ୟଂ । ୪୦ ।
ଦ୍ରୋପଦୀ ବୋଇଲେ ଆନଗୋ କଲ୍ୟାଣୀ ଶୁଣସି ଶଙ୍କାବତୀ
ମନ୍ତ୍ର ଅଉଷଧିର ଏସନେକ ଖ୍ୟାତ । ୪୧ ।
ଗ୍ୟାନପୁର ବୋଲଣ ଏକଇ ହାଦେ ନଗ୍ର
କର୍ଣ୍ଣକେଶୀ ବୋଲ ତହ୍ନଂର ଏକ ଶୂଦ୍ରେ । ୪୨ ।

---

୪୨।୨ କଲ୍ପକେଶୀ ବୋଲ ଅଛଇ ଏକ ଶୂଦ୍ରେ ।— ଡ, ଝ
୪୨।୨ "କର୍ଣ୍ଣକେଶୀ ବୋଲ ତହ୍ନଂର ଏକ ଶୂଦ୍ରେ "
ପାଠପରେ ଖ, ନ, ଣ ରେ ଭିନ୍ନପାଠ ଅଛୁ :—

ଗୋପ୍ୟପୁର ବୋଲିକର ଏକଇ ନଗର
କର୍ଣ୍ଣକେଶୀ ବୋଲିକର ଅଟଇ ନୃପବର ।

ସେ କର୍ଣ୍ଣକେଶୀ ଭାରଯା ଅଟେ ସାନୁମତୀ
ସେ ରାଜା ଅପୁତ୍ରିକ ଯେ ଅଟଇ ଯୁଗାଧ ।

ସନ୍ତତି ନିମନ୍ତେ ସଦା ଭାଳଇ ନସ୍ୱାନ୍ତ
ବଂଶରକ୍ଷା ନିମନ୍ତରେ ତାର ବଡ ଖେଦ ।

ଅନ୍ୟ ସ୍ତ୍ରୀ କରିବା କରଇ ପଞ୍ଚ ମନ
ସାନୁମତୀକ ହକାରି ବୋଲଇ ରାଜନ ।

ଅପୁତ୍ରିକ ହୋଇଲି ମୁଂ ପୁତ୍ର ମୋର ନାହିଂ
କରିବି ଅନ୍ୟସ୍ତ୍ରିସ୍ତ୍ରୀ ମୁଂ ପୁତ୍ର ଜାତ ପାଇଂ ।

ଶୁଣିଣ ବିସ୍ମୟ ଯେ ହୋଇଲା ସାନୁମତୀ
ଲୋଡଇ ସେ ମନ୍ତ୍ର ମହୁଷଧି ଚଉକତି ।

ସେ କର୍ଣ୍ଣକେଶଙ୍କ ମଙ୍ଗଳ ଚଉଠିର ଦିନ
ସାଲୁମତୀ ଭାରିଯାକୁ ସେ ବୋଇଲେ ବଚନ । ୪୩ ।
ମୁହିଂ ତୋତେ ଅଦ୍ଧାଙ୍ଗୁଣୀ ଗୋ ବୋଲଇ ସଦଭାବେ
କନ୍ୟା ଗୋଟିଏ ଥୋଇବାକୁ ମୁଂ ଇଚ୍ଛା କରଇ ଯେବେ । ୪୪ ।

ମାସକରେ ଥରେ ତୋର ପାକା ପରସନ
ସପ୍ତଦିନ ରହେ ଆମ୍ଭେ ହେବା ଯେକାସନ । ୪୫ ।

ଶୁଣିଣ ବରସ ସେ ହୋଇଲା ସାଲୁମତୀ
ଲୋଡଇ ମନ୍ତ୍ର ଅଉଷଧି ରାଜଳଆଣୀ ଚଉକନ୍ତି । ୪୬ ।

ଅନେକ ଧନଦେଇ ସେ ପୁଚ୍ଛିବ ମନ୍ତ୍ରକୁ
କଉଣସି ମତେ କାର୍ଯ୍ୟସିଦ୍ଧ ନୋହିଲା ତାହାକୁ । ୪୭ ।

କରଞ୍ଜାକ ନାମେଣ ଯେକଇ ପିଙ୍ଗୁଣୀ
ଅନେକ ଭଣ୍ଡଇ ସେ ନଗ୍ରେଣ ଆସି ପଶି । ୪୮ ।

ଯେକାନ୍ତେ ରାଇ ତାକୁ ବୋଲଇ ସାଲୁମତୀ
ସୁହାଗ ଅଉଷଧି ଖଣ୍ଡି ଯେ ଦେବୁ ମୁଂ ହୋଇବ ସ୍ୱାମୀରେ ଭଗନ୍ତି । ୪୯ ।

ଅନେକ ଭଗନ୍ତି ଭାବେଣ ମୁଂ ହୋଇଲା ପରଣାମି
ତଥାପି ଆନ ଭାରିଯା କରତେ ଲୋଡଇ ମୋର ସ୍ୱାମୀ । ୫୦ ।

ସ୍ୱାମୀ ମୋ ଯେମନ୍ତେ ନ ଆଣିମେ ଆନ ଘରଣୀ
ତହିଂକ ମନ୍ତ୍ର ଗୋଟିଏ ଯେବେ ଦେବୁ ଗୋ ଯେହ୍ୱକ୍ଷଣି । ୫୧ ।

ମୂଳକା ଅଉଷଧି ଖଣ୍ଡି ଯେ ଦିଲାକ ପିଙ୍ଗୁଣୀ
ବୋଇଲା ମଧୁର ବଉଣେ ଯେହାକଇଂ ବାଟି ଦେସି । ୫୨ ।

କାଞ୍ଚୁ ଧନ ଘେନେଣ ତହୁଂ ପିଙ୍ଗୁଣୀ ଚଳଗଲା
ଅର୍କବାର ଦିନେ ତାହା ଭୋଜନ ବେଳେ ପରଷିଲା । ୫୩ ।

ଆଗୋ ସତ୍ୟଭାମା ସ୍ତ୍ରିଙ୍କର ଯେସନେକ ମନ୍ଦବୁଦ୍ଧି
କାଳେଣ ହୋଇଲା ସେ ବପାକ ମଉଷଧି । ୫୪ ।
ବେଦର ବେଗ ପ୍ରାଯେକ ବଢିଲା ତାର ପେଟ
ପ୍ରାଣତ୍ୟାଜ ହୋଇଲା ସେ କାଳର ନିକଟ । ୫୫ ।

ସମସ୍ତେକେ ସାଲୁମଣ୍ଡ ଭରଯା ଡାର ମଲ
କୃତାନ୍ତକ ଦେବତା ସ୍ତ୍ରୁମୁରେ ବସ୍ତୁର ହୋଇଲ । ୫୬ ।
ନାଶକର ବୋଇଲେ ସ୍ତେ ଅଟଇ ସ୍ୱାମୀଦ୍ରୋହୀ
ସ୍ତେ ମୋଡ଼ୀ ପାମେଶ୍ୱର ହାଦେ ମୁଖହ୍ବଂ ନ ଗୃହ୍ବଂ । ୫୭ ।
ଔଜଷଧ୍ ଦେଇଣ ସ୍ତେ ସ୍ୱାମୀକି ନାଶକଲ
ତଳ ପ୍ରମାଣେ ମାସ୍ତେଂସ କାଟ ବୋଇଲ । ୫୮ ।
କୋପେଣ ବୋଇଲ କୃତାନ୍ତେକ ଦଣ୍ଡଧର
ସ୍ତେହାର ମାସ୍ତେଂସ ନେଇ ତମ୍ବାଭଣ୍ଡେ ଭର । ୫୯ ।
ତନ ବରଷ ପରଯନ୍ତେ ମାସ୍ତେଂସ ଡାର ପୋଡ
ଜୀର୍ଣ୍ଣକୂପେ ପକାଅ ନେଇ ମଣ୍ଡୁକା ଜୀବକର । ୬୦ ।
ଦ୍ରୋପଦୀ ବୋଇଲେ ଚଗୋ ଶୁଣ ସତ୍ୟଭାମେ
ମଉଷଧ୍ କଲ ପ୍ରକୃତିରୁ ସ୍ତ୍ରିୟାଂକର ସ୍ତେସନେକ ମନ୍ଦକର୍ମେ । ୬୧ ।
ପୁଣ୍ୟ ଅରଜଲେ ହୋଅଇ ସଉଭାଗ୍ୟବନ୍ତୀ
ଅମୀତ କର୍ମେ ନ ଥିଲେ ସ୍ତ୍ରିୟାଂକର ସଦଗତି । ୬୨ ।
ମୁହଂତ ଦେଖିଲି ତୋର ସଉଭାଗ୍ୟବନ୍ତୀପଣ
ଅର୍ଦ୍ଧଆତ୍ମା ତୋତେ କରିଛନ୍ତି ନାରାୟଣ । ୬୩ ।

---

୫୬।୧ "ସମସ୍ତେକ ସାଲୁମଣ୍ଡ ଭରଯା ଡାର ମଲ" ସ୍ଥାନରେ
ଖ, ଣ, ନ ରେ ଭିନ୍ନପାଠ :—

ମଉଷଧ୍ ଭୋଜନେ ରାଜନ ନାଶଗଲ
ପୁଣି ସମସ୍ତେକେ ସାଲୁମଣ୍ଡ ମଲ ।
ନାଶକର ସଙ୍ଗରେ ଯେ ବସ୍ତୁର ହୋଇଲ
ଚିତ୍ରଗୁପତଂକୁ ରାଇ ଯମ ପୃଚ୍ଛାକଲ ।
ଚିତ୍ରଗୁପତେ କହିଲେ ସ୍ତେହୁଟି ସ୍ୱାମୀଦ୍ରୋହୀ
ସ୍ତେ ପାପିଷ୍ଟୀ ମୋଡ଼ୀର ମୁଖ ଯେ ନ ଗୃହ୍ବଂ ।

୬୨।୧ "ପୁଣ୍ୟ ଅରଜଲେ ହୋଅଇ ସଉଭାଗ୍ୟବନ୍ତୀ"
ପରେ "ଖ, ଣ, ନ" ରେ ଭିନ୍ନପାଠ:—

ଅମୀତ କର୍ମେ ଥିଲେ ତିଆଂକର ମନ୍ଦଗତି
ଭବରେ ସେବାକଲେ ସିନା ଭଜନ୍ତି ସେ ପତି
ପତିଭକ୍ତା ସ୍ତ୍ରିୟାଂକର ଅଟେ ସଦଗତି ।

ତୋହୋରେ ଇନ୍ଦ୍ର ଦେବତାରେ ସେ ଅପ୍ରୀତ ହୋଇଲେ
ପାରିଜାତକ ତରୁ ହରି ହରିଲେ ତୋର ବୋଲେ । ୬୪ ।
ଗୋସିଂହ ବଧ ଦେଖି କରାଇଲୁ ଯେବେ
ତୋହୋରେ ଯେବେ ସେ ବଧ ଗଲେକ ନାରକା । ୬୫ ।
ଜାଣିଣ ଖଟିଲେ ସେ ସ୍ୱାମୀର ପ୍ରକୃତି
ତେମନ୍ତେ ହୋଇ ସେ ସ୍ୱାମୀରେ ସଉଭାଗ୍ୟବନ୍ତୀ । ୬୬ ।
ତପେଣ ବ୍ରହ୍ମ ଯେ ହରକ୍ଷେଣ ଧର୍ମ
କାଳେଣ ପାପତାପେ ହୋଇଲା ଅପକର୍ମ । ୬୭ ।
କୋପେଣ ଶାନ୍ତ ଯେ ଦମ୍ଭେଣ କୃତାର୍ଥୀ
ଭୟେଣ ପ୍ରକୃତି ଯେ ଲୟେଣ ନିଭ୍ରାନ୍ତ । ୬୮ ।
ପୁରୁଷର ବେଭାର ଯେ ଚଉଷଠି କଳା
ଯେଥକୁ ଶୀତଳଭାବ ଗୋ ଅନନ୍ତ ଅବଳା । ୬୯ ।
ମାଗୋ ଜନ୍ମହୋଇ ପରେ ହୋଯେ ହୃଦର ବଲ୍ଲଭା
ପୁତ୍ର ପଉତ୍ରୀ ଉପୁଜଲେ ସମସ୍ତ ସମ୍ପଦା । ୭୦ ।
ତିନଅକ୍ଷର ଯେ ଅଟଇ ସ୍ତ୍ରିରିଙ୍କର ନାମ
ପ୍ରଥମ ଅକ୍ଷରେ ମାଆପଦ ବ୍ରହ୍ମ । ୭୧ ।
ଦୁଜ ଅକ୍ଷରେ ଆଈ, ତିଜ ଅକ୍ଷରେ ପୁଅ
ଯେ ବଧରେ ସ୍ତ୍ରିରିଙ୍କ ଗୋ ଲାଗିଲା ବଡ ସ୍ନେହ । ୭୨ ।
ମାତାପ୍ରାୟେ ପାଳ ଗୋ ଆଈ ପ୍ରାୟେ ସେନେହ
ପୁତ୍ରପ୍ରାୟେ ଭଗତି ହୋଇ ସେବବଟି ସେହ । ୭୩ ।
ଯେ ବଧରେ ମାଇପ ଗୋ ସ୍ତ୍ରିରିଙ୍କର ତିନନାମ
ଯେ ବଧ ତିନକର୍ମରୁ ତିରିଙ୍କର ନାମ । ୭୪ ।
ପତି ଉପଗତେ ଆସନ ପରତେଜ୍ୟା
ଅତିଅନ୍ତ ପ୍ରୀତିରେ ମଣାଇବ ଶେଯ୍ୟା । ୭୫ ।

---

୬୪ { ତୋର ପାଇଁ ଇନ୍ଦ୍ର ଭୁଲେ ବବାଧୀ ହୋଇଲେ
ପାରିଜାତକ ତରୁ ନେଇ ଦ୍ୱାରକାଯେ ରଖିଲେ ।—ଣ, ଖ, ନ

୭୫।୧ ଭଗତେ ଲଜ୍ୟା ଗୋ ଆସନ ପରତେଜ୍ୟା ।—କ, ଚ

ଆଗୋ ସତ୍ୟଭାମା ଯେସନେକ ବେଶରେ ଖଟିଲେ ସ୍ୱାମୀଂକ
ଆବର ମନ୍ତ୍ର ମଉଷଧିମାନ ଲୋଡ଼ବ କାହିଂକ । ୭୬ ।
ସେ ଯେ ଅର୍ଣ୍ଣପୂର୍ଣ୍ଣା ଅନାଦ୍ଧ ସିଦ୍ଧ ବୁଦ୍ଧି
ସୁବାକ୍ୟ କହିଣ ସତ୍ୟଭାମାଂକୁ ପ୍ରବୋଧି । ୭୭ ।

। ୧୦୦୫୬ ।

---

୭୬।୨ { ଜାଣିକରି ଖଟଇ ଯେ ସ୍ୱାମୀର ପ୍ରକୃତି
ସେହୁ ସ୍ତ୍ରିୟ ସ୍ୱାମୀର ଧନଭାଗୀ ହୁଅନ୍ତି ।—ଣ, ଖ, ନ, ଠ

୭୭।୨ { ସୁବାକ୍ୟ କହିଣ ସତ୍ୟଭାମାଂକୁ ପ୍ରବୋଧି
ଚିନ୍ତା ଛଡ଼ାଇଲେ ତାଂକ ମନରୁ ଦ୍ରୋପଦୀ ।—ଣ, ଖ, ନ, ଠ

## ନଳରାଜା ଉପାଖ୍ୟାନ

କହନ୍ତ ଅଗସ୍ତି ଆହେ ମନୁ ମହୀପତି
ଯେ ଉତ୍ତରୁ ଯାହା ହେଲା ଶୁଣ ଦେଇ ମତି । ୧ ।
ଯେମନ୍ତର ସମୟେ ପ୍ରବେଶ ମୁନି ବ୍ୟାସେ
ପାଣ୍ଡବେ ପୂଜାକଲେ ଭଗତି ବିଶ୍ୱାସେ । ୨ ।
ଆଶିଷ କଲ୍ୟାଣେ ମହାତମା ବହୁତ ବାଞ୍ଛି
ଦେଖିଲେ ଯୁଧିଷ୍ଠିରଙ୍କ ତୁଲେ ଅଛନ୍ତି ଶ୍ରୀବଚ୍ଛି । ୩ ।
ଯୁଧିଷ୍ଠିର ବୋଇଲେ ତାତ ପୁଣ୍ୟବନ୍ତ ଧୃତରାଷ୍ଟ୍ର
ରାଜ୍ୟଧର ହୋଇଲେ ସେ ଆମ୍ଭେ ବନେ ଯେତେ କଷ୍ଟ । ୪ ।
ଯେତେଂଣ ଦିନ ପାଉଂ ଫଳମୂଳ ଖାଉଂ
ଅଳସ ସଂଜାତ ହୋଇଲେ ଉପବାସେ ଥାଉଂ । ୫ ।
ବଦନ୍ତ ବେଦବ୍ୟାସେ ଶୁଣ ଦେବ ଧର୍ମେ
ଦୁଖ ସହିଲେ ସେ ହୋଅଇ ପରମ ମହାତମେ । ୬ ।
ସତ୍ୟଯୁଗେ ଇଛାକୁର ବଂଶେ ନଳନାମେ ନୃପତି
ମହାଧାର୍ମିକରାଜା ଯେ ପାଇଲାକ ବଡ ଶାସ୍ତି । ୭ ।
ତୁମେ ପଞ୍ଚ ଭ୍ରାତ ତୁଲେଣ ଅଛଇ ପତ୍ନୀ
ବଶିଷ୍ଠ ମାରକଣ୍ଡ ତୁଲେ ଲୋମଶ ମହାମୁନି । ୮ ।
ଯୁଧିଷ୍ଠିର ବୋଇଲେ ଅପୂର୍ବ ଯେତ୍କକଥା
କିସ ଅର୍ଥେ ନଳରାଜା ପାଇଲେକ ଯେତେକ ଅବସ୍ଥା । ୯ ।

---

୨।୧ ଯେଥୁ ଅନନ୍ତରେ ଶୁଣିମା ଦ୍ୱିବ୍ୟରସ
ପାଣ୍ଡବେ ପୂଜା ପ୍ରଣମ୍ୟ କଲେ ପୀତବାସ ।—ପାଠାନ୍ତର

୪ { ଯୁଧିଷ୍ଠିର ବୋଇଲେ ଦେବ ଦେଖ ମୋର କଷ୍ଟ
ମୋହୋର କର୍ମ ଅବଲେ ହୋଇଲୁସି ନଷ୍ଟ ।—ପାଠାନ୍ତର

୯ { ଯୁଧିଷ୍ଠିର ବୋଇଲେ ହୋ କେମନ୍ତ ସେହୁ କଥା
ସଞ୍ଚିପି କହିବା ମୋତେ ନଳରାଜାର ବାରତା ।—ଖ, ଣ, ନ

ବଦସ୍ପନ୍ତ ବ୍ୟାସେ ଶୁଣ ହୋ ଯୁଧିଷ୍ଠି
ଯେଉଂପରି ନଳରାଜା ହୋଇଲେକ କଷ୍ଟି । ୧୦ ।
କୁଞ୍ଜକୁସଲ ନଦୀକୂଳେ ନଇଷଧ ନାମେ ଦେଶ
ବୀରସେନ ବୋଲି ରାଜା ଅର୍କସେନର ଶିଷ । ୧୧ ।
ତାହାର ଭାରିଯା ନାମ ଅଟଇ ଋତୁମତୀ
ନଳକୁମର ବୋଲଣ ତାହାର ସନ୍ତତି । ୧୨ !
ବଇଦର୍ଭ ଦେଶରେ କୁଣ୍ଡୀ ନାମେ ନଗ୍ରୀ
ଭୀମେକ ବୋଲଣ ଯେ ତହିଁର ଦଣ୍ଡଧାରୀ । ୧୩ ।
ସତ୍ୟଯୁଗେ ରୋମାଞ୍ଚ ନାମେଣ ମହର୍ଷି
ତାହାର ପ୍ରସନ୍ନେ ପାଇଲେ ଦୁହିତା ଏକ ତିନ.ଶିଷ । ୧୪ ।
ଜ୍ୟେଷ୍ଠ ଦୁହିତାର ନାମ ଅଟଇ ଦମୟନ୍ତୀ
ଦମ ଦୃମସ୍ପନ ଦୃମତ ତିନ ଯେ ସନ୍ତତି । ୧୫ ।
ଅତିଅନ୍ତ ରୂପବନ୍ତୀ ସେ ଦମୟନ୍ତୀ ବାରଙ୍ଗନା
ଦେବଗଣ ଋଷିଗଣ ଦେଖି ହୋଅନ୍ତି ମୋହ ସିନା । ୧୬ ।
ମସ୍ପାଣ ବାଣ ତେଜଇ ତାହାକଇଂ ଦେଖି
ଅନକର ନାଥ ଯାଇ ନୁଆରଇ ତାହାକୁ ଉପେକ୍ଷି । ୧୭ ।
ନଇଷଧ ଦେଶରେ ଅଛି ମାନସରୋବର
ଇନ୍ଦ୍ରର ହଂସଯୂଥମାନେ ଚରନ୍ତି ତହିଁର ଭିତର । ୧୮ ।
ଅନେକ ନଳ ତହୁଂ ଧଇଲେ ଏକହଂସୀ
ଆଉର ହଂସମାନେ ଗଗନେ ଯାଇ ପଶି । ୧୯ ।
ହଂସିନୀ ବୋଇଲେ ମୋତେ ନ ନାଶ ନରପତି
ଆମ୍ଭେ ସୁକାର୍ଯ୍ୟ ତୋହୋର କରାଇବୁ ପ୍ରାପତି । ୨୦ ।
କୁଣ୍ଡୀ ନଗ୍ରେ ସେ ଯେ ଭୀମେକ ବୋଲି ରାଯ୍ୟେ
ଦମୟନ୍ତୀ ବୋଲି ତାର ଏକ ଦୋହିତାଏ । ୨୧ ।
ତୁ ଯେବେ ଆମ୍ଭରେ ପ୍ରିୟଭାବ ହୋଇବୁ
ସେ ସୁନ୍ଦରୀକ ତୋତେ ଭେଟ କରାଇବୁ । ୨୨ ।

---

୧୫।୨ ଦୁମନ, ଦୁଶନ, ଦୁରସ୍ପନ, ଦୁକଣ୍ଠି, ଦୁମତ ପ୍ରଭୃତି ନାମ ରହିଅଛି ।

ଶୁଣିଣ ନଳକୁମାର ହୋଇଲା ଆଶ୍ରିଜ
ପକ୍ଷୀ ହୋଇ ଭାଷା କହଇ ମନୁଜ । ୨୩ ।
ଅନେକ ରତ୍ନ ଭୂଷଣ କରାଇଲା ତାରକାସ୍ୱେ
ସ୍ୱେବେ ତୁ ବଇଦର୍ଭ ଦେଶକୁ ଚଳ ହଂସରାସ୍ୱେ । ୨୪ ।
ମୋହୋର କଥାମାନ ଦମୟନ୍ତୀ ଆଗେ କହ
ଯେମନ୍ତେ କନ୍ୟା ମୋତେ ବଳାଇବ ସେନେହ । ୨୫ ।
ଆଗ୍ୟାଂ ପ୍ରମାଣେ ଯେ ଚଳଇ ହଂସଦୂତ୍ତି
ବଇଦର୍ଭ ଦେଶରେ ଯାଇ ମିଳିଲା ତତକ୍ଷଣ । ୨୬ ।
ସରୋବରେ ଚରନ୍ତେ ଦେଖିଲା ଦମୟନ୍ତୀ
ସନଧେ ବସାଇ ଗଲା କଣସ୍ଥ ହଂସଦୂତ୍ତି । ୨୭ ।
ଦମୟନ୍ତୀ ପଚ୍ଚରଇ କ ସରୂପ କହ ହଂସୀ
ପକ୍ଷୀ ହୋଇଣ ତ ମନୁଷ୍ୟ ଭାଷା ଭାଷି । ୨୮ ।
ହଂସୀ ବୋଇଲା ତୁ ଶୁଣସି କୁମାରୀ
ଆମ୍ଭେ ଦେବଦୂତ ଅଟୁ ତୋର ଉପକାରୀ । ୨୯ ।
ନଇଷଧ ଦେଶେ ବୀରସେନ ବୋଲି ରାଜ
ନଳ ନାମେଣ ତାହାର ସ୍ୱେକଇ ଆତ୍ମଜ । ୩୦ ।
ଅନଂଗ ପଟାନ୍ତର ପ୍ରାସ୍ୱେ ସେ ଦଶଇ କୁମର
ଚିତ୍ରପଟ ଦେଖାଇଲା ଦମୟନ୍ତୀ ଆଗର । ୩୧ ।
ତାହାର ସମାନେ ସୁନ୍ଦର ନାହିଂ ସ୍ୱେ ପୃଥୀ
ତୋହୋର ସମାନେ କେହୁ ନାହିଂ ରୂପବନ୍ତୀ । ୩୨ ।
ଦୁହେଂ ସ୍ୱେକଯୋଗ ହୋଇବ ଯେତେବେଳେ
ରତି କାମଦେବ ପ୍ରାସ୍ୱେ ଦିଶିବ ମହୀତଳେ । ୩୩ ।
ବହୁତ ପଟାନ୍ତର କହଇ ହଂସଦୂତ୍ତି
ନଳକଇଂ ସେନେହ ବଢାଇଲା ଦମୟନ୍ତୀ । ୩୪ ।
ମୁହିଂ ତୋହୋର ଶରଣ ଯାଇ ହଂସଦୂତ୍ତି
ଉପାସ୍ୱେ କର ମୋରେ ନଳକୁ କରାଇବ ପତି । ୩୫ ।
ହଂସୀ ବୋଇଲା ତୋର କର୍ମ ଯେବେ ସୁଫଳ
ଆମ୍ଭେ ଆଣି ତୋତେ ଗୋ ଭେଟାଇବା ନଳ । ୩୬ ।

ପଞ୍ଚ ଦିବସକୁ ସେ କଣ୍ଟକର ଗଲେ
ନଳର ଆଗେଣ ଯାଇ ବାରତା କହିଲେ । ୩୭ ।
ବୁଡିଲ୍ଲ ସୁନ୍ଦରୀ ଯେ ତୋହୋର ପ୍ରତିଆଶେ
କେମନ୍ତେ ନଳ ଯାଇ ମିଳିବୁ ତାର ପାଶେ । ୩୮ ।
ଦିନକୁ ଦିନ କ୍ଷୀଣ ହୋଇଲାକ ବାଳୀ
ମଦନ ଶରଘାତେ ଶରୀର ବିକଳ । ୩୯ ।
ସ୍ନାହାନ ଭୋଜନ ଯେ ମଣଇ ବିଷପିତା
ନଳକଇଂ ଲଗିଲ୍ଲ ମଦନେ ମହାଚିନ୍ତା । ୪୦ ।
ମୁହୁସୁଲ୍ଲ କହଇ ଶୁଣିମା ଶ୍ରୀମେକ ରାଜନ
ହୋଇତା ବରଣ୍ଟାତା ତୁମ୍ଭେ ନ କଲ ପ୍ରଦାନ । ୪୧ ।
ଅବିଭାଇ ହୋଇ ଦୋହିତା ପିତାଘରେ ହୋଇଲେ ରଜୋବନ୍ତୀ
ଆପଣାର ପିତୃଲୋକେ ହୋଅନ୍ତି ନର୍କଗତି । ୪୨ ।
ଭାଳଇ ଶ୍ରୀମେକ ଯେ ଅଭୟେ ଚନ୍ଦ୍ରବ୍ରତୀ
ସୟଂବର କରିବା ହୋ ରାଜାନ୍ତ ନିମନ୍ତ । ୪୩ ।
ପୃଥିବୀର ରାଜାମାନନ୍ତ କଲାକ ନିମନ୍ତ୍ରଣ
ସକଳ ଦେଶକଇଂ ପେଶିଲେ ଗୃହଗଣ । ୪୪ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଦିଗନ୍ତର
ସୟଂବର ନିମନ୍ତେ ଅଇଲେ ସକଳ ଦଣ୍ଡଧାରୀ । ୪୫ ।
ରଥ ଗଜ ଅଶ୍ୱ ସଇନ ଅଶେଷ
ଶତେଯୋଜନ ପରିଯନ୍ତେ ନାହିଂ ଅବକାଶ । ୪୬ ।
ବାଜଇ ବିଜୟଘୋଷ ଝମକ ଦାଉଣ୍ଡି
ଅନେକ ରତ୍ନ ଭୁଷଣେ ରଥ ଗଜ ଅଶ୍ୱ ମଣ୍ଡି । ୪୭ ।

---

୪୭।୨ "ଅନେକ ରତ୍ନ ଭୂଷଣେ ରଥ ଗଜ ଅଶ୍ୱ ମଣ୍ଡି"
ଏହି ପାଠପରେ "ବ" ପୋଥିରେ ଭିନ୍ନପାଠ :—
ଉତ୍ତରେ ଦୁଇଗୁଣା ଗୃଳଶ ସହସ୍ର
ପଶ୍ଚିମେ ସ୍ୱେକଗୁଣା ପଞ୍ଚାସ ସହସ୍ର ।
ପୂର୍ବେ ସ୍ୱେକଗୁଣା ସାତ ସହସ୍ର
ଦକ୍ଷିଣେ ସ୍ୱେକଗୁଣା ଛନ ସହସ୍ର ।

ଉତ୍ତରେ ଲକ୍ଷେରାଜା ପଶ୍ଚିମେ ରାଜା ଲକ୍ଷେ
ପୂର୍ବେ ଅର୍ବୁଦେକ ଦକ୍ଷିଣେ ଅର୍ବୁଦେ ଲେଖେଂ । ୪୮ ।
ଯେତେକ ରାଜା ବସଇ ସତ୍ୟଯୁଗକଇଂ ପୃଥୀ
ଆନନ୍ଦେ ଅଇଲେ ସକଳ ଦେଶର ନୃପତି । ୪୯ ।
ଅନେକ ଭୂଷଣ ହୋଇଣ ସର୍ବରାଯେ
ପ୍ରବେଶ ହୋଇଲେ ଆସି ସୟଂବର ସଭାଯେ । ୫୦ ।
ବଡ଼ାଇ ସମ୍ଭ୍ରମ ଅଟେ ନଗ୍ରେ ନଇଷଧ
ଢୋଲ ବଜଘୋଷ ଦମା ବାଜଇ ବିବିଧ । ୫୧ ।
ଉଚ୍ଛବ ଦେଖିତେ ନାରଦେ ପ୍ରବେଶି
ଦେଖିଲା ଖ୍ରୀମେକ ଯେ ବିଜଯେ ବ୍ରହ୍ମଋଷି । ୫୨ ।
ନାରଦଂକ ପାଦେ ଆସି କଲେ ଦିବ୍ୟପୂଜା
ଆସନ ପାଦ୍ୟାସନରେ ପୂଜ ମହାରାଜା । ୫୩ ।
ସୁବର୍ଣ୍ଣ ଆସନେ ବିଜଯେ ବ୍ରହ୍ମଋଷି
କିସ ଉଚ୍ଛବ ବୋଲି ମୁନି ସଭାରେ ପ୍ରକାଶି । ୫୪ ।
ବୋଲଇ ଖ୍ରୀମେକ ଶୁଣିମା ମହାଯତି
ଦୋହିତାର ନାମ ମୋର ଅଟଇ ଦମୟନ୍ତୀ । ୫୫ ।
ତାହାକଇଂ ବର ମୁଂ ଯେ ନପାଇଲି ସରୂପେ
ସୟଂବର କଲି ମୁହିଂ କନ୍ୟାର ଅନରୂପେ । ୫୬ ।
ନାରଦେ ଦେଖିଲେ ଯେ ଦମୟନ୍ତୀର ମୂରତି
ଆକାଶ ଅପର୍ଣ୍ଣା ଯେ ନ ଯୋଗାଇ ଭୂଅପତି । ୫୭ ।
ତତକ୍ଷଣେ ମହାତମା ଗଲେ ଅନ୍ତରୀକ୍ଷେ
ଅମର ସ୍ୱର୍ଗ ଯାଇଂ କହିଲେ ସହସ୍ରାକ୍ଷେ । ୫୮ ।
ଆହୋ ସୁରନାଥ ମଧ୍ୟପୁରେ ନଇଷଧ ଦେଶେ ଖ୍ରୀମେକ ଚକ୍ରବର୍ତୀ
ଅଶ୍ୱସେନ ନନ୍ଦନ ସେ କାର୍ତ୍ତିକସେନ ନାତି । ୫୯ ।

---

୪୯।୧ { ଗୃରଉତେ। ଲକ୍ଷେ ରାଜା ବସଇ ଯେତେ ପୃଥୀ
ପ୍ରୀତି ଆସେ ଅଇଲେ ସକଳ ନରପତି ।
—ପାଠ କେତେକ ପୋଥିରେ ଦେଖାଯାଏ ।

ଦମୟନ୍ତୀ ବୋଲକର ତାହାର ଦୂଲଣୀ
ତୋତେ ଅଭିଷେକ ଯୋଗାଏ ବଜ୍ରପାଣି । ୬୦ ।
ରାଜାନ୍ତ ନମନ୍ତ୍ରିଣ ସେ କରଛି ସ୍ୱୟଂବର
ରମ୍ଭା ସହିତେ ତାଙ୍କୁ ନୋହିବେ ପଟାନ୍ତର । ୬୧ ।
ସୃଷ୍ଟି ବଶେ ସମର୍ଥ ସେ ଅଟଇ ମଘବା
ମାତଲିଙ୍କ ବୋଇଲେ ପୁଷ୍ପକ ଜ ବନ୍ଧନ ହୋଇ ଯିବା । ୬୨ ।
ଇନ୍ଦ୍ରଙ୍କୁ ଚଳାଇ ସେ ନାରଦେ ଗଲେ ବେଗେ
ଦମୟନ୍ତୀ ବାରତା କହିଲେ କୁବେରର ଆଗେ । ୬୩ ।
ତୋହୋର ଅଳକାକୁ ସେ ଖଟଇ ଯୁଗତ
ପାରୁ ଯେବେ ଘେନଆସ ଆହୋ ଧନପତ । ୬୪ ।
ଶୁଣିଣ କୁବେର ଯେ ହୋଇଲେ ଆରତ
ତତକ୍ଷଣେ ଆରୋହିଲେ କଣୟ ନାମେ ରଥ । ୬୫ ।
କୁବେରଙ୍କୁ ଚଳାଇ ସେ କଳହପ୍ରିୟ ମୁନିବର
ଦମୟନ୍ତୀ ରୂପ ଗୁଣ କହିଲେ ଅଗ୍ନିଦେବତା ଆଗର । ୬୬ ।
ଆହୋ ବଇଶ୍ୟାନର ତୁମର ତେଜେ ସଂସାର ହୋଏ ଦହି
ଦମୟନ୍ତୀର ରୂପ ତେଜକୁ ତୋହୋର ତେଜ କାହିଁ । ୬୭ ।
ନାରଦଙ୍କ ବାକ୍ୟରୁ ଯେସନେକ ବାକ୍ୟ ଶୁଣି
ଅନଳ ଦେବତା ବଜେକଲେ ତତକ୍ଷଣି । ୬୮ ।
ଅଗ୍ନିଙ୍କ ଚଳାଇ ସେ କଳହପ୍ରିୟ ଋଷ
ବରୁଣ ଦେବତା ଆଗେ କହିଲେ ବେଗେ ଆସି । ୬୯ ।
ଯେ ଜଳଦ ଭୁବନେ ତୁ ଅଟୁ ଆଧିପତ
ଯେ ପୁରକଇଂ ଅଳଂକ ର ଅଟଇ ଦମୟନ୍ତୀ । ୭୦ ।
ବରୁଣ ବାହାର ହୋଇଲେ ନାରଦଙ୍କ ବୋଲେ
ତ୍ରିବେଣୀ ଗଂଗାକୂଳେ ଗୃହରେଂ ଭେଟହୋଲେ । ୭୧ ।

---

୬୧।୧ ଶଚୀ ସହିତେ ତାଙ୍କୁ ନୋହିବେ ପଟାନ୍ତର ।—ଣ, ଖ, ନ
୬୪।୧ ତୋହୋର ଅଳକାପୁରକୁ ଯୋଗାଇ ସେ ଯୁବତୀ ।—
ଣ, ଟ, ଖ, ଚ, ଝ, ଛ, ନ

ଗୃହଦିଗପାଳେ ଯେ କହନ୍ତି ହରଷେ
ସର୍ବୁଂକର ଆଗତ ହୋଇଲା ଦମୟନ୍ତୀ ଆଶେ । ୭୨ ।
ଯେତେକକୁ ଆରେକ ରୂପ ଧରନ୍ତି ଦିଗପାଳେ
ଯେମନ୍ତର ସମୟେ ସ୍ୱୟଂବରକୁ ଯାନ୍ତେ ଭେଟିଲେକ ନଳେ । ୭୩ ।
ଦେବତାଂକର ସାଦୃଶେ ସେ ନଳର ତେଜ କାୟେ
ସରୂପ ଦିଶଇ ସେ ଯେ ଦିଗପାଳ ପ୍ରାୟେ । ୭୪ ।
ଇନ୍ଦ୍ର ପୁଛାକଲେ ତୁମ୍ଭେ ଯାଉଛ କାହିଂକ
ନଳ ବୋଇଲେ ଯାଉଅଛୁ ଦମୟନ୍ତୀ ସ୍ୱୟଂବର ଦେଖି । ୭୫ ।
ଇନ୍ଦ୍ର ଦେବତା ବୋଇଲେ ନଳକୁ ଯେତେକାନ୍ତରେ ଘେନି
ଦମୟନ୍ତୀର ତହିଂକ ଯାଅ ଆମ୍ଭର ଦୂତ ହୋଇ । ୭୬ ।
ମୁହିଂ ଦେବରାଜା ହାଦେ ଅମର ସ୍ୱର୍ଗ ଆଧିପତି
ସତ୍ୱରେ ମୋତେ ବରଣ କରିବ ଯେମନ୍ତେ ଦମୟନ୍ତୀ । ୭୭ ।
ଅଗ୍ନି ଦେବତା ବୋଇଲେ ନଳକଇଂ ଯେତେକାକରି
ଆମ୍ଭର ରୂପଗୁଣ କହ ଦମୟନ୍ତୀକି ବିସ୍ତରି । ୭୮ ।
ଆମ୍ଭନ୍ତ ବରୁ ସେ ସ୍ୱୟଂବର ଥାନେ
ଅନେକ ଭୋଗ ତାକୁ କରାଇବୁ ପ୍ରତିଦିନେ । ୭୯ ।
କୁବେରହିଂ ଯେତେକାନ୍ତେ ଘେନି କହିଲେ ନଳକ
ଯେମନ୍ତେ ପାରି ଦମୟନ୍ତୀ ଭେଟାଅ ଆମ୍ଭଂକୁ । ୮୦ ।
ମୁହିଂ ସେ ଦେବଭଣ୍ଡାର ରକ୍ଷାପାଳ ସ୍ୱର୍ଗେ
ଆମ୍ଭନ୍ତ ବରିଲେ ସେ ପାଇବ ବଇଭୋଗେ । ୮୧ ।
ବରୁଣହିଂ ନଳକ ଯେତେକାନ୍ତେ ପ୍ରତିବାଦେ
ଆମ୍ଭର ରୂପଗୁଣ ଦମୟନ୍ତୀକି କହିବାକୁ ହାଦେ । ୮୨ ।
ମୁହିଂ ସେ ବାରିନିଧି ଠାକୁର ରତ୍ନାକର
ଦମୟନ୍ତୀର ରୂପକଇଂ ଯୋଗାଇ ମୁହିଂ ବର । ୮୩ ।
ଇନ୍ଦ୍ର ଦେବତାକଇଂ କରିଲେ କିଛି ସୂକ୍ଷ୍ମ ନାହିଂ
ଅପଛରନ୍ତ ରମଣେ ସେ ଦମୟନ୍ତୀ ଯାୟେ କାହିଂ । ୮୪ ।
କବେରର ଭାରିଯା ଯେ ଅଟଇ ହାରାବତୀ
ଆନ ଭାରିଯାକୁ ସେ ଯାଇ ନ ଦିଅଇ କତି । ୮୫ ।

ଅଗ୍ନି ଦେବତାଂକର ଲୁଦୁବୁଦୁ ବ୍ୟାଧି
ସ୍ତ୍ରିଙ୍କ ରମଣେ ତାଂକର ନ ବଳଇ ବୁଦ୍ଧି । ୮୬ ।
ମୋତେ ଦମୟନ୍ତୀ ଯେବେ ଭେଟାଇ ପାରୁ ନଳ
ହୃଦଗତେ ଦଲେ ତାର ମୋହନ ମଣିମାଳ । ୮୭ ।
ଇନ୍ଦ୍ର ଦେବତା ଦଲେ ତମିର ନିବାରଣ ମଣି
ସ୍ତ୍ରିଙ୍କବଶ୍ୟ ଅଞ୍ଜନ ଅଗ୍ନିଦେବତା ଦଲେ ଆଣି । ୮୮ ।
କୁବେର ଦେବତା ଦଲେ ମୋହନ ଉଲ୍ଲୁକ ବଦ୍ୟା
ନିରାଞ୍ଜନ କାଳକୁ ସେ ଉହ୍ମଲା ସର୍ବଦା । ୮୯ ।
ନଳ ବୋଇଲା ସମସ୍ତ ଦେବତାନ୍ତ ପରଣାମି
ପୁରୁଷ ହୋଇ କେନେହେ ସ୍ତ୍ରିଙ୍କଙ୍କ ଦୂତ ହୋଇବ ଦେବସ୍ୱାମୀ ।୯୦।
ନଳ ବୋଇଲା ନ ଗଲେତ ନ.ଶଯିବ ତୁମ୍ଭର କୋପେ
ପୁରୁଷ ହୋଇ ସ୍ତ୍ରିଙ୍କଦୂତ ହୋଇଲେ ପଡିବ ଜୀର୍ଣ୍ଣକୂପେ । ୯୧ ।
ପୁଣ ପୁଣ ବୋଲଇ ସେହି ବୀରସେନର ଶିଷି
ସୂଚୀ ମାତ୍ର ପରୀକ୍ଷ ଭୂମିରେ ପାରିବ କ ପଶି । ୯୨ ।
ଦେବତାଯେ ବୋଇଲେ ନଳ ତୁ ଯେମନ୍ତ କଂପେ କହୁ
ଅଥବା ପାପକରୁ କ ପୁଣ୍ୟକରୁ ଆମ୍ଭେହେଂ ଆମ୍ଭେ ସର୍ବ ସହୁ । ୯୩ ।
ଦଧିବାବନ ସୁମରି ତୁ କର ଯା ଗବନ
କାର୍ଯ୍ୟ ସିଦ୍ଧ ହେଲେ ସିନା ଜାଣିମା ଆମ୍ଭର ମହିମାମାନ । ୯୪ ।
ଦେବତାଂକର ବଚନେ ସେ ଚଳଇ ସୂର୍ଯ୍ୟବଂଶୀ
ପୁଣି ବୋଇଲା ମୁଂ ରାଜପୁରେ ପାରିବ କି ପଶି । ୯୫ ।
ଅଗ୍ନିଦେବତାଯେ କହିଲେ ଉଲ୍ଲୁକ ଯେ ବଦ୍ୟା
ତୁ ସର୍ବ ଦେଖିବୁ ତୋତେ କେହି ନ ଦେଖିବେ ସର୍ବଦା । ୯୬ ।
ବରୁଣ ଦେବତା ଦଲେ ପାଦୁକା ମନ୍ତ୍ର ମଉଷଧି
ନବଦ୍ୱୀପ ପୃଥୀ ତୁ ବୁଲିବୁ ଯେକପାଦୀ । ୯୭ ।
ଇନ୍ଦ୍ର ଦେବତାଯେ ଦଲେ ଗୁଟିକା ଅଞ୍ଜନ
ଯେହା ଦେନ ଚକ୍ଷୁଂଲେ ଦଶିବ ସମସ୍ତ ଭୁବନ । ୯୮ ।

---

୯୩।୨ ପାପପୁଣ୍ୟ ଯାହା ହୁଯେ ଅମ୍ଭେ ତାହା ବହୁ ।—ଝ, ଜ, ଠ
୯୪।୨ କାର୍ଯ୍ୟ କଲେ ଜାଣୁ ସିନା ଆମ୍ଭର ଗୁଣମାନ ।—ଛ, ଠ, ନ

କୁବେର ଦେବତାଙ୍କୁ ବୋଇଲେ ମୋହନ ବିଦ୍ୟାଗୋଟି
ତତକ୍ଷଣେ ନଳରାଜା ବହନେ ଗଲା ତହୁଁ ଉଠି । ୯୯ ।
ଯେକା ପାଦକରେ ଯାଇଂ ପଶିଲା ଅନ୍ତେଶ୍ୱର ପୁରେ
ଦମୟନ୍ତୀକି ଭେଟିଲା ସୁବର୍ଣ୍ଣ ମେଡରେ । ୧୦୦ ।
ନଳର ନିମନ୍ତେ ବିରହିତା ବରାଂଗନେ
ବିଚାରଇ ନଳକୁ କେମନ୍ତେ ଦେଖିବି ନୟନେ । ୧୦୧ ।
ଯେସନେକ ବିକଳ ହୁଅନ୍ତେ ଦମୟନ୍ତୀ
ସନଧରେ ନଳ ଯାଇଂ ଭେଟିଲାକ ଧାନ୍ତ । ୧୦୨ ।
ଅଦଭୁତ ପୁରୁଷ ଦେଖି ପଚାରଇ ବାଳୀ
କେବଣ ଦିଗପାଳ ହେ ତୁମେ ମନର ହ୍ୱିଆଳି । ୧୦୩ ।
ବୋଲଇ କୁମର ମୁହିଂ ସେ ହାଦେ ଅଟଇ ନଳ
ଦମୟନ୍ତୀ ବୋଇଲା ମୋହୋର କାର୍ଯ୍ୟ ତ ସୁଫଳ । ୧୦୪ ।
ଯେବଣ ରୂପ ଗୁଣ ତୋର କହିଲାକ ହଂସୀ
ତହୁଁ ଶତେ ଗୁଣରେ ତ ତେଜ ପରକାଶି । ୧୦୫ ।
ଶ୍ରୀକରେ ଘେନିଲା ନୀଳଉତ୍ପଳ ମାଳା
ନଳକୁମର ସନ୍ନିଧେ ପ୍ରବେଶ ଅବଳା । ୧୦୬ ।
ନଳ ବୋଇଲା ଦେବୀ ଗୋ ନ ବରନ ମୋତେ
ଦେବସ୍ତ୍ରିସ୍ତ ଅପର୍ଣ୍ଣୀ ହୋଇବୁ ମୋତେ ବରିବୁ କେମନ୍ତେ । ୧୦୭ ।
ତୋହୋର ନିମନ୍ତେ ଇନ୍ଦ୍ର କୁବେର ବରୁଣ ଅଗ୍ନି
ମୁହିଂ ହାଦେ ଆସିଅଛୁ ତାହାଂକର ସମସ୍ୟାନ୍ତି ଘେନି । ୧୦୮ ।
ଚାରିଦିଗପାଳେ ବିଜୟେ ସୟଂବରେ
ତାହାଙ୍କଇଂ ବରିବୁ ଗୋ ନ ଇଚ୍ଛ ମୋହୋରେ । ୧୦୯ ।
ଦମୟନ୍ତୀ ବୋଲେ ମୋହୋର ଦେବେ କାର୍ଯ୍ୟ ନାହିଂ
ହଂସିନୀ ଯେବଣ ଦିନୁଂ ଗଲା ମୋତେ କହି । ୧୧୦ ।
ସେହିଦିନୁ ସଂକଳପ କରି ମୋର ଦେହା
ନଳ ବ୍ୟହକେ ମୋର ଆନଗତି ନାହିଂ । ୧୧୧ ।

ଦମୟନ୍ତୀ ବୋଇଲେ ମୁହିଂ ହୋଇଲଇଂ ଯେ ରୋଗୀ
ତୁହି ସେ ମେଟେ ମଉଷଧି ଗାରେଡି ପରମ ଯୋଗୀ । ୧୧୨ ।
ନଳରାଜା ବୋଇଲେ ତୁ ମୁକୁଇ ବରିଲେ
ମୁହିଂ ବ୍ରତଇକ ଦେବତାଂକ କୋପକଲେ । ୧୧୩ ।
ଦମୟନ୍ତୀ ବୋଇଲେ ମୋହୋର ଯେହ୍ନେ ମନବାଞ୍ଛା
କିସ କରିବେ ଦିଗପାଳେ ତୋହୋରେ ମୋହୋର ଯେ ଇଚ୍ଛା । ୧୧୪ ।
ତୁହୋ ନଳରାଜା ଦେବତାଂକ ମେଳେ ଥିବୁଟିକି ରହି
ମୁହିଂ ମାଳାଗୋଟିଏ ଦେଇ ବରିବି ତୁକୁଇ । ୧୧୫ ।
ଦମୟନ୍ତୀର ନିରାଣେଂ ବାହୁଡିଲେ ନଳ
ସୟଂବରେ ବିଜେକରି ଅଛନ୍ତି ଚାରି ଦିଗପାଳ । ୧୧୬ ।
ଦେବତାଂକ ସନ୍ନିଧେ ଯାଇଂ ନଳ ପରଣାମି
ସାବଧାନେ ମୋହୋର ବାରତା ଶୁଣିମା ଦେବସ୍ୱାମୀ । ୧୧୭ ।
ଦମୟନ୍ତୀକି ଭେଟିଲି ମୁଂ ତୁମ୍ଭର ନିମନ୍ତେ
ତୁମ୍ଭକଇଂ ଗୁଡିଣ ସେ ଇଚ୍ଛଇ ହାଦେ ମୋତେ । ୧୧୮ ।
ଅଥବା ଯଦ୍ୟପି ଆସିଣ ବରିବ ହାଦେ ମୋତେ
ତୁମ୍ଭେ ତାଂକୁ ଦେନିଯିବ ବାହୁବଳ କୃତେ । ୧୧୯ ।
ଦେବତାଏ ବୋଇଲେ ତୁ ଥାଅସି ଆମ୍ଭର କତି
ତୋହୋର ନିମନ୍ତେ ଅଇଲେ ଆମ୍ଭେ ହରିବୁ ଦମୟନ୍ତୀ । ୧୨୦ ।
ଦିଗପାଳମାନଂକର ରୂପ ଯେ ରାଜାମାନେ ଦେଖି
ବାହୁଡି ଯାଇଂ ଲୋଡନ୍ତି ସୟମ୍ବର ଉପେକ୍ଷି । ୧୨୧ ।
ବୋଲଇ ମାନବ ଅବତାର ନୋହଇ ଏହାଂକର ତନୁ
ବୃନ୍ଦାର୍କ ପ୍ରାଏ ଶରୀର ଦିଶନ୍ତି କୃଶାନୁ । ୧୨୨ ।
ତାହାଂକର ସଂଗତେ ଦେଖ କୁମାର ନଳ
ସେହି ସେ ଦିଶୁଅଛି ସରୂପେ ଦିଗପାଳ । ୧୨୩ ।
ଶୁଣ ହୋ ଯୁଧେଷ୍ଠି ବଦନ୍ତି ପାରାଶର
ନଳ କାରଣ ପାଇଲା ମହତ ଦ୍ରଶନ କରି । ୧୨୪ ।

---

୧୧୨।୨ ତୁହି ସେ ମଉଷୋଧ ରାଉଳ ପରମ ଯୋଗୀ ।—ଘ, ଜ, ଡ

ଜୟନ୍ତୁ ବାସେବ ତଚର ଦିବ୍ୟରୂପ
କାମେଣୀ ମନସିଜ ମୋହନ କନ୍ଦର୍ପ । ୧୨୫ ।
ଅମର ବିଳାସୁଣୀ ଯେ ଚଉଷଠି କୋଟି
ଯେୂକା ପୁରୁଷକେ ଯେୂତକ ଦର୍ପ ଘୋଟି । ୧୨୬ ।
କୋଟିଯେୂ ବ୍ରହ୍ମାଣ୍ଡର ସେ ତଚର ମୋହିନୀ
ପରଦାର ଅର୍ଥେ କର ହୋଇଲୁ ସସ୍ତ୍ରଯୋନ । ୧୨୭ ।
କାମ୍ୟେକ ପୁରୁଷ ପରଦାର ରଂଗରସେ ଭୋଳା
କଉତୁକେ ତୁ ଯେ ରମୁ ସ୍ତ୍ରି ଶିଳଂଗ କୁତୂହୋଳା । ୧୨୮ ।
ଯେୂକା ଧରଣକେ ସହସ୍ରେ ନାରୀ ରମୁ
ଦିବାରାତ୍ରେ ସ୍ୱାମୀ ସ୍ତ୍ରି ଶିରସେ ଭ୍ରମୁ । ୧୨୯ ।
କୋଟିଯେୂ ବ୍ରହ୍ମାଣ୍ଡର ନାଥ ଅଭୟେୂ ବିଡୋଜା
ଅନନ୍ତ ଅରବିନ୍ଦ ଅମର ଅସକନ୍ଦ ଦେବରାଜା । ୧୩୦ ।
ଯାହାର ବଚନେ ଚଳନ୍ତି ମେଘାଦି ପବନେ
ଜମ୍ବୋଦତ୍ୟ ନଶୋଧନ ଅମରାଧି ନାଥ ମଘବାନେ । ୧୩୧ ।
ବୃନ୍ଦାର୍କ ନାଥ ଚରଣେ ଶରଣ ଅନବ୍ରତେ
ତବ ଭୁବନ ମାଗଇ ବିନୟୁ ଯୁଗତେ । ୧୩୨ ।
ଶଚୀର ବଲ୍ଲଭ ତବ ପଦ୍ମପାଦେ ମମ ହୃଦ ଧାୟେୂ
ଶୃଦ୍ରମୁନ ସାରଳା ଦାସ ନମାମି ଦେବରାୟେୂ । ୧୩୩ ।

। ୧୦୧୮୯ ।

---

୧୨୬।୨ ଯେୂକା ପୁରୁଷକେ ଯେୂତକ ରୁପଗୋଟି ।—କ, ଘ
୧୩୨।୨ ତବଭୁବନ ମାଗଇ ସସ୍ ଦଣ୍ଡବତେ ।—ଖ, ଝ

# ଦମୟନ୍ତୀ ସ୍ୱୟମ୍ବର, ନଳ ଓ ଦମୟନ୍ତୀଙ୍କ ବନବାସ ଏବଂ ବିଚ୍ଛେଦ

ବଇଶମ୍ପାୟନ କହନ୍ତି ଶୁଣ ଯୁଧିଷ୍ଠିର
ଦମୟନ୍ତୀକି ଭୀମେକ ଆଣିଲା ସ୍ୱୟମ୍ବର ସଭାର । ୧ ।
ବୋଇଲା ଗୋସାଇଂ ଏହାର ପାଇଂ ମୁଂ ବରିଲି ନୃପତି ସବୁନ୍ତ
ଏହି ମୋହୋର ଦୁହିତା ଯେ ଅଟଇ ଦମୟନ୍ତୀ । ୨ ।
ଏହି ହାତେ ଯାହାକଇଂ କରଇ ମନବାଞ୍ଛା
ମାଳାଦେଇ ବରିବ ଏହି ଯାହାକଇଂ ଇଚ୍ଛା । ୩ ।
ବିମଳା ନାମେଣ ଯେ ଦମୟନ୍ତୀର ମୁଦୁସଙ୍ଗୀ
ରାଜାଂକର ରୂପ ଗୁଣମାନ କହିଲା ନିରେଖି । ୪ ।
ଗୁଣବନ୍ତ ଧନବନ୍ତ ଧାର୍ମିକ ବଳବନ୍ତ
ଯେ ଯେତେମାନେ ସକଳେ ପ୍ରାକର୍ମେ ଶକତ । ୫ ।
ଦେଖାନ୍ତେ କେହି ନ ରୁଚଇ ତାହାର ହୃଦୟ ବିକଳ
ଉପଲେସି ଚଉକତି ନିରେଖଇ ନଳ । ୬ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ନୃପତି
ବ୍ରହ୍ମ କ୍ଷତ୍ରିୟ ବଇଶ୍ୟ ଶୂଦ୍ର ଚାରିଜାତି । ୭ ।
ରାକ୍ଷସ ପିଶୁଣ ଯେ ଅସୁର ଜଗତ
ବିମଳା ମୁଦୁସଙ୍ଗୀ ଦେଖାଇଲା ସମସ୍ତ । ୮ ।
କେଉଣହିଂ ରାଜାକଇଂ ନୋହିଲା ତାର ଇଚ୍ଛା
ଏକାମାତ୍ର ନଳକଇଂ ହୃଦଗତେ ବାଞ୍ଛା । ୯ ।

---

୫।୨ ଯେ ତେ ର ମନେ ଭାର୍ଜନ କରସେ ତାହାନ୍ତ ।— କ

ଈଶାନଭାଗେ ବଳୟେ ବୃନ୍ଦାଅର୍କେ
ନଳକଇଂ ଦେଖିଲ୍ ଦେବୀ ତାହାଂକ ସମୀପେ ।୧୦।
ଶ୍ରୀଭୁଜେ ସୁନ୍ଦରୀ ଘେନଣ ରତ୍ନମାଳୀ
ବୋଇଲା ପାଇଲି ସ୍ୱାମୀ ମୋର ମନର ହ୍ୱାଆଳ ।୧୧।
ଦିଗପାଳଂକ ସନ୍ନିଧେ ଆସଇ ସୁନ୍ଦରୀ
ମୁକୁଇ ବରିବ ବୋଲି ଇନ୍ଦ୍ର ମନରେ ବିଚାରି ।୧୨।
କୁବେର ବିଚାରଇ ମୁହିଂ ଅଟଇ ଧନାଧି
ମୁକୁଇ ବରିବ ନିଶ୍ଚେ ସେ ଯୁବତୀ ରତ୍ନନିଧି ।୧୩।
ବରୁଣ ବୋଇଲା ମୁଂ ଜଳଧିପତି ରାଜା
ଯୁଗତେ ଯେହ୍ୱ ମୋର ହୋଇଲା ଭାରଜା ।୧୪।
ଅଗ୍ନି ଦେବତାୟେ ବିଚାରନ୍ତି ଆମ୍ଭେ ତ୍ରୈଲୋକ୍ୟର ଗୁରୁ
ବିଚାରଇ ଦମୟନ୍ତୀ ଆଜ ଆମ୍ଭନ୍ତ ହିଂ ସେ ବରୁ ।୧୫।
ଯେସନେକ ବିଚାରି ଦେବତାୟେ କରନ୍ତି ମନୋବାଞ୍ଛା
ନଳକୁମାର ବ୍ୟତେକେ ତାର ଆନେ ନାହିଂ ଇଚ୍ଛା ।୧୬।
ଦେବତାୟେ ଜାଣିଲେ ଦମୟନ୍ତୀର ପ୍ରକୃତି
ବିଚାରି ଦିଗପାଳେ ହୋଇଲେ ନଳମୂର୍ତ୍ତି ।୧୭।
ପଞ୍ଚପୁରୁଷସଭାରେ ଦେଖିଲେକ ବାଳୀ
ନଳ କେହ୍ନ ବୋଲିକରି ବାରିତ ନୁଆରି ।୧୮।
ଦମୟନ୍ତୀ ପ୍ରଣିପତ୍ୟ ଦେବତାଂକ ପଦ୍ମପାୟେ
ନଳକୁ ହାଦେ ପ୍ରାପତ ମୋତେ କରିବା ଦେବତାୟେ ।୧୯।
ଦେବତାୟେ ବୋଇଲେ ତୋହୋର ମନର ହିଆଳ
ଅନରୂପ ଦେଖି ଦେଉକନା ପୁଷ୍ପମାଳୀ ।୨୦।
ଦମୟନ୍ତୀ ବୋଇଲା ମୁଂ ଅଟଇ ମାନବୀ
ମାନବୀ ହୋଇ କେମନ୍ତେ ଦେବତାନ୍ତ ବରିବି ।୨୧।
ତୁମ୍ଭର କଷଣକୁ ମୁହିଂ ଯେ କିସ କ୍ଷମ
ସଦୟେ ଭୂତନାଥ ମୁକୁ ଉଦୟେ କର ଧର୍ମ ।୨୨।
ଅନେକ ବିନୟୀ ସେ ହୋଧେଣ ଦମୟନ୍ତୀ
ବଇକୁଳି ଦେଖିଣ ଦେବତାୟେ ହୋଇଲେକ ଶାନ୍ତ ।୨୩।

ଯେ ଯାହାର ରୂପ କଲେକ ନିଉନ
ନଳରୂପ ଧରିଲେ ସବୁହିଂ ବିଚପନ । ୨୪ ।
ଶ୍ରୀକରେ ସୁନ୍ଦରୀ ଘେନିଲେ ରତ୍ନମାଳ
ସନ୍ନିଧେ ଭେଟାଇଲେ ଯାଇ ପୁରୁଷସୁନ୍ଦର ନଳ । ୨୫ ।
ନଳ ବୋଇଲେ ଗୋସାଇଁ ତୁମ୍ଭେ ବିଜେକର ସ୍ୱର୍ଗେ
ତେବେ ସେ ବରଣମାଳା ଘେନି ପାରଇ ଯୋଗେ । ୨୬ ।
ନଳର ବଚନେ ଅଦୃଶ୍ୟ ହୋଇଲେ ବୃନ୍ଦାରକେ
ଶୂନ୍ୟେଣ ଥାଇ ଦେଖନ୍ତି ସର୍ବ ଦେବଲୋକେ । ୨୭ ।
ଦେଖିଣ ସାନନ୍ଦ ଯେ ଭୀମେକର ବାଳୀ
ନଳର କଣ୍ଠେ ନେଇ ଦେଲେକ ରତ୍ନମାଳୀ । ୨୮ ।
ଯହୁଁ ନଳକୁମାରକୁ ବରିଲେ ଦମୟନ୍ତୀ
ଦେଖିଣ ହରଷ ହୋଇଲେ ସକଳ ନୃପତି । ୨୯ ।
ଅନେକ ସାନନ୍ଦ ସେ ଭୀମକ ମହାଦେବୀ
ବଢାଇ ସମ୍ଭବେ ନଳ ଦମୟନ୍ତୀକି କରାଇଲେ ବିଭା । ୩୦ ।
କନ୍ୟାକଇଁ ଘେନିଣ ନଳ ଚଳଇ ନିଜଦେଶେ
ପୁରଜନମାନେ ମିଳି ଦେଖନ୍ତି ହରଷେ । ୩୧ ।

---

୨୯।୧ "ଯହୁଁ ନଳକୁମାରଙ୍କୁ ବରିଲ ଦମୟନ୍ତୀ"
ପରେ "କ, ଚ" ପୋଥିରେ ଭିନ୍ନପାଠ....

ସୁନ୍ଦରୀ ବରନେ ସେ ସମସ୍ତେ ବୃତ୍ତାନ୍ତ
ଦେଖିଣ ବିଷାଦ ହେଲେ ସକଳ ନୃପତି
ମାନହୀନ ହୋଇ ଘୃଣବଶ ରାଜାମାନେ
ଚଳିଲେ ନୃପତି ଯେ ଯାହା ଭୁବନେ । ୧ ।
ଚଳନ୍ତି ରାଜପୁତ୍ରେ ଗଜଅଶ୍ୱପିଠି
ସ୍ୱପ୍ନରେ ଦେଖନ୍ତି ସେ ଦମୟନ୍ତୀର ରୂପଗୋଟି । ୨ ।
ହାସ୍ୟ ପରିହାସେ ହେ ରମଣ ଭୋଗକର
ଚେତନା ପାଇଲେ ନାହିଁ ଦମୟନ୍ତୀ ମନରେ ବିଚାର । ୩
ଯେମନ୍ତେ ରାଜାମାନେ କାମବଶ ହୋଇ
ବିମୁଖରେ ରହିଲେ ସେ ନିଜପୁରେ ଯାଇ । ୪ ।

ନଳ ଦମୟନ୍ତୀ ଯେ ହୋଇଲେ ଏକଯୋଗ
ବିଳସଇ ସୁନ୍ଦରୀ କରଇ ବଇଭୋଗ । ୩୨ ।
ଏସନେକ ସମୟେ ଦମୟନ୍ତୀ ସୟଂମ୍ବର ଶୁଣି
ତ୍ରେତୟା ଦ୍ୱାପର କଳି ସତ୍ୟଯୁଗେ ଘେନ । ୩୩ ।
ସେହି ଆସୁଛନ୍ତ ଦମୟନ୍ତୀଂକ କରି ଇଚ୍ଛା
ପବନୁ ହୁଂ ବେଗକରି ଆସନ୍ତ କଇଚ୍ଛା । ୩୪ ।
ଯାଆନ୍ତେଣ ଚାରିଯୁଗେ ଇନ୍ଦ୍ର ତାଂକୁ ଦେଖି
ବୋଲନ୍ତ ଚାରିହେଂ ତୁମ୍ଭେ ଗବନ କରୁଛ କାହିଂକ । ୩୫
ପୁଷ୍କର ବୋଇଲେ ଯାୟେ ଯିବୁ ମଧୁପୁର
ଦମୟନ୍ତୀ ହରିବୁ ଆମ୍ଭେ ପଶିଣ ସୟଂବର । ୩୬ ।
ଇନ୍ଦ୍ର ବୋଇଲେ ଥିଲୁ ଆମ୍ଭେ ଚାରିଦିଗପାଳେ
ଆମ୍ଭକଇଂ ଛାଡ଼ିଣ ସେ ବରିଲାକ ନଳେ । ୩୭ ।
କନ୍ୟା ବିଭା ହୋଇଲାକ ନଳ ଯେ ନୃପତି
ନଇଷଧ ଦେଶେ ସେ ବିଳସଇ ଦମୟନ୍ତୀ । ୩୮ ।
ଶୁଣିଣ କୋପକଲେ ଯୁଗ ଯେ ଚାରି
ଆମ୍ଭନ୍ତ ନ କହି କିଂପେ ସୟଂବର କରି । ୩୯ ।
ଆମ୍ଭେ ସେ ଭୂଅପାଳ ଚାରିଯୁଗ ଅଛୁଂ
ବିହନ୍ତା ପୁରୁଷ ଆମ୍ଭେ ଲୋକପାଳେ ଖଟୁଂ । ୪୦ ।
ଆମ୍ଭନ୍ତ ନ ବରି କେହ୍ନେ କଲାକ ସୟଂବର
ଆବର କିସ କଥା ରହିଲା ଆମ୍ଭର । ୪୧ ।
ଚାଲ ଆମ୍ଭେ ହରିବା ଏବେ ନଳର ସଂପଦ
ଯେମନ୍ତେ ପାରି ଆମ୍ଭେ କରିବା ପ୍ରମାଦ । ୪୨ ।
ଇନ୍ଦ୍ର ବୋଇଲେ ନଳ ଧାର୍ମିକ ସତ୍ୟବାଦୀ
ଦାନ ଧର୍ମେଣ ସେ ସକଳ ସଂପାଦି । ୪୩ ।
ଯୁଗ ପୁରୁଷ ବୋଇଲେ ନ ଜାଣ କି ତୁମ୍ଭେ
ଧର୍ମେଣ କଷଣେ ଯେ କରିଥାଉଂ ଆମ୍ଭେ । ୪୪ ।

---

୩୭।୨ ଆମ୍ଭଂକୁ ଛାଡ଼ି ସେ କାହାକୁ ଆନେ ବରି ।—ଖା, ଝ

ଇନ୍ଦ୍ର କୋଇଲେ ତୁମ୍ଭେ ବହନ୍ତା ପୁରୁଷ
ଆମ୍ଭର ବୋଲକର ଧର୍ମ ନ କର ନାଶ । ୪୫ ।
ଦେବତାଂକ ବଚନେ ସେ ନ କଲେ ବଇରାଗ
ନଇଷଧ ଦେଶକୁ ସେ ଚଳିଗଲେ ବେଗ । ୪୬ ।
ତ୍ରେତୟୁଗ ଯାଇଂ ରହିଲେ ଗୁପତେ
ନଳରାଜାକଇଂ ଛିଦ୍ର ଘେନମା ନିମନ୍ତେ । ୪୭ ।
କହନ୍ତି ବ୍ୟାସମୁନି ଯେ ଶୁଣ କୁନ୍ତୀସୁତ
ବଢାଇ ଧର୍ମବନ୍ତ ଯେ ନଳକର ନାଥ । ୪୮ ।
ପୁତ୍ରହିଂ ସ୍ନେହକର ପାଳଇ ଜନପ୍ରଜା
ମାଣେକ ଭୂମିରେ ସେ ଚନାଏ ଘେନଇ ସଂଜା । ୪୯ ।
ଅତିଥି ଅଭ୍ୟାଗତେ କରଇ ରାଜା ଭଏ
ଦୁଖୀ ଲୋକଇଂ ଦେଖିଲେ ଅହର୍ନିଶି ସଦଏ । ୫୦ ।
ମାଗନ୍ତା ଜନେ ସେ, ଯେ ଯାହାର ଇଛା
ଦିଅଇ ନରନାଥ ପୂରେଇ ମନବାଞ୍ଛା । ୫୧ ।
କୋଟିଏ ହୋମ ଯାଗ ଅହନଶି ଆହୁତି
ଦେବ ବିପ୍ରେ ରାଜା ଅହନଶି ଭଗତି । ୫୨ ।
ଯେଣେ କାର୍ଯ୍ୟ ହୋଇବ କିଣଇ ଧନ ଦେଇ
କିଞ୍ଚିତ ପଦାର୍ଥକଇଂ ବଳାତ୍କାର ନାହିଂ । ୫୩ ।
ମିଥ୍ୟା ନ ଭାଷଇ ପରସ୍ତ୍ରୀରେ ନାହିଂ ମତି
ଏକାପତ୍ନୀ ତାହାର ଅଟଇ ଦମୟନ୍ତୀ । ୫୪ ।
ଅପୂର୍ବ ପଦାର୍ଥମାନ ରାଜା ଦମୟନ୍ତୀକି ଦେଇ
ଅତଥେ କଷଣ ହୋଇବ ବୋଲି ଯତନେ ଥୋଇ ଥାଇଂ । ୫୫
ରାତ୍ର ପ୍ରହରେ ଥାଉଂ ସାରଇ ନିତ୍ୟକର୍ମ
ଧାର୍ମିକ ପଣେ ତାର ନାହିଂ ନା ବିଶ୍ରାମ । ୫୬ ।
ଯଦ୍ୟପି କରିବେ ଜନେ ଅନେକ ଅପ୍ରାଧ
ତଦ୍ୟାପିହିଂ ରାଜ୍ୟେ ତାର ନାହିଂନା ଶିରଚ୍ଛେଦ । ୫୭ ।

---

୫୪।୨ ଏକାମାନ୍ଧ ଅର୍ଦ୍ଧଅଂଗ ଅଟଇ ଦମୟନ୍ତୀ । -- ଜ ନ
୫୬।୨ ଧାର୍ମିକ ପଣେ ତାକୁ କେହି ନାହିଂ ସମ ।-- ଜ, ଝ

ଅନୁବ୍ରତେ ଧାର୍ମିକ ରାଜାର ବଢାଇ ମହିମା
କଷଣ ପୁରୁଷେ ପଶିବ ନୁଆରଇ ସୀମା । ୫୮ ।
ଅନେକ ଥାନେ ଜଗିଥାନ୍ତି ଅନୁବ୍ରତେ
ସେହୁ କଳିହିଁ ଛିଦ୍ରେ ପଶି ନୁଆରିଲେ ଦ୍ୱାଦଶ ବରଷ ପର୍ଯ୍ୟନ୍ତେ । ୫୯ ।
ଦେଖିଲେ ରାଜାର ପଶାଖେଳେ ବଡ ରାଗ
ଛିଦ୍ର ଜାଣି ତହିଁ ବିଶ୍ରାମିଲେ କଳିଯୁଗ । ୬୦ ।
ଶୁକ୍ଳକୃଷ୍ଣ ଦଶମୀ ଦିନ ରାଜା ସ୍ନାହାନ କରି ଅଇଲା
ପାଦ ଶଉଚ ନ କରି ରାଜା ଆଂଚମନ କଲା । ୬୧ ।
କ୍ଷୁଧାର ଆରତେ ସେ ନଳ ମହାରାଜା
ଅଳପ ମାତ୍ର କଲା ସେ ଛଡଅର୍ଘ୍ୟ ପୂଜା । ୬୨ ।
ଆଂଚମନ କାଳେ ରାଜା ଉତ୍ତରକଇଁ ମୂର୍ତ୍ତି
ଛିଦ୍ରପାଇ କଳିକାଳ ପଶିଲା ଗର୍ଭେ ଝାନ୍ତି । ୬୩ ।
ଅମାନ୍ତି କର୍ମେ ରାଜାର ବଳିଲାକ ଆଶା
ନଶନ୍ତକାଳେ ରାଜା ଖେଳନ୍ତି ଜୁଅ ପଶା । ୬୪ ।
ନଳ ବୋଇଲା ଗୋ ପଶା ଖେଳିବା ଦମୟନ୍ତୀ
ଭାରିଯାର ତୁଲେ ରାଜା ପଶା ଖେଳନ୍ତି ଦିବାରାତି । ୬୫ ।

---

୬୦।୨ "ଛିଦ୍ର ଜାଣି ତହିଁ ବିଶ୍ରାମିଲେ କଳିଯୁଗ" ପରେ
"ଖ, ନ, ଣ" ପୋଥିରେ ଅଧିକା ପାଠ :—
ସେହିକଦିନେ ରାଜା ବଡ ଦୁଖ ପାଇ
ଶୟନ ଥାନରେ ପାଦ ମଞ୍ଚରେ ପଡଇ ।
ସେ ଦିନ ଛିଦ୍ର ଜଗି ବସିଥିଲା କଳିଯୁଗ
ଶରୀରେ ପଶିଲେ ମରି କଳି କଳୁଷନା ଦୁହେଁ ସଂଗ ।
ବଦନ୍ତି ଅଗସ୍ତି ଶୁଣିମା ମନୁଷ୍ୟେ
ନଳରାଜାର ତନପୁତ୍ର ସେହିକଇ ଦୋହିତାଶ୍ୟେ ।—ଖ ( )

୬୦।୨ ଛିଦ୍ର କଥା ଜାଣି ବିଶ୍ରାମିଲେ କଳିଯୁଗ । —ଣ, ତ

୬୧।୨ ପାଦର ଉପରେ ପାଦ ଦେଇଣ ବସିଲା ।—ଙ, ଝ

ଦ୍ୱାପରଯୁଗ ଯେ ହୋଇଲା ପଶାସାର
ଯୁଗ ବେନ କାଠି ହୋଇଲା ଆବର । ୬୬ ।
ନଳ ଖେଳନ୍ତେ ସେ ପଶାଯେ଼ଣ ଜାଣି
ଜଗୁଜତା ବୋଲି ରାଯ଼େ ବାରଧ୍ୱ ବଖାଣି । ୬୭ ।
ନଳର ପ୍ରତଗ୍ୟାଂ ଯେ ଶୁଣିଣ ପୁଷ୍କର
ବ୍ରାହ୍ମଣେକ ହୋଇଣ ସେ ପଶାକୁ ବଣିଜାର । ୬୮ ।

ନଳର ଭୁଲେ ସେ ପଶିଲା ପଶା ଖେଳ
ପାଡନ୍ତେ ନଳକୁ ହରାଇଲା କଳି । ୬୯ ।

ରାଜ୍ୟଭଣ୍ଡାର ରଥ ଗଜ ଅଶ୍ୱ ସହିତେ
ମାଯ଼ା ବ୍ରାହ୍ମଣ ଜଣିଲା କ୍ଷଣମାତ୍ରେ । ୭୦ ।

ଇନ୍ଦୁ ମଦନ ବ୍ରହ୍ମ ବୋଲି ତନପୁତ୍ର
ହ ରିବଣ୍ଡ ବେ.ଲକର ଯେ଼କଇ ଦୁହିତ । ୭୧ ।

ମୁଦୁସୁଲାକଇଂ ରାଇ ଆଗ୍ୟାଂହଲା ରାଣୀ
ଆଲେ ସମସ୍ତ ହାରିଲେ ଯେ଼ ନଳ ନୃପମଣି । ୭୨ ।

ପୁଅନ୍ତ ନଅ ମୋର ବବା: ୍ରାଇ
ମୋ:ହୋର ପିତାପୁରେ ଗୁଡଆସ ଯାଇ । ୭୩ ।

ମହାଦେଈଙ୍କ ବଚନେ ପୁତ୍ର ଦୁହିତାନ୍ତ ନେଲା
ବଇଧର୍ବ ଦେଶେ ନେଇ ପୁତ୍ରନ୍ତ ଲୁଚାଇଲା । ୭୪ ।

ପୁଷ୍କର ବୋଇଲା ହାରିଲୁ ସର୍ବ ନଳ
ସଂପଦଯାକ ତୋହୋର ହରିଲୁକ କାଳ । ୭୫ ।

---

୭୧।୧ ସୁରସେନ ସାନନ୍ଦ ବୋଲି ବେନପୁତ୍ର ।—ବହୁ ପାଠାନ୍ତର

୭୧।୨ ଜେମା ବୋଲିକର ଯେ଼କଇ ଦୋହିତ ।— ନ, ଣ, ଖ

୭୫ ପୁଷ୍କର ବୋଇଲା ସବୁ ହାରିଲୁ ହୋ ନଳ
ରାଜ୍ୟ ରଥ ଗଜ ପାଦାନ୍ତ ମୋ ହୋଇଲା ସକଳ ।—ଖ, ଣ

ବିପାକ କର୍ମେ ଯେ ନୁଆରିଲୁ ଜାଣି
ପୁଷ୍କର ବୋଇଲା ସ୍ୱେଧାନ୍ତ ପୀଡକର ତୋହୋର ଯେ ରାଣୀ । ୭୬ ।
ତୋହୋର ପୀଡକରନ୍ତେ ରାଜ୍ୟଭାର ସର୍ବତେ
ମୁହିଂ ଆମ୍ଭା ବିହେପୁ ହୋଇବ ଜାଣ ତୋତେ । ୭୭ ।
ହାରିଣ ନଳରାଜା କଲକ ସନମତ
ଦମୟନ୍ତୀ ବୋଇଲା ନାଥ ନୋହଇ ସ୍ୱେମନ୍ତ । ୭୮ ।
ଶୁଣିକର ନଳରାଜା ବିଷାଦ ହୋଇଲା
ଶିରେ କର ଦେଇଣ ଯେ ଦଇବ ସୁମରିଲା । ୭୯ ।
ପୁଷ୍କର ବୋଇଲା ଯେବେ ନ ଖେଳିବୁ ରାଜା
ସ୍ୱେ ମୋହୋର ରାଜ୍ୟରୁ ତୁ ବନ୍ଧନ ହୋଇ ଯା ଯା । ୮୦ ।
କେହ୍ନେ ତୁମ୍ଭେ ଦାରବ୍ୟରେ ଧାର୍ମିକ ବୋଲାଉ
ହାରିଲା ଭୂମିରେ ତୁମ୍ଭେ କପାଇଂ ରେ ରହୁ । ୮୧ ।

---

୭୬। "ପୁଷ୍କର ବୋଇଲା ସ୍ୱେଧାନ୍ତ ପୀଡକର ତୋହୋର ଯେ ରାଣୀ"
ଏହି ପାଦାନ୍ତ ପରେ 'ଛ' ପୋଥିରେ ଅଧିକା ପାଠ :—
ତୁ ସ୍ୱେଧାନ୍ତ ରାଜା ହୋ କରସି ପରଜା
ଆଉ ଆପୁ ରାଜା ସ୍ୱେବେ ତୋ ପୁତ୍ର ଭାରିଯା ।
ନସତ ହୋଇଲେ କ ଅରଷ୍ଟି ମେଣ୍ଟଇ
ନସତ ପ୍ରାଣୀ କେବେ ଧର୍ମ ନ ଗ୍ରୁତଇ ।
।ଉ ହୋ ରାଜା ପରଜା କରଣ'ରୁ ସ୍ୱେତେ
ଯେ ହାରିବ ପଣାରେ ସେ ସେବା କରିଥିବ ନିତ୍ୟେ ।
କସ କସ ବଗ୍ଧର ତୁ କରୁଛୁ ରାଜନ
ସ୍ୱେଧାନ୍ତ ପାଉ ପଣା ଦୃଢ଼କରି ମନ ।
ଆମ୍ଭେ ହାରିଲେ ରାଜ୍ୟଭାର ଲେଉଟାଇ ଦେବୁ
ତୁ ହାରିଲେ ପୁତ୍ର ଭାରିଯା ସହିତେ ଆମ୍ଭେ ନେବୁ ।
ନଳ ନ ଜାଣିଲେ ସ୍ୱେ କପଟ ପଣା ବୋଲି
ଭ୍ରମରେ ନଳରାଜା ପଣାଖେଳ ଖେଳି ।
ହମନ୍ତ ହାରି ନଳ କଲା ସନମତ
ଦମୟନ୍ତୀ ବୋଇଲା ନାଥ ନୋହଇ ସ୍ୱେମନ୍ତ ।

ଦମୟନ୍ତୀ ବୋଇଲେ ହୋ ଶୁଣ ଦେବସ୍ୱାମୀ
ପଶାରେ ହାରିଲ ହୋ ସମସ୍ତ ରାଷ୍ଟ୍ରଭୂମି । ୮୨ ।
ନିର୍ଲଜ ମୁଖେ କଂପେ ଯେଥି ଆମ୍ଭେ ଥିବା
ଛାଡ଼ି ଦେଶ ଘୋଷ ଦୁହେଂ ବନଗାମୀ ହେବା । ୮୩ ।
ଦମୟନ୍ତୀକି ଘେନଣ ସେ ନଳ ନୃପମଣି
ଛାଡ଼ିଣ ନିଜ ରାଜ୍ୟ ସେ ହେଲେ ବନଗାମୀ । ୮୪ ।
ସମସ୍ତ ଛଡ଼ାଇ ଘେନିଲା ସେ ପୁଷ୍କର ବ୍ରାହ୍ମଣ
ଯେକ ଯେକ ବସ୍ତ୍ର ପହୁଡ଼ି ପଶିଲେ ବନସ୍ତେଣ । ୮୫ ।
ବଞ୍ଚନ୍ତି ବନେ ଦିନ ସେ କନ୍ଦମୂଳ ଭକ୍ଷି
ଦିନେକ ବନସ୍ତେ ବୁଲି ନ ପାଇଲେ କିଛି । ୮୬ ।
ଦିନା ପାଞ୍ଚସାତ ସେ ରହିଲେ ନିରଶି ଉପବାସେ
ଶରୀର କ୍ଷୀଣ ହୋଇଲା ମଳିନ କେଶବାସେ । ୮୭ ।
ଅଘ୍ର ଶୁକଳ ଯେ ଦଶମୀର ଦିନ
ସଉରବାର ଉତ୍ତର ଭାଦ୍ରପୂ ବିଦ୍ୟମାନ । ୮୮ ।
ନଳ ଦମୟନ୍ତୀ ଦୁହେଂ ମାଧବୀଲତା ତଳେ ଛନ୍ତିବସି
ସୁବର୍ଣ୍ଣ କପୋତ ଦୃଶ୍ୟ ହୋଇଲାକ ଆସି । ୮୯ ।
ହସଇ ରାଣୀ ଦେଖି ସୁବର୍ଣ୍ଣ ପକ୍ଷୀ ଲୋଭେ
କପୋତାକୁ ଦିଅ ସ୍ୱାମୀ ବୋଲନ୍ତି ସରାଗେ । ୯୦ ।
ହାରିଣ ତହୁଂ ରାଜା ସୁବର୍ଣ୍ଣର ଲୋଭେ
ସେ ସୁବର୍ଣ୍ଣ କପୋତକଇଂ ଧରି ଲୋଡ଼ଇ ସ୍ରାଗେ । ୯୧ ।

---

୮୭।୧ ଦିନା ସାତ ପାଞ୍ଚ ସେ ରହିଲେ ଉପବାସେ ।—ଚ, ଘ, ଥ, ଝ

୮୭।୧ ଶରୀର କ୍ଷୀଣ ଯେ ହୋଇଲା ବିଶେଷେ ।—କ, ଣ, ଡ, ଖ, ନ

୮୮।୨ ଭୃଗୁବାର ଶ୍ରବଣା ନକ୍ଷତ୍ର ବିଦ୍ୟମାନ ।—ଣ, ଖ, ନ

୮୯।୨ ସୁବର୍ଣ୍ଣ କପୋତ ରୂପେ କଳିକାଳ ପ୍ରବେଶ ହେଲା ଆସି ।—ଡ

୯୧ { ଘରଣୀ ବୋଲେ ରାଜା ସୁବର୍ଣ୍ଣ ଦେଖି ଲୋଭେ
ସୁବର୍ଣ୍ଣ କପୋତକୁ ଲେଡ଼ଇ ଧରି ସ୍ୱାଗେ ।—ଣ, ଶ

ପିନ୍ଧିଲାର ବସ୍ତ୍ରଗୋଟି ପାଲଟି ନଳରାୟେ
କପୋତ ଉପରକୁ ପକାଇଲେ କରଣ ପାଶ ଗୋଟାୟେ । ୯୨ ।
ମାୟାବୀ କପୋତ ସେ ପ୍ରତକ୍ଷେ କଳିକାଳ
ବସ୍ତ୍ରଘେନ ଉଡ଼ିଲା ସେ ଗଗନ ମଣ୍ଡଳ । ୯୩ ।
ଲଜେ ବାହାର ନୋହଇ ରାଜା ଲତାର ଭିତରୁ
ଦମୟନ୍ତୀ ବୋଇଲା ନାଥ ଆସକନା କସ କରୁ । ୯୪ ।
ନଳର ଉଲଗ୍ନ ଦେଖିଣ ଦମୟନ୍ତୀ
ଆପଣା ଶାଢ଼ୀ ପଣନ୍ତ ପିନ୍ଧାଇଲା ଧାନ୍ତି । ୯୫ ।
ଯେବକା ବସ୍ତ୍ରେକ ପିନ୍ଧିଲେ ପ୍ରଭୁ ସେ ଭାରଯା
ଶିରୀ ହୀନ ହୋଇଲା ସମସ୍ତ ଗ୍ୟାନ ଗଲା ତେଜ୍ୟା । ୯୬ ।
ବୁଲନ୍ତେ ବୁଲନ୍ତେ ରାଜା ଅଗମ୍ୟ ବନସ୍ତେ
ମଣ୍ଡୋପେକ ଦେଖିଲେ ସେ ମାୟାରେ ଅଦଭୁତେ । ୯୭ ।
ସେହି କଳିକାଳ ମଣ୍ଡୋପେକ ହୋଇ
ପତି ପତ୍ନୀ ଛଡାଛଡ଼ି କରିବାର ପାଇଁ । ୯୮ ।
ନଳରାଜା ପୁଛାକଲେ ଶୁଣ ଗୋ ଦମୟନ୍ତୀ
ପିତାର ରାଜ୍ୟକୁ ତୋର ବାଟ କେଉଁଣ କତି । ୯୯ ।
ଦମୟନ୍ତୀ ବୋଇଲା ନାଥ କିଂକେ ପାପ ଧରୁ ହୃଦଗତେ
କି ଅବା ପିତା ରାଜ୍ୟକୁ ପଠିଆଇ ଲୋଡ଼ୁ ମୋତେ । ୧୦୦ ।
ନଳରାଜା ବୋଇଲେ ମୁହିଂ ସେ ମହାଦୁଖୀ
ପିତାର ଘରେ ଥିବୁ ତୁ ହୋଇଣ ବଡ଼ ସୁଖୀ । ୧୦୧ ।
ଦମୟନ୍ତୀ ବୋଇଲା କେହ୍ନେ କରିବ ତୋତେ ତେଜ୍ୟା
ଦୁଖର କାଳକୁ ସିନା କରିଛୁ ଭାରଯା । ୧୦୨ ।
ନାନା ଝଂଗଡ଼ ଯେ ପାଉଥାଇଂ ପତି
ଭାରଯା ଦେଖନ୍ତେଣ ସମସ୍ତ ହୋଅଇ ଶ୍ୟାନ୍ତ । ୧୦୩ ।

---

୯୬ { ଯେବକା ବସେକ ପିନ୍ଧିଲେ ପତିପତ୍ନୀ ଜାଣ
ଲଜ୍ଜାଭରେ ବୁଲିଲେ ସେ ବନସ୍ତ ମଧେ଼ଣ ।– –ଗ

ବିପତ୍ତି କାଳକୁ ସେ ପ୍ରସରଇ ବୁଦ୍ଧି
ଦୁଖର କାଳକୁ ସେ ଭରଯାହିଂ ମଉଷୋଧି । ୧୦୪ ।
ଭରଯା ଯେନ କୁଟୁମ୍ବ ନ ଜାଣୁ କି ନାହା
ପୁରୁଷର ଅର୍ଦ୍ଧ ଅଂଗ ଭରଯା ସେ ସାହା । ୧୦୫ ।
ସ୍ୱାମୀ ଥାଉଂଣ ଯେଉଂ ସ୍ତ୍ରି ଶ୍ରି ପଳାନ୍ତି ଉପେକ୍ଷି
ସଂଚୟେ ଦୁରାଚ୍ରଶି ସେ ବନ୍ଧୁ ବାନ୍ଧବ ନ ଗଛି । ୧୦୬ ।
ଯଦ ଅବା ପ୍ରାଣ ସମସ୍ତେକ ଥିବ
ମୋହୋର ଛୁଡଗଲେ ତତକ୍ଷଣାନ୍ତ ମରିବ । ୧୦୭ ।
ସ୍ୱାମୀର ଯେବେ ଦୁଖ ଭରଯା କିସ ସୁଖୀ
ମନ୍ଦବାଟି ସ୍ତ୍ରି ଶ୍ରି ସେ ଯାନ୍ତି ସ୍ୱାମୀକି ଉପେକ୍ଷ । ୧୦୮
ଦମୟନ୍ତୀ ବୋଇଲେ ସ୍ୱାମୀ ମୋର ବୋଲେକ କରିବା
ଦୁହେଂ ଚ୍ଚଲ ଯେବେ ମୋର ପିତା ରାଜ୍ୟକଇଂ ଯିବା । ୧୦୯ ।
ବିଭାକାଳେ ମଧୁଶେଯ୍ୟାରେ ନୟମ କଲୁ ଯାହା
କ୍ଷଣେ ଛଡାଛଡିଁ ନୋହିବା ପାଶୋରିଲ କି ତାହା । ୧୧୦ ।
ନଳ ବୋଇଲା ଶରୀର ବସ୍ତ୍ରହୀନ ଗୁନ ତେଜ
ଯେ ରୁପେ ପିତା ଘରକୁ ଗଲେ ପାଇବାନା ଲଜ । ୧୧୧ ।
ନଳ ବୋଇଲା ଦମୟନ୍ତୀ ଗୋ ବିପତ୍ତିର କାଳେ
ବନ୍ଧୁହିଂ ନ ଚହ୍ନଇ କର୍ମର ଅବଳେ । ୧୧୨ ।
ଦମୟନ୍ତୀ ବୋଇଲା ଯେମନ୍ତ ଭକ୍ତ ଯେବେ ହୃଦେ
ଯେ ମନ୍ତ୍ରେ ପେ ଶରୀର ଛୁଡିବା ଆସ ହାଦେ । ୧୧୩ ।
ଯେତେକ ବିଚାରି ଦୁହେଂ ବସିଲେକ ବେନି
ନିଦ୍ରାର ଅଳସରେ ଯେ ଶୁତିଲ୍ଲ କାମେନୀ । ୧୧୪ ।
ନଳରାଜା ରାଜ୍ୟଭାର ସମସ୍ତହିଂ ହାରି
ନିଦ୍ରାକଇଂ ଇଛା କି ବଳଇ ତାହାରି । ୧୧୫ ।

---

୧୦୪।୨ ଦୁଖର କାଳକୁ ନାଥ ଭରଯା ସେ ସିଦ୍ଧି ।—କ, ଚ
୧୦୫।୨ ଭାର୍ଯ୍ୟା ଅଟେ ଅର୍ଦ୍ଧଅଂଗ ଅଟଇ ବେଦନବାହା ।—କ, ଣ, ଘ, ଝ
୧୧୩।୨ ଯେ ମନ୍ତ୍ରେ ପ ପରେ ରହେ ବସିଥିବା ହାଦେ ।—ଖ, ନ, ଓ

ନିଦ୍ରାରେ ଅଚେତନ ଯହୁଂ ହୋଇଲେ ଦମୟନ୍ତୀ
ଦେଖିଣ ବିଚାରଇ ନଳ ଯେ ନୃପତି । ୧୧୬ ।
ଯେହ୍ନାକୁହିଂ ଆଶା କଲେ ଚାରି ଦିଗପାଳେ
ମୋତେ ସିନା ବରିଲା ପାମେଶି ମନ୍ଦବେଳେ । ୧୧୭ ।
ଦିଗପାଳମାନେ ଯହୁଂ ପାଇଲେକ ଲଜ୍ଜା
ତାହାଂକର କୋପେ ମୁଂ ରାଜ୍ୟ ହେଲି ତେଜ୍ୟା । ୧୧୮ ।
ସେହୁ ମୋତେ ନିଚୟେ ଯେ ହୋଇଲା କାଳସର୍ପ
ଚନ୍ଦନ ବୃକ୍ଷ ହୋଇ ମୁଂ ହୋଇଲି ହତରୂପ । ୧୧୯ ।
ଦମୟନ୍ତୀ ଅବଗୁଣ ବାଞ୍ଛି ନଳରାୟେ
ପଣନ୍ତ ତରିବାକୁ କରଇ ଉପାୟେ । ୧୨୦ ।
ଯେତେବେଳେ ପ୍ରାଣୀକି ହୋ ପଡଇ ବିପଦ
ସୁନ୍ଦରୀ ଭାରିଯା ସଂଗେ ଥିଲେ ପଡଇ ପରମାଦ । ୧୨୧ ।
ଭାରିଯାକୁ ପୋଷ ନୁଆରିଣ ରାଜା ନଳ
ମନେ ମନେ ଭାଳିଣ ସେ ହୋଇଲେ ବିକଳ । ୧୨୨ ।
ଦମୟନ୍ତୀକି ତେଜ୍ୟାକରି ଯାଇତେ ଭାଳଇ
ଶାଢୀ ପଣନ୍ତ ତରୁ ତରୁ ନ ପୃଣ ତଆଇଂ । ୧୨୩ ।
କେଉଂଣ ଉପାୟେ ଯେହ୍ନା ମୁଖରୁ ହେବ ପାର
ମନେ ମନେ ସେ ରାଜା କରଇ ବିଚାର । ୧୨୪ ।

---

୧୧୬ "ନିଦ୍ରାରେ ଅଚେତନ ଯହୁଂ ହୋଇଲେ ଦମୟନ୍ତୀ"
ଏହି ପାଠ ପରେ "ନ, ଣ," ପୋଥିରେ ଭିନ୍ନ ପାଠ :—
କଳିକାଳ ପୁରୁଷ ଦୁହେଂ ତହିଂ କଲେକ ଅମାଢ ।
ଶୁତିଲା ସ୍ଥାନରେ ରାଜା ଉର୍ଦ୍ଧମୁଖ କଲା
ମଣ୍ଡୋପେ ଝଣ୍ଡାଏକ ଅଛି ରାଜାହିଂ ଦେଖିଲା ।
ବସ୍ତ୍ରକାଟି ନଳରାଜା ହୋଇଲା ବିଦାୟେ
ରାଣୀକି ଲୁଚଣ ରାଜା ବନସ୍ତେ ସମ୍ଭାୟେ ।

୧୨୨।୨ ଦେଶୋତ୍ୟାଗୀ ହୋଇ ପଳାଇତେ ବିକଳ ।—କ

ତ୍ରଇଲୋକ୍ୟ ମୋହନୀ ଯେ ଯାହାର ଭାରିଯା
ବିପଦ କାଳକୁ ସେ ନଳରାଜା ତାକୁ କଲା ତେଜ୍ୟା । ୧୨୫ ।
ପଣନ୍ତ ଶରତେ ମନେ ବିଚାରଇ ରାଯ୍ୟେ .
ଚୂଳରୁ ଖସି ପଡ଼ିଲା କଟାର ଗୋଟାୟେ । ୧୨୬ ।
ଦେଖିଣ ନଳରାଜା ଉଷତ ଭାବ ମତି
କଟୂରି ଘେନ ପଣତ ଛେଦିଲା ତଡ଼ିତ । ୧୨୭ ।
ପଳାଇ ପଶିଲା ଯାଇଂ ଗହନ କାନନେ
ଲେଉଟି ନ ଚାହିଂଲା ସେ ଗମିଲା ନବ ଯୋଜନେ । ୧୨୮ ।
ବଦନ୍ତି ବ୍ୟାସମୁନି ଶୁଣ ଆହେ ଯୁଧିଷ୍ଠି
ତଆଇଂ ଦମୟନ୍ତୀ କଉମୋଡ଼ି ଉଠି । ୧୨୯ ।
ବେନହାତେ ଆପଣେ ମର୍ଦ୍ଦିଳ ବେନଡୋଳ
ସାଷ୍ଟାମ ହୋଇ ଚାହିଂଲେ ସନ୍ନିଧେ ନାହିଂ ନଳ । ୧୩୦ ।
ହା'ହା ପ୍ରାଣନାଥ କେଣେ ଗଲୁ ସ୍ୱାମୀ
ମୂର୍ଚ୍ଛାଗତ ହୋଇ ସେ ପଡ଼ିଲାକ ଭୂମି । ୧୩୧ ।
ଦୁଖୀର ସଂଘାତ ମୋର କେଉଂଣ କତ ଗଲୁ
ପୋଷିବାର ଡରେ ମୋତେ ଛାଡ଼ି ପଳାଇଲୁ । ୧୩୨ ।
କି ଅବା ଭକ୍ଷିଲେ ଭ୍ରମନ୍ତ ବନ ଦୁଷ୍ଟଜୀବେ
ଅଥବା ତେଜ୍ୟା ମୋତେ କଲ କି ଅଭାବେ । ୧୩୩ ।

---

୧୨୫ { ତ୍ରଇଲୋକ୍ୟ ମୋହନୀ ମୋହୋର ବନିତା
ବିପତ୍ତି କାଳକୁ ସେ ହୋଅଇ ବିଷପିଣ୍ଡା ।—ଅ, ଚ, ପ

୧୩୩।୧ "କି ଅବା ଭକ୍ଷେଲେ ଭ୍ରମନ୍ତ ବନ ଦୁଷ୍ଟଜୀବେ"
ଏହି ପାଠପରେ "ଣ, ଖ, ନ, ଛ" ପୋଥିରେ ଭିନ୍ନ ପାଠ :—
କେସନେକେ ବ୍ରତବ ମୁଂ ସ୍ୱାମୀର ଅଭାବେ ।
ସ୍ନେସନେକ ବିସ୍ମର କଂପେ କଲୁନାହୁଂ ନାହା
ସ୍ନେତେଭାବ ଛାଡ଼ି କଂପେ ହୋଇଲୁ ନିର୍ଦ୍ଦୟା ।
ମୋତେହେଂ ତେଜ କହୋ ବ୍ରତବ ଆପଣ
ସ୍ନେହା କେବେହେଂ ନୁହଇ ପୁରୁଷ ଲକ୍ଷଣ ।
[ଅବଶିଷ୍ଟାଂଶ ପରପୃଷ୍ଠାରେ]

ସାଷ୍ଟାମ ହୋଇ ବୃକ୍ଷେ ଉଠିଲା ଦମୟନ୍ତୀ
ଆହା ନଳ ନଳ ବୋଲି ଡାକ ଦିଅଇ ଚଉକତି । ୧୩୪ ।
ଖୁଞ୍ଚ କଣ୍ଟା ନ ମାନଇ ଧାମଇଂ ବନେ ହେଁଟି
କେବଣ କତି ଗଲୁ ମୋର ହୃଦର ବାନ୍ଧବ ଗୋଷ୍ଠି । ୧୩୫ ।
ମୁହିଂ ତୋର ନଉଚ୍ଛୁଣା ଯେନଯାଇ କନା ନାହା
ଯେତେଡ ଭାବ ତେଜ କଲୁ ମୋତେ କାହା । ୧୩୬ ।
ସ୍ତ୍ରୀର କ୍ରୋଧ ଦେଖି ବ୍ୟାଘ୍ର ଭଲ୍ଲୁକ ବନଜୀବମାନେ
ପ୍ରଣପତ୍ୟ ହୋଇଲେ ଆସି ଦମୟନ୍ତୀ ସନ୍ନିଧାନେ । ୧୩୭ ।
ମାଗୋ ଆମ୍ଭେ କି ନ ଜାଣୁ ତୋହୋର ନଳ ନୃପତି
ଜନେ ନଗ୍ର ଉପଦର୍ପ କଲେ ନ ଦିଅଇ ଶାସ୍ତ । ୧୩୮ ।
ଯେ ଆମ୍ଭନ୍ତ ଗୋ ରକ୍ଷାକରଇ ଯେବକବାଉ
ଶତେବାର ପରାଯନ୍ତେ ଦୋଷ ନ ଧରୁ ତାହାର । ୧୩୯ ।
ହିତ ଅଣହିତ ଦେଖିଲେ ଆମ୍ଭେ ଜାଣୁ
ପଶୁଜନ୍ତୁ ବୋଲି କି ଆମ୍ଭନ୍ତ ଯେମନ୍ତ ମଣୁ । ୧୪୦ ।

---

[ପୂର୍ବପୃଷ୍ଠାର ପାଠାନ୍ତର]

ତୋହୋର କାମନ୍ତେ ଉପେକ୍ଷିଲି ଦେବତାଂକୁ
ଯେତେବେଳେ ସ୍ୱାମୀ ଯେହାକଲ ମୁକୁ ।
ପୋଡୁ ପୋଡୁ ସ୍ତ୍ରିଶ୍ୱଜନ୍ମ ନୋହୁ ନୋହୁ କାଯେ
ସଂପଦେ ଆବୋଶ ଆୟେ ବିପଦେ ଗ୍ରୁଡି ଯାୟେ ।
ପଞ୍ଚଭୂତ ଆତ୍ମାର ଯେହୁ ଅଧିକାରୀ
ଚଣ୍ଡାଳ ପୁରୁଷେ ଯାନ୍ତୁ କ୍ଷଣକେ ପାଶୋର ।
ହେ ଦଇବ ପୁରୁଷେ ମୋର କିସ ଦୋଷ ପୁଣ
ନିର୍ଲଜ ଆତ୍ମା ମୋର ଯାଉ ଯେହୁକ୍ଷଣ ।
କାନ୍ଦଇ ସୁନ୍ଦରୀ ଯେ ବୁଲଇ ବନେ ବନେ
ଅଜଗରେକ ଦେଖିଲା ଅଜମିତ ବନେ ।

କଣ୍ଠାଗରେ ନଳ ପଶନ୍ତ ତୋର କାଣ୍ଠି
ଗହନ ବନେ ପଳାଏ ନ ଗୃହେଂ ଲେଉଟି । ୧୪୧ ।
ଦମୟନ୍ତୀ ବୋଇଲେ ନାହା ଯେତେକ ନିର୍ଦ୍ଦୟେ
ମୋତେ ଛାଡ଼ିତେ କଲୁ ଏମନ୍ତ ଉପାୟେ । ୧୪୨ ।
ଏ କେଁବେହେଂ ନୋହଇ ନା ପୁରୁଷ ଲକ୍ଷଣ
ଭାରିଯା ତେଜ୍ୟାକରି ଭ୍ରମିବ ଆପଣ । ୧୪୩ ।
ତୋହୋର ନିମନ୍ତେ ଉପେକ୍ଷିଲି ଦେବତାଂକୁ
ଏତେବେଳେ ସ୍ୱାମୀ ଏହ୍ନା କରିଗଲୁ ମୁକୁ । ୧୪୪ ।
ପୋଡ଼ୁ ପୋଡ଼ୁ ସ୍ତ୍ରି ଶାଜନ୍ମ ନୋହୁ ନୋହୁ ଜାଏ
ସଂପଦେ ଆବୋରି ଥାଏ ବିପଦେ ଛାଡ଼ି ଯାଏ । ୧୪୫ ।
ପଞ୍ଚ ଭୂତ ଆତ୍ମାରେ ହୋଇଥାଇ ଅଧିକାରୀ
ଶୃଗାଳ ପୁରୁଷ ଜାତି କ୍ଷଣକେ ଯାଇ ଏଡ଼ି । ୧୪୬ ।
ହେ ଦଇବ ପୁରୁଷ ମୋର ଭ୍ରମିବା କେବଣ କାରଣ
ନିର୍ଲଜ ଆତ୍ମା ମୋର ଯାଉ ଏହିକ୍ଷଣ । ୧୪୭ ।
କାନ୍ଦଇ ସୁନ୍ଦରୀ ଯେ ବୁଲଇ ବନସ୍ତେ
ଅଜଗର ଗୋଟାଏ ଦେଖିଲା ଅଜମିତ ବନସ୍ତେ । ୧୪୮ ।
ଦେଖିଣ ସର୍ପ ଯେ ଧାଇଁଲା ତତକ୍ଷଣାନ୍ତ
ଆକ୍ଷୋଷିଣ ଗିଳି ସେ ଆଣଇ ଚରଣର କଣ୍ଠ । ୧୪୯ ।
ନିରେଖି ସୁନ୍ଦରୀ ସେ ରୋବେ ଅତି ତାପେ
ରକ୍ଷାକର ନାହା ମୋତେ ଭକ୍ଷୁଅଛି କାଳସର୍ପେ । ୧୫୦ ।
ଅଜ ନାମେ କିରାତ ବନସ୍ତରେ ବୁଲୁଥିଲା
ନାରାଜେକ ବିନ୍ଧ ସେ ସର୍ପକୁ ନାଶକ । ୧୫୧ ।
ଦମୟନ୍ତୀକି କାଢ଼ି ଆଣିଲା ତାହାର ଗର୍ଭୁଂ
ଦମୟନ୍ତୀ ବୋଇଲେ ମୋତେ ବଡ଼ ଅପାଦୁଂ ରକ୍ଷାକଲୁ ବାବୁ ।୧୫୨।
କିସ ଦେଇ ଭଗତି ହୋଇବି ମୋହେ ର କିଛୁ ନାହିଂ
କିରାତ ମୋହେ ବଶ୍ୟ ଦମୟନ୍ତୀ ମୁଖ ଚାହିଂ । ୧୫୩ ।
ଶବର ବୋଇଲା ତୋର ସ୍ୱାମୀ ତୋତେ କଲା ପରିତେଜ୍ୟା
ମୂହିଂତ ବନସ୍ତ ପତି ହୋଇବୁ କି ମୋର ଭାରିଯା । ୧୫୪ ।

ଅନେକ ରଂଗରସ ଉପୁଜାଇବ ତୋତେ ରେ ବାଳୀ
ତୁହି ସେ ସୁନ୍ଦରୀ ହୋଇବୁ ମୋର ମନର ହିଆଳୀ । ୧୫୫ ।

କୋଳକରି କଇତ ଧରି ଲୋଡନ୍ତେ ମନେ
କଇତ ନାଶଗଲା ତାହାର ପତିବ୍ରତା ତୀକ୍ଷ୍ଣ ନୟନେ । ୧୫୬ ।

ବୁଲଇ ସୁନ୍ଦରୀ ସେ ନଳକୁ ଉପଲେସି
ହାକଇ ନଳରାଜା କାହିଂ ଅଛୁ ପଶି । ୧୫୭ ।

ଅନାଥର ନାଥ ସେ ମୋହୋର ପ୍ରାଣବନ୍ଧୁ
ଦୟା କିଂପେ ନ ବସଇ ଯେହୁ ମୋହୋର କାନ୍ଦୁ କାନ୍ଦୁ । ୧୫୮ ।

କେବଣ ଲତାରେ ଅବା ପଶିଅଛୁ ନାହା
ମୁହିଂ ଅନାସୁଣୀ ଲୋଡଇ ବାରେ ମୋତେ ଗୃହାଂ । ୧୫୯ ।

ମୁହିଂ ତୁମ୍ଭର ଭରସା ତୁମ୍ଭେ ମୋହୋର ପତି
କେଉଂଣ ଦୋଷେ ପ୍ରାଣନାଥ ମୋତେ ଦଲୁ ଯେତେ ଶାସ୍ତି । ୧୬୦ ।

କାନ୍ଦଇ ସୁନ୍ଦରୀ ସେ ବାଳୁତ ଭାବ ଜାଣି
ଯୁଗ ପ୍ରାୟେହୁ ନ ସରଇ ଯେତେକଇ ରଯେଣୀ । ୧୬୧ ।

କାଳନ୍ଦୀ ନଦୀ ତୀରେ କାଳୀମେଘା ନାମେ ପର୍ବତ
ତହିଂ ଯାଇ ସୁନ୍ଦରୀ ଉପଲେସଇ ପଥ । ୧୬୨ ।

ଅଭୟେହୁ ବାଳଖିଲା ସେ ପଉଲସ୍ତିଂକର ଶିଷି
ତାହାଂକର ଆଶ୍ରମେ ମିଳି ପ୍ରଣମ୍ୟ କଲା ଶୁଭ୍ରକେଶୀ । ୧୬୩ ।

ଋଷିମାନେ ବୋଇଲେ ତୁ ଅଟୁ କାହାର ଯୁବତୀ
ଈଶ୍ୱରେ ଉପେକ୍ଷ ଅବା ତୁମ୍ଭେ ଗୋ ପାର୍ବତୀ । ୧୬୪ ।

ତଇଲୋକ୍ୟ ମୋହିନୀ ଅପୂର୍ବ ରୂପରାଶୀ
ବାତୁଳ ହୋଇ କିଂପେ ଗହନ ବନେ ପଶି । ୧୬୫ ।

---

୧୫୬।୨ ଭସ୍ମ ହୋଇଲା ତାହାର ଅନଳ ନୟନେ ।—କ, ଙ, ଘ

କି ଅବା ରାକ୍ଷସୀ ତୁ ବନର ଦେବତା
ଆମ୍ଭନ୍ତ ଭକ୍ଷିବାକୁ କି କଳାଇଲୁ ମତ । ୧୬୬ ।
ବୋଲନ୍ତ ଦମୟନ୍ତୀ ନଳ ମୋର ସ୍ୱାମୀ
ମୁକୁଇ ଗୁଡ଼ଣ ସେ ହୋଇଲେ ବନଗାମୀ । ୧୬୭ ।
ଅନ୍ନହୀନ ବସ୍ତ୍ରହୀନ ମଳିନ ମୋର କାୟେ
ସ୍ୱାମୀର ଅଭାବେ ମୁହିଁ ବଣଇ ବାଇ ପ୍ରାୟେ । ୧୬୮ ।
ସେ ବାଲଖିଲାୟେ ବୋଇଲେ ତୁ ଅଟୁ ଦେବଦ୍ରୋହୀ
ତେଣୁକରି ନଳକୁ ଦେବେ ହୋଇଲେ ଅସାହି । ୧୬୯ ।
ଦେଖ ଦମୟନ୍ତୀ ଗୋ ଏହି ବନେ ପଶି
ଏତେ ବୋଲି ଅନ୍ତର୍ଦ୍ଧାନେ ଗଲେ ସର୍ବ ଋଷି । ୧୭୦ ।
ନଳ ନାମ ଧରିଣ ରୋବଇ ଉଚ୍ଚସ୍ୱରେ
କଳାଙ୍ଗୀ ନାମେ ଦେଖିଲା ଏକଇ ସରୋବରେ । ୧୭୧ ।
ଚହୁଁର ଭିତରେ ଯେ କ୍ରୀଡନ୍ତି ହଂସଯୂଥ
ଦମୟନ୍ତୀ ବୋଇଲା ଏହି ପକ୍ଷୀମାନେ ମୋତେ
କଲେନା ଏମନ୍ତ । ୧୭୨ ।

---

୧୬୬। "ଆମ୍ଭନ୍ତ ଭକ୍ଷିବାକୁ କି କଳାଇଲ ମତ" । ଏହି ପାଦାନ୍ତ ପରେ "ଣ, ଖ, ଓ ନ" ପୋଥିମାନଙ୍କରେ ଅଧିକା ପାଠ :—

ଦମୟନ୍ତୀ ବୋଇଲେ ଶୁଣିମା ଗୋସାଇଁ
ଏହି ବନସ୍ତେ ମୁଁ ବୁଲୁଅଛି ଯହିଁ ପାଇଁ ।
ମୁହିଁ ସେ ଭୀମେକ ନୃପତ୍ତର ଅଟଇ ଦୁହିତା
ନଳ ବୋଲି ନାମ ଯେ ଅଟଇ ମୋର ପତ ।
ଦଇବର ବଳେ ମୁଁ ହୋଇଲି ବିଚ୍ଛେଦ
ନୁହଇ ରାକ୍ଷସ ନୁହଇ ବନଦେବୀ ମଧ୍ୟ ।
ମୋହୋର ଭୁଆକୁ ମୁଁ ବନରେ ହରାଇ
ନଳକୁ ଲୋଡଇ ମୁହିଁ ବାତୁଳ ଭାବ ହୋଇ ।
ଋଷି ବୋଇଲେ ଆୟି ଗୋ ନୁହସି ବିକଳ
ଅବଶ୍ୟ ପ୍ରାପତ ତୋତେ ହୋଇବାକ ନଳ ।

ଆହୋ ହଂସମାନେ ତୁମ୍ଭେ ତ ବେଲହୁଂ ଅଛ ଜଳେ
ମୋହୋର ବଲ୍ଲଭ ଦେଖିଲ କି ରାଜା ନଳେ । ୧୭୩ ।
ହଂସଯୂଥ ବୋଇଲେ ଗୋ ପୁରୁଷେକ ଅଇଲା
ଧାତକାରେ ପାଣି ପିଇ ଯେଥଂ ବନ୍ଧନ ହୋଇ ଗଲା । ୧୭୪ ।
ଯେସନେକ ସନ୍ଦେଶ ଜାଣିଣ ଦମୟନ୍ତୀ
ହରାମ୍ବସି ପ୍ରାୟେ ହୋଇ ବୁଲଇ ଚଉକତି । ୧୭୫ ।
ଆହୋ ଜୀବମାନେ ତୁମ୍ଭେ ଅନେକ ବନେ ଅଛ
ମୁହିଂ ଅନାସୁଣୀ ମୋତେ ଯେହ୍ନକ୍ଷଣି ଭକ୍ଷ । ୧୭୬ ।
ବ୍ୟାଘ୍ରଂକ ଉପରକୁ ଆସଇ ଖରକରି
ଦମୟନ୍ତୀର ଭୟେ ବନଜୀବମାନେ ଗଲେ ଅପସରି । ୧୭୭ ।
ରାଜୀବ ବୋଲକରି ଯେକଇ ବନସ୍ତେ
ତହିଂ ସାଧେବ ରୂପ ହୋଇଲେ କାଳଦୂତେ । ୧୭୮ ।
ଅନେକ ବଳଦରେ ଅନେକ ଦ୍ରବ୍ୟନ୍ତ ପୂରେଇ
ଗୈଖାର ତୁରଙ୍ଗମ ସଙ୍ଗତେ ଚଳାଇ । ୧୭୯ ।
ବଡ ସୁନ୍ଦର ସାଧବ ମଳୟାନିଳ ଜାଣି
ଗଜ ଅଶ୍ୱ, ଅନ୍ତ୍ରେ ବଳଦ ଅନ୍ତ୍ରେ ପଲ୍ଲଣି । ୧୮୦ ।

---

୧୭୭।୨ ସର୍ତ୍ତାର ତେଜେ ବନଜୀବେ ଯାନ୍ତି ଅପସରି (କ,ଠ)

୧୭୭।୨ "ଦମୟନ୍ତୀର ଭୟେ ବନଜୀବମାନେ ଗଲେ ଅପସରି"
ଏହି ପାଦାନ୍ତ ପରେ "ଛ, ରେ ଭିନ୍ନ ପାଠ ।

କାବେରୀ ନଦୀକୂଳେ ପ୍ରବେଶ ସୁନ୍ଦରୀ
କଦମ୍ବ ବଟ ତଳେ ବିଶ୍ରାମିଲା ନାରୀ ।
ମାଧବସେନେ ଦେଶେ ମାଧବ ସାଧୁନ୍ତ
ସେ ନଦୀ ତଟେ ଆସି ପ୍ରବେଶ ହୁଅନ୍ତ ।
ଅନେକ ବଳଦ ସରନ୍ଧ ପୂରେଇ
ଗୈଖାର ତୁରଙ୍ଗମେ ଚଢି ଆସୁଅଛୁ ଚଳାଇ ।

୧୭୯।୧ ଅନେକ ବଳଦରେ ସରଣି ପୂରେଇ ।—ଖ, ନ

କାବେରୀ ନଦୀ ଯେ ହୋଉଛନ୍ତି ପାର
କଦମ୍ବ ବୃକ୍ଷତଳେ ବସିଛୁ ସୁନ୍ଦରୀ । ୧୮୧ ।
କେଶବାସ ଅସମ୍ଭାଳ ଆନନ କ୍ରୋଠ ଦଶୀ
ଦେଖିଣ ସମସ୍ତେ ଯେ କଲେ ଉପହାସୀ । ୧୮୨ ।
କେ ବୋଲଇ ବାଇ, କେ ବୋଲଇ ବାତୁଳ
କାନ୍ଧ ପଗୃରଇ ବାଭ୍ରସ୍ୟେ ଦେଖିଲ, କ ନଳ । ୧୮୩ ।
ସାଧବ ବୋଇଲା ଦେଖିଲା ଅଛୁ ନଳ ବୋଲି ବୃକ୍ଷେ
ଇଚ୍ଛୁର ପ୍ରସଙ୍ଗେ ସେ ଥାଇଟି ପ୍ରତ୍ୟକ୍ଷେ । ୧୮୪ ।
କାଟନ୍ତି ଗୃହବାସକୁ କରନ୍ତି ତାକୁ ଲଇ ବତା
ଯେଥିଂ ଯେ ତୋର କସ କାର୍ଯ୍ୟ କହ ରେ ବନିତା । ୧୮୫ ।
ମୁହିଂ ସେ ସାଧେବ ଗୋ ଲକ୍ଷଶୀଶ୍ରୀ
ନାନା ବଣିଜାର ମୋର ଭଣ୍ଡାର ଲକ୍ଷ ଘର । ୧୮୬ ।
ବାତୁଳୀ ଭାବ ତୋର ସମସ୍ତ ଛଡ଼ାଇବ
ଅତ୍ୟନ୍ତ କରି ତୋତେ ପ୍ରାଣ ସମାନେ ପୋଷିବ । ୧୮୭ ।
ଝୀନ ଦେବାଙ୍ଗ ବସନ ଦେଖାଇଲା ଜଶବାସ
ହୀର ମାଳା ମଣି ମାଣିକ୍ୟ ଦେଖାଇଲା ରତ୍ନକୋଷ । ୧୮୮ ।
ଯେମାନ ବିଳାସ କରସି ଗୋ ପ୍ରାଣସଖୀ
ଯେ ବରଙ୍ଗନା ଶରୀର କମ୍ପାଇଂ କରାଉଛୁ ଦୁଖୀ । ୧୮୯ ।
ମୁହିଂ ସାଧବ ଅଟେ ଗୋ କଣ୍ୟୁ ବଣିଜାର
ସମସ୍ତ ସମ୍ପଦ ମୋର ସୁଖେଣ ଭୋଗକର । ୧୯୦ ।
ସାଧବର ବଚନେ ସେ କୋପକଲା ମହାସତୀ
ସାଧୁତ ପୁଣ ହୋଇ ତୋର ଯେତେ ମନ୍ଦ ପ୍ରକୃତି । ୧୯୧ ।

---

୧୮୨।୧ କେଶବାସ ଅସମ୍ଭାଳ ଅଙ୍ଗ କ୍ଷୀଣ ଦଶି ।—ଖ, ଣ
୧୮୪।୨ ନଦୀର କୂଳେ ତାହା ଦେଖ ଗୋ ପ୍ରତକ୍ଷେ ।—ତ
୧୮୬।୨ ନାନା ବଣିଜାର ମୋର ଭଣ୍ଡାର ଶତଘର ।—କ, ଥ, ଙ୍କ

ସଣ୍ଡ ଲୋକନ୍ତ ଭୁ ଅନମିତେ କଂପେ ଝିଂଢାସୁ
ମୋହୋର ଶାପେ ତୋତେ ମଣିଭଦ୍ର ଧଂସୁ । ୧୯୨ ।
ଯେସନେକ ଶାପ ଦେଇଣ ସେ ଚଳଇ ଦମୟନ୍ତୀ
ବନସ୍ତେ ଯାଉଂ ଯାଉଂ ଭେଟିଲା ନଦୀ ଯେ ଗୋମଣ୍ଡି । ୧୯୩ ।
ସେ ଗୋମଣ୍ଡି ନଦୀଣ୍ଡରେ ବଇଶାଳୀ ନାମେ ଦେଶ
ତହିଂ ଯାଇ ଦମୟନ୍ତୀ ହୋଇଲେ ପ୍ରବେଶ । ୧୯୪ ।
ସେ ରତ୍ନାକର ସାଧବ ଚଳଇ ବନସ୍ତେ
ସମର୍ଥେକ ବନେ ସେ ରହିଲା ଦନ ଅନ୍ତେ । ୧୯୫ ।
ବଡାଇ ବନସ୍ତ ସେ ଚସଉପୂଳା ନଦୀକୂଳେ
ବିଶ୍ରାମିଲା ସାଧେବ ମୁଚୁକୁନ୍ଦ ଲତା ତଳେ । ୧୯୬ ।
ଅଢାଇ ପ୍ରହର ତହିଂ ହୋଇଅଛି ରାତ୍ରି
ବନସ୍ତ ଚର ଆସନ୍ତ ଅଷ୍ଟୋଉତ୍ତର ଶତେ ହାଥୀ । ୧୯୭ ।
ସେ ଗଜଯୂଥମାନେ ମହା ମଯୈମତ୍ତ
ପଶିଲେ ସେ ସାଧେବର ଗୋଷ୍ଠରେ ମହାଦନ୍ତା । ୧୯୮ ।
ପଲାଣ ଲହଣମାନ ପକାଇଲେ ଭାଙ୍ଗି
ଦେଖିଣ ମନୁଷ୍ୟମାନେ ପଳାଇଲେ ବେଗି । ୧୯୯ ।
ବଇଲ ଓଟ ଅଶ୍ୱ ବହୁତ କରୂଡ
ଫିଙ୍ଗି ଯେ ଦଅନ୍ତ ସେ ବହୁତ ଦୂରେ ପଡ । ୨୦୦ ।

---

୧୯୨।୨    ମୋର ଶାପେ ତୋତେ ମଉହାଥୀ ଧଂସୁ ।—ଜ
୧୯୨।୨    ମୋହୋର ଶାପେ ତୋର ବାଣିଜ୍ୟ ଦୁର୍ଧ୍ୱଂସୁ—ଚ
୧୯୫।୧    ସେ ସାଧେବ ଶାପ ପାଇ ଚଳାଇ ବନସ୍ତେ ।—ଖ, ଛ, ଣ,
୧୯୫।୨    ସମସ୍ତେ ସେ୍ୱକସ୍ଥାନେ ସେ ବନେ ରହିଲେ ବେଲ ଗଲେ ଅସ୍ତେ ।
—ଗ, ନ, ଝ
୧୯୮।୨    ପଶିଲେ ସାଧବର ଛନ୍ଦାରେ ବଳବନ୍ତା ।—ଘ, କ, ତ, ଥ
୨୦୦ { ବଳଦ ଅଶ୍ୱ ଓଟ ଅନେକ ଦୂରେ ପଡ଼ି
ଯୋରହାଥେ ମନୁଷ୍ୟନ୍ତ ନେଇ ପାଦେ ଦ୍ୟନ୍ତ ମାଡ଼ି ।—ଖ, ଣ, ଜ

ଦମୟନ୍ତୀ ଶାପ ଯେ ନୋହିଲକ ଆନ
ସାଧବର ସମସ୍ତ ସମ୍ପଦ ହୋଇଲା ନାଶମାନ । ୨୦୧ ।
ଶୁଣ ହୋ ଚଇତନ ମନୁ ଯେ ବଦଯନ୍ତି
ବଇଶାଳୀ ଦେଶେ ଯାଇ ପ୍ରବେଶ ଦମୟନ୍ତୀ । ୨୦୨ ।
ନଗର ଲୋକେ ତାହାର ବାଉଳ ରୂପ ଦେଖି
ଯେତେ ବଡ ସୁଲକ୍ଷଣୀ କଂପାଇଂ ନଶମାଖି । ୨୦୩ ।
ଅନ୍ନର ବହୁନେ ଯେ ଶରୀର ତେଜହୀନ
ଚଇଲ ବହୁନେ କେଶ ଜଟା ମଳିନ ବସନ । ୨୦୪ ।
ବାଉଳଭାବ ଜାଣି ବୁଲଇ ଦମୟନ୍ତୀ
ଅହର୍ନିଶି ଲୋଡୁଥାଇ ସେ ନଳ ନୃପତି । ୨୦୫ ।
ବାଇ ବୋଲି ପୋଯେ ଯେ ବୋବ ପଡୁଥାନ୍ତି ଦାଣ୍ଡେ
କୁରୁଳଣ ଧୂଳି କେ ପକାନ୍ତି ନେଇ ମୁଣ୍ଡେ । ୨୦୬ ।
କେହୁ ଦୟାକର ପୁଣି ସମାର୍ଜନ୍ତି ଆସି
ଆହୋ ଦୁଃଖୀ ଲୋକକୁ ଅନମିତେ କଂପାଇଂ ହିଂଘାସି । ୨୦୭ ।
ବଦୁଲା ନାମେଣ ସେ ଅଟଇ ନାଗମାତା
କମଳା ନାଗର ସେ ଅଟଇ ବନିତା । ୨୦୮ ।
ମାୟାରେ ଭୁବନ ସେ କରଅଛି ବନେ
କେହି ଉପଲେସି ତହିଂ ନୁଆରନ୍ତି ଜନେ । ୨୦୯ ।
ସେ ବଦୁଲା ନାଗମାତା ବଜୟେ ଜଗଣି
ଦେଖିଲା ବାଇ ବୋଲି ବାଳକେ ବୋବ ଦ୍ୟନ୍ତି । ୨୧୦ ।
ଦାଣ୍ଡରେ ଗୋଳ ଦେଖି କହଇ ନାଗମାତା
ଦାଣ୍ଡେ କସ ତହଳ ପଚ୍ଚର ଆସ ଯା ବାରତା । ୨୧୧ ।
ଦେଖିଆସି ବାରତା ଯେ କହଇ ମୁହୁସୁଲା
ଗୋସାମଣୀଯେ ବଡ ସୁନ୍ଦରୀ ସ୍ତ୍ରୀଏ ଦେଖିଲ ବାଇ ବୋଲି । ୨୧୨ ।
ବଦୁଲା ବୋଇଲା ତାକୁ ଆଣ ସିନା ମୋହର କତି
ତୁମ୍ଭକୁ ହକାର ଆଣିଲେ ତତକ୍ଷଣାନ୍ତି । ୨୧୩ ।

---

୨୦୧।୨ ସାଧବର ସମସ୍ତ ସନ୍ୟ ହୋଇଲା ନାଶପାନ ।—(ଙ, ଥ)

ତାହାର ସ୍ୱରୂପ ଦେଖିଣ ନାଗମାତା ପୁଣି
ବଡାଇ ଗୁଣବନ୍ତୀ ଯେ ଅଟଇ ସୁଲକ୍ଷଣୀ । ୨୧୪ ।
ରତ୍ନକୁଣ୍ଡେ ନେଇ ସ୍ନାହାନ କରାଇ
ଦେବାଙ୍ଗ ବସ୍ତ୍ର ଶରୀରେ ଆଭରଣ କରାଇ । ୨୧୫ ।
ଅମୃତ ପାକ କରିଣ କରାଇ ଭୋଜନ
କଦ୍ରୁଲା ପଚାରେ ମାଗୋ ତୁ କେବଣ କୁଳେ ଜନ୍ମ । ୨୧୬ ।
ତୋର ବଦନ ଶରତ ପୂର୍ଣ୍ଣିମାର ଇନ୍ଦୁ
ସ୍ୱରୂପ ଲକ୍ଷଣେ ତୁହି ନଶାକର ଦର୍ପ ନିନ୍ଦୁ । ୨୧୭ ।
କେବଣ ପାତକେ କେବଣ ଶାପେ ହୋଇଲୁ ବାଉଳୀ
ସ୍ୱରୂପ କଥା ମୋତେ କହସିରେ ବାଳୀ । ୨୧୮ ।
ଶୁଣ ଗୋ ମାତା ତୁମ୍ଭେ ଅଭୟେ ମହାତ୍ମାଣୀ
ସ୍ୱରୂପ କଥା ମୋର କହଇ ପରମାଣି । ୨୧୯ ।
ବିଦର୍ଭ ଦେଶର ରାଜା ଭୀମେକ ନରସାଇଁ
ଶରଯାନ୍ତ ବୋଲି ତାହାର ମହାଦେଈ । ୨୨୦ ।
ତାହାର ଦୋହିତା ମୁହିଂ ମୋହୋର ନାମ ଦମୟନ୍ତୀ
ଦେବତାନ୍ତ ଛାଡି ମୁଂ ବରିଲି ନଳ ଯେ ନୃପତି । ୨୨୧ ।
ଦଇବ ସେ ହରିଲା ଗୋ ଆମ୍ଭର ସମ୍ପଦେ
ରାଜ୍ୟ ତାର ହାରିଲେ ସ୍ୱାମୀ ପଶାର ବିନୋଦେ । ୨୨୨ ।
ମୋହୋର କଷ୍ଟେ ନଳ ପାଇଲେ ବଡ ଲଜ୍ଜା
ଦଣ୍ଡକାରଣ୍ୟେ ସେ ମୋତେ କରିଗଲେ ତେଜ୍ୟା । ୨୨୩ ।
କି ଅବା ବନଜୀବ କଲେ ତାଂକୁ ଭକ୍ଷ
ତାଂକର ଅଭାବେ ମୁଂ ହୋଇଲି ନିରେଖ । ୨୨୪ ।

---

୨୧୪।୨ ବଡାଇ ଗୁଣବନ୍ତୀ ଯେ ଅଟଇ ବିଚକ୍ଷଣୀ ।—କ, ଙ

୨୧୫ { ସୁଶୀତଳ ଜଳେ ତାକୁ ସ୍ନାହାନ କରାଇ
ଦେବାଙ୍ଗ ବସନ ଯେ ସର୍ବ ତାକୁ ପହିରାଇ ।—ଣ, ନ

୨୧୭।୨ ସ୍ୱରୂପ ଲକ୍ଷଣେ ତୁହି ଦେବସ୍ତ୍ରୀଙ୍କ ନିନ୍ଦୁ ।—ଖ, ଣ, ନ

୨୧୭।୨ ସ୍ୱରୂପ ଲକ୍ଷଣେ ତୁହି ଦିବାକର ତେଜନିନ୍ଦୁ ।—ଛ

୨୧୮।୨ ସ୍ୱରୂପ ମାହେଶ୍ୱରୀ କହ ତଥ୍ୟକରି ।—ତ, ଘ, ଞ

ବିଦୁଲା ବୋଇଲା ଗୋ ନାଶଗଲା ତୋର ପତି
ଯେଡେ କଷ୍ଟେ ନ ଦିଶଇ ତୋର ବିଧବା ମୂରତି । ୨୨୫ ।
ଅନେକ ଭାବେଣ ବିଦୁଲା କଲାକ ଯତନ
ବୋଇଲା ମୋହୋର ଭୁବନେ ଥାଅ ନଳକୁ ପାଇବୁ ଦ୍ରୁଶନ । ୨୨୬ ।
ଦମୟନ୍ତୀ ବୋଇଲା ମୁଂ ଥିବଇଂ ତୋର ପାଶ
ବଚନେକ ମାଗଇ ମୁଂ କରଣ ବିଶ୍ୱାସ । ୨୨୭ ।
ତିନିଗୋଟି କଥା ଯେ ନ କରାଇବୁ ମୁକୁ
ତେବେ ସେ ରହଇ ମାଗୋ କହିଲି ତୁମ୍ଭଂକୁ । ୨୨୮ ।
ଉଚ୍ଛିଷ୍ଟ ପାଲଟ ନ ଛୁଂଆଇବୁ ମୁକୁଇଂ
ପର ପୁରୁଷେ ନ ଛୁଇଂବେ ମୋର ଗୁଇ । ୨୨୯ ।
ଯେତେକ ସତ୍ୟ କଲେ ରହିବି ଗୋ ମାୟେ
ନୋହିଲେ ବନସ୍ତକୁ ମୁଂ କରିବି ବିଜୟେ । ୨୩୦ ।
ତାହା ଶୁଣି ନାଗମାତା, କଲା ତିନିବାର ସତ୍ୟ
ଯେକଥା ମୋ ସତ୍ୟ ସତ୍ୟ ଅଟଇ ନିଯୁତ । ୨୩୧ ।
ଯେତେକ ସତ୍ୟ କରାଇ ରହିଲା ଦମୟନ୍ତୀ
ତେଣେ ବନ ଗହନେ. ଭ୍ରମଇ ନଳ ନରପତି । ୨୩୨ ।
ଢକାରିକ ସେହୁ ବୁଲଇ ବନଘୋରେ
ବୁଲି ନୁଆରଇ ନଳ ଅଶକତ ଶରୀରେ । ୨୩୩ ।
ଭାରିଯାର ଅଭାବେ ସେ ହୋଇଲା ବଡ ଦୁଖୀ
ମୁହିଂ ଚଣ୍ଡାଳ ତାହାକଇଂ ଅଇଲି ଉପେକ୍ଷ । ୨୩୪ ।
ତୁ ଯେ ବୋଇଲୁ ମୋତେ ମ୍ଳେଡ କ ଧରତ୍ୟାଗୀ
ମୋହୋର ଅଭାବେ ନଳ ହୋଇବୁଟି ଦୁଖଭୋଗୀ । ୨୩୫ ।
ତୁ ଯାହା ବୋଇଲୁ ଗୋ ବଚ୍ଚର ମୋତେ ପ୍ରୟା
କାଳେ ତାହା ଫଳିଲା ରେ ଜାଣିଲି ଶତଶ୍ରିୟା । ୨୩୬ ।
ହେ ବୁଧଜନେ ସୁଭାରିଯାର ମେଣ୍ଟିଲେ ହିତବାକ୍ୟ
ସାରଳା ଦାସ ବୋଇଲେ କାଳେ ହୁଅଇ ମହାଦୁଖ । ୨୩୭ ।

। ୧୦୪୨୭ ।

—ଃ୦ଃ—

## ନଳଙ୍କର ଅଯୋଧ୍ୟା ପ୍ରବେଶ ଓ ବାହୁକ ସାରଥି ନାମ ଧାରଣ

ଶୁଣ ରାଜା ବଇବସ୍ୱତ ମନୁ ବଦଯ୍ୟନ୍ତି ଅଗସ୍ତି
ସାବଧାନେ ଶୁଣ ନଳଙ୍କ ଦେଶ ଆଧିପତି । ୧ ।
ଦମୟନ୍ତୀ ଗୁଣ ଗୁଣି ସେ ନଳ ନୃପତି
ବନ ଘୋରେ ଉନ୍ମେଷଇ ସେ ଦମନ୍ତୀ ଦମନ୍ତୀ । ୨ ।
ପଶ୍ଚିମ ଦିଗକୁ ନଳରାଜା କଲେ ଆଗମନ
ବୃକ୍ଷମାଝରେ ଶୁକଳ ଚଉଠିର ଦିନ । ୩ ।
ପର୍ବତୁ ଓହ୍ଲାଇ ରାଜା ଆସଇ ବେଗେ ଚଳି
ମହାସର୍ପେକ ହୋଇ ପଡ଼ିଛି ଯୁଗ କଳି । ୪ ।
ନଳନୃପତି ଯାଇ ପଡ଼ିଲା ତାର ମୁଖ
ଆନ୍ବେଷିଣ କୁଣ୍ଡଳୀ କଲା ତାହାଙ୍କଇଁ ଭକ୍ଷ । ୫ ।
ଚରଣଠାରୁ ଗିଳିଲା କଟିଭାଗ ପର୍ଯ୍ୟନ୍ତେ
ହା ହା ଦମୟନ୍ତୀ ବୋଲି ରାଜା ରୋଇଲା ଊର୍ଦ୍ଧ୍ୱଗତେ । ୬ ।
ବୋଲଇ ମହାସର୍ପ ମୁଂ ତୋତେ ଭକ୍ଷ କରୁଂ କରୁଂ
ପୁରୁଷ ହୋଇ କଂପେ ତୁ ସ୍ତ୍ରୀ ରୀକ ସୁମରୁ । ୭ ।
ବିଚକ୍ଷଣ ପୁରୁଷ ସୁନ୍ଦର ତୁ ଅଟୁ ମହାରାୟେ
ତୋହୋର ଗତି ହୋଇଲା ଦଶରଥ ରାଜା ପ୍ରାୟେ । ୮ ।
ଆଗତ ରାମାୟଣ କହନ୍ତି ବାଲମୀକେ
ପାତାଳବାସୀ ଯେତେ ଶୁଣନ୍ତି ନାଗଲୋକେ । ୯ ।
ପୃଥୀ ରାଜାନ୍ତ ପ୍ରଶୁରାମ ନିକ୍ଷତ୍ର କରି
ଅନ୍ବେଷଣ ହେଲେ ଦଶରଥ ରାଜାଙ୍କଇଁ ଧାଇଁ । ୧୦ ।
ପ୍ରଶୁରାମ ଦିଗବଜେ ଶୁଣି ଅଜନୃପତିର ଶିଷ
ସେ ଦଶରଥ ନୃପତି ଯେ ହୋଇଲେ ସ୍ତ୍ରୀ ରାବେଶ । ୧୧ ।

କବଚ୍ଚ ଭାର ଖୋଷା ସ୍ତ୍ରିସ୍ତ୍ର ବେଶ ଅଳଂକାର
ଗାପ୍ୟ ହୋଇଲେ ଦଶରଥ ସ୍ତ୍ରିସ୍ତ୍ରଂକ ସଂଗତର । ୧୨ ।
ଶ୍ରାଭ୍ରକେଣ ପ୍ରଶୁରାମ ଯେନଣ ପ୍ରଶୁପାଣି
ଦଶରଥକଛଂ ନ ପାଇଲେ ଅନ୍ତେଶ୍ୱର ପୁରେ ପଶି । ୧୩ ।
ଜଣାଇଣ ଶତ ଭନ ଉତ୍ତର ଦଶରଥର ରାଣୀ
ପ୍ରଶୁରାମଂକୁ ସ୍ୱାମୀ ଦାନ ମାଗିଲେ ଅନାସ୍ତୁଣୀ ଜାଣି । ୧୪ ।
ଯଦ୍ୟପି ଦଶରଥ ସ୍ତ୍ରିସ୍ତ୍ରବେଶ ହୋଇଲା
ଉପେକ୍ଷକର ରାଜା କଉଶଲ୍ୟାକୁ କୋଳକଲା । ୧୫ ।
ପ୍ରଶୁରାମ ହସିଲେ ଦଶରଥର ନସତ ଦେଖି
ସ୍ତ୍ରିସ୍ତ୍ରବେଶ ହୋଇଅଛୁ ଛତ୍ରୀପଣକୁ ଉପେକ୍ଷି । ୧୬ ।
ସ୍ତ୍ରିସ୍ତ୍ରମାନେ ମାଗଲେ ତୋହୋର ଶରୀର
ଆଜନ୍ତୁଂ ନାସ୍ତ୍ରିକପଟି ନାମ ହୋଉ ଯେ ତୋହୋର । ୧୭ ।
ଦଶରଥ ରକ୍ଷାଗଲା ସ୍ତ୍ରିସ୍ତ୍ରଂକ ଶରଣେ
ତୁ ଯେବେ ଦମୟନ୍ତୀକୁ ସୁମରୁ ଶରଣେ । ୧୮ ।
ପୁରୁଷ ହୋଇଣ ଯେବେ ସ୍ତ୍ରିସ୍ତ୍ରଂକ ଧର୍ମେ ଭ୍ରଷ୍ଟ
ସେ ପୁରୁଷକୁ ନାଶିଲେ ବ୍ରହ୍ମହତ୍ୟା ଦୋଷ ଗତ । ୧୯ ।
ବଡ଼ୁର ନଳକୁ ଯେ ଫେଡଲା କୁଣ୍ଡଳୀ
ଉଦୁଗାର ପକାଇଲା ନ କଲା ତାକୁ ବଳ । ୨୦ ।
ନଳ ବୋଇଲା ତୁ ଉରଗ ଜନ୍ମ ହୋଇ
ଏସ୍ତେବଡ ଦୟାବନ୍ତ ତୁ ହୋଇଲୁ କସ ପାଇଂ । ୨୧ ।
ମୁହିଂ ତୋର ଭକ୍ଷପାନ ଅଟଇ ଯୁଗତେ
ଯାହା ମାଗିବୁ ମହାତ୍ମା ଆଜ ଦେବଇଂ ମୁହିଂ ତୋତେ । ୨୨ ।
ବୋଲଇ ମହାସର୍ପ ପୋଡ ଆସୁଅଛୁ ଘୋରବନ
ତୁ ମହାତ୍ମା ମୋତେ ଫହର ଗର୍ଭସ୍ଥାନ । ୨୩ ।

---

୧୫।୨ ସ୍ତ୍ରିସ୍ତ୍ରମାନେ ପ୍ରେମେନ୍ତ ତାହାର ପ୍ରାଣ ରକ୍ଷି ।—ଣ, ଖ, ନ

୨୦ { ଯେସନେକ ବଡ଼ୁର ସେ ମାସ୍ତାର କୁଣ୍ଡଳୀ
ଉଦୁଗାର ନଳକୁ ପକାଇଲା ମହାବଳୀ ।—ଣ, ଖ, ନ

ସ୍ୱେ ତୋର ଗର୍ଭେ କଳଂକ ପଶିଛୁ କଳିକାଳ
ମୁହିଂ ତାହା ଦହିବ ବିଷ ଗରୁଜାଳ । ୨୪ ।
ନଳ ବୋଇଲେ ମୁଂ ପଚ୍ଚରଇ ତୋତେ
ଚଳି ନୁଆରୁଛୁ ତୁ କେବଣ ଅଶକତେ । ୨୫ ।
ରାଜାର ବଚନେ ବୋଲଇ କଦ୍ରୁ ବଂଶୀ
ଶୁଣ ସାବଧାନେ ତୁ ହୋ ଯାହା ପ୍ରକାଶି । ୨୬ ।
ଶୃଦ୍ରେକ ବୋଲଣ ଯେ ସ୍ୱେକଇ ସତ୍ୟଯୁଗେ
ନାରଦେ ଯାଉଛନ୍ତି ଗଙ୍ଗାର ଉଦକେ ବେଗେ । ୨୭ ।
ମୁହିଂ ମିଳଲି ତାର ମନପବନ ଦଣ୍ଡ
କୋପେଣ ଶାପ ମୋତେ ଦେଲେକ ପରଚଣ୍ଡ । ୨୮ ।
ବୋଇଲେ ସ୍ୱେ ତୋହୋର ମୁଖେ ପଡ଼ଲେ ବର୍ତ୍ତିବେ କି ଜନେ
ନଚଳ ହୋଇ ତୁ ପଡ଼ ଥାଅସି ସ୍ୱେହିବନେ । ୨୯ ।
ନାରଦଂକ ଶାପେ ମୁଂ ହୋଇଲି ଅଚଳ
ସ୍ୱେହିଠାରେ ପଡ଼ ଅଛଇ ହୋଇଲା ଯୁଗ ଷୋଳ । ୩୦ ।
ଭଗନ୍ତ ମନାଇ ମୁଂ ମାଗିଲି ଅନୁଗ୍ରହ
ମୁକତକଇଂ କାରଣ ମୋତେ କହିବା ସନ୍ଦେହ । ୩୧ ।
ନାରଦ ବୋଇଲେ ସର୍ପ ତୁ ଇଷିତ ସତ୍ୟଯୁଗେ
ନଳ ରାଜାକଇଂ ଭେଟିବୁ ତୁ ପାରୁଶ ବନ ଲଗେ । ୩୨ ।
ବନସ୍ତ ପୋଡନ୍ତେ ତୋତେ ଗର୍ଭେ ଦେବ ଠାବ
ସେ ନଳ ପ୍ରସନ୍ନେ ତୁ ହୋଇବୁ ନିଜ ଭାବ । ୩୩ ।
ଶୁଣ ହୋ ନଳରାଜା ତୋହୋର ଦ୍ରଶନୁ
ଷୋଳଯୁଗେ ମୁକତ ମୁଂ ହୋଇବ ନାରଦଂକ ବଚନୁ । ୩୪ ।
ସେ ସର୍ପର ବଚନେ ନଳ ଗୁଣିଲା ମନଭ୍ରାନ୍ତ
ଗର୍ଭେ ମହାସର୍ପ ସଂହରିଲା ତତକ୍ଷଣାନ୍ତ । ୩୫ ।

---

୩୦।୨ ସ୍ୱେହିଠାରେ ପଡ଼ିଅଛଇ ହୋଇଲା ରଜକାଳ ।— ଙ
୩୨।୨ ନଳ ରାଜାକଇଂ ତୁ ଭେଟିବୁ ମଧ୍ୟସ୍ୱର୍ଗେ ।— ଛ, ଖ
୩୨।୨ ନଳରାଜାକଇଂ ତୁ ଭେଟିବୁ ମର୍ତ୍ତ୍ୟସ୍ୱର୍ଗେ ।— ଘ, ଙ, ଥ

ଯେତେବେଳେ କଳି ହେଲା ନଳ ଗର୍ଭବାସ
ସେ ନଳରାଜାର ହୋଇଲା କୁଦୃଶ୍ୟ । ୩୬ ।
କୁବୁଜ ପିଠି ଦନ୍ତବନ୍ତ ଟେରା କେଶ ଯେ ପିଙ୍ଗଳ
ତତକ୍ଷଣେ ବିରୂପ ହୋଇଲା ହା'ଦେ ନଳ । ୩୭ ।
ଭ୍ରମୁଥାନ୍ତି ନଳରାଜା ଦମୟନ୍ତୀ ପ୍ରତିଆଶେ
ଅଷ୍ଟାବକ୍ର ଋଷିଙ୍କ ଦେଖିଲା ବନବାସେ । ୩୮ ।
କଳିର ଚେଷ୍ଟାରେ ରାଜା ଚଳଇ ଅନେକ ବାଗେ
ଦେଖିଣ ଅଷ୍ଟାବକ୍ରେ ପାଇଲେ ବଇରାଗେ । ୩୯ ।
କରପଦ୍ମ ଯୋଡ଼ି ଉଭା ହୋଇଲେକ ନଳ
ଅଷ୍ଟାବକ୍ରେ ବୋଇଲେ ତୁରେ କାହିଁର ବାତୁଳ । ୪୦ ।
ଆମ୍ଭେ ଯେ ଅଷ୍ଟାବକ୍ର ଋଷି ଅଷ୍ଟବକ୍ର ହୋଇ ଯାଉଁ
ତୁ ବାତୁଳ ରୂପେଣ ଆମ୍ଭନ୍ତ ଖତାଉ । ୪୧ ।
ନଳ ବୋଇଲେ ମୁଂ ନ ଖତାଏଁ ତୁମନ୍ତ
ମୋହୋର ସେ ରୂପ ଗୁଣ ଦଇବେ ହେମନ୍ତ । ୪୨ ।
ଆମ୍ଭନ୍ତ ତୁ ଯେବେ ଖତାଉ ଯତନେ
ସେହି ରୂପଗୋଟି ତୋହୋର ଥାଉ ସବୁଦିନେ । ୪୩ ।
ନରେଂ ଯେବେ ଦୁଖ ଦୂବଳ ନରେଖ ତୁ ଅଠୁ
ମକର କେତନ ପରାଏ ହୁଅ କେହି ତୋତେ ନ ଘଟୁ । ୪୪ ।
ଅଷ୍ଟାବକ୍ରଙ୍କ ବଚନେ ଅନଙ୍ଗ ରୂପ ଜାଣି
ନଳରାଜା ଘୁଞ୍ଚିଲାକ ହତରୂପ, ମୋହିଲା ଧରଣୀ । ୪୫ ।
ମାତାଂଗୀର ନନ୍ଦନ ଯେ ବଚନ ପ୍ରକାଶି
କେହୁଣ ମହାତମା ରେ ଅନଂଗ ରୂପ ରାଶି । ୪୬ ।
ନଳ ବୋଇଲେ ମୁନି ହେ ମନ୍ଦର ପର୍ବତର ସନ୍ଧେ
ନଇଷଧ ବୋଲି ଦେଶ
ଇକ୍ଷ୍ୱାକୁର ନୃପତି ଅମ୍ଳାନ ସୂର୍ଯ୍ୟବଂଶ । ୪୭ ।

---

୩୮।୨ ଅଷ୍ଟାବକ୍ର ଋଷିଙ୍କ ଦେଖିଲା ଅନୁଷ୍ଟୁପ ବନବାସେ ।—ଝ
୩୮।୨ ଅଷ୍ଟାବକ୍ର ଋଷିଙ୍କ ଦେଖିଲା ଅଷ୍ଟକ ବନବାସେ ।—ଥ

ବ୍ରହ୍ମାର ନନ୍ଦନ ଯେ ଅଟଇ ମରୀଚ
ମରୀଚର ନନ୍ଦନ ଅଟଇ ସୁରଚ । ୪୮ ।
ସୁରଚର ପୁତ୍ର ହୋଇଲା କାଶ୍ୟପ
କାଶ୍ୟପର ନନ୍ଦନ ସେ ପ୍ରଜାପତି ଦକ୍ଷ । ୪୯ ।
ସୂର୍ଯ୍ୟସେନ ବୋଲିକରି ତାହା'ର ଅଟଇ ବଂଶ
ମହା ଧର୍ମବନ୍ତ ସେ ହୋଇଲା ପ୍ରତକ୍ଷ । ୫୦ ।
ସୂର୍ଯ୍ୟସେନ ରାଜାର ଯେ ହୋଇଲା ବେନି ତନୁ
ଭାନୁସେନ ଆବର ଯେ ବଇବସ୍ୱତ ମନୁ । ୫୧ ।
ବଇବସ୍ୱତ ମନୁର ନନ୍ଦନ ଇକ୍ଷ୍ୱାକୁରୁ
ଇକ୍ଷ୍ୱାକୁରୁର ନନ୍ଦନ ହୋଇଲା ବାଞ୍ଛାକୁରୁ । ୫୨ ।
ବାଞ୍ଛାକୁରୁ ପୁତ୍ର ନାମ ହୋଇଲା ସମ୍ପାଦ
ସମ୍ପାଦର ଆତ୍ମଜ ହୋଇଲା ବେନପାଦ । ୫୩ ।
ଯେହାର ନନ୍ଦନ ଯେ ପୃଥୁକ ଉତପତ୍ତି
ପୃଥୁକର ନନ୍ଦନ ସେ କାକୁସ୍ଥ ନୃପତି । ୫୪ ।
କାକୁସ୍ଥର ନନ୍ଦନ ଯେ ଅଟଇ କୁମ୍ଭେକ
କୁମ୍ଭେକର ଧରଣୀ ନାମରେ ତନଯେକ । ୫୫ ।
ଧରଣୀର ନନ୍ଦନ ଯେ ଅଟଇ ଅଶ୍ୱଜା
ଅଶ୍ୱବନ୍ତ ବୋଲିକରି ତାହାର ଆତ୍ମଜା । ୫୬ ।
ଅଶ୍ୱବନ୍ତର ତନୁଜ ଅଟନ୍ତି ବୀରପାଳ
ତାହାଂକର ପୁତ୍ର ମୁହିଂ ଅଟଇ ହାଦେ ନଳ । ୫୭ ।

---

୫୭।୨ ଏତଦ୍ ବ୍ୟତୀତ ସୂର୍ଯ୍ୟାବଂଶାନୁକ୍ରମରେ ନଳଙ୍କର ପୂର୍ବପୁରୁଷର କୁଷି-ନାମାରେ ଏହି ସବୁ ଅଧିକ ନାମ ପୋଥିମାନଙ୍କରେ ଥିବାର ଦେଖାଯାଏ । କିନ୍ତୁ ସଂସ୍କୃତ ପୁରାଣମାନଙ୍କରେ ଏହି ବଂଶାନୁକ୍ରମ ଅନ୍ୟପ୍ରକାର ଅଛି । ଯଥା :—ବ୍ରହ୍ମା—ମାରୁତ—ସାରସ୍ୟ—କାଶ୍ୟ—କାଶିସ୍ୟ ପ୍ରଭୃତି ।

ତର ନୁଆଁଇଲ ମୁଂ ଧର୍ମର କଷଣେ
ଜୂଆ ହସ୍ତରେ ରାଜ୍ୟ ହାରିଲ ଅକାରଣେ । ୫୮ ।
ଦଇବ କଷଣ ହଲ ତପୋବନେ
ଭାର୍ଯା ସଙ୍ଗତେ ମୁଂ ଚେଜିଲ ବନସ୍ତେ । ୫୯ ।
ତହୁଂ ମୁହିଂ ଚଳିଲଇଂ ଭାର୍ଯାକଇଂ ଛାଡ଼ି
ସର୍ପେକ ଉଷିସ୍ଥେ ମୋତେ ଅନମିତେ ଗିଳି । ୬୦ ।
ଦମୟନ୍ତୀ ସୁମରନ୍ତେ କଲ୍ଲି ମୋତେ ଦୟା
ବୋଇଲ୍ଲ ଗର୍ଭେ ମୋତେ ଠାବ ଦିଅ ନରନାହା । ୬୧ ।
ତାହାକଇଂ ମୁହିଂ ଗର୍ଭେ ଦେଲଇଂ ଯେ ଠାବ
ତେଣୁକର ମୁନସ୍ଥେ ମୋର ଦେହମନ୍ତ ସ୍ୱଭାବ । ୬୨ ।
ଅଷ୍ଟାବକ୍ର ବୋଇଲେ ଜାଣିଲୁ ଆମ୍ଭେ ତଥ୍ୟ
ଦମୟନ୍ତୀ ଯହୁଂ ନ ବରିଲ୍ଲ ଦେବତାନ୍ତ । ୬୩ ।
ତେନ୍ୟାୟୁଂ ମାୟାକଲେ ଦେବତାସ୍ଥେ ତୋତେ
କଳିକାଳ ଗଲେ ତୋର ରାଜ୍ୟ ହରିବା ନିମନ୍ତେ । ୬୪ ।
ନଳ ବୋଇଲ୍ଲ ସତ୍ୟଯୁଗେ କଳ ଯେବେ କଳିକ ଅସାଧ୍ୟ
ଯାଅରେ କଳିଯୁଗ ପରୀକ୍ଷିତ ତୋତେ ବାନ୍ଧ । ୬୫ ।
ନଳ ବୋଇଲେ ମୁନି ହେ ମୁହିଂ ତୁମ୍ଭନ୍ତ ପୁଚ୍ଛିବି କଥାସ୍ଥେ
ଦେହମନ୍ତ ପ୍ରପଞ୍ଚ କଂପେ ହୋଇଲ୍ଲ ତୁମ୍ଭ କାୟେ । ୬୬ ।
ଅଷ୍ଟାବକ୍ରେ ବୋଇଲେ ଶୁଣସି ଆଦିକଥା
ଅନୁସାରେକ ବୋଲି ଦେହଇ ସତ୍ୟଯୁଗର ବାରତା । ୬୭ ।
ସେ ସତ୍ୟ ଯୁଗେଣ ସ୍ୱର୍ଗନାମେ ଅଛଇ ଦିବ
କ୍ଷିତିର ନାମ ପୁଣ ଅଛଇ ଯେ ଭୂବ । ୬୮ ।

---

୬୮।୨ ଏତଦ୍‌ବ୍ୟତୀତ ନାମକରଣ ସମ୍ପର୍କରେ ବିଭିନ୍ନ ପୋଥିରୁ ଆମ୍ଭେମାନେ ନିମ୍ନଲିଖିତ ନାମକରଣଗୁଡ଼ିକ ପାଇଥାଉଁ :—
ସପ୍ତଦ୍ୱୀପା ନାମେ ଦିବ, ସଗର ନାମେ ଦିବ, ସର୍ପ ନାମେ ଦିବ, ଯୁଦ୍ଧକା ନାମେ ପୃଥିବୀ, ମାତା ନାମେ ଭୂବ, ବଇପାଳ ନାମେ ବ୍ରହ୍ମା, ବଇପାକ ନାମେ ବ୍ରହ୍ମା, ଦୌପାଦ ନାମେ ବହ୍ମା, ଅସ୍କନ୍ଦ ନାମେ ଇନ୍ଦ୍ର, କଞ୍ଚନ ନାମେ ଇନ୍ଦ୍ର, ବଡ଼ୋକା ନାମେ ଇନ୍ଦ୍ର ପ୍ରଭୃତି ।

କଞ୍ଜନାମେ ବ୍ରହ୍ମା ଅଛଇ ମଧ୍ୟସ୍ୱର୍ଗେ
ଅସ୍କନ୍ଦ ନାମେ ରୁଦ୍ର ବସଇ ସତ୍ୟଯୁଗେ । ୬୯ ।
ସେ ସତ୍ୟଯୁଗରେ ବିଷ୍ଣୁ ଅଛନ୍ତି ପୀତାମ୍ବର
ଶୁଦ୍ଧ ସ୍ଫଟିକ ପ୍ରାୟେ ନାରାୟଣ ଶରୀର । ୭୦ ।
କରଞ୍ଜ ନାମେ ଇନ୍ଦ୍ର ଅମରେ ଦେବତା
ଐରାବତ ନାଗ ନାମ ଅଛଇ ପୁଷ୍ପଦନ୍ତା । ୭୧ ।
ଚିତ୍ରୋତ୍ପଳା ନଦୀର ପଶ୍ଚିମ ଭାଗ କୂଳେ
ଉତ୍ତଙ୍ଗ ନାମେ ନଗ୍ର ବାରାହୀନଦୀ କୂଳେ । ୭୨ ।
ସେ ଉତ୍ତଙ୍ଗ ଦେଶେ ରାଜା ଅଛଇ ଇନ୍ଦ୍ରସିଂହ
ବଡ଼ାଇ ପ୍ରତାପୀ ରାଜା ଅଟେ ସେ ମହାଭାଗ । ୭୩ ।
ବଙ୍ଗସୀ ନାମେଣ ଅସୁର ରାଜା ଉପସ୍ଥିତ
ତାହାର ତନ୍ୱଂ ଥିଲେ ଅଷ୍ଟ ଯେ ଦୁହିତା । ୭୪ ।
ଦୁହିତାନ୍ତ ଘେନଣ ସେ ଅସୁର ଦାସ ରାଜନ
ଇନ୍ଦ୍ରସିଂହ ନୃପତିକ କଲାକ ପ୍ରଦାନ । ୭୫ ।
କାମ୍ୟେକ ପୁରୁଷ ସେ ଅଛଇ ରାଜା ଇନ୍ଦ୍ରସିଂହ
ସେ ଅଷ୍ଟା କନ୍ୟାକଇଂ କଲାକ ବିଚଭୋଗ । ୭୬ ।
ଧନୁ ଶୁକ୍ଳ ପୂର୍ଣ୍ଣିମୀ ଦିନ ସେ ଅଷ୍ଟ ଯୁବତୀ
ଯେତ୍କ ଦିନେ ଅଷ୍ଟ କନ୍ୟାଏ ହୋଇଲେ ଗର୍ଭବତୀ । ୭୭ ।

---

୭୪।୧ ବରଙ୍ଗ, ବାଲୁଙ୍କୀ, ବଣିଖୀ, ବର୍ଷୀ ପ୍ରଭୃତି ନଗର ନାମ ପୋଥିମାନଙ୍କରେ ପରିଦୃଷ୍ଟ :—

୭୭।୨ "ଯେତ୍କଦିନେ ଅଷ୍ଟ କନ୍ୟାଏ ହେଲେ ଗର୍ଭବତୀ" ଏହି ପଦ୍ୟାଂଶ ପରେ ଣ, ଖ ପୋଥିରେ ଅଧିକା ପାଠ:—
ଇନ୍ଦ୍ର ସିଂହ ନୃପତି ଯେ ବସିଲେ ସିଂହାସନେ
ଆନନ୍ଦରେ କଉତୁକ କରନ୍ତି କନ୍ୟାମାନେ ।
ଯେତ୍କ ସମୟେ ନାରକା ଦୈତ୍ୟ ଆସି ମିଳି
ଯେଉଂ ନାରକାକୁ ବଧକଲେ ବନମାଳୀ ।
ସେ ଦୈତ୍ୟକୁ କନ୍ୟାମାନେ ଦେଖିଲେକ ବେଗି
ବୋଇଲେ ଆମ୍ଭନ୍ତ ଦେଖି ରୁଷିମାଂସ ଦେଖି ।

ସୀମନ୍ତନ ହୋଇଲା ନରେନ୍ଦ୍ର ସିଂହମାସେ
ବର ଯାଚଇ ନୃପଞ୍ଚ କନ୍ୟାଂକୁ ହରଷେ । ୭୮ ।
କଉତୁକେ କନ୍ୟାମାନେ ତାହାକଇଂ ବନ ଡୋହଳ ମାଗି
ବୋଇଲେ ଆମ୍ଭଂକୁ ଦେବ ବରଷି ମାଂସ ଭୋଜୀ । ୭୯ ।
କାର୍ତ୍ତିକ ନାମେଣ ଅଛେ ଯେତୁକଇ ମହର୍ଷି
ତାହାଂକର ମାଂସ ଆମନ୍ତ ବନ ଡୋହଳେ ଢଅସି । ୮୦ ।
କନ୍ୟାଂକର ବଚନେ ସେ ଚଳିଲା ଦ୍ରୁପିଷ୍ଟେ
କାର୍ତ୍ତିକ ଋଷିକଇଂ ଭେଟିଲେ ବଳାଙ୍ଗୀ ନଦୀ ତଟେ । ୮୧ ।
ଆହାର୍ତ୍ତିକ କରି ମୁନି ନିତ୍ୟକର୍ମ ବିଧାନେ
ହେମନ୍ତର ସମୟେ ଯାଇ ଭେଟିଲେ ଯାତୁଧାନେ । ୮୨ ।
କାର୍ତ୍ତିକ ମହର୍ଷିଂକ ଅଇଲେ ତହୁଂ ଘେନ
ଅଷ୍ଟଖଣ୍ଡ କରି କଳେବର କାଟିଲେ ମହାମୁନି । ୮୩ ।
କାର୍ତ୍ତିକ ମହର୍ଷିଂକର ମାଂସ ଖଣ୍ଡି ଖଣ୍ଡି କରି କାଟି
ଅଷ୍ଟ ଭୋଗ କରିଣ ଦେଲା ତାହାଂକୁ ସେ ବାଣ୍ଟି । ୮୪ ।
ମହୁମେଦ କରିଣ ତାହା ଅଗ୍ନି କୁଣ୍ଡେ ଦିଲା ଭରି
ଜାଳଇ ଅସୁରେଶ୍ୱରେ ସଉଦା ପାକ କରି । ୮୫ ।
ରାନ୍ଧନ୍ତେଣ ହୋଇଲାକ ଅଢ଼ାଇ ପ୍ରହର ରାତି
ବନ ଭୂମି ଆସୁଛନ୍ତି ଅଷ୍ଟ ଯେ ଦେବତୀ । ୮୬ ।
ଅମ୍ବା ଅମ୍ବିକା ଅମ୍ବୁବତୀ ଅମ୍ବାଳିକା
ଅମ୍ବୁ ଅମ୍ବୁକା ଅମ୍ବିଳିକା ଆବର ଅମ୍ବେକା । ୮୭ ।
ଆକାଶ କ୍ଷେପିଣ ଭ୍ରମନ୍ତେ ନିଶାଯେ ମହାମାୟା
ଯୋଉନ୍ତେଣ ମାଂସ ଭେଟିଲେ ଯାଉଂ ତାହା । ୮୮ ।
ଦେବୀଂକ ଦେଖି ଭୟେ ପଳାଇଲେ ସେ ଇନ୍ଦୁସିଂହର ନାରୀ
ସ୍ୱାମୀ ସହିତେ ରହି ନୁଆରି ପଳାଇଲେ ହାସ କରି । ୮୯ ।

---

୮୭ ପୋଥିମାନଙ୍କରେ ଚାମୁଣ୍ଡା, ଚନ୍ଦ୍ରରେଖା, ଅନ୍ଧକା, ଅମ୍ବିକା, ଆର୍ଦ୍ରା, ଆର୍ଦ୍ରାବଳୀ, ସୁରା, ଜୟା, ମୋହନୀ ଓ ଅମ୍ବର ପ୍ରଭୃତି ନାମ ପରିଦୃଷ୍ଟ ହୁଏ ।

ଲହ ଲହ ଜିହ୍ୱା ବିକଟ ଦାନ୍ତ ବକ୍ରଚକ୍ଷୁ
ରେ ରେ କାରେ ଡାକନ୍ତି କେ ରେ ମନୁଷ୍ୟମାଂସ ପୋଡ଼ଅଛୁ । ୯୦ ।
ଅଗ୍ନି କୁଣ୍ଡ ମଧ୍ୟେ ହାଥ ଭରଣ ଦଗଣ୍ଡି
କାଢିଲେ ଦେବୀମାନେ ମାୟେଂସ ଅଷ୍ଟଖଣ୍ଡି । ୯୧ ।
ପୋଡ଼ନ୍ତେ ମାଂସ ଶଙ୍ଖବର୍ଣ୍ଣ ପ୍ରାୟେ ଦିଶଇ
କ୍ଷେପଣୀୟେ ବୋଲନ୍ତି କେବଣ ଋଷିର ମାଂସ ୟେହି । ୯୨ ।
ବେଢିଣ ରାକ୍ଷାୟୁଣୀ ତାହା ନ ଖାଇଲେ ଅଦ୍ୟାପି
ଖଣ୍ଡି ଖଣ୍ଡି କରି ସରୂପେ ତାହା ଥାପି । ୯୩ ।
ସିଂହମାସ ଶୁକଳ ପକ୍ଷ ନବମୀ ଦିନରେ
ଚନ୍ଦ୍ରଦେବତା ଗୋପ୍ୟାନ ରାହ ଅଢାଇ ପ୍ରହରେ । ୯୪ ।
ବିଶେଷେ ଅନ୍ଧାର ଆବର ଘୋରବନ
ବାରଣ ନ ଯାଇ ନ ଚଳନ୍ତି ବର୍ଣ୍ଣ ଚିହ୍ନ । ୯୫ ।
ଋଷିମାଂସ ବୋଲି ସେ ନ ଭକ୍ଷିଲେ ମହାମାୟୀ
ଅଷ୍ଟଦେବୀ ଅଷ୍ଟଖଣ୍ଡି ୟେକତ୍ର କଲେ ତହିଂ । ୯୬ ।
କେ ମୁଣ୍ଡଖଣ୍ଡି ଲଗାଇଲା ପିଠି ଯେ କଣ୍ଠକ
ହୃଦଖଣ୍ଡ ଲଗାଇଲା ଡାହାଣ ଅଙ୍ଗ ତହିଂକ । ୯୭ ।
ହୃଦଗତ କେ ନେଇ ଲଗାଇଲା ବାମକର
କେହୁ ନେଇ ଚରଣ ଖଞ୍ଜିଲା ପିଠ ଯେ କଣ୍ଠର । ୯୮ ।
ଅନ୍ତର୍ଯାଗ କରଣ ସେ ଥାପିଲେ ପିଣ୍ଡୁଳି
ମୃତୁ ସଞ୍ଜୀବନୀ ମନ୍ତ୍ରେ ଜୀବନ୍ୟାସ କରି ତୋଳି । ୯୯ ।
ଶୁଣ ଆହେ। ନଳରାଜା ତୋଷେ ବୋଲନ୍ତି ବୃହସ୍ପତି
ୟେକ ଶରୀର ଆରମ୍ଭ ହେଲା ଅଷ୍ଟମୂର୍ତ୍ତି । ୧୦୦ ।
ୟେମନ୍ତେ ଅଷ୍ଟାବକ୍ର ହୋଇଲା ଆମ୍ଭର କାୟେ
ଆମ୍ଭେ ସେ ଅଷ୍ଟବକ୍ର ଜନ୍ମ ଅପିତା ଅମାୟେ । ୧୦୧ ।

---

୯୫।୨ ବାରତ ନ ଗଲା ଯେ ସରୂପେ ବର୍ଣ୍ଣ ଚିହ୍ନ । —ଜ, ଚ

୧୦୧।୨ ଅରଜ ଅପିତା ସେ ଅଯୋନି ଜନ୍ମାସ୍ତେ ।—ଜ, ଛ

ଶୁଣିଣ ସାନନ୍ଦ ସେ ନଳ ଯେ ନୃପତି
ଏ ମୋହୋର ରୂପ ମୁନି ହେ ନିଜମୂର୍ତ୍ତି । ୧୦୨ ।
ଅଷ୍ଟବଙ୍କେ ବୋଇଲେ ତୋତେ ଅଛି ଭବିଷ୍ୟ
ସେ ଯେବେ ସମ୍ପୂର୍ଣ୍ଣ ହୋଇବ ଲଭିବୁ ପରମ ଗତି ପାଇବୁ ନିଜ ଦେଶ । ୧୦୩ ।
ଆମ୍ଭର ବୋଇଲେ ତୁ ହୋଇପାରୁ ନନା
ଏ ରୂପ ଥିଲେ ରାଜା କାରଣ ତୋତେ ସିନା । ୧୦୪ ।
ସାମ୍ପ୍ରନ୍ତ ରୂପରୁ ଯେବେ ସେବକ ହୋଇବ ସୁନ୍ଦର
ସେ ଯେ ନ ଶୋହଇ ତାହାର କନ୍ତର । ୧୦୫ ।
ତିନି ସହସ୍ର ବିଶାଶତେ ଦିନ
ଏତେକ ପାରସିବ ଏ ତୋହୋର ବର୍ତ୍ତି । ୧୦୬
ଅଷ୍ଟବକ୍ରେ କହିଲେ ସେ ସରୂପ ମଣାଇ
କଳିକାଳ ପୂରୁଷେ ତୋତେ କରୁଛନ୍ତି ବାଇ । ୧୦୭ ।
ଏ ବାଳୁତ ଭାବ ତୋର ଆମ୍ଭେ କରୁ ଶାନ୍ତ
ତୋତହୁଂ ଦମୟନ୍ତୀର ଆନ ନାହିଂ ପନ୍ଥ । ୧୦୮ ।
ଏବେ ତୁ ଆମ୍ଭ ବୋଲକରି ରାଜା ଯିବୁ
ଋତୁପର୍ଣ୍ଣ କଟକେ ଅଯୋଧ୍ୟାରେ ଥିବୁ । ୧୦୯ ।
ମହତ ଧାର୍ମିକ ସେ ଅଟଇ ନୃପବର
ତାହାର କଟକେ ତୋର କଷ୍ଟ ଯିବ ପାର । ୧୧୦ ।
ସେ ରାଜ୍ୟର ରଥେ ବାହୁକ ହୋଇଥିବୁ
ତାହାର ସଙ୍ଗେ ଥିଲେ ତୁ କାରଣ ପାଇବୁ । ୧୧୧ ।
ଶୁଣିଣ ସାନନ୍ଦ ସେ ହୋଇଲେ ନୃପତି
ସେ ଅଯୋଧ୍ୟା କଟକକୁ ମୁନି ହେ ବାଟ କେଉଂଣ କତି । ୧୧୨ ।
ଅଷ୍ଟବଙ୍କେ ବୋଇଲେ ସେ ନଳ ରାଜାକୁ
ଏକମୁଖ ହୋଇ ଯାଅ ଯା ଉତ୍ତର ଦିଗକୁ । ୧୧୩ ।
ଏତେ କହି ଅଷ୍ଟବଙ୍କେ ଗଲେ ଅନ୍ତର୍ଦ୍ଧାନେ
ତହୁଂ ସେ ନଳରାଜା କରଇ ଗମନେ । ୧୧୪ ।

---

୧୦୪।୧ ନନା—ନଷ୍ଟସ୍ନେ ।

ଅନେକ ଗିରି କନ୍ଦର ବନ ଗହନେ ଭ୍ରମଇ
ପ୍ରବେଶ ନଳ ଯାଇଂ ବନସ୍ତ ନନ୍ଦୀ ଗ୍ରାମଇଂ । ୧୧୫ ।
ସେ ଦେଶେ ରାଜନ ସେ ନନ୍ଦୀକ ଚକ୍ରବର୍ତ୍ତି
ତାହାଂର ରାଜ୍ୟେ ପ୍ରବେଶ ନଳ ଯେ ନୃପତି । ୧୧୬ ।
ବାସୁକର ବୋଲଣ ଯେ ସେବକଇ ହ ଜବରେ
ନନ୍ଦୀକ ପଶା ଖେଳୁଛି ତାହାର ସଂଗତରେ । ୧୧୭ ।
ତାହାର ପାଖେ ବାକ୍ରୃତ ଅବସ୍ଥା ହୋଇଣ ନଳ
ଖମ୍ବକୁ ଆଉଜ ଉଭା ହୋଇଅଛି ଆସ୍ଥାନର ତଳ । ୧୧୮ ।
ସେ ବାସୁକର ବ୍ରାହ୍ମଣକୁ ପଶାରେ ହାରିଲା ନନ୍ଦୀକ ଚକ୍ରବର୍ତ୍ତି
ମହାଦେଈ ବୋଇଲେ ରାଜା ନଳ ପ୍ରାୟେ ହୋଉଛି ତୋର ଗତି । ୧୧୯ ।
ପଶା ଛାଡି ରାଜା ଗୃହଂଲ ଭରଯାକୁ
ନଳ ରାଜା ଚରିତ କସ କହନ ଆମ୍ଭଂକୁ । ୧୨୦ ।
ଶୁଣ ହୋ ମହାରାଜା ବୋଲଇ ଇନ୍ଦୁମତି
ପୁଷ୍କର ବ୍ରାହ୍ମଣ ଭୁଲେ ପଶା ଖେଳିଲେ ନଳ ଯେ ନୃପତି । ୧୨୧ ।
ରାଜ୍ୟଭାର ସିଂହାସନ ସମସ୍ତ ସେ ହାରି
ସେବକମାନ କମୟନ୍ତୀକ ଘେନ ହୋଇଲା ବନ ଉପଗୃହୀ । ୧୨୨ ।
ସେବକା ଭାରଯାକଇଂ ବନସ୍ତେ ନୁଆଣିଲା ପୋଷି
ପଣନ୍ତ କାଟି ବନେ ପଳାଇଲା ଅବିଶ୍ୱାସୀ । ୧୨୩ ।
କେହି ନ ଧରନ୍ତି ସେ ନଳରାଜାର ନାମ
ଯେହୁ ମହୀତଳେ ତାର ଉତ୍ତଂ କେହି ନାହିଂନା ଅଧମ । ୧୨୪ ।
ନନ୍ଦୀକ ରାୟେ ବୋଇଲା ତୁ ନନ୍ଦାଲୁ ନଳ ଯେ ନୃପତି
ସ୍ତ୍ରୀକୁଳେ ଅଧର୍ମୀ ଯେ ଅଟଇ ଦମୟନ୍ତୀ । ୧୨୫ ।

---

୧୨୫ । ୨ "ସ୍ତ୍ରୀଗ କୁଳେ ଅଧର୍ମୀ ଯେ ଅଟଇ ଦମୟନ୍ତୀ" ପରେ
'ଛ' ପୋଥିରେ ଭିନ୍ନପାଠ—
ସ୍ୱାମୀ ହୋଇ ଧିଗ୍ରକ ବନେ ତେଜ୍ୟାକଲା
ଧିକ ଧିକ ନଳରାୟେ କେମନ୍ତେ ବ୍ରତିଲା ।
ରାଜାଂକ ମଧ୍ୟେ ସେ ଅଟଇ ମନ୍ଦଗୃହୀ
ପ୍ରଭାତର ବେଳେ ତାର ନାମ ଯେ ନ ଧରି

ସ୍ୱାମୀ ହୋଇ ବଢିଲ ସେ ସେବଣ କଥାକୁ
ଭାରଯା ହୋଇ କଂପେ ନ ଧ୍ୟାଇଲ ତାହାକୁ । ୧୨୬ ।
ସ୍ତ୍ରୀ ସ୍ୱକୁଳ ମଧ୍ୟେ ସେ ଅଟଇ ଅନ୍ୟାଗୃହୀ
ପ୍ରଭାତର କାଳେ ତାର ନାମସ୍ପଂ ନ ଧର । ୧୨୭ ।
ଶୁଣିଣ ରୋଦନ କରଇ ନଳ ଯେ ନୃପତି
ସୂର୍ଯ୍ୟବଂଶେ ଯାତହୋଇ ମୋତେ ହେଉଛି ଉପଖ୍ୟାତି । ୧୨୮ ।
କଳଙ୍କ ଆତ୍ମା ମୋର ଧରିବ କେବଣ ବାଟେ
କେଣୀଚକ୍ର ଭେଦିବ ଝାସିବ ପ୍ରୟାଗେ । ୧୨୯ ।
ଧିକ ଧିକ ଜୀବନ ବୋଲି ବନେ ପଶିଲେକ ରାଘୁ
ବନସ୍ତେ ଭ୍ରମନ୍ତେ ଦେଖିଲେ ବ୍ୟାଘ୍ରପଲ ଯେ ଗୋଟାଏ । ୧୩୦ ।
ନଳ ବୋଇଲେ ବ୍ୟାଘ୍ର ହେ ପାର କ ମୋତେ ଭକ୍ଷି
ନଳକଇଂ ଦେଖି ବ୍ୟାଘ୍ରେ ଗଲେ ସବେ ଘୁଞ୍ଚି । ୧୩୧ ।
ଚଳଇ ନଳ ନରେନ୍ଦ୍ର ଧବଳମୁଖୀ ନଗରେ
ରତ୍ନୁପର୍ଣ୍ଣ ରାଜାକଇଂ ଭେଟିଲେ ଅଯୋଧ୍ୟା ନିକଟେ । ୧୩୨ ।
ଭାନୁମଣ୍ଡଳ ରାଜା ରୁଦ୍ରସେନ ନୃପତି
ତାହାର ତତ୍ତ୍ୱଂକ ଦଣ୍ଡ ସାଜିଲ ରତ୍ନୁପର୍ଣ୍ଣ ଚକ୍ରବର୍ତ୍ତୀ । ୧୩୩ ।
ରତ୍ନୁପର୍ଣ୍ଣ ରୁଦ୍ରସେନର ବଢାଇ ସମର
ରତ୍ନୁପର୍ଣ୍ଣ ସଇନ ଯେ ହୋଇଲେ ଅପହର । ୧୩୪ ।
ପଦ୍ମେକ ରଥ ତାର ଗୃହପଦ୍ମ ହାଥୀ
ପଞ୍ଚସାଗର ଅଶ୍ୱ, ନବସାଗର ପାଦାନ୍ତି । ୧୩୫ ।
ରତ୍ନୁପର୍ଣ୍ଣ ରାଜାର ପଡିଲ ହେତେ ଥାଟ
ପଳାବଇଂ ନୃପତି ଯେ'ନ ପାବଇଂ ବାଟ । ୧୩୬ ।
ଆପଣେ ଆସଇ ରାଜା ବାହୁଣ ହେକ ରଥେ
ସେନା ଟୋପର ରାଜାର ବୁଡିଅଛୁ ରକତେ । ୧୩୭ ।
ବନସ୍ତେ ପଳାଇ ରାଜା ହେକ ରଥ ଗୋଟି
କାଶୀ ନଗ୍ର ଖରେ ନଳ ତାହାକଇଂ ଭେଟି । ୧୩୮ ।

---

୧୩୧।୨ ପୁଣ୍ୟବଳ ଦେଖିଣ ଯେ ବ୍ୟାଘ୍ରେ ପଳାଇଲେ ଘୁଞ୍ଚ ।—ଜ

ନଳ ପଗ୍ୟରଇ ଭୁହୋ କେବଣ ଦେଶ ରଥୀ
ଦଣ୍ଡଭଗ୍ନ ପ୍ରାପ୍ତେକ ହଣଇ ଭୂମ୍ଭ ମୃତ୍ତ । ୧୩୯ ।
ଶୁଣ ହୋ ମହାରାଜା ବଦୟନ୍ତ ଋତୁପର୍ଣ୍ଣ
ପରଥାଠ ଯୁଦ୍ଧେ ମୋର ହୋଇଲା ଦଣ୍ଡଭଗ୍ନ । ୧୪୦ ।
ନଳ ବୋଇଲା ତୋର ମୁହିଂ ହୋଇବ ସାରଥି
ପ୍ତେକ ନମିଷକେ ଜିଣିବୁ ଭୂଅପତ୍ତି । ୧୪୧ ।
ବାହୁକ ନାମ ମୋର ଅଟଇ ଯୁଗତ୍ତ
ଅଶ୍ୱିନୀ କୁମାରଂକର ମୁଂ ଅଟଇ ପଣନାନ୍ତ । ୧୪୨ ।
ରେହନ୍ତ ମୋର ଗୁରୁ ମୁଂ ପାରଇ ରଥ ବାହ୍ବ
ମୋହୋର ରଥେ ଥିଲେ ଅପ୍ରାଂଜୟେ ତୋତେ ନାହିଂ । ୧୪୩ ।
ଶୁଣିଣ ଋତୁପର୍ଣ୍ଣ ନଳକଇଂ କଲା ଅନେକ ପୂଜା
ବାହା ମୋର ରହୁବର ବୋଲଇ ମହାରାଜା । ୧୪୪ ।
ବାହୁକ ନାମେଣ ନଳ ହୋଇଲା ସାରଥି
ଋତୁପର୍ଣ୍ଣର ରଥ ବାହିଲା ପବନହୁଂ ଧାନ୍ତି । ୧୪୫ ।
ଆକାଶ ମାର୍ଗେଣ ଉଡଇ ରଥଗୋଟି
ରୁଦ୍ରସେନ ରାଜାକଇଂ ଯାଇଂଣ ଭେଟି । ୧୪୬ ।
ରଣଜୟ୍ କରଣ ସେ ଯାଉଅଛୁ ରୁଦ୍ରସେନ
ଆଗେ ଧାଇଂ ଉଗାଳିଲା ସେ ରାଜା ଋତୁପର୍ଣ୍ଣ । ୧୪୭ ।
ଅନେକ ବଦ୍ୟା ତାକୁ କହଇ ହାଦେ ନଳ
ମନ୍ତ୍ରଭେଦ ପାଇଣ ସେ ହୋଇଲା ମହାବଳ । ୧୪୮ ।
ସାଧୁ ସାଧୁ ନଳରାଜା ଯେ ଅଟଇ ମହାଯୋଧୀ
ଋତୁପର୍ଣ୍ଣ ରାଜାକଇଂ ଶିଖାଇଲା ନାରାଜ ମନଭେଦୀ । ୧୪୯ ।
ମନେ ଧରନ୍ତେ ସେ ରୁଦ୍ରସେନର ବଳ ଧଂସି
ଅନେକ ଯୋଦ୍ଧା ତାର ପାଡଲା ବଶେଷି । ୧୫୦ ।

---

୧୪୫।୨ ଋତୁପର୍ଣ୍ଣର ରଥ ବାହିଲା ପବନହୁଂ ଆପଣି ।—ଥ. ଣ, ତ
୧୫୦।୨ ଅନେକ ଯୋଦ୍ଧା ପଡିଲେ କେ କହିବ ବଶେଷି —ଘ, ଡ ।

ନବସାଗର ଯୋଦ୍ଧ ରୁଦ୍ରସେନର ଥିଲ
ଯେତୁକା ପ୍ରହାରକେ ଋତୁପର୍ଣ୍ଣ ନାରାଜ ସମସ୍ତ ନାଶକଲ । ୧୫୧ ।
ସଇନ ପଡନ୍ତେ ରାଜା ପଳାଇଲ ରୁଦ୍ରପାଦ
କଣ୍ଠାଳ ଋତୁପର୍ଣ୍ଣ ରାଜା ନାରାଜ କଲ ଭେଦ । ୧୫୨ ।
ନାଗପାଶେ ଋତୁପର୍ଣ୍ଣ ରୁଦ୍ରସେନକଇଂ ବାନ୍ଧି
ରୁଦ୍ରସେନ ରାଜା ତହିଂ ହୋଇଲେକ ବନ୍ଦୀ । ୧୫୩ ।
ଅନେକ ଧନ ଭଣ୍ଡାର ରାଯ୍ୟେ ପୂରେଇଣ ରଥେ
ଅଯୋଧ୍ୟାରେ ପରବେଶ ହୋଇଲେ ନରନାଥେ । ୧୫୪ ।
ରାଜ୍ୟେଣ ରାଜା ଅନେକ ଉଚ୍ଛବ ବଧାଇ
ବାହୁକକଇଂ ଅନେକ ପୁରୁଷାର୍ଥ କରାଇ । ୧୫୫ ।
ଋତୁପର୍ଣ୍ଣ ବୋଇଲ ଆଗ୍ୟାଂ ମୋତେ ଦେବା
ତେବେ ମୋହୋର ରାଜ୍ୟେ ତୋତେ କରାଇବି ବଡ଼ । ୧୫୬ ।
ବାହୁକ ବୋଇଲ ମୁଂ ଅଟଇ ପୁରୁଷ ଯନ୍ତ
ବ୍ରତ ଆଚରେ ମୋହୋର ଯେତୁକଇ ଯୁବତି । ୧୫୭ ।
ଆବର ସ୍ତ୍ରୀନେ ଅଛଇ ମୋହୋର ଭାରଯା
ମୁହିଂ ସେ ତାହାକଇଂ କରିଅଛଇ ବନେ ପରିତେଜ୍ୟା । ୧୫୮ ।
ଉତ୍ତର କୋଶଳେ ଯେ ଅଯୋଧ୍ୟା ମଣ୍ଡଳ
ଋତୁପର୍ଣ୍ଣର ବାହୁକ ହୋଇ ତହିଂ ରହିଲ ରାଜା ନଳ । ୧୫୯ ।
ଛାଡିଲା ଦୁଷ୍ଟକୃତ ରହିଲ ଅଇଶ୍ୱର୍ଯ୍ୟେ
ବାହୁକକଇଂ ଯେନ ଋତୁପର୍ଣ୍ଣ କରଇ ହିଗବଜେ । ୧୬୦ ।
ବଇବସ୍ୱତ ମନୁଃ ପୁଚ୍ଛାକଲେ ଅଗସ୍ତି
ବିଦୁଳା ନଗରେ ଯେ ରହିଲେ ଦମୟନ୍ତୀ । ୧୬୧ ।
ନଳରାଜା ରହିଲେ ଅଯୋଧ୍ୟା ନଗ୍ରପୁର
କହିବା ମୁନି ହେ ସେ କେତେ କେତେକ ଅନ୍ତର । ୧୬୨ ।

---

୧୫୨ { ସଇନ ପଡନ୍ତେଣ ରାଜା ଲଭିଲ ବିଷାଦ
ରୁଦ୍ରସେନ ରାଜାକଇଂ ଋତୁପର୍ଣ୍ଣ କଲ ଶରଭେଦ ।— ଘ, ଙ

୧୬୨।୨ ଅବେଗ୍ୟ ଋଷି ସେ ଯେ କେତେ କେତେ ଅନ୍ତର ।— କ, ଙ

ଅଗସ୍ତ୍ୟ ବୋଇଲେ ଶୁଣ ହୋ ମନୁ ରାଜନ
ଅଯୋଧ୍ୟାକୁ କଉଶିକ ବନ ନବଶତ ଯୋଜନ । ୧୭୩ ।
କଉଶିକ ଦେଶକୁ ନଗ୍ର ସେ ଉଜାଣିକାନ୍ତ
ସହସ୍ରେ ପାଞ୍ଚଶତ ଯୋଜନ ତହିଂର ପ୍ରାନ୍ତ । ୧୭୪ ।
ଉଜାଣିକାନ୍ତକ ନର୍ଝର ଦେଶ ତିନ ସହସ୍ର ଯୋଜନ
ତହିଂକ କନାଉଜ ଦେଶ ପାଞ୍ଚଶତ ଯୋଜନ ପରମାଣ । ୧୭୫ ।
କଉଶିକ ବନସ୍ତ ପଞ୍ଚଷଠୀ ଶତେ ଯୋଜନ ପରଯନ୍ତେ
ଲକ୍ଷେ ଦଶ ସହସ୍ର ଷାଠିଯେ ଯୋଜନ ଲେଖନ୍ତେ । ୧୭୬ ।
ମନୁ ବୋଇଲେ ଅଗସ୍ତି ସେ ବହୁତ ଦୂର ବାଟ
ନଳ ଦମୟନ୍ତୀ କେମନ୍ତେ ପୁଣ ହୋଇଲେକ ଭେଟ । ୧୭୭ ।
ଯେହ୍ନା ସଞ୍ଚପି ମୋତେ କହିବା ବ୍ରହ୍ମସୁତ
ତୋହୋର ମୁଖରୁ ଶୁଣିବ ନଳରାଜାର ଚରିତ । ୧୭୮ ।
ପୁଣ ନଳଙ୍କଇଂ କେମନ୍ତେ ଭେଟ ପାଇଲା ଦମୟନ୍ତୀ
ଯେହ୍ନା ସଞ୍ଚପି ମୋତେ କହିବା ଅଗସ୍ତି । ୧୭୯ ।
। ୧୯୪୯୫ ।

---

୧୭୪।୨ "ସହସ୍ରେ ପାଞ୍ଚଶତ ଯୋଜନ ତହିଂର ପ୍ରାନ୍ତ" ପାଦାନ୍ତ ପରେ 'ଡ'
ପୋଥିରେ ଅଧିକା ପାଠ—
ଉଜାଣିକାନ୍ତ କ ତିନଶତ ଯୋଜନ କନାଉଜ
ତହିଂକ ବଇଦର୍ଭ ଦେଶ ବେନଶତ ପୁଣ ମାର୍ଗ।
ବଇଦର୍ଭ ଦେଶକୁ ନବଶତ ଯୋଜନ ଖିପ୍ରେକ ରାଜ୍ୟ ପୁଣ
ସେ ଭୂପେ ଦୁଇ ସହସ୍ର ଛସ୍ଥାନବେ ଲକ୍ଷେ ଯୋଜନ ଜାଣ । —ଡ,
୧୭୮।୨ ତୋହୋର ମୁଖେ ନର୍ମିତ ମହାଭାରଥ ନଳ ଯେ ଚରିତ —ଝ, ଢ

## ଦମୟନ୍ତୀଙ୍କ ଦ୍ୱିତୀୟ ସ୍ୱୟମ୍ବର

କଥଯନ୍ତ ଅଗସ୍ତି ପଣ୍ଡିତ ଭଗ୍ୟଂବନ୍ତା
ଶୁଣନ୍ତ ମନୁବଂଶେ ହୋଇଣ ମହାଶ୍ରୋତା । ୧ ।
ନଳ ଦମୟନ୍ତୀଂକର ନ ପା'ଇ ବାରତା
ବିସ୍ମଇ ଖ୍ୟମେକ ନୃପତ ଦମୟନ୍ତୀର ପିତା । ୨ ।
ବସୁଦେବ, ସୁଦେବ, ବିଷ୍ଣୁକର, ବେଦକର
ଏମ୍ଭେ ଗୃହନ୍ତ ଘଇ ବୋଇଲା'ତୁମ୍ଭେ ଦମୟନ୍ତୀକ ଲୋଡ । ୩ ।
ତୁମ୍ଭେ ଗୃହବଂଶେ ଯେବେ ଚଳ ଧ ଭଜା'ର
ନଳ ଦମୟନ୍ତୀକ ଲୋଡାକର ହେ ସତ୍ୱର । ୪ ।
ଅନେକ ଧନରତ୍ନ ଗୋଧନ ଶାସନ
ବିପ୍ରର ବ୍ରାହ୍ମଣଂକୁ ଦେଲ ଖ୍ୟମେକ ରାଜନ । ୫ ।
ରାଜାଂକର ବଚନ ସେ ପାଇକର ଦୀକ୍ଷା
ବନେଣ ଭ୍ରମନ୍ତ ସେ ନଗ୍ରେଣ ମାଗନ୍ତ ଭିକ୍ଷା । ୬ ।
ଜନ୍ମେଷନ୍ତ ନଳ ଦମୟନ୍ତୀର ଚହ୍ନ
ଚହପଟ ଦେଖିଣ ସେ ବିପ୍ରରନ୍ତ ବର୍ଣ୍ଣ । ୭ ।

---

୫ { ଅନେକ ଧନରତ୍ନ ଦେଇ କରେ ସମାର୍ଜନ
ସନ୍ଦେଶ ପାଇଲେ ଦେବ ବହୁ ରତ୍ନମାନ । —(ଖ, ନ, ଣ)

୭।୨ "ଚହପଟ ଦେଖିଣ ସେ ବିପ୍ରରନ୍ତ ବର୍ଣ୍ଣ" ପରେ ଖ, ନ, ଣ ପୋଥିରେ ଅଧିକା ଭିନ୍ନପାଠ :—
ଯେମନ୍ତର ସମସ୍ତେ ନଗର ବାହାର ହୋଇ
ଗଙ୍ଗାକଇଂ ସ୍ନାହାନ କରିବାକୁ ଯାଇ ।
ଦେଖିଣ ଦ୍ୱିଜବର ଚହ୍ନିଲକ ତାହା
ତୁମ୍ଭେତ ଅଛ କେଣେ ଗଲେ ଗୋ ତୁମ୍ଭର ପ୍ରାଣନାହା ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ସୁଦେବ ନାମେଣ ସେ ଯେବଣ ଦ୍ୱିଜବର
ସେ ଯାଇ ପ୍ରବେଶ ହୋଇଲା ବିଜୟ୍ପା ନଗ୍ରପୁର । ୮ ।

---

[ଙ୍ପୁଷ୍ଟାର ପାଠାନ୍ତର]

ଦମୟନ୍ତୀ ବୋଲେ ତୁମ୍ଭେ ଶୁଣ ଆହୋ ଦେବ
କାହିଂର ମହାତମା ମୋତେ ସରୂପ କହିବ ।
ସୁଦେବ ବୋଇଲା ବଇଦର୍ଭରେ ଆମ୍ଭ ଘର
ସେ ନଗରେ ଅଛଇ ଯେ ଭୀମେକ ନୃପବର ।
ତାର କନ୍ୟା ଦମୟନ୍ତୀ ନଳେ ବିଭା ହୋଇ
ରାଜ୍ୟ ଧନ ହାରି ସେହୁ ପଳାଇଲେ କାହିଂ ।
କନ୍ୟା ଅନୁଷଣେ ରାଜା ପେଷିଲାକ ଦୂତ
ସୁରଦାଗେ ଆମ୍ଭେ ସୁରହେଂ ହୋଇଲୁ ଆଗତ ।
ଆମ୍ଭେ ଗବନ କରି ଅଇଲୁ ଗୋ ମାୟେଁ ଏଥ
ତୋତେ ଆସି ଠାବ ଆମ୍ଭେ କଲୁ ଯେ ତୁରିତ ।
ଶୁଣିକରି ଦମୟନ୍ତୀ କରଇ ରୋଦନ
ସେହି ସତ କହୋ ତୁମ୍ଭର ବଚନ
ସେସନ ରଚତ ଯେ ମୁଦୁସୁନ୍ଦା ଦେଖିଲା
ନାଗମାତାଂକ ଆଗରେ ଯାଇଂ ତକ୍ଷଣେ ଜଣାଇଲା ।
ଶୁଣିଣ ବାହୁଲା ସୁଦେବ ଦ୍ୱିଜକଇଂ ରାଇ
ରାଜାର ମଙ୍ଗଳ ବାରତା ତାହାକଇଂ ପୁଛଇ ।
ଶୁଣିଣ ସୁଦେବ ବୋଲେ ଶୁଣ ନାଗମାତା
ଭୀମ ରାଜାଂକର ସଦା ଦମୟନ୍ତୀ ଯେ ଚନ୍ଦା ।
ଶୁଣିକରି ସନ୍ତୋଷ ହୋଇଲା ନାଗମାତା
ସ୍ତିରୀବୃନ୍ଦ ଘେନିଣ ଚଳିଲା ଅପ୍ରମିତା ।

୮ । ସେ ଯାଇ ପ୍ରବେଶ ହୋଇଲା 'ବିଜୟ୍ପା ନଗ୍ରପୁର' ।—ପରେ
ଖ, ଣ, ନ ପୋଥିରେ ଭିନ୍ନ ପାଠ :—

ସେ ନଗ୍ରେ ଯାଇଂଣ ବିପ୍ର ପାଞ୍ଚଦିନ ରହି
ଖୋଜଇ ଦ୍ୱିଜବର ଖୋଜି ଦମୟନ୍ତୀକି ନ ପାଇ

ଖୋଜଇ ବିପ୍ରବର ଉନ୍ମେଷଇ ଚଉକତ
ନଗ୍ର ହାକ ଦିଅଇ ସେ ଦମୟନ୍ତୀ ଦମୟନ୍ତୀ । ୯ ।
କେସମା ବୋଲକରି ବଦୁଲା ନାଗମାତାର ମୁହୁସୁଲି
ସେ ବୋଇଲା ମାଗୋ ଦାଣ୍ଡେ ବ୍ରାହ୍ମଣେକ ଦେଖିଲି । ୧୦ ।
ଉଚ୍ଚସ୍ୱରେ ସେ ବୋବ ପାଡଇ ଦମୟନ୍ତୀ ନାମ ଧରି
ଶୁଣିଣ ବାହାର ହୋଇଲେ ଭୀମେକ କୁମାରୀ । ୧୧ ।
ସୁଦେବ ପଣ୍ଡାକୁ ଚିହ୍ନିଲା ଦେଖା ଦେଖି
ସନ୍ନଧେ ହକାରିଲେ ଲଜ୍ଜାଭାବ ଉପେଖି । ୧୨ ।
ଦମୟନ୍ତୀ ପ୍ରଣମିତ ବ୍ରାହ୍ମଣ ପାଦ ବେନି
କୁଳବିପ୍ର ଦେଖି ଅନେକ ବିନୟ ଦଇନ୍ୟ । ୧୩ ।
କ୍ରୋଧେଣ ଗଦ ଗଦ ହୋଇଣ ନଳରାଜାର ରାଣୀ
ସମ୍ଭାଳି ନୁଆରି କ୍ରୋଧେ କରଇ ଉଚ୍ଚବାଣୀ । ୧୪ ।
ଦମୟନ୍ତୀର କ୍ରୋଧେ ପୂରିଲେ ନଗ୍ରଜନେ
ବଦୁଲା ଶାନ୍ତ କରାଇଲେ ମାଧର୍ଯ୍ୟ ବଚନେ । ୧୫ ।
କ୍ରୋଧ ସମ୍ଭାଳିଣ ସେ ପଚାରଇ ଦମୟନ୍ତୀ
ବଇଦର୍ଭ ଦେଶ ଜନେ କୁଶଳେ ଅଛନ୍ତିକି ବିପ୍ର । ୧୬ ।
କ୍ଷେମେଣ ବ୍ରତନ୍ତ ନା ମୋହୋର ପୁଅ ଦୁହିତେ
କ୍ଷେମେଣ ଅଛନ୍ତ ନା ମୋହୋର ପିତାମାତେ । ୧୭ ।
ସମସ୍ତ କୁଶଳ ବୋଲି ବୋଇଲେ ଦ୍ୱିଜବର
ହେ ବିପ୍ର ଅବସ୍ଥା ତୁ ଦେଖସି ମୋହୋର । ୧୮ ।
ବନସ୍ତେ ବୁଲୁଥିଲି ମୁଁ ବାତୁଳ ଭାବ ହେନ
ମୁକୁଇଂ ଅନୁଗ୍ରହ କଲ୍ୟେ ସେ ସ୍ୟୁବ୍ର ମହାରାଣୀ । ୧୯ ।
ଅପ୍ରସଙ୍ଗେ ପ୍ରସଙ୍ଗ ମୋତେ ହୋଇଲେକ ନାଗମାତା
ଫିଟିଲା ଦୁଷ୍କୃତ ମୋର ପାଶୋର ଗଲା ସବଂଗାଥା । ୨୦ ।
ନଳଙ୍କ କୁଶଳ ତୁମ୍ଭେ ଜାଣଟି କି ପଣ୍ଡାୟେ
ବାରତା ପାଇଲେଣକି ପିତା ଭୀମେକ ରାୟେ । ୨୧ ।
ବଦୟନ୍ତ ସୁଦେବ ଦମୟନ୍ତୀ ନଳରେ ନାହିଂ ଖୋଜା
ଭ୍ରମନ୍ତ ଖୋଜିବାକୁ ଆଜ୍ଞାଂଦିଲେ ଭୀମେକ ରାଜା । ୨୨ ।

ହେ ମାତ ଦମୟନ୍ତୀ ଗୋ ବଇଦର୍ଭ ଦେଶକୁ ଚାଲି ଯିବା
ପିତାର ନଗ୍ରେ ଥାଇ ନଳକଇଂ ଖୋଜାଇବା । ୨୩ ।
ଶୁଣିଣ ସାନନ୍ଦ ଯେ ହଦୁଲା ନାଗମାତା
ସ୍ତ୍ରି ସବୃନ୍ଦ ଘେନ ସେ ଆପଣେ ଗମିତା । ୨୪ ।
ଦମୟନ୍ତୀଙ୍କ ଘେନ ସେ ଆରୋହିଲେ ମତ୍ତନାଗ ପିଠି
ଆଗେଣ ସୁଦେବ ବ୍ରାହ୍ମଣ ପଛେଣ ସ୍ତ୍ରି ସବୃନ୍ଦ ଥାଠଗୋଟି । ୨୫ ।
ଚଳଇ ନାଗମାତା ଘୋର ଯେ ଅରଣ୍ୟେ
ବଇଦର୍ଭ ଦେଶେ ପ୍ରବେଶ ପଞ୍ଚଅରିଶ ଦନେ । ୨୬ ।
ଦମୟନ୍ତୀ ଆଗମ ବୋଲି କହିଲେ ବେଶାଙ୍ଗରେ
ନଗ୍ରଜନେ ଦେଖିଣ ଯେ କଲେ ହା ହା କାରେ । ୨୭ ।
ଦମୟନ୍ତୀଙ୍କ ଘେନଗଲେ ଅନ୍ତେଶ୍ୱର ପୁର
ପ୍ରବେଶ ହୋଇଲେ ଯାଇଂ ଆପଣା ନବର । ୨୮ ।

---

୨୩।୨ "ପିତାର ନଗ୍ରେ ଥାଇ ନଳକଇଂ ଖୋଜାଇବ"
ପରେ "ଓ ଠ" ପୋଥିରେ ପାଠ—

ଶୁଣିଣ ସାନନ୍ଦ ଯେ ହଦୁଲା ନାଗମାତା
ରାଜମାତା ବୋଇଲା ମୋତେ ଲଗିଲା ବଡ ଚନ୍ତା ।
ପ୍ରଭୁ ଭାରଯା ସେହାର ସଯମ୍ବର କାଳେ ଗଲୁ
ଦମୟନ୍ତୀର ବର୍ଣ୍ଣଚନ୍ଦ୍ର ତହିଂ ସେ ଦେଖିଲୁ ।
ଚାର ଦେବତାଯେ ସୁବର୍ଣ୍ଣ ପିପ୍‌ପଳୀଯେ ଜାତକଲେ
ସେ ପିପ୍‌ପଳୀ ଚନ୍ଦ୍ର ସେହାର କପାଳେ ସେ ଧଲେ ।
ସେ ପିପ୍‌ପଳୀ ଚନ୍ଦ୍ର ସେହାର କପାଳେ ତ ନାହିଂ
ଆଶ୍ରିକ ହୋଇଲି ମୁଂ ସେହାର ବଦନ ଚାହିଂ ।
ପାଣି ଆଣ ସେହାର ବକ୍ତ୍ର ପଖାଳିବା
ସବ୍ରୂପ ବର୍ଣ୍ଣଚନ୍ଦ୍ର ସେହାର ଦେଖିବା ।
ବକ୍ତ୍ର ଧଉତ କରନ୍ତେ ଦେଖିଲେ ସେହି ଚନ୍ଦ୍ର
ଦେଖିଣ ସାନନ୍ଦ ସେ ହଦୁଲା ରାଜମାତାର ମନ ।
ଦମୟନ୍ତୀଙ୍କ ଘେନଣ ସେ ଚଳିଲା ବହନ
ଭଲେ ପାର ହୋଇଲା ସେ ଗହନ କାନନ ।

ଦୁଷ୍ଟଚାକଇଂ କୋଳେ ଘେନଣ ମହାଦେଈ
ହୋଧେଣ ଗଡ ଗଡ ସମାସ୍ୟା ନୁଆରନ୍ତି କହି । ୨୯ ।
ଦୁଷ୍ଟଚାର ପ୍ରବେଶ ଦେଖିଣ ନରସାଇଂ
ଅନେକ ଦୁଖକଲେ ଦମୟନ୍ତୀକି ଗୃହିଂ । ୩୦ ।
ବସ୍ମୟ ହୋଇଣ ପଚ୍ଚୁରନ୍ତି ଦୃମସେନର ବାଳ
ମାଗୋ କାହିଂ ଛାଡି ଅଇଲୁ ତୋହୋର ସ୍ୱାମୀ ନଳ । ୩୧ ।
ଦମୟନ୍ତୀ ବୋଲଇ ଶୁଣିମା ଦେବରାୟେ
କନ୍ୟମାସନ୍ତ ଶୁକ୍ଲପକ୍ଷ ଚଉଠୀ ଶଉରବାର ହୋୟେ । ୩୨ ।
ସ୍ୱାତ୍ତି ନକ୍ଷତ୍ର ଅନ୍ତେଣ ବଶାଖା ପରବେଶ
ୟେକବଂଶ ଦଣ୍ଡ ହୋଇଅଛଇ ଦବସ । ୩୩ ।
ସେଦନ ବସିଅଛୁଂ ବନସ୍ତେ ମଣ୍ଡୋପେ
ଜନଜନ୍ତୁ ଆତାଗମ ନାହିଂନ ସମୀପେ । ୩୪ ।
ଅଦଭୁତେ ଶୁଣିଲ ମୋତେ ନଦ୍ରା ଆକ୍ରେଷିଲା
ଅଞ୍ଚଳ କାଟି ମୋର ନଳ କେଣେ ଛାଡି ପଳାଇଲା । ୩୫ ।
ତନଶତ ନଉଦବସ ହେଲାନ ସେ ମୋତେ ଗଲାନ ଉପେଖି
ସେ ଦିନରୁ ନଳରେ ମୋହୋର ନାହିଂନା ଦେଖାଦେଖି । ୩୬ ।
ଧ୍ରିମେକ ରାଜନ ବୋଇଲା ତୋତେ ପାଇଲି ପୁଣ୍ୟବଳେ
ଜୀବନର ସାର୍ଥକ ଯେବେ ଭେଟଇ ପୁଣି ନଳେ । ୩୭ ।

---

୩୩।୨ ରାତ୍ରୁ ହୋଇଅଛୁ ଦଣ୍ଡ ଯେ ୟେକୋଇଶ ।—
(କେତେକ ପୋଥିର ପାଠ)—

୩୬।୧ ତିନ ସହସ୍ର ନଉ ଦିବସ ହେଲାନ ସେ ମୋତେ ଗଲାନ ଉପେଖି ।
—ଚ, ଜ, ଝ, ଞ, ଥ, କ

୩୭।୧ "ଧ୍ରିମେକ ରାଜନ ବୋଇଲା ତୋତେ ପାଇଲି ପୁଣ୍ୟବଳେ"
ପରେ 'ଚ' ପୋଥିରେ ପାଠ:—
ନଳ ଜୀବନ୍ତେ ଥିଲେ ଆସନ୍ତାନ ସୁବେଳେ ।
ଦମୟନ୍ତୀ ବୋଇଲା ତାତ ନ କର ଅପବାଦ
ଜୀବନ୍ତେ ଅଛୁ ନଳ ତାକୁ ନାହିଂନା ପରମାଦ ।—

ଦମୟନ୍ତୀ ବୋଇଲା ତାତ ଖୋଜାଅ ଅବଢ
ଜୀବନ୍ତେ ଅଛନ୍ତି ନଳ ନାହିଂନା ପରମାଦ । ୩୮ ।
ସୁଦେବ ବୋଇଲା ମାଗୋ ଜାଣିଲୁ କେମନ୍ତେ
ପାପ ଥିଲେ ପରମାଦେ ପଡ଼ଇ ନା ଯୁଗତେ । ୩୯ ।
ସେ ତାତ ସ୍ୱୟମ୍ବର କାଳେ ମୁକୁଇଂ ବର ଯେ ହୋଇଲେ ଦେବଲୋକେ
ତେଣୁକରି ସେ କଷଣ ଆମ୍ଭନ୍ତ କଲେକ ବୃନ୍ଦାଅର୍କେ । ୪୦ ।
ଭିନଦଗର ଦୂତେ ଯେ ଅଇଲେ ବାହୁଡ଼
ଅନେକ ବନ କନ୍ଦର ଦେଶେ ନଳକୁ ନ ପାଇଲେ ଲୋଡ଼ । ୪୧ ।
ବଦୁଲା ନାଗ ମାତାକଇଂ ରାଜା ଅନେକ ବିନୟେ ଭଗନ୍ତ
ମାଗୋ କେମନ୍ତେ ସମ୍ଭାଳିଥିଲୁ ମୋହୋର ଦମୟନ୍ତୀ । ୪୨ ।
ବଦୁଲା ବୋଇଲା ମୁଂ କମଳାଢର ନାଗର ଦୁଲଣୀ
ଦମୟନ୍ତୀ ବୋଲଣ ମୋହୋର ବଡ଼ ଯେ ଭଉଣୀ । ୪୩ ।
ଦେଶ ଘୋଷ ନ ବଗୃର ମୁଂ ନାମ କଲ ସାର
ଭଉଣୀର ମିଷ୍ଟ ବୋଲ ମୁଂ ପାଳିଲ ନିରାଧାର । ୪୪ ।
ବଡ଼ ଭଉଣୀ ମୋର ଯେହ୍ନାର ସଙ୍ଗେ ମଇଷ
ବଦୁଲା ବୋଇଲା ଲେଖାରେ ମୋହୋର ସଂଘାତ । ୪୫ ।
ଶୁଣିଣ ହରଷ ଯେ ହୋଇଲେ ରାଜନ
ବହିଲା ବିଧାତା ମୋହୋର ଦୋହିତାରେ କଷଣ । ୪୬ ।
ସୁପାକ କର୍ମେ ଯେ ମୋର ତୋହୋର ଦୋହିତାକଇଂ ଦେଖି
ଯେହ୍ନାର କର ମୋହୋର ବନ୍ଧୁ ସୋଦରନ୍ତ ଉପେକ୍ଷି । ୪୭ ।

---

୪୩ { କହଇ ରାଜମାତା ଶୁଣିମା ନୃପମଣି
ବଦୁଳା କଉଶୁଲ୍ୟା ଆମ୍ଭେ ଦୁଇ ଯେ ଭଉଣୀ । —'ଚ'

୪୪ { ସେହୁ ଦମୟନ୍ତୀ ମୋହୋର ବହେଣୀର ଦୁଲଣୀ
ତେଣୁକରି ସେହ୍ନାକଇଂ ମୁଂ ସମ୍ଭାଳିଲି ପୁଣି ।
(କେତେକ ପୋଥିରେ ପାଠ)—

ବିଦୁଳା ଦମୟନ୍ତୀ ରହିଲେ ବଇଦର୍ଭ ଯେ ଦେଶ
ନଳକଇଂ ଖୋଜ ନ ପାଇଲେ ରାଜା ପାଞ୍ଚମାସେ । ୪୮ ।
ବିଷାଦ ହୋଇକରି ସେ ଦମୟନ୍ତୀ ବୋଇଲା
ଜୀବନ୍ତେ ନାହିଂ ନଳ ନିଚୟେଂଟି ନାଶଗଲା । ୪୯ ।
ବିସ୍ତୁକଂର ପଣ୍ଡା ବୋଇଲା ମୁଂ ଦିନେକ ଥିଲି ବିସ୍ତୁକଂଠ ପର୍ବତେ
କଳପା ବୋଲିକରି ଯେକଇ କିରାତେ । ୫୦ ।
ସେ ପର୍ବତର ତଳେ କିରାତର ପଲ୍ଲୀ
ଅଭ୍ୟାଗତ ହୋଇଣ ମୁଂ ତାହାର ତହିଂ ଯେ ରହିଲି । ୫୧ ।
ବନଚର ଯେକ ହୋଇଣ ସେ ବଡାଇ ସୁଗ୍ୟାନ
ଗଣ୍ଡା ମାଂସ ଦାରାକ୍ଷ ଫଳ ମୋତେ ଦିଲେକ ଭୋଜନ । ୫୨ ।
ତାହାନ୍ତ ପଚାରିଲି ମୁଂ ସକଳ ବୃତ୍ତାନ୍ତ
ସେ ବନେ ପଶିଣ ମୁଂ ଲୋଡିଲି ଦିନା ସାତ । ୫୩ ।
ମାନମା ବୋଲିକରି ତାହାର କିରାତୁଣୀ
ସେ ବୋଇଲା ପଣ୍ଡାଯେ ତୁମ୍ଭେ ଯେ ବନସ୍ତେ ନ କର ଭ୍ରମଣି । ୫୪ ।
କର୍କୋଟକ ବୋଲିକରି ଯେଥେ ଥାଇ ଯେକ ବ୍ୟାଳେ
ଅନେକ ଜନଜନ୍ତୁ ସେ ଭକ୍ଷଇ ସର୍ବକାଳେ । ୫୫ ।

---

୪୮।୨ "ନଳକଇଂ ଖୋଜ ନ ପାଇଲେ ରାଜା ପାଞ୍ଚମାସେ" ପରେ ଖ, ଣ, ନ ରେ ଭିନ୍ନ ପାଠ ଦେଖାଯାଏ :—

ଜନନୀର ଆଗେ ଯାଇଂ ଦମୟନ୍ତୀ ପ୍ରବେଶ
ଶୁଣ ଆଗୋ ଗର୍ଭଧାରୀ ଯେ ମୋହୋର ସନ୍ଦେଶ ।
ନଳର ବିହୁନେ ମୋର ଜୀବନେ କାର୍ଯ୍ୟ ନାହିଂ
ନିଚୟେ ଅଗ୍ନି ଜାଳି ଝାସିବଇଂ ମୁହିଂ ।
ଦୁହିତାର କରୁଣ ବଚନ ମାତା ପିତା ଶୁଣି
ଶତେକ ଦୂତ ଯେ ସେହୁ ପେଷିଲେକ ପୁଣି ।

୫୦।୨ କଳପା ସ୍ଥାନରେ ଭୂଲିତା, ଇଲଙ୍ଗା, ଭୁଲଙ୍ଗ ପ୍ରଭୃତି ନାମ ପୋଥି ବିଶେଷରେ ଦେଖାଯାଏ ।

ଯେଉଁ ନକ୍ଷତ୍ରରେ ହାଦେ ଦେଖ ପଞ୍ଚମାସର କଥା
ନଳ ବୋଲକରେ ଯେତକଇ ମନୁଷ୍ୟ ଦେବତା । ୫୬ ।
ପାଣି ଘଟେକ ହେନଜ ମୁଁ ଯେ ଆସୁଥିଲି ଚଳି
ବେନି ଚରଣ କଣ୍ଠରୁ ଧରି ସର୍ପ ତାଙ୍କୁ ଗିଳି । ୫୭ ।
ଯେସନେକ ସନ୍ଦେଶ କହିଲ କବାଭୁଣୀ
ତାର ତତ୍ତ୍ୱଂ ଯେହ୍ୱା ଶୁଣିଥିଲ ଗୋସାମଣି । ୫୮ ।
ଶୁଣିଣ ମୂର୍ଚ୍ଛାଗତ ହୋଇଲେକ ଦମନ୍ତୀ
ବାବୁ ଯେହ୍ୱା ସେ କଲୁ ମୋତେ ନଳ ଯେ ନୃପତି । ୫୯ ।
କେ ସ୍ୱାମୀ ଦେବତାନ୍ତ ଗୁଡଣ ମୁଁ ବରିଲଇଂ ତୋତେ
କାଳେଣ ଅନାସୁଣୀ ନାଥ କରିଗଲୁ ମୋତେ । ୬୦ ।
ଖିମେକ ବୋଇଲେ ମାଗୋ ନ ଦେଖିଲୁ ଚକ୍ଷୁଂ
ଶବଦ ମାତ୍ରକେ କର୍ମେ ବାଭୁଲ ହୋଉଅଛୁ । ୬୧ ।
ପୁଣିହ୍ୱଂ ନଳକୁ ମାଗୋ ଖୋଜିବା ନା ଯତନେ
ଦୂତ ପଠିଆଇବା ସମସ୍ତ ଘୋରବନେ । ୬୨ ।
ପିତାର ବଚନେ ସେ ଗୁଡିଲ କ୍ରୋଧବାଣୀ
ଶତେକ ଦୂତ ମାଗୋ ବରଗିବ ଯେହ୍ୱଷଣି । ୬୩ ।
ଶୁଣ ହେ ଧର୍ମରାଯେ ବଦଯୁନ୍ତ ପାରେଶ୍ୱର
ଦୂତ ପେଷନ୍ତେଣ ପୁଣ ଗଲା ମାସ ଗୃର । ୬୪ ।
ମୀନମାସ କୃଷ୍ଣପକ୍ଷ ଶଉରବାର ପଞ୍ଚମୀ
ହସ୍ତା ନକ୍ଷତ୍ର ଯେ ସେ ଦିନକାଳ ଭ୍ରମି । ୬୫ ।
ସେ କଳକାଳ ପୁରୁଷ ଯେ କବାତ ରୂପ ଧରି
ବଇଦର୍ଭ ଦେଶେ ଯାନ୍ତି ଦମୟନ୍ତୀକ ଲୋଡି । ୬୬ ।
ପରଦେଶୀ ଲୋକନ୍ତ ଦେଖି ଉନ୍ମେଷି ଥାଇ ବାଳୀ
ସେ କବାତ ସନ୍ଧ ଯୋଁ ଯାଇଂ ପଚୁରଇ ଖିମେକ ଦୁଲାଳୀ । ୬୭
ନଳକଇଂ ଦେଖିଛ କହେ କହ ମନେ ଭାଳି । ୬୮ ।
କବାତ ବୋଇଲା ମା ଗୋ ଭୁଞ୍ଜକ ସେ ଦମୟନ୍ତୀ
କର୍କୋଟକ ସର୍ପ ମୁଖେ ପଡ଼ିଲେ ତୋର ପତି । ୬୯ ।

ସର୍ପ ଟିଳନ୍ତେ ସେ ଗେବଇ ହକଲେ
ମୁଣ୍ଡଂ ଯାଇଂ ଭେଟିଲଇଂ ପ୍ରାଣତ୍ୟାଜ ବେଳେ । ୭୦ ।
ଡାହାଣ ଭୁଜେ ଥିଲା ତାହାର ମୋହନ ହଦମାଳ
ମୋହୋର ଉପରକୁ ସେ ଫିଙ୍ଗିଦିଲା ଚୋଳ । ୭୧ ।
ସେ ମୋତେ ବୋଇଲା ବାବୁ ଦମୟନ୍ତୀ ବୋଲକର ମୋହୋର ହରଯା
ଯେଣୁ ହଦମାଳ ତାକୁ ଦେବୁଛି ବନରାଜା । ୭୨ ।
ରାଜାର ଦ୍ରବ୍ୟମାନ ମୁଂ ଲଂଘିବ କେମନ୍ତେ
ନବମାସେ ଲେଡି ଗୋ ପାଇଲି ମୁଂ ତୋତେ । ୭୩ ।
ତୁମ୍ଭକୁ ଫିଙ୍ଗିଦିଲା ମୋହନ ହଦମାଳ
ହୃଦେ ଲଗାଇଣ ଦାଳୀ ପଡ଼ିଲାକ ତଳ । ୭୪ ।
ହା ହା ପ୍ରାଣନାଥ ବୋଲି ପଡ଼ିଲା ଦମୟନ୍ତୀ
ଶରୀରୁ ପ୍ରାଣ ତାର ଛୁଡ଼ିଲାକ ଧାନ୍ତି । ୭୫ ।
କୋଳ କରି ଧଇଲେ ବଇଦର୍ଭୀ ନଜ ମାତ
ଥାନ ଥାନ ଧଇଲେ ପ୍ରାଣ ନାହ୍ନିଂ ନଜ ଗାତ୍ର । ୭୬ ।
ହୃଦଗତେ ଲଗାଇଣ ପଡ଼ିଲାକ ତଳ ରାଣୀ
ପୁରଜନେ କାନ୍ଦିଲେ ଶୁଭିଲା ଉଚ୍ଚସ୍ୱରେ ବାଣୀ । ୭୭ ।
ସେ ମୃତ୍ତୁଶବ ଘେନି ଗଲେକ ଶମଶାନେ
ଦମୟନ୍ତୀ ପିଣ୍ଡ ଦହିଲେ ସୋଦରନ୍ତମାନେ । ୭୮ ।

---

୭୦।୨ ମୁଣ୍ଡଂ ଯାଇଂ ଭେଟିଲ ପ୍ରାଣ କଣ୍ଠାଗତ ବେଳେ ।—ଝ, ଚ, ଝ, ଜ, ଅ

୭୪।୨ "ହୃଦେ ଲଗାଇଣ ଦାଳୀ ପଡ଼ିଲା ତଳ" ପରେ 'ଡ' ପୋଥିରେ ଅଧିକା ପାଠ :—
ଯେତେଣେ କର୍କୋଟକ କଥା କହୁଥିଲା 'ବିପ୍ରବର
ପ୍ରତକ୍ଷେ ମୋହନ ବଦମାଳି ଦିଲାକ ଶବର
ଦମନ୍ତ୍ରୀ ପ୍ରମାଣିଲା ବେନିକଥା ଜାଣି
ନଚଯ୍ୟେ ସ୍ୱାମୀକି ମୋର କର୍କୋଟକ ଭକ୍ଷିଲାକ ପୁଣି ।

ଇନ୍ଦ୍ର ମଦନ ବ୍ରହ୍ମ ବୋଲି ଦମୟନ୍ତୀର ପୁତ୍ର ତିନି
ଇନ୍ଦ୍ର ମଦନ ନେଇଣ ଦିଲେକ ମୁଖାଗ୍ନି । ୭୯ ।
ଶ୍ରୀବନ୍ତ କୁମାରେ ଯେ ଭୂମିଠରଣ ପଡ଼ି
ମାଗୋ ଅନାଥ କରିଣ ଆମ୍ଭନ୍ତ କେଉଁଣେ ଗଲୁ ଛାଡ଼ି । ୮୦ ।
କେଉଁଣ ପାପକ୍ଷଣେ ଆମ୍ଭନ୍ତ କଲୁ ଜାତ
ଜନ୍ମହୁଂ ଅନାଥ ଆମ୍ଭେ ନ ଦେଖିଲୁ ପିତାମାତ । ୮୧
ଆମ୍ଭେ ତ ବାଳୁତ ନନ୍ଦନ କସ ଯେ କରିବୁଂ
କାହାର ମୁଖକୁ ଚାହିଁବୁଂ ଦୁଃଖ ପଶୋରିବୁ । ୮୨ ।
ଆହୋ ଦଇବ ପୁରୁଷ ତୁମ୍ଭେ ଅଟ ଯେ ମହନ୍ତ
ଏମନ୍ତେ ଅନେକ ଅବସ୍ଥା କରି କର୍ମେ ସୃଜିଲୁ ଆମ୍ଭନ୍ତ । ୮୩ ।
ଶ୍ରୀବନ୍ତ ନନ୍ଦନ ଯେ ଜାଣି ନସ୍ତମାଖି
ଯୁଗଟେ ଗର୍ଭବାସ ଆବର ଜନ୍ମଦୁଃଖୀ । ୮୪ ।
ସେ ପୁତ୍ରଙ୍କର ବକଲେ ଶ୍ରୀବନ୍ତ ପୁରଜନେ
ଏମନ୍ତ ଦେଖି କ୍ରୋଧ ସମ୍ବରିବା କେସନେ । ୮୫ ।
ଯେତେକ କ୍ରୋଧକଲେ ବାଳୁତ ନନ୍ଦନେ
ସଞ୍ଚପି କେହୁ ଛାଡ଼ି କରିବା ଲେଖନେ । ୮୬ ।
ହେ ଧର୍ମ ଦେବତା ତୁମ୍ଭ ସେ ସର୍ବ ଜାଣୁ
ଜନ୍ମ ଦେଇ ପ୍ରାଣୀଙ୍କ କର୍ମେ ହରିଆଣୁ । ୮୭ ।
ଧର୍ମ ଧର୍ମ ସୁମରି ଯାଉ ମୋର ଦିନ
ଧର୍ମ ବିଷୟେ ଚିତ୍ତ ନ ଭଜୁଂ ମୋର ଆନ । ୮୮ ।
ଶ୍ରୀ ଧର୍ମ ଦେବତାଙ୍କର ଚରଣ ପଙ୍କଜେ
ଦୀକ୍ଷାଗୁରୁ ନାଥ ବାଞ୍ଛାଫଳ ଦିଜେ । ୮୯ ।

---

୭୯ । { ସୁର ସ ନନ୍ଦ ବୋଲି ଦମନ୍ତୀର ପୁତ୍ର ତିନି
ସୁରସେନ ନେଇଣ ଦିଲେକ ମୁଖାଗ୍ନି ।—ଘ, ଜ, ଟ, ଛ, ଥ, ଓ, ତ, କ, ଚ, ଝ ।

୮୮ { ଧର୍ମ ସୁମରି ଯାଉ ଏମନ୍ତେ ମୋହୋର ଜୀବନ
ବିଗ ୍ (ବି ୍ ୍) କାଳକୁ ମୋର ଯାଉ ନାଶପୂର୍ଣ ।—ଖ,ନ,ଣ

ଶ୍ରୀ ଧର୍ମ ଦେବତାର ଚରଣ ପଂକଜ ତଳେ
ଶୂଦ୍ରମୁନି ସାରଳା ଦାସ ଚିତ୍ତ ଯେ ଭ୍ରମିଲେ । ୯୦ ।
ଜୟ ତୁ ପୁରୁଷୋତ୍ତମ ନୀଳସୁନ୍ଦରବାସୀ
ତୁମ୍ଭେ ସେ ଖଣ୍ଡଣ ନାଥ କରୁ ମୋହଫାଶୀ । ୯୧ ।
ତୁମ୍ଭର ବଲ୍ଲଭ ଚରଣେ ଶରଣ ମୋର ନିତ୍ୟେ
କ୍ରୋଧ ଖଣ୍ଡଣ ନାଥ ତୁମ୍ଭେ ସେ ଜଗନ୍ନାଥେ । ୯୨ ।
ଧର୍ମ କଷଣ ବେଳେ ତୁମ୍ଭେ ସେ କରୁ ପାର
ସାରଳା ଦାସ ବୋଇଲେ ଶ୍ରୀ ପୁରୁଷୋତ୍ତମ ସୁମର । ୯୩ ।
ଶୁଣ ବଇବସ୍ୱତ ମନୁ ଦମୟନ୍ତୀ ଦହନ ଅନ୍ତରେଣ କଥା
କ୍ରୋଧଭର ହୋଇଗଲା ବଦୁଳା ନାଗମତା । ୯୪ ।
ପିତାର ନାମ ତାହାର କମଳାଜର ନାଗ
କାନ୍ଦଣ କହଇ ସେ ନାଗରାଜାର ଆଗ । ୯୫ ।
କମଳାଜର ବୋଇଲା ମାଗୋ ଜଗତେ ତୁମ୍ଭେ ସାଧୁ
ପରମ ମାହେଶ୍ୱରୀ ଗୋ ଅଦଭୁତେ କମ୍ପେ କାନ୍ଦୁ । ୯୬ ।
ବଦୁଳା ବୋଇଲା ତାତ ଦମୟନ୍ତୀ ମୋର ସଖୀ
ତୁମ୍ଭନ୍ତ ଉପେକ୍ଷିଲ ମୁଂ ତାହାର ଭାବ ଦେଖି । ୯୭ ।

---

୯୬ ।୨ ପ୍ରସନ୍ନେ ସାଧଵୀ ଗୋ ଅନମିତେ କମ୍ପେ କାନ୍ଦୁ ।—କ, ଚ, ଝ

୯୭।୨ "ତୁମ୍ଭନ୍ତ ଉପେକ୍ଷିଲ ମୁଂ ତାହାର ଭାବ ଦେଖି" ।
ପରେ 'ଣ' ପୋଥିରେ ପାଠ :—
ଦମୟନ୍ତୀ ଅଭାବେ ଯେ ହୋଇଲି ମୁଂ ଦୁଖୀ
ସ୍ୱାମୀଙ୍କ ତାହାର ଯେ କର୍କୋଟକ ନାଗ ଭକ୍ଷେ ।
ତେଣୁ କରି ଦମୟନ୍ତୀ ପ୍ରାଣ ଯେ ଛାଡ଼ିଲା
ଏମନ୍ତେକ ପିତା ତାହାର ମୋତେ ଯେ ପେଷିଲା ।
ବନସ୍ତରେ କେଉଁପରି ନଳ ସମାଚାର
କର୍କୋଟକ ନାଗକଇଂ ଡାକଣ ପଚାର ।

ସ୍ୱାମୀ ନଳଙ୍କୁ ତାହାର କର୍କୋଟକ ଭକ୍ଷକଲା
ତେଣୁକରି ଦମୟନ୍ତୀ ଯେ ଅଗ୍ନିରେ ଦହିଲା । ୯୮ ।
ଶୁଣିଣ କମଳାକ୍ଷର କର୍କୋଟକ ନାଗଙ୍କଇଁ ସୁମରି
ତକ୍ଷଣେ ଭୁଜଙ୍ଗ ଆସି ସ୍ତୁମୁରେ ଭିଆ କରପଦ ଯୋଡ଼ି । ୯୯ ।
କମଳା ଉରଗ ବୋଇଲା ମୋତେ ସରୁପ କହ ବାଳ
ତୁ ପୁଣି ବନସ୍ତେ ଭକ୍ଷିଲୁକ ରାଜା ନଳ । ୧୦୦ ।
କର୍କୋଟକ ବୋଇଲା ମୁଂ ଭକ୍ଷନ୍ତେ ନଳକୁ
ଦମୟନ୍ତୀ ନାମ ଧରନ୍ତେ ମୁଂ ଛାଡ଼ିଦେଲି ତାଙ୍କୁ । ୧୦୧ ।
ମୁହିଂ ତାଂକ ଗର୍ଭଗତେ ଥିଲଇଂ ବଶ୍ୱାମି
ତୋହୋର ସୁମରନ୍ତେ ମୁଂ ଅଇଲଇଂ ବହମି । ୧୦୨ ।
କ୍ଷମେଣ ନଳରାଜା ଅଛଇ ନବ୍ରତ
କଳିକାଳ ଦୁହେଂ ହାଦେ ନାଶ କରାଇଲେ ଦମୟନ୍ତୀ । ୧୦୩ ।
ଦେବତାକଇଂ ଛାଡ଼ି ସେ ଦମୟନ୍ତୀ ନଳକଇଂ ବରିଲେ
ଅପାର ଦୁଖ ଦେଇଣ ସେ ସଂପତ୍ତି ନାଶିଲେ । ୧୦୪ ।
କର୍କୋଟକ ବୋଲଇ ମୁଂ ଜାଣଇ ସମସ୍ତ
ଦମୟନ୍ତୀ ବଦୁଳା ବେନ ଯେ ସଂଘାତ । ୧୦୫ ।
ନଳଙ୍କୁ ଗିଳିଲି ମୁଂ ସେ ପଡ଼ିଲା ମୋର ମୁଖେ
ଦମୟନ୍ତୀ ସୁମରନ୍ତେ ଛାଡ଼ିଲି ପ୍ରତକ୍ଷେ । ୧୦୬ ।
ଶୁଣିଣ ଅନେକ ବକଳ ହୋଇଲା ବଦୁଳା
ଅଦଭୁତ କାରଣେ ମୋହୋର ସଖୀ ନାଶଗଲା । ୧୦୭ ।
କର୍କୋଟକ ବୋଇଲା ଶୁଣ ରେ ବଦୁଳା
କଥାଏକ କହଇଂ ତୋତେ ନୋହସି ମନ୍ତଭୋଳା । ୧୦୮ ।
ଋତୁପର୍ଣ୍ଣ ବୋଲିକରି ଅଯୋଧ୍ୟା ରାଜନ
ନଳରାଜା ଅଛଇ ତାହାର ଘରେ ବଦ୍ୟମାନ । ୧୦୯ ।
ଦୁହିତାର ବକଳେ ସେ ବୋଇଲା କମଳାକ୍ଷ
ଦେବଇଂ ମହାମନ୍ତ୍ର ମୁଂ ସଖୀ ତୋର କାଜଂ । ୧୧୦ ।

ମୃତ୍ୟୁ ସଞ୍ଜିବନୀ ମନ୍ତ୍ର କହିଲା ଧାତୁବାଦ ବିଦ୍ୟା
ପର ଦୁଃଖେ କାତର ତୁ ଯେ ହୋଇଲୁ ସର୍ବଦା । ୧୧୧ ।
ଯେବଣ ପିତୁଳା କର ଅଛନ୍ତି ଶମଶାନେ
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର କହିବୁ ତାର କର୍ଣ୍ଣେ । ୧୧୨ ।
ପଞ୍ଚ ଘାନ୍ତ କହିଲେ ପଣିବ ପଞ୍ଚ ଆତ୍ମା
ଧାତୁବାଦ ବିଦ୍ୟାମାନ କହିଲେ ମହାତ୍ମା । ୧୧୩ ।
ପିତାର ବଚନେ ସେ ଚଳଇ ନାଗେଣୀ
ଦହନ ଭୂମିରେ ପ୍ରବେଶ ହୋଇଲା ତତକ୍ଷଣି । ୧୧୪ ।
ମୃତ୍ତିକା ମେଦ୍ଦଣ ସେ ରଞ୍ଜିଲେ ପିତୁଳୀ
ମୃତ୍ୟୁ ସଞ୍ଜୀବନୀ ପଢି ସେ ଉଠ ଉଠ ବୋଲି ଡାକିଲା । ୧୧୫ ।
ଗଲା ପାପଆତ୍ମା ଯେ ଉଦିତ ହେଲା ଧର୍ମ
ଉଠି ବସିଲା ସୁନ୍ଦରୀ ଯେ ହୋଇଣ ସାଷ୍ଟାମ । ୧୧୬ ।

---

୧୧୧।୨ "ପରଦୁଃଖେ କାତର ତୁ ଯେ ହୋଇଲୁ ସର୍ବଦା" ।
ପରେ 'ଣ' ପୋଥିରେ ପାଠ—
ଓଁ ରାମନାମ କୃଷ୍ଣନାମ ଜୀବନ୍ୟାସ ସଞ୍ଜୀବନୀ ଚେତନ
ପ୍ରାଣପାଉ ଦମନ୍ତୀ ହୃଦେ ଗ୍ୟାନପାଉ ନ ପାଉ ବୋଲିକରି
କାହାର ଆଗ୍ୟାଂ ।
କମାଲାଙ୍କର ନାଗର କୋଟି କୋଟି ଆଗ୍ୟାଂ ।

୧୧୨।୨ "ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର କହିବୁ ତାର କର୍ଣ୍ଣେ" ।—ପରେ
'ଣ' ପୋଥିରେ ପାଠ—
ସ୍ନେହରୁ ପଞ୍ଚତତ୍ତ୍ୱ ଯେ ପଞ୍ଚବୀଜ ଦିଲେ
[illegible] ଜୀବନ୍ୟାସ ମନ୍ତ୍ର ସୁମରିଲେ ।
ସ୍ନେହେ ଅନେକ ମନ୍ତ୍ର ଯେ କହିଲେକ ପିତା
ପିତାଂକର ବଚନେ ଚଳଇ ନାଗେଣୀର ମାତା ।
ଦହନ ଭୂମିରେ ଯାଇଂ ପ୍ରବେଶ ହୋଇଲା
ଅସ୍ଥି କ ଦେଇଣ ଯେ ପିତୁଳା ଗଢ଼ିଲା ।

ଦମୟନ୍ତୀ ପୁଚ୍ଛଇ ବଦୁଲା ମୁଖକଇଂ ଗୃହିଂ
ଯେ ଶମଶାନ ଭୂମିରେ ସଖୀ ଆନ ତ କେହି ନାହିଂ । ୧୧୭ ।
ବଦୁଲା ବୋଇଲା ସଖୀ ତୁ ନଦ୍ଧାଗଲୁ ଯେବେ
ମୁହିଂ କେହ୍ନେ ଛାଡ଼ିଯିବ ସଂଘାତ ଶମଶାନ ଭୂଇଂରେ ଯେତେହେନେକ
ବେଳେ । ୧୧୮ ।
ବଦୁଲା ଦମୟନ୍ତୀ ଦୁହେଂ ହୋଇ ହାଥ ଧରାଧରି
ହସ ଖେଳେ ପଶିଲେ ଯାଇଂ କୁଣ୍ଡୀନାମେ ନଗ୍ରୀ । ୧୧୯ ।
ସମରାଜ୍ୟ ଲୋକେ ଦେଖିଣ ହୋଇଲେ ଆଶ୍ଚର୍ଜ
ବୋଇଲେ ଦମୟନ୍ତୀକି ଆମ୍ଭେ ପରଦ୍ଦନ କଲୁନା ଦହିଜ । ୧୨୦ ।
ଅନ୍ତେଶ୍ୱର ପୁରେ ବାରତା କହିଲେ ବେଗେ ଧାଇଂ
ରାଜନ ସହିତେ ବଜେ କଲେକ ମହାଦେଈ । ୧୨୧ ।
ବାବୁ ନାଗାନ୍ତେକ ବଦ୍ୟା ସେ ଜାଣଇ ଉତ୍ତଙ୍ଗ ବଂଶୀ
ସାଧୁ ସାଧୁ ବଦୁଲା ବୋଲି ସମସ୍ତେ ପରଶଂସି । ୧୨୨ ।
ଦମୟନ୍ତୀକି କୋଳେ ଧଇଲେକ ନୃପତି
ଦମୟନ୍ତୀ ମାତା ବଦୁଲାକଇଂ କୋଳେ ଧରି ଅନେକ ଭଗତି ।୧୨୩।

---

୧'୭।୨ "ଯେ ଶମଶାନ ଭୂମିରେ ସଖୀ ଆନ ତ କେହ୍ନୁ ନାହିଂ"
ପରେ 'ତ' ପୋଥିରେ ପାଠ—
ବଦୁଲା ବୋଇଲା ଗୋ ସଖୀ ନାଶଗଲୁ ଯେବେ
ନାଶ କରାଇଲେ ତୋତେ ଦେବତାଯେ ମାୟାବଳେ ।
ଶମଶାନେ ଆଣି ତୋତେ କଲେକ ଦହନ
ତୋହୋର ପୁତ୍ରେ ତୋତେ ମୁଖାଅଗ୍ନି ଦାଲେକ ପୁଣ ।
ଶୁଣିଣ ଚମତ୍କାର ହୋଇଲା ଦମୟନ୍ତୀ
ଧର୍ମ ଧର୍ମ ସୁମରଣା କଲାକ ଶତେଧାନ୍ତି ।
ତୋତେ ଶମଶାନେ କେହ୍ନେ ଛାଡ଼ିବ ଯେତେହେନେକ ବେଳେ
ବହୁତ ଉପାୟେକ କଥା ବୁହାଇ ଭୂମି ତଳେ ।

୧୨୩।୨ ଅନେକ ସାନନ୍ଦେ ଯେ ବଦୁଲାକଇଂ ହୋଇଲେ ଭଗତ ।
—ଝ, ଛ, ଜ, ଘ, ଣ

ଭସ୍ମ ଆଂକୋରଇ ମାତା ଗୋ ତୋହୋର ବଚନେ
ଅନେକ ବନସ୍ତୁ ଭଗତେ ତାହାଙ୍କୁ ଖଟିଲେ ଜନମାନେ । ୧୨୪ ।
ବାହୁଡଇ ଦମୟନ୍ତୀ ସେ ବାତୁଳ ମୂର୍ତ୍ତି
କେମନ୍ତେଣ ପାଇବ ମୁହିଂ ନଳ ଯେ ନୃପତି । ୧୨୫ ।
ବହୁଳା ବୋଇଲା ଗୋ ସଖୀ ଲେଡ ପାଇବା କାହିଂ ତାହା
ଦୁଷ୍ଟ ସୟମ୍ବର କରସି ତୁହି ନରନାହା । ୧୨୬ ।
ଦୁଷ୍ଟ ସୟମ୍ବର ବୋଲ ରାଜାନ୍ତ କରସି ବରଣି
ନଳ ଆସିବ ଦମୟନ୍ତୀ ସୟମ୍ବର ଶୁଣି । ୧୨୭ ।

---

୧୨୭।୨ "ନଳ ଆସିବ ଦମୟନ୍ତୀ ସୟମ୍ବର ଶୁଣି
ପରେ 'ତ, ପୋଥିରେ ପାଠ: —

ଦମୟନ୍ତୀ ବୋଇଲା ଯେତ ନୋହଇ ବହୁତ
ଯେମନ୍ତ କଲେ ମୋର ନା'ଶଯିବ ସତ୍ତାବ୍ରତ ।
ସେ ନାଗମାତା ବୋଇଲେ ତୁ ଯେବେ ନ'କରୁ ଯେହା
ଋତୁପର୍ଣ୍ଣ ରାଜ୍ୟେ ଅଛୁ ତୋହୋର ଯେ ନାହା ।
ଦମୟନ୍ତୀ ବୋଇଲା ସଖୀ ତୁ ଜାଣିଲୁ କେମନ୍ତେ
କର୍କୋଟକ ନାଗ କହିଲା ପ୍ରସନ୍ନ କରି ମୋତେ ।
ଯେବେ ସଖୀ ଗୋ ତୁ ଉପାୟୁ କରିବୁ
ଅଯୋଧ୍ୟା ରାଜ୍ୟକଇଂ ଦୂତ ବରଗିବୁ ।
ଯେବଣ ଦିନେ ଅଯୋଧ୍ୟା ରାଜ୍ୟେ ଦୂତ ପ୍ରବେଶ ହୋଇବ
କାଲି ସୟମ୍ବର ବୋଲି ରାଜା ଆଗେ କହିବ ।
ଯେମନ୍ତ କହିଲେ ସେ ଆସିବେ ଋତୁପର୍ଣ୍ଣ
ତାହାର ତୁଲେ ନୁଆସିବ ବହୁନ ।
ଯେହାଶୁଣି ଦମୟନ୍ତୀ ଯେ ସାନନ୍ଦ ମନ ହୋଇ
ପିତାମାତା ଆଗେ ବାଳୀ କହିଲାକ ଯାଇଂ ।
ଶୁଣ ହେ ପିତା ଯେବେ ମୋହୋର ଉତ୍ତର
ବ୍ରାହ୍ମଣ ସ୍ବରଜଣ ମୋତେ ଆଜ୍ଞା'କର ।
ନଳ ରାଜାର ସନ୍ଦେଶ ପାଇଅଛୁ ମୁହିଂ
ସେ ବ୍ରାହ୍ମଣେ ତୁହିଁ ଆସିବେ ଶୀଘ୍ରେ ଯାଇଂ ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ବହୁଳାର ବଚନେ ସାନନ୍ଦ ଖିମେକ ରାଜନ
ପୁରେ ପୁରେ ଭଞ୍ଜିଲା ରାଜା ଉତ୍ସବ ବିଧାନ । ୧୨୮ ।
ଦୂତ ଅମନାତ୍ୟମାନଙ୍କ ବରଗିଲେ ଗୃହରେ
ଦମୟନ୍ତୀ ସମ୍ବରଣ ବୋଲ ଜଣାନ୍ତ ସେ ରାଜାମାନଂକର ଆଗେ ।୧୨୯।
ସମସ୍ତ ଦେଶର ଯେବେ ଆସନ୍ତି ମହୀପାଳ
ତେବେ ସେ ଦମୟନ୍ତୀର କାର୍ଯ୍ୟ ହୋଇବ ସୁଫଳ । ୧୩୦ ।
ଚଳିଲେ ଦୂତମାନେ କହିଲେ ଦମୟନ୍ତୀ
ଅକ୍ଷତ ଗୁଆ ଘେନ ଯାଉଅଛୁଂ ରାଜାନ୍ତ ନମନ୍ତି । ୧୩୧ ।

---

[ପୂର୍ବପୃଷ୍ଠାର ପାଠାନ୍ତର]

ଶୁଣିଣ ସାନନ୍ଦ ମନ ହୋଇଣ ଖିମେକ ରାଜନ
ଗୃହଜଣ ବ୍ରାହ୍ମଣନ୍ତ ହକରାଇ ଆଣିଲା ବହନ ।
ଗୁଣାକର ରତ୍ନାକର ନବରଙ୍ଗ ବ୍ରାହ୍ମଣ
ପ୍ରହ୍ଲାଦ ପଣ୍ଡା ପ୍ରବେଶ ତାହାଂକ ସଙ୍ଗରେଣ ।
ସେ ଗୃହ ବିପ୍ରନ୍ତ ଡାକ ନେଇ ଦମୟନ୍ତୀ
ତାହାର ମାତା ଠାକୁ ଘେନଗଲା ତତକ୍ଷଣାନ୍ତ ।
ବହୁତ ରତ୍ନ ବସ୍ତ୍ର ସେ ବ୍ରାହ୍ମଣକେଇଂ ଦେଇ
କରପଦ୍ମ ଯୋଡ଼ିଣ ସେ ଅନେକ ବିନୋୟି ।
ଗୁବାକ ଅକ୍ଷତ ସେ ବିପ୍ର କରେ ଦେଇ
କରପଦ୍ମ ଯୋଡ଼ିଣ ସେ କହଇ ବିନୋଇ ।
ଯେବଣ ଦ୍ଵିଜ ଅଯୋଧ୍ୟାରେ ପ୍ରବେଶ ହୋଇବ
କାଲି ସମ୍ବରଣ ବୋଲି ରାଜାକୁ କହିବ ।
ସେ ରାଜା ବୋଲିବ ଯେବେ ଶୁଣିଲା ନାହିଂତ ଏମନ
ଦ୍ଵିତୀୟ ସମ୍ବରଣ ସେ କେମନ୍ତେ କରିବ ଖିମେକ ରାଜନ ।
ତୁମ୍ଭେତ ବୋଲିବ ବୃଦ୍ଧତାର ବୟସ ଅଛି
କେତେକାଳେ ସେ ଆଦର ପାଇବ ମନ ମୁଛି ।
ଏବେ ରାଜା କରିବ ଦ୍ଵିତୀୟ ସମ୍ବରଣ
ସକଳ ଦେଶର ସେ ଗଲେଣି ନୃପବର ।
ଏମନ୍ତେ କହ ତୁମ୍ଭେ ସେ ନ ବୋଲିବ କିଛି
ସେ ବ୍ରାହ୍ମଣେ ବୋଇଲେ ଆମ୍ଭେ ଯାଉଛୁଂ ତୁମ୍ଭେ ମନ ନ ଧର କିଛି ।

ଦମୟନ୍ତୀ ବୋଇଲା ଗୃହଗଣନ୍ତେ ଘଇ
ମୋହୋର ବଚନ କହିବ ରାଜାଂକ ଆଗେ ଯାଇ । ୧୩୨ ।
ବେଳାବ ଦେଶେ ଦେଶେ ଶୁଣିବେ ସର୍ବଜନେ
ଭାର୍ଯା ଛାଡ଼ି ପଳାଇଲା କେବଣ ରାଜନେ । ୧୩୩ ।
ଯେ ପୃଥକଇଂ ସମସ୍ୟା ଦେବ ଯେଉଂଣ ଜନ
ତାହାକଇଂ ଆଣିମନ୍ତି ହୃଦେ କରି ଗ୍ୟାନ । ୧୩୪ ।
ସେ ଯେବେ ପଚ୍ଛରିବ କେଉଂଣ ଦିନ ସୟମ୍ବର
ତୁମ୍ଭେ କହିବ କାଲି ପ୍ରଭାତେ ଦିନକର । ୧୩୫ ।
ରାଜ ଦୁହିତାର ଆଗ୍ୟାଂଯେ ଚଳଲେ ଅମର୍ତ୍ତ୍ୟେ
ଅକ୍ଷତ ଗୁଆ ଦେନ ରାଜାନ୍ତ ନିମନ୍ତେ । ୧୩୬ ।
ସମସ୍ତ ରାଜ୍ୟେ କହନ୍ତ ଦମୟନ୍ତୀ ଚରିତ
ବହନ ହୋଇଣ ପୁନରପି ହୋଇଲା ସମ୍ଭୂତ । ୧୩୭ ।
ଦୁଷ୍ଟାୟୁ ସୟମ୍ବର ଯେ ହୋଇବ ଦମୟନ୍ତୀ
ଶୁଣିଣ ଆଶ୍ଚର୍ଯ ହୋଇଲେ ସକଳ ନୃପତି । ୧୩୮ ।
ପଶ୍ଚିମେ ଲକ୍ଷେରାଜା ଛୟଲୋକ୍ଷି ସହସ୍ର ରାଜା ଉତ୍ତରେ
ପଞ୍ଚାଶ ସହସ୍ର ରାଜା ଦକ୍ଷିଣ ଦିଗରେ । ୧୩୯ ।
ପୂର୍ବ ଦିଗରେ ଗୃଳଶ ସହସ୍ର ନୃପମଣି
ସମସ୍ତ ନୃପତିଯେ ଆସନ୍ତି ଥାଠ ଯେ ପଲ୍ଲିଣି । ୧୪୦ ।
ବିଷ୍ଣୁଭଦ୍ରା ନଦୀ କୂଳେ ଛୟା ଯେ ମଣ୍ଡୋପ
ଶତେକ ଯୋଜନ ଆୟେତନ ହୋଇଛୁ ସରୂପ । ୧୪୧ ।
ଅଯୋଧ୍ୟା ନଗ୍ରେ ଯାଇଂ ପ୍ରବେଶ ହୋଇଲେକ ଦୁତେ
ଦମୟନ୍ତୀ ସୟମ୍ବର ବାରତା କହିଲେ ନୃପତି ଅଗ୍ରତେ । ୧୪୨ ।
ଦମୟନ୍ତୀ ସୟମ୍ବର କହନ୍ତି ମଣାଇଂ
ପତ୍ନୀ ବନେ ଛାଡ଼ଯାୟେ କେଉଂ ନରସାଇଂ । ୧୪୩ ।
ଏମନେକ ଚରିତ ହୋ ଶୁଣିଅଛ କାହିଂ
ଆପଣା ପତ୍ନୀକି ଭୁଆ ଛାଡ଼ି ନ ଯୋଗଇ । ୧୪୪ ।
ନଳରାଜା ଜାଣିଲେ ଯେ ଦୁତଂକ କହନ୍ତେ
ଜିତଯେଂ ଦମୟନ୍ତୀ ମୋର ଅଛଇ ଜୀବନ୍ତେ । ୧୪୫ ।

ଶୁଣିଣ ମଉନ ବ୍ରତ ହେଇଲା ନଳରାଜା
ଦୂତଂକ ମୁଖରୁଂ ଶୁଣି ପାଇଲା ବଡ ଲଜ୍ଜା । ୧୪୬ ।
ଦୂତେ କହନ୍ତେଣ କେହ୍ନେ ସମାସ୍ୟା ନ ହେଲେ
ତଳେ ଥାଇଣ ବାହୁକ ଉତ୍ତର ବୋଇଲେ । ୧୪୭ ।
ଯେତେବେଳେ ପ୍ରାଣୀକି ପଡଇ କାତର
ସ୍ୱପ ଭାରଯା ଛାଡିବା କେତେକ ମତର । ୧୪୮ ।
ଶୁଣିଣ ଦୂତମାନେ ରାଜାଂକୁ ଅକ୍ଷତ ଗୁଆ ଦେଲେ
ଦମୟନ୍ତୀ ଦୁଷ୍ଟାୟୁ ସ୍ୱୟମ୍ବର ବେ ଲଣ ବୋଇଲେ । ୧୪୯ ।
ଶୁଣିକରି ନଳ ମନେ ଚିନ୍ତା ଯେ ଲଗିଲା
ଏହି କଥା କି ସତ ବେ ଲା ମନେ ବିଚାରିଲା । ୧୫୦ ।
ପୁଣି ବୋଇଲା ମୋତେ ପାଇବା ନିମନ୍ତେ
ଦୁଷ୍ଟାୟୁ ସ୍ୱୟମ୍ବର ଅବା ରଚ୍ଛନ୍ତି ମୋ ଅର୍ଥେ । ୧୫୧ ।
ସେ ମହାସ୍ୱଷ୍ଟର ମୁଂ ଜାଣଇ ସିନା ମାନ
ଋତୁପର୍ଣ୍ଣ ପଚାରଇ ଶୁଣ ହେ ବିଦୁଜନ । ୧୫୨ ।
କେଉଁଦିନ ସ୍ୱୟମ୍ବର ତଥ୍ୟ କରି କହ
କହିଣ ଦୂତମାନେ ଫେଡାଅ ସନ୍ଦେହ । ୧୫୩ ।
ଦୂତମାନେ ବୋଇଲେ ଯେ କାଲିର ପ୍ରଭାତରେ
ଦମୟନ୍ତୀ ସ୍ୱୟମ୍ବର ଖ୍ୟାମେକ କଣ୍ଠକରେ । ୧୫୪ ।
ଋତୁପର୍ଣ୍ଣ ବୋଇଲେ ଏହିତ ବଡାଇ ଦୁର୍ଗମ କଥା
କେବେହେଂ ଯିବାର ତ ନୁହଇ ବେବସ୍ଥା । ୧୫୫ ।
ପାଶ ଅମନାତ୍ୟେ ଯେ କହନ୍ତି ଦୂତପତି
ନଳ ଥାଉଂ ସ୍ୱୟମ୍ବର କିଂପାଇଂ ଦମୟନ୍ତୀ । ୧୫୬ ।
ଦୂତେ ବୋଲୁଛନ୍ତି ନଳ ରାଜ୍ୟହାର ହାରି
ଦମୟନ୍ତୀକି ଛାଡିଗଲେ ଅଞ୍ଚଳ କାଟିକରି । ୧୫୭ ।
ସେ ନଳରାଜ୍ୟେ ପୁଣ ପଡିଲା ସର୍ପମୁଖେ
କର୍କୋଟକ ସର୍ପ ତାହାକଇଂ କଲାକ ହାଦେ ଭକ୍ଷେ । ୧୫୮ ।
ବାରତା ପାଇ ନାଶ ସେ ଗଲାକ ଦମୟନ୍ତୀ
ଅଗ୍ନିରେ ଦହନ ଯେ ହୋଇଲା ତତକ୍ଷଣାନ୍ତ । ୧୫୯ ।

ବଦୁଲା ନାମେ ନାଗମାତା ଅଟଇ ତାର ସଖୀ
ଭସ୍ମରୁ ଉଠାଇଲା ମୃତ ସଞ୍ଜୀବନୀ ମନ୍ତ୍ର ହାକି । ୧୬୦ ।
ଦୁହିତାର ସ୍ୱୟମ୍ବର କରଇ ଭୀମେକ ନରନାଥ
ସମସ୍ତ ରାଜାଙ୍କୁ ଗଲେଣ ଦମୟନ୍ତୀ ନିମନ୍ତ୍ର । ୧୬୧ ।
ନଳ ଶୁଣି ବୋଇଲେ କନ୍ୟା ସରୂପ ଯେତୁ କଥା
ନଳ ନାଶ ଯିବାର ମଣଇ ମୁଁ ସର୍ବଂ ମିଥ୍ୟା । ୧୬୨ ।
ନଳର ବଚନେ ସେ ବୋଇଲେ ଅମନାତ୍ୟେ
ବୁଡିଥିଲେ ସ୍ୱୟମ୍ବରେ ଜାଣିମାନା ଛଦନ୍ତେ । ୧୬୩ ।
ଦୂତ ମୁଖେ ଯେସନେକ ଯେ ବାରତା ଶୁଣି
ପୁଣି ସ୍ୱୟମ୍ବର କଥା ପଚାରିଲା ନୃପମଣି । ୧୬୪ ।

---

୧୬୩ ଅମନାତ୍ୟେ ବୋଇଲେ ନଳ ଜୀବନ୍ତେଣ ଥିଲେ
ସ୍ୱୟମ୍ବର ସଭାଗୋଟି ହୋଇବ କଷ୍ଟଲେ ।—ଖ, ଣ, ନ

୧୬୪।୨ "ପୁଣି ସ୍ୱୟମ୍ବର କଥ ପଚାରିଲା ନୃପମଣି ।-- ପରେ କେତେକ
ପୋଥିରେ ପାଠାନ୍ତର :—

ଯେମନ୍ତେ ଗୃହ ବ୍ରାହ୍ମଣେ ଅଯୋଧ୍ୟାକଇଁ ଗଲେ
ଋତୁପର୍ଣ୍ଣ ରାଜା ସିଂହଦ୍ୱାରେ ସେ ହୋଇଲେ ।
ଦ୍ୱାର ଦ୍ୱାରୀଙ୍କ ସେ ବୋଇଲେ ବ୍ରାହ୍ମଣ
ଯାଇଣ କହ ତୁମ୍ଭେ ରାଜା ଋତୁପର୍ଣ୍ଣ ।
ବୋଲିବ ଭୀମକ ରାଜା ପେଷିଛୁ ବ୍ରାହ୍ମଣ
ଶୁଣି ଋତୁପର୍ଣ୍ଣ ହକାରିଲେ ଆମ୍ଭଙ୍କୁ ନେବ ପୁଣ ।
ଦ୍ୱାରୀ କହନ୍ତେ ସେ ରାଜା ଆଜ୍ଞାଂ ହେଲା
ଦୂତ ବ୍ରାହ୍ମଣଙ୍କୁ ନେଇ ଗୁମ୍ଫରେ ସମର୍ପିଲା ।
ଅକ୍ଷତ କରେ ଘେନି ଅଛନ୍ତି ସେ ବ୍ରାହ୍ମଣ
ତାହା ଦେଖିକରି ବୋଲଇ ଋତୁପର୍ଣ୍ଣ ।
କିସ ଘେନିଅଛ ତୁମ୍ଭେ ବିପ୍ରେ କର
ନିମନ୍ତ୍ରଣେ ଅଇଲୁ ରାଜା ତୁମ୍ଭଙ୍କୁ ଦମୟନ୍ତୀ ସ୍ୱୟମ୍ବର ।
ସକଳ ରାଜାଙ୍କୁ ଅକ୍ଷତ ଗୁଆ ଦେଲୁ
ତୁମ୍ଭର ରାଜ୍ୟକୁ ରାଜା ବେଲମ୍ବେ ଅଇଲୁ ।

[ ଅବଶିଷ୍ଟାଂଶ ପରପୃଷ୍ଠାରେ ]

ଦୂତେ ବୋଇଲେ ସ୍ୱୟମ୍ବର ହୋଇବ ଯେ ଉପୂଣୀ ପ୍ରଭାତେ
ଋତୁପର୍ଣ୍ଣ ବୋଇଲେ ଯେ ବଡ଼ାଇ ଦୁରାନ୍ତେ । ୧୭୫ ।
କେତେବେଳେ ଯିବା ସ୍ୱୟମ୍ବର ସ୍ଥାନକୁ
ଯେ କଥା ପ୍ରାପତ ସତେ ହୋଇବ ହାଦେ ମୁକୁ । ୧୭୬ ।
ନଳ ବିଚାରଇ ଦମୟନ୍ତୀ ଯେ ସର୍ବଗ୍ୟାଂ
ସ୍ୱୟମ୍ବର କରିବ କି ସତ୍ୟବ୍ରତ ଭଗ୍ନା । ୧୭୭ ।

---

[ ପୂର୍ବ ପୃଷ୍ଠାର ବାକି ପାଠାନ୍ତର ]

ଯେତେ କହି ରାଜାଂକୁ ଅକ୍ଷତ ଦେଇ
ସେ ବ୍ରାହ୍ମଣଂକ ମୁଖ ଚାହିଂ ରାଜା ଋତୁପର୍ଣ୍ଣ ବୋଲଇ ।
କେବଣ ମାସେ ସ୍ୱୟମ୍ବର କରିବ ରାଜନ
ସେ ବ୍ରାହ୍ମଣେ ବୋଇଲେ ରାଜା. ଶୁଣିମା ସାବଧାନ ।
ବଇଶାଖ ଶୁକ୍ଳପକ୍ଷ ଦ୍ୱିତୀୟାର ଦିନ
ରାତି ପାହିଲେ ସ୍ୱୟମ୍ବର କାଲିଦିନ ଶୁଣ ହେ ରାଜନ ।
ଶୁଣି ବିସ୍ମିତ ମନ ଯେ ଋତୁପର୍ଣ୍ଣ ରାଜ
ନିଶ୍ଚୟ ଆମ୍ଭେ ସଭାରେ ପାଇବା ହାଦେ ଲାଜ ।
ବାହୁକ ନାମରେ ଯେ ଥିଲାକ ସାରଥି
ତାହାକୁ ହକାରିଣ ବୋଲଇ ମହୀପତି ।
ଶୁଣ ହୋ ବାହୁକ ଯେ ବାହ୍ମଣ ବଚନ
ଦମୟନ୍ତୀ ଦ୍ୱିତୀୟ ସ୍ୱୟମ୍ବର କରଇ ରାଜା ବିମନ ।
ବହନ ହୋଇ କରି ପାରିବୁ କି ରଥ ବାହି
ଶୁଣିଣ ନଳ ରାଜାକୁ ତରସ୍ତ ଲାଗଇ ।
ବାହୁକ ମଉନ ଦେଖି ବୋଲଇ ନରସିଂହ
କି ହୋ ମହାତ୍ମା ତଦବଦ ହେଲୁ କିସ ପାଇଂ ।
ବାହୁକ ବୋଲଇ ଶୁଣିମା ରାଜନ
ଦ୍ୱିତୀୟ ସ୍ୱୟମ୍ବର ରାଜା ବିମନ କରିବ କେଉଂଣ ଦିନ ।
ରାତ୍ରି ପାହିଲେ କାଲି ହୋଇବ ସ୍ୱୟମ୍ବର
ଦିନ ବିଳମ୍ବ ଯେ ନ କହିଲେ ବିପ୍ରବର ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ପୁଣି ବୋଲଇ ଅବା ମୋହୋର ନିମନ୍ତେ
ସ୍ୱୟମ୍ବର କରି ମୋତେ ପାଇବା ନିମନ୍ତେ । ।୧୬୮ ।
ଋତୁପର୍ଣ୍ଣ ମୁଖ ଶୁଣ୍ଣି ବାହୁକ ବୋଇଲା
ମୁହିଂ କାଲି ସ୍ୱୟମ୍ବରେ ଭେଟାଇବି ମୋର ସତ୍ୟ ଯେ ହୋଇଲା ।୧୬୯।

---

[ପୂର୍ବ ପୃଷ୍ଠାର ପାଠାନ୍ତର]

ସେ ବାହୁକ ବୋଲଇ ଯେବେ କାଲି ସ୍ୱୟମ୍ବର
କାଲି ପ୍ରହରକ ମଧ୍ୟରେ ପ୍ରବେଶ ହୋଇବୁ ସ୍ୱୟମ୍ବର ଠାର ।
ଶୁଣିକରି ସାନନ୍ଦ ସେ ହୋଇଲେ ନରସାଇଂ
ସେ ବ୍ରାହ୍ମଣମାନଂକୁ ରନ୍ଧନ ଯୋଗାଡ଼ ଯେ ଦେଇ ।
ରନ୍ଧନ ଭୋଜନ କରି ବିପ୍ରେ ତୁମ୍ଭେ ଆଜକ ରହିବ
କାଲି ରଥେ ବସି ମୋର ସଙ୍ଗତରେ ଯିବ ।
ବ୍ରାହ୍ମଣଂକୁ ବୁଝାଇ ଭିତରେ ଗଲାକ ରାଜନ
ଭାଳଇ ରାଜନ ସେ ବିସ୍ମରଇ ପଞ୍ଚମନ ।
ଦିବସ ଶେଷେ ଯେ ପ୍ରବେଶ ହେଲା ନିଶି
ନଳରାଜା ବିସ୍ମିତେ ଭାଳୁଅଛି ବସି ।
ବିସ୍ମରଇ ନଳ ସେ ଆପଣା ପଞ୍ଚଭୂତେ
ଦମୟନ୍ତୀ ସ୍ୱୟମ୍ବର କିସ କରିବ ଯେତେ କୃତେ ।
ନ ଜାଣି ଦମୟନ୍ତୀ ସେ ଉପାୟେ ଅଛି କରି
ମୁହିଂ ଯେହ୍ୱା ନ ଜାଣେ ଜାଣନ୍ତି ଦେବଧ୍ୱର ।
ଯେତେକ ଭାଳି ସେ ଚନ୍ତାରେ ନିଦ୍ରାଗଲେ
ଶୁଭେଣ ରାତ୍ର ଶେଷେ ଯେତେଣେ ରାଜନ ଉଠିଲେ ।
ନିଦ୍ରା ଭେଜଣ ସେ ଉଠିଲା ରାଜା ଋତୁପର୍ଣ୍ଣ
ଆରେ ବାହୁକକୁ ଡାକ ଆଣରେ ବହନ ।
ଆଜ୍ଞାଂ ପ୍ରମାଣେ ସେ ଡଗର ବେଗେ ଯାଇ
ବାହୁକ ନିବାସ ଦ୍ୱାରେ ପ୍ରବେଶ ସେ ହୋଇ ।
ଡାକଇ ଡଗର ବାହୁକ ତୁ ଶୁଣ
ରାଜାଂକର ଆଜ୍ଞାଂ ହେଲା ତୁ ଆସିବୁଂ ବହନ ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ଋତୁପର୍ଣ୍ଣ ବୋଇଲା ତୋର ଜାଣିମା ବାହୁକପଣ
ନେଇ ଭେଟାଇବୁ ଯେବେ ପାଇବୁ କା'ରଣ । ୧୭୦ ।
ରଥ ସଜ କର ଋତୁପର୍ଣ୍ଣ ଯେ ବୋଇଲା
ଶୁଣି ବାହୁକ ଯେ ଆଗଭର ହୋଇଲା । ୧୭୧ ।

---

[ପୂର୍ବ ପୃଷ୍ଠାର ପାଠାନ୍ତର]

ବହୁତ ଡାକ ସେ ଯେ ଦାଲ୍କ ଡଗର
କହେ ବାହୁକ ସ୍ନେଡେ ବିଳମ୍ବ ତୋହୋର ।
ରାଜାଂକର ଆଗ୍ୟଂରୁ ସ୍ତମ୍ଭକୁ ଆସସି ସତ୍ୱର
ଆରେକ ସ୍ବର ଆସି ଡାକଇ ପରସ୍ପର ।
ନ ଶୁଣଇ ଡାକ ସେ ଯେ ଗରୁ ହଂସୀ ପଣେ
ରଥ ବାହିବାକୁ ତାର ଭଯ୍ୟେନାହିଂ ମନେ ।
ଡାକ ଶୁଣି ବାହାର ହେଲା ଖରେ ବାହୁକ ଜାଣ
କବାଟ ଫେଡି ଦ୍ୱାରେ ଉଭାହେଲା ପୁଣ ।
ରାଜାର ଦୂତ ଦେଖି ସେ ବୋଲଇ ନଳ ରାଜନ
ରାଜାଂକର ସ୍ତମ୍ଭକୁ ଚାଲ ଯିବା ବହନ ।
ଆସ୍ଥାନ ଉପରେ ରାଜା ଋତୁପର୍ଣ୍ଣ ଅଛନ୍ତି ବସି
ସ୍ତମ୍ଭରେ ବାହୁକ ପ୍ରବେଶ ହେଲା ଆସି ।
ବୋଲଇ ଋତୁପର୍ଣ୍ଣ ଶୁଣ ହେ ବାହୁକ
ତୁ ଯାହା ବୋଇଲୁ ସେହା ଜାଣନ୍ତି ସର୍ବଲୋକ ।
ରଥ ସାଜିଆଣ ବହନ ହୋଇ ଯିବା
ରାଜାଂକର ସ୍ୱୟମ୍ବରେ ପ୍ରବେଶ ହୋଇବା ।
ନଗଲେ ଆମ୍ଭେ ସେ ପାଇବା ଅବାକ୍ୟ
ତୋହୋର ବୋଲକୁ ମୁଂ ଯେ ଯାଉଛୁ ସପ୍ରେତ୍ୟ ।
ବାହୁକ ବୋଇଲା ଶୁଣିମା ନୃପବର
କୁଣ୍ଡି ଦେଶେ କରବ ନେଇ ଦହରକ ଭିତର ।
ଶୁଣିଣ ସାନନ୍ଦ ରାଜା ଋତୁପର୍ଣ୍ଣ ହୋଇ
ଜୟମାଳା ସାରଥିର କଣ୍ଠରେ ଲମ୍ବାଇ ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ଶୈଖାର ତୁରଙ୍ଗମ ଯେହ୍ନ ଆଗସର ବାଜୀ
ତାହ୍ନ.କଇଂ ଯୋଚକରି ରହୁବର ବେଗେ ସାଜ । ୧୭୨ ।
ଋତୁପର୍ଣ୍ଣ ବୋଇଲା ତୋହୋରେ ନୋହିବ କଅ କାର୍ଯ୍ୟ
ଅନମିତେ ବାହୁକ ରେ କରାଇବୁ ମୋତେ ଲାଜ । ୧୭୩ ।

---

[ପୂର୍ବ ପୃଷ୍ଠାର ପାଠାନ୍ତର ]

ତତକ୍ଷଣେ ବାହୁକ ବହନ ହୋଇ ଗଲା
ଅଶ୍ୱଶାଳୁଂ ଅଶ୍ୱ ଆଣି ରଥରେ ଯୋଚଲା ।
ମହା ଦୁର୍ବଳ ଅଶ୍ୱ ଆଣି ଯେ ଯୋଚଲା ରଥର
ରଥ ଆଣି କଲା ହାଦେ ରାଜାର ଆଗର ।
ସେ ଜୀର୍ଣ୍ଣ ବାଜୀ ଦେଖି ରାଜା ବିସ୍ମରଇ
ଯେହାଂକର ବଳେ କେତେଦୂର ପାରିବଇଂ ଯାଇଂ ।
ସାତ ପାଞ୍ଚ ବସିଲେ ନେଇ  ନୁଆରବେ
ଝୁଣ୍ଟ ହାବୋଡ ହେଲେ ସେ ପଡ଼ିଣ ମରିବେ ।
ଶୃରବନ୍ତ ଅଶ୍ୱ ଯେବେ ରଥରେ ଯୋଚବଇଂ
ଅଶ୍ୱଂକର ଗୃଲ କ୍ଷେମ ବୋଲିବେ ନରସାଇଂ ।
ଯେହ୍ନଂଅଶ୍ୱେ ମହାମଣ୍ଡଳେ ତୋତେ ଅକାଳେ ଘେନିଯିବ
ପ୍ରହରକ ମଧ୍ୟେ ନେଇଂ ତୋତେ ଭେଟାଇବ ।
ସତ୍ୱରେ ରଥ ଘେନ ତୃହ୍ମ ବେଗେ ଯିବୁ
ପ୍ରହରକ ମଧ୍ୟେ ଯାଇ କୁଣ୍ଡି ଦେଶେ ମିଳିବୁ ।
ଶୁଣିକରି ରାଜନ ସେ ଚଯ ସନ୍ତୋଷ ହୋଇ
ବ୍ରାହ୍ମଣମାନଂକୁ ରାଜା ଆଣିଲା ହକରାଇ ।
ବାର୍ଷ୍ଣେବ ସାରଥି ତାର ସଙ୍ଗରେ ରହିଛି
ଋତୁପର୍ଣ୍ଣ ବାର୍ଷ୍ଣେବକୁ ସମସ୍ୟା କହୁଅଛି ।
ଯେହ୍ନ ଦୁର୍ବଳ ଅଶ୍ୱେଂବହୁତ ଦୂର ନୁଆରବେ ଯାଇଂ
ତୋର ଥିଲେ ରଥ ସେ ଆଣିବ ବାହୁଡ଼ାଇ ।
ଯେତେ କହି ରାଜା ବସିଲା ରଥର
ବ୍ରାହ୍ମଣ ବାର୍ଷ୍ଣେବ ବସିଲା ରଥର ଉପର ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ବାହୁକ କୋଇଲେ ଦେବ ଆସ ସଜ ହୋଇ
ବାହୁକପଣ ମୋହୋର ଆଜ ବୁଝ କନା ନରସାଇଂ । ୧୭୪ ।
ବାହୁକ ବଚନେ ରାଜା ବସିଲେକ ରଥେ
ପବନୁଂ ଆପାଣ୍ଠ ରଥ ଉଡ଼ିଲା ଗଗନ ପଥେ । ୧୭୫ ।

---

[ ପୂର୍ବ ପୃଷ୍ଠାର ପାଠାନ୍ତର ]
ପିଠେ ଆଉଂସି ଅଶ୍ୱର କର୍ଣ୍ଣରେ ମନ୍ତ୍ର କହୁ
ଉଡ଼ିଲେ ଅଶ୍ୱେ ଶେଣୋପକ୍ଷୀ ପ୍ରାୟେ ହୋଇ ।
ସହସ୍ରେ ଯୋଜନ ଅଶ୍ୱେ ଗଲେକ ବ୍ରହ୍ମମି
ଗନ୍ଧର୍ବ ନଦୀତୀରେ ସେ ଯାଇ ହେଲେ ଭ୍ରମି ।
ହୃଞ୍ଚଲ ବୃକ୍ଷେକ ଅଛୁ ନଦୀର ତଟରେ
ରାଜା ଉତ୍ତରୀ ଲାଗି ରହିଲା ସେ ବୃକ୍ଷ ଡାଳରେ ।
ସେ ଠାବରୁ ରଥଗଲା ସହସ୍ର ଯୋଜନ ଖରେ
ରାଜା ପଚ୍ଚରଇ ଯେ ବାହୁକ ଆଗରେ ।
ସହସ୍ରେ ମାଡ ସୁବର୍ଣ୍ଣ ଉତ୍ତରୀ ଦେହେ ଥିଲା
ବୃକ୍ଷ ଡାଳରେ ଲାଗି ଉତ୍ତରୀ ରହିଲା ।
ସେ ବାହୁକ ବୋଲଇ ଶୁଣ ନୃପବର
ତବ ରାଜ୍ୟକୁ ସହସ୍ରେ ଯୋଜନ ନଦୀତୀର ।
ତୁମ୍ଭର ରାଜ୍ୟକୁ ଗନ୍ଧର୍ବ ନଦୀ ଯେତେ
ସେ ନଦୀ ଛାଡ଼ି ସ୍ୱେଣିକ ଅଇଲୁନ ତେତେ ।
ଶୁଣିକର ଆଜ୍ଞା ଜ ହେଲା ଋତୁପର୍ଣ୍ଣ
ସାରଥି ରଥ ଫେରାଇ ଆଣିଲା ବହନ ।
ଗନ୍ଧର୍ବ ନଦୀତୀରେ ପ୍ରବେଶ ତତକ୍ଷଣ
ଦେଖିଲେ ବୃକ୍ଷେ ବସ୍ତ୍ର ଲାଗିଛୁ ତରାଳ ପ୍ରାୟେ ଚନ୍ଦ୍ର ।
ସେ ଉତ୍ତରୀ ରାଜା ଆଣିଲେ ତତକ୍ଷଣ
ସାରଥିକ କଲେ ସେ ବହୁତ ସନମାନ ।
ପଚ୍ଚରଇ ଋତୁପର୍ଣ୍ଣ ଶୁଣ ହେ ସାରଥି
ତୁ କ ମାୟା ରୂପେ ଆସି ରହିଛୁ ସୁରପତି ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ଋତୁପର୍ଣ୍ଣ ଶିରେ ଯେ ଶ୍ରୀଭୂଷା ମୁକୁଟ ଥିଲା
ରଥ ଚଳଯାନ୍ତେ ସେ ମସ୍ତକୁ ଖସିଣ ପଡିଲା । ୧୭୬ ।
ଋତୁପର୍ଣ୍ଣ ବୋଇଲା ରହ ରହ ହୋ ବାହୁକ
ଶ୍ରୀଭୂଷା ମୁକୁଟ ଖସିପଡିଲା ଶିର ମୋର ଦେଖ । ୧୭୭ ।

---

[ ପୂର୍ବ ପୃଷ୍ଠାର ପାଠାନ୍ତର ]

କୁବେର ଅନଳ ପବନ କେବଣ ଦିଗପାଳ
ବ୍ରହ୍ମା ହରିହର କି ବରୁଣ ନଇଋତ ଦେବବଳ ।
ନ ଜାଣି ତୋତେ ବହୁତ ଉକାର ବୋଇଲି
ମାୟାରେ ପଡି ବାରତ ହାଦେ ନୁଆରିଲି ।
ସରୂପ କହିବୁ କେବଣ ଦିଗପାଳ
ଶୁଣି ରାଜାକୁ ବଚନ କହଇ ଯେ ନଳ ।
ଶୁଣ ହୋ ସ୍ନେହମନେ କହଇ ନରସାଇଂ
ମୋତେ ଯେବେ ପୁଛିଲୁ ନଳରାଜା ମୁହିଂ ।
ଶୁଣି ଋତୁପର୍ଣ୍ଣ ରାଜା ସାନନ୍ଦ ହୋଇଲା
ନଳର ହାଥ ଧରି ରାଜା ଋତୁପର୍ଣ୍ଣ ବୋଇଲା ।
ଅଶ୍ୱଂକର ବିଦ୍ୟା ତୁ ମୋତେ ଯେ କହିବୁ
ଅକ୍ଷୟେ ମନ୍ତ୍ର ତୁ ମୋ ଠାରୁ ଯେ ଶିଖିବୁ ।
ନଳ ବୋଇଲା ମୁଂ ତୋର ଅନ୍ନ ଖାଇ
ତୁ ମୋର ଅନ୍ନଗୁରୁ ମୋର ଶିଷ୍ୟ କେମନ୍ତେ ହେବୁ ତୁହି ।
ଋତୁପର୍ଣ୍ଣ ବୋଲଇ ମନ୍ତ୍ର ନଳର ମୁଖ୍ୟ ଗୃହିଂ
ମନ୍ତ୍ର ପାଲଟରେ ଗୁରୁ ଶିଷ୍ୟ ନାହିଂ ।
ଅକ୍ଷୟେ ମନ୍ତ୍ର ସେ ନଳକୁ କହିଲା
ନଳ ଦେହରୁ କଳିକାଳ ପାର ହୋଇଗଲା ।
ଅଶ୍ୱବିଦ୍ୟା / ଋତୁପର୍ଣ୍ଣକୁ କହିଲା ସେ ନଳ
ତହୁଂ ରଥ ବାହିଗଲେ ବେଗ ମହୀପାଳ ।
ରଥ ଘୋଷ ଶୁଣି ବାର୍ଷ୍ଣେବ ବୋଲଇ
ନଳ ରଥଘୋଷ ସରୂପ ଶୁଭଇ ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ବାହୁକ ବୋଇଲା ରାଜା ଆବର ପାଇବ ତୁମେ କାହିଂ
ନବ ସହସ୍ର ଯୋଜନେ ଅଇଲାନ ରଥ ବାହି । ୧୭୮ ।
ଋତୁପର୍ଣ୍ଣ ବୋଇଲା ଶୁଣିମାନା ତୋର ସତ
ବାହୁଡାଇ ବାହୁକ ରେ ବାହା ମୋର ରଥ । ୧୭୯ ।

---

[ ପୂର୍ବପୃଷ୍ଠାର ପାଠାନ୍ତର ]

ଯେତେ କଥା ଋତୁପର୍ଣ୍ଣ ନଳ କୁହାକୁହି ହେଲେ
ବାଷ୍ଣେବ ଆଦି ସୂତ ବ୍ରାହ୍ମଣେ କେହି ନ ଶୁଣିଲେ ।
ଚଳଇ ରଥ ଯେସନେକେ ଶୂନ୍ୟଚର
ପ୍ରବେଶ ହୋଇଲେ ଯାଇଂ କୁଣ୍ଡି ଯେ ଦେଶର ।
ସେ ରଥଘୋଷ ଶୁଣି ଦମନ୍ତୀ ଜାଣିଲା
ନଚେଂ ରଥ ବାହି ମୋ ନଳରାଜା ଅଇଲା ।
ସିଂଘଦ୍ୱାରେ ରଥଯାଇ ହୋଇଲା ପ୍ରବେଶ
ଯାଇଂ ବସିଲେ ସେ ରାଜାଂକର ପାଶ ।
ସମସ୍ତ ଦେଶର ଯେ ନୃପଢଗଣମାନ
ପ୍ରବେଶ ହେଲେ ଯାଇଂ ବାମନ ଦେଶେଣ ।
ସମସ୍ତ ରାଜାଂକୁ ବାମନ ରାଜା ଦେଖି
ସ୍ଥମୁରେ ଉଭା ପରବମା ଉପେକ୍ଷି ।
ବାମନ ବୋଇଲା ଶୁଣ ସମସ୍ତ ନୃପସାଇଂ
ଦୁହିତାର ଦୁତୀସ୍ୱ ସୟମ୍ବର ଆଣିଲା ହକରାଇ ।
ଶୁଣି ଯେ ଯାହା ସ୍ଥାନେ ବସିଛନ୍ତି ନୃପନାଥେ
ଦମୟନ୍ତୀର ଆଗେ ବାମନ କହଇ ଭୂରତେ ।
ଶୁଣିକର ଦମୟନ୍ତୀ ବଡ ହରଷ ହୋଇଲା
ଧାତ୍ରୀକି ରାଇ ସେ ଯେ ବଚନ କହିଲା ।
ମୋହୋର ପୁତ୍ର ଦୁହିତା ଦେନକର ଯିବୁ
ରାଜାମାନଂକ ଅଗ୍ରତେ ଦେଖାଇ ଆଣିବୁ ।
ଶୁଣି ହେଠମାଥ ହେବ ଯେବଣ ଯେ ଜନ
ଚକ୍ଷୁରୁ ଲୋହ ବହିବ ମୁଖ କରିବ ଅନ ଅନ ।

ଏମନ୍ତେକ ବଚନ ଶୁଣି ରଥ ବାହୁଡାଇ ବାହିଲା
ଲେଖନ୍ତେ ନବ ସହସ୍ର ଯୋଜନ ସ୍ଥଳେ ଶ୍ରାଭୂଷା ପଡଥିଲା । ୧୮୦ ।
ଋତୁପର୍ଣ୍ଣ ବୋଇଲା ଧନ ଚୋର ବାହୁକପଣ
ମୋହୋର ବିଦ୍ୟାଏ ଅଛଇ ସର୍ବଜାଣ । ୧୮୧ ।
ବୃକ୍ଷର ମଧ୍ୟରେ ଯେତେକ ଫଳ ଥାଇ
ଦୃଷ୍ଟି ମାତ୍ରକେ ମୁଁ ସମସ୍ତ ଜାଣଇ । ୧୮୨ ।
ନଳ ଦେଖିଲେ ଯେ ସମ୍ମୁଖରେ ବୃକ୍ଷ ଗୋଟାଏ
ଏଥି କେତେ ଫଳ ଅଛି ତୁ କହନ ହୋ ରାଏ । ୧୮୩ ।
ଋତୁପର୍ଣ୍ଣ କହଇ ଯେତେ ଫଳ ଅଛଇ ବୃକ୍ଷେ
ରଥ ରହାଇ ଯେ ନଳ ଗଣିଲା ପ୍ରତକ୍ଷେ । ୧୮୪ ।
ନଳର ଶରୀରେ କାଳପୁରୁଷ ଗୋଟିଏ ଥିଲା
ଗର୍ଭୁଁ ବାହାର ହୋଇଣ ସେ ବୃକ୍ଷେ ସମ୍ଭାଇଲା । ୧୮୫ ।
ବାହୁଡ ନଳ ଯେ ହୋଇଲା ନିଜ ରୂପ
ସେ ନଳ ନୃପତି ଗୁଡଲା ତକ୍ଷଣି କୁରୂପ । ୧୮୬ ।
ଋତୁପର୍ଣ୍ଣ ବିଦ୍ୟାଗୋଟି ନଳକୁ କହିଲା
ନଳ ସେହି ବିଦ୍ୟାଗୋଟି ପରୀକ୍ଷ କରିଣ ଘେନିଲା । ୧୮୭ ।
ନଳ ବୋଇଲା ମୋହୋର ବିଦ୍ୟା ଦେବି ତୋତେ
ଋତୁପର୍ଣ୍ଣ ବୋଇଲା ମୋର କାର୍ଯ୍ୟବେଳେ-
ମାଗଇ ଦିନା ତୋତେ । ୧୮୮ ।
ଦୁଇରାଜା ସନମତେ ଯେ କରନ୍ତି ଗମନ
ପ୍ରବେଶ ହୋଇଲେ ଯାଇ କୁଣ୍ଡିନଗ୍ର ସ୍ଥାନ । ୧୮୯ ।
ସମସ୍ତ ନୃପତିମାନେ ବିଜୟେ ସମ୍ଭ୍ରମରେ
ଋତୁପର୍ଣ୍ଣ ନଳ ଘେନି ବିଜୟେ ସମ୍ଭ୍ରରେ । ୧୯୦ ।
କଉତୁକ ଦେଖିବାକୁ ଦିଗପାଳମାନେ
ମୋହନ ରୂପ ଧରି ବିଜୟେ ସଭାସ୍ଥାନେ । ୧୯୧ ।
ବାସବ କୁବେର ଯେ ବରୁଣ ହାଦେ ଅଗ୍ନି
ସତ୍ୟ ତ୍ରେତାୟା ଦ୍ୱାପର କଳି ପୁଷ୍କର ଘେନି । ୧୯୨ ।

କାଳ କାମ ଅଧାତୁ ଶଶ୍ୱର ଶତମନୁ
ଦ୍ୱାଦଶ ବିଶ୍ୱଦେବାଯ୍ୟେ ବିଜଯ୍ୟେ କୃଶାନୁ । ୧୯୩ ।
ଇନ୍ଦ୍ର ଦେବତାଯ୍ୟେ ଯେ ହକାରିଲେ ନଳକୁ
ପ୍ର ଥମ ସ୍ୱୟମ୍ବରେ ଦମୟନ୍ତୀ ନ ବରିଲା ଆମ୍ଭଂକୁ । ୧୯୪ ।
ଆମ୍ଭେ ଦଯ୍ୟାକଲୁ ତୋତେ ତୋର ଯେନଣ ଭଗତି
ଯୁଗାନ୍ତକ ପୁରୁଷମାନେ ତୋତେ ହେଲେ ଯେହ୍ନେନେକ ଶାନ୍ତି । ୧୯୫ ।
ଉପାଯ୍ୟେ କରି କଳିଯୁଗ ମିଥ୍ୟା ଯେ କହିଲା
ନଳ ନାଶଗଲା ବୋଲି ଦମୟନ୍ତୀକି ବୋଇଲା । ୧୯୬ ।
ବିଦୁଲା ବୋଲକରି କମଳାକ୍ଷର ନାଗର କୁମାରି
ମୃତୁ ସଞ୍ଜୀବନୀ କନ୍ଥ ଜାଆଂଇଲା ତୋର ନାରି । ୧୯୭ ।
ବାହୁଡି ସୁନ୍ଦରୀ ଯେ ବାତୁଳ ମୂରତି
ଦୁଣି ସ୍ୱୟମ୍ବର ତୋତେ ରଞ୍ଜିଲା ଯୁବତୀ । ୧୯୮ ।
ତୁ ଯେବେ ନଳ ଲୁଚ ଥାଅସି ଆମ୍ଭ ତୁଲେ
ବୃଦ୍ଧ ଅବସ୍ଥା ତାକୁ ଦେବତାଯ୍ୟେ କଲେ । ୧୯୯ ।
ପିଙ୍ଗଳ ପଳିତ କେଶ ଯେ ବଳିତ କୁବୁଜ କାଯ୍ୟେ
ମଳିଣ ବସ୍ତ୍ର ପିନ୍ଧି ହାଥେ ଯଷ୍ଟି ଗୋଟିଯ୍ୟେ । ୨୦୦ ।
ଦେବତାଯ୍ୟେ ନଳକଇଂ ହେଲେ ଯେତେକ ଅବସ୍ଥା
ଅଥବା ଯେସନେକ ରୂପ ପୁଣ ସଞ୍ଚିଲେ ତାହାକଇଂ ଯଥା । ୨୦୧ ।
ପ୍ରପଞ୍ଚ ରୁପ ଦେଖି ସେ ନଳକଇଂ ନ ବରୁ
ନଳର ବହୁନେ ସେ ଆମ୍ଭନ୍ତ ଇଚ୍ଛାକରୁ । ୨୦୨ ।
କନ୍ୟାମାନେ ବେଶକଲେ ଦମୟନ୍ତୀ ସଙ୍ଗିକ
ରାଜାଗଣ ମୋହଗତ ହୋଇଲେ ତାହାର ରୁପ ଦେଖି । ୨୦୩ ।

---

୧୯୩।୧   କାଲକାମ ଅଧର୍ମ ନୋଧ ଶ୍ୱେତଶସ୍ୱର  ଶତମନୁ ।—ଘ, ଙ,ଅ

୧୯୩।୨   ଦ୍ୱାଦଶ ବିଶ୍ୱଦେବାଯ୍ୟେ ବିଜଯ୍ୟେ ଈଶାନୁ ।—ଙ

୧୯୬।୧   ନଳକୁ ସର୍ପ ଭକ୍ଷିଲା ବୋଲି ଦମୟନ୍ତୀ ହତହେଲା ।—ଖ, ନ,ଣ

ସାଧୁ ସାଧୁ ସୁନ୍ଦରୀ ତୁ ଜଗତମୋହିନୀ
ଆକାଶ ବୃନ୍ଦାଅର୍କେ ସ୍ୱେହାକୁ ବର ସିନା ପୁଣି । ୨୦୪ ।
ରାଜା ଭୀମକ ଦୁହିତାର ଧରି ହାଥ
ରୂପ ଗୁଣ ଲକ୍ଷଣ ଦେଖ ଗୋ ସ୍ୱେହାନ୍ତ । ୨୦୫ ।
ଯେ ତୋହୋର ବରିବକୁ ବଳଇ ଯେ ଇଚ୍ଛା
ବରଣମାଳା ଦେସି ପୂରନ୍ତୁ ମନୋବାଞ୍ଛା । ୨୦୬ ।
ଦମୟନ୍ତୀ ବୋଇଲା ଶୁଣ ଶୁଣ ଲୋ କେଶିନୀ
ନଳ ରୂପଗୁଣ ବରିରନ ଭାବନୀ । ୨୦୭ ।
ଯଦ୍ୟପି ନଳକୁ ମୁଂ ନ ଦେଖଇ ନୟନେ
ଅଥବା ଇଚ୍ଛା ମୋର ସେ ନ ବଳଇ ଆନେ । ୨୦୮ ।
ଅନେକ ଦେଶର ରାଜାନ୍ତ ଦେଖିଲି
ଦେବତାମାନଙ୍କ ସନ୍ନିଧେ ଯାଇଣ ମିଳିଲି । ୨୦୯ ।
ବଦୁଲା ବୋଇଲା ଆସ୍ଥି ଗୋ ସ୍ୱେହି ସେ ବୃନ୍ଦାଅର୍କେ
ତୋହୋର ନମନ୍ତେ ଆସିଅଛନ୍ତି ଦେବଲୋକେ । ୨୧୦ ।
ଦମନ୍ତୀ ବୋଇଲା ଗୋ ମୁଂ ଅଟଇ ମାନୁଷୀ
ମୋହୋର ନମନ୍ତେ କମ୍ପେ ଦେବତାସ୍ୱେ ଛନ୍ତି ଆସି । ୨୧୧ ।
ନଳକଇଂ ନ ପାଇଣ ସେ ବରସ ପଞ୍ଚୁ ମନେ
ଆପାଦ ଖଣ୍ଡିଣି ମାଗୋ ମୋତେ ହୋଅସି ପ୍ରସନ୍ନେ । ୨୧୨ ।
ପରମ ଯୋଗେଶ୍ୱରୀ ମାଗୋ ଆଦ୍ୟ ଯେ ଅପର୍ଣ୍ଣା
ସ୍ତ୍ରିୀକୁଳେ ଉଦ୍ଧରିବାକୁ ତୁହି ସେ ନାବ ସିନା । ୨୧୩ ।
ବଂଶଗିରି ବାସିନୀ ଗୋ ପରମ ଦୁଖେଣ ଦୁଖୀ
ଶରଣ ଉଦ୍ଧାରିଣୀ ମାଗୋ ଶରଦଚନ୍ଦ୍ରମୁଖୀ । ୨୧୪ ।
ଲୋକତ ଆଲୋକତ ଅଭୟେ ଚଞ୍ଚଳା
କରୁଣାମହିଳ ମାଗୋ ଶ୍ରୀସର୍ବମଙ୍ଗଳା । ୨୧୫ ।

---

୨୧୨।୧ ନଳର ପାଇଂ ସେ ବରସୋରଇ ପଞ୍ଚ ମନେ ।—ଜ, ଝ, ଡ, ଥ
୨୧୩।୨ ସ୍ତ୍ରିୀକୁଳ ମଣ୍ଡଣି ମାଗୋ ତୁହି ସେ ବ୍ରହ୍ମସେନାହା ।—ଝ, ଞ

ବପତ୍ତି ବନାଶିନୀ ମାଗୋ ଉଚର ମାତାଙ୍ଗୀ
ଜଗୁଜନ ମୋହିନୀ ମାଗୋ ତୁ ଯୋଗ୍ନୀବୃନ୍ଦ ସଙ୍ଗୀ । ୨୧୬ ।
କେଶରୀବାହିନୀ ମାଗୋ ଆସନ ଦୃଢ ଉଚ
ବ୍ୟାଘ୍ର ମୃଗ ଶାର୍ଦ୍ଦୂଳ ଭାଲୁଂକ ସର୍ବରୂପ ସଞ୍ଚ । ୨୧୭ ।
ଅମ୍ଳାଣ ଅରବିନ୍ଦ ଚରଣ ତଳ କାନ୍ତ
ଡାକ ଡମ୍ବରୁ ଶବଦେ ବିଘଂସିତ ପଦ୍ମନେତ୍ରୀ । ୨୧୮ ।
ଜଳଦ ମେଦୁର ଯାହାର ଅଙ୍ଗଭାବ
ସର୍ବାଙ୍ଗ ସୁଲକ୍ଷତ ମୋହିନୀ ମହାଦେବ । ୨୧୯ ।
କ୍ଷଣେକେ ବାତୁଳ ଗୋ କ୍ଷଣକେ ଗଗନ କ୍ଷେପୀ
ଯେକାକାଯ୍ୟେ ଅନନ୍ତ ଅର୍ଦ୍ଧାଂଗ କାମରୂପୀ । ୨୨୦ ।
କାମିନୀ କାମସେଣା ଗୋ ଜଗତଜନ ମାତା
ସମସ୍ତ ଦୁଷ୍କୃତ ମାଗୋ ଆପାଦ ଖଣ୍ଡନ୍ତା । ୨୨୧ ।
ମମ ଦୁଷ୍କୃତ ଆପାଦ ଦୁଖ ଖଣ୍ଡି
ସଦା ସମ୍ପଦ ମାଗୋ ଅଭୟେ ମଙ୍ଗଳ ଚଣ୍ଡୀ । ୨୨୨ ।
ବଧିବାବନ ଉଦ୍ଧତ ସମସ୍ତ ଅନୁକୂଳେ
ଜାତକ ଯାହାଏଣୀ ଗୋ ତୁମ୍ଭ ସେ ସର୍ବକାଳେ । ୨୨୩ ।
ତବ ପାଦପଦ୍ମେ ମୋର ବିନୟେ ଭଗତ୍ତି
ଜୟ ଜୟ ଦୁର୍ଗେ ଗୋ ଅପର୍ଣ୍ଣା ପାର୍ବତୀ । ୨୨୪ ।
ଶ୍ରୀସର୍ବମଙ୍ଗଳା ଚରଣେ ବିନୟେ ଦୟିନୀ
ବଦୟନ୍ତ ସାରଳା ଦାସ ଗ୍ରନ୍ଥିକ ଶୂଦ୍ରମୁନି । ୨୨୫ ।
ତୁମ୍ଭ ମା ଜନନୀ ମୋତେ ପଦ ଆଗ୍ୟାଂ ଦେବୁ
ଦମୟନ୍ତୀ ସୟମ୍ବର କଥା ବୁଝାଇ କହିବୁ । ୨୨୬ ।
ଯେ ଭବସାଗରୁ ମୋତେ ବାରେକ ଉଦ୍ଧରିବା
ଶ୍ରୀଭବାନୀଂକ ଚରଣେ ମୋର ଜନ୍ମେ ଜନ୍ମେ ସେବା । ୨୨୭ ।

---

୨୧୬। ବୀଣା ବଳାସୁଣୀମା ଗୋ ଉଚର ମାତାଙ୍ଗୀ ।—(କ)

୨୨୦ { କେଶରୀ ବାହାନେ ମାଗୋ ମହାବିଦ୍ୟାରୂପୀ
ବରେହା ମୃଗ ଶାର୍ଦ୍ଦୂଳ ଭାଲୁଂକ ସରୂପୀ ।—(ଜ)

ହେ ଦେବୀ ତୋ ଶ୍ରୀଚରଣେ ସର୍ବଦା ନମାମି
ଏହି ଆଶାରୁଂ ବାରେ ରକ୍ଷାକର ଠାକୁରାଣୀ । ୨୨୮ ।
ଅନେକ ବଚୋଗ୍ନି ସନ୍ତୁଂ ହୋଇଲା ଦମୟନ୍ତୀ
ପ୍ରସନ୍ନେ ଦ୍ରଶନ ପାଇଲା ନଳ ଯେ ନୃପତି । ୨୨୯ ।
ଦମୟନ୍ତୀ ବୋଇଲା ଶୁଣ କେଶିନୀ ମୃଦୁସ୍ୱନା
ଆଗୋ ଦେବତାଂକ ମେଳେ ମୁଂ ବୃଦ୍ଧକ ଦେଖିଲି । ୨୩୦ ।
ମାୟା ପରପଞ୍ଚ ଅବା କରାଇଛନ୍ତି ନଳ
ଅଲକ୍ଷଣ ରୂପ ଅବା କରିଛନ୍ତି ଦିଗପାଳ । ୨୩୧ ।
କେଶିନୀ ବୋଇଲା ମାଗୋ ସେ ବୃଦ୍ଧ ମଣିଷା
ତାହାକଇଂ ସଂଘାରୁଣୀ କର୍ମେ କଲାଇଲୁ ମନୀଷା । ୨୩୨ ।
କରେଣ ଶୋଭଇ ଯେ ଉତ୍ପଳର ମାଳୀ
ସେ ବୃଦ୍ଧ କୁବୁଜ ସନ୍ନିଧେ ଯାଇଂ ମିଳିଲେକ ବାଳୀ । ୨୩୩ ।
ଦମୟନ୍ତୀ ବୋଇଲା ତୁମ୍ଭେ ସତ୍ତ୍ୱେ ଯେବେ ଅଟ ବୃଦ୍ଧ
ଏହିବି ସରୂପ ତୋହୋର ସର୍ବଦା କାଳେ ଥିବ । ୨୩୪ ।
ନଳ ହୋଇଣ ଯେବେ କପଟେ ଏହିବି ରୂପ
ନିଜ ରୂପ ହୋଇ ଯେହ୍ନେ କନ୍ଦର୍ପ ସରୂପ । ୨୩୫ ।
ଏହିସନେକ ବାକ୍ୟ ସନ୍ତୁଂ ବୋଇଲା ଦମୟନ୍ତୀ
ନିଜରୂପ ଦୃଷ୍ଟିଶାଇଲେ ନଳ ଯେ ନୃପତି । ୨୩୬ ।
ଦେଖିଣ ଦମୟନ୍ତୀ ଯେ ପରମ ସାନନ୍ଦେ
ବରଣମାଳା ଦେଇ ନଳକୁ ବରିଲେକ ହାଦେ । ୨୩୭ ।
ଦେବତାଏ ବୋଇଲେ ସାଧୁ ସାଧୁ ପତିବ୍ରତା
ବନେ ନଳ ତୋତେ ଦେଲେ ଯେତେକ ଅବସ୍ଥା । ୨୩୮ ।

---

୨୩୦ { ତାଂକ ମେଳେ କାହୁଂ ଆନ ମାନବ ଯେ ବସି
ନୟନ ପିଞ୍ଛାଉ ଅଛି ଦେଖେରେ ପ୍ରେୟସୀ ।—(ଛ)

୨୩୦ { ତାଂକ ମେଳେ କାହୁଂ ଆନ ବା ମାନୁଷ
ତାହାକଇଂ ନୟନ ପିଞ୍ଛାଉଛି ଆଶ ।—କ, ଝ, ଟ

୨୩୧।୨ ଲକ୍ଷଣକୁ ଅଲକ୍ଷଣ ଅବା କରନ୍ତି ଦିଗପାଳ ।—ଖ, ଗ, ନ, କ

ଅନେକ କଷ୍ଟ ତୋତେ ଦଲାକ ଯୁଗାନ୍ତେ
ବାହୁଡି ନଳକଇଂ କରିଲୁ ହୃଦଗତେ । ୨୩୯ ।
ସାନନ୍ଦେଣ ଅଭୟେ ବର ଦିଲେକ ସତ୍ତ୍ଵଯାନ
ଯାଅ ତୁମ୍ଭେ ଅକ୍ଷୟେ ସ୍ଵର୍ଗେ ବସ ପତିପତ୍ନୀ । ୨୪୦ ।
ଶୁଣ ହୋ ଯୁଧିଷ୍ଠିର ଦେବ ବଦନ୍ତି ବେଦବ୍ୟାସେ
ବେନି ନକ୍ଷତ୍ର ହୋଇଣି ସେ ବସିଲେ ଆକାଶେ । ୨୪୧ ।
ପତିବ୍ରତା ସ୍ତ୍ରୀଙ୍କର ଯେସନେକ ମହିମା
ଚାରି ଯୁଗ ମଧ୍ୟରେ ସେ ରୁନ୍ଧାଇଲେ ସୀମା । ୨୪୨ ।
ସ୍ତ୍ରୀଙ୍କର ସାର୍ଥକ ସେ ପତିରେ ଭଗତି
ଆପଣେ ତରଇ ସେ ପିତୃଲୋକେ ହୋଅସି ସଦଗତି । ୨୪୩ ।
ଆପଣା ପିତା କୁଳର ପଞ୍ଚଶ ପୁରୁଷ
ସ୍ଵାମୀକୁଳର ପଞ୍ଚଶ ପୁରୁଷ ଘେନି ବସଇ ଆକାଶ । ୨୪୪ ।

---

୨୪୦ { ଦୁହିତା ପୁତ୍ର ତୁମ୍ଭର ସୁଗତି ପାଆନ୍ତୁ
ତୁମ୍ଭ ଦୁଇ ପ୍ରାଣୀକ ସର୍ବଦା ଭକ୍ତିରେ ରଖନ୍ତୁ ।—(ଣ)

୨୪୨।୧ "ସତିବ୍ରତା ସ୍ତ୍ରୀଙ୍କର ଯେସନେକ ମହିମା"
ପରେ "ଝ" ପୋଥିରେ ପାଠ :—
ଦୁଇ ଅକ୍ଷରରେ ଆଇ ତିନି ଅକ୍ଷରରେ ପୁଅ
ଯେ ବଧ ସ୍ତ୍ରିଙ୍କର ଅଟଇ ବଡ ମୋହ ।
ମାତା ପ୍ରାୟେ ପାଳି ପୁତ୍ର ପ୍ରାୟେ ସେନେହ
ଦାସୀ ପ୍ରାୟେ ଭଗତ ହୋଇବ ପୁତ୍ର ଦେହ ।
ଯେ ବଧ ସ୍ତ୍ରୀଙ୍କର ଅଟଇ ତିନି ନାମ
ଯେ ତିନି ଅକ୍ଷର ଯେ ହତପତ୍ନି ଧର୍ମ ।
ଅତିଅନ୍ତ ଲଜ୍ଜା ଆସନ ପରିତେଜ୍ୟା
ଅତିଅନ୍ତ ପ୍ରୀତିରେ ଉପୁଜାଇ ଶେଯ୍ୟା ।
ଚାରିଯୁଗ ମଧ୍ୟରେ ସେ ଉପୁଜାଇଲେ ସୀମା
ଯେମନ୍ତ ସତ୍ୟବନ୍ତ ସେ ଅଟନ୍ତି ପୁଣ୍ୟଆତ୍ମା ।

ରାଜାଗଣମାନେ ଯେ ସ୍ୱୟମ୍ବର ସଭାରେ ଥିଲେ
ଅନେକ ପୂଜା ବିଧାନ ଘେନି ଯେ ଯାହାର ଦେଶେ ଗଲେ । ୨୪୫ ।
ସତ୍ୟବତୀର ନନ୍ଦନ ଯେ ପାରେଶ୍ୱରଂକର ଶିଷି
ନାଉକା ବିବାନେ ଯାହାର ଜନମ ପ୍ରକାଶି । ୨୪୬ ।
ବେଦମନ୍ତ୍ରେ ସାଧନ୍ତା ଯାହାର ମାହାନ୍ତ୍ର ଯୋଗବେଳେ
ତାହାର ହୃଦେ ବିକାଶିଲା ତେଜ ଅନର୍ଗଳେ । ୨୪୭ ।
କାଳ କାମ ନିଦ୍ରା ଉପେକ୍ଷିଲା ଯେଉଂଣ ମହାମୁନି
ଭୂତ ଭବିଷ୍ୟ ବର୍ତ୍ତମାନ ଜାଣଇ ସର୍ବଗ୍ୟାନି । ୨୪୮ ।
ଯେତୁକ ଶରୀରେ ଯାହାର ସତ୍ତ୍ୱ ରଜ ତମ
ପାଦେ ରୁଦ୍ର ନାଭିରେ ହରି ମୁଖେ ଯାର ବ୍ରହ୍ମ । ୨୪୯ ।
ପୃଥ୍ୱୀ ଆପ ତେଜ ବାଇବ ଆକାଶ
ପଞ୍ଚଧାତୁ ଅଭ୍ୟାସିଲା ଯେଉଂଣ ପୁରୁଷ । ୨୫୦ ।
ସତ୍ୟବତୀର ନନ୍ଦନ ଅଭୟେ ସୋମବଂଶୀ
ମନୁକଳ୍ପ ଅନ୍ତରେ ଯାହାକୁ ନୋହେ ନିଶି । ୨୫୧ ।
ଅନଳ ନିବାରଣ ସେ ପ୍ରଳୟ କାଳ ବଂଚି
ଶୂନ୍ୟପବନବ୍ୟାପୀ ସେ କଳକ ଯେତୁକ ସଂଚି । ୨୫୨ ।
ପ୍ରଳୟ ଉଦ୍ଧାରଣ ମୁନି ବିଷ୍ଣୁର ବକ୍ଷସ୍ଥଳା
ବର୍ଣ୍ଣି କାରିଲା ସେ ବିଭିଶ ସସ୍ତ୍ରକଳା । ୨୫୩ ।
ଶ୍ରୀ ବ୍ୟାସଦେବଂକ ଚରଣେ ମୋହୋର ଦଣ୍ଡପ୍ରଲମ୍ବ ସେବା
ଶୂଦ୍ରମୁନି ସାରଳ ଦାସକୁ ଜୟମଂଗଳ ଦାକ୍ଷାଦେବା । ୨୫୪ ।
ଶ୍ରୀମହାଭାରଥ ଆରଣ୍ୟକ ପର୍ବ କଥା
ମୁଣ୍ଡିଂ ଯେହ୍ନା ବଖାଇଲି ସଂସାର ଜନହିତା । ୨୫୫ ।

---

୨୪୮।୨ ଭୂତ ଭବିଷ୍ୟ ବର୍ତ୍ତିମାନ ତ୍ରିକାଳ ଶାସ୍ତ୍ର ଧନି ।—ଘ, ଝ, ଥ ଙ୍ଗ, ଖ, କ, ଚ, ଡ

୨୫୨।୧ ଅନଙ୍ଗ ନିବାରଣ ସେ ପ୍ରଳୟ କାଳ ବଞ୍ଚି ।—ଣ, ନ

୨୫୩।୧ ଯୋଗେ ଯୋଗେଶ୍ୱର ବୁଦ୍ଧି ଭଗବତମସ୍ତ୍ରଳା ।—ଖ, ଣ ନ

ସତ୍ୟଯୁଗେ ଯେହ୍ନେ ଅମୃତ ହୋଇଲେ ବୃଷ୍ଟ
ଶୁଣନ୍ତେ ଅନେକ ଜନ୍ମର ଦୁଷ୍କୃତ ଯାଏ ଫିଟି । ୨୫୬ ।
ଯେସନେ ଅନଳ ଯୋଗେ ଦହଇ ତରଣୀରାଶି
ଶ୍ରୀମହାଯୋଗ ସାଧିଲେ ଯେହ୍ନେ ପାପ ହୋଏ ଧଂସି । ୨୫୭ ।
ଶ୍ରୀପୁରୁଷୋତ୍ତମ ଚରଣେ ଶରଣ ଅଭ୍ୟାସୁ
ହୃଦଗତେ ଧରି ନରେ ପାତକମାନ ଧଂସୁ । ୨୫୮ ।
ଶୁଣିଣ ସାନନ୍ଦ ସେ ପଣ୍ଡୁରାଜାଂକର ସୁତେ
ଗମନ୍ତ ପୁଣ୍ୟସ୍ଥାନେ ଋଷିଗଣଂକ ସହିତେ । ୨୫୯ ।
ଅନେକ ଦାରୁଷ ଫଳ ଋଷିମାନନ୍ତ ଦିଲେ ଭୋଜ
ଧର୍ମହୁଂ ଆନନ୍ଦ କଥା ହୃଦେଣ ନ ଭଜ । ୨୬୦ ।
ଇନ୍ଦୁକରୁଣ ନାମେ ଅଟଇ ଯେକ ବନ
ଅଭୁଟ ଭଦ୍ରାନଦୀର ଉତ୍ତର ସନ୍ନିଧାନ । ୨୬୧ ।
ସେ ଉତ୍ତର ଭାଗ ନଦୀରେ ରହେ ସାରିଣ ସ୍ନାହାନ
କୋମଳ ପତ୍ର ଭକ୍ଷଣେ ସେ ବଞ୍ଚିଲେ କଣ୍ଟଦିନ । ୨୬୨ ।
ତହୁଂ ଯାଇଣ ପ୍ରବେଶ ରଇବ୍ରତକ ପରବତେ
ରେବା ନାମେ ନଦୀ ବହଇ ଦକ୍ଷିଣ ପ୍ରଶସ୍ତେ । ୨୬୩
ରଇବତକ ଋଷିଂକର ତହିଂ ଅଟଇ ତପସ୍ଥାନ
ମହାବ୍ରହ୍ମା ଋଷି ସେ କଳପୀ ଶଯ୍ୟନ । ୨୬୪ ।
ଦକ୍ଷିଣକଇଂ ଶୀରକର ଶଯ୍ୟନ ତପନସ୍ତି
ସନ୍ନିଧେ ପ୍ରଣିପତ୍ୟ ହୋଇଲେ ଯାଇଣ ଯୁଧିଷ୍ଠି । ୨୬୫ ।
ସମ୍ବାଦେ କଲ୍ୟାଣ ସେ କଲେ ତପୋବନ୍ତ
ଯୁଧିଷ୍ଠି ଦେବ ବୋଇଲେ କମ୍ପିତେ ମଉନବ୍ରତ । ୨୬୬ ।

---

୨୫୬ } ସତ୍ୟ ପ୍ରବେଶ ଯେହ୍ନେ ଅସତ୍ୟ ହୋଥଇ ନଷ୍ଟ
ଶୁଣନ୍ତେ ଅନେକ ଜନ୍ମର ପାତକ ଯିବ ଫିଟି ।—ନ, ଙ

୨୬୨।୧ } ଆପ ତେଜ ବାୟୁବ ଆଦ ଯେ ପଂଚଶ ପ୍ରକୃତ
ଅନୁକ୍ରମେ ସାଧନ ହୋଇଛୁ ଯାର ସିଦ୍ଧ ।—(ଖ)

ଆଚର ତପ କି ବ୍ରତର ପ୍ରବୃତ୍ତି
ଅନୁବ୍ରତେ ସମାଧି ମାନୁଷେ ନାହିଁ ଶ୍ରୁତି । ୨୬୭ ।
ଆଧ୍ୟାତ୍ମ ସାଧନ କମ୍ପୃତ କୃତ ଯୋଗୀ
ନ ପାଇ ବଣା କି କଳହବନ୍ଧ ବେଗୀ । ୨୬୮ ।
କାମ୍ୟେକ ସାଧନ କି କନ୍ଦର୍ପ ଦର୍ପଭଞ୍ଜା
ଜପାପୁ ଚିନ୍ତନ କି କାଳକର୍ମ ଗଞ୍ଜା । ୨୬୯ ।
ଅଦୃଷ୍ଟି ନିରାକୁଳ ନିରାଲମ୍ବକ ଦମ୍ଭ
ବିଶ୍ୱକର୍ମା କିବା ଅଜପା ବ୍ରହ୍ମବିମ୍ବ । ୨୭୦ ।
କୁଟୁମ୍ବ ଅଭିବେକ ମାନବେ ମହାକ୍ରୋଧୀ
ବିରହ ଅବସ୍ଥା କି ପବନ ତପ ନିରୋଧି । ୨୭୧ ।
ଅଷ୍ଟାଂଗେ ଆପୂର୍ଣ୍ଣ ନାହିଁ ବାକ୍ରୁତଭାବ ଚେତା
ହଠଲୟ କର୍ମେ କି ମୁଦୁର ଖେଚଡ଼ା । ୨୭୨ ।
ତତ୍ତ୍ୱ ଆଶ୍ରାଃ କରି କି ହଜାଇଣ ବଣା
କୃତାନ୍ତଙ୍କର କଷଣ କି ଆରମ୍ଭ ଘଟଣା । ୨୭୩ ।
ଯୁଧେଷ୍ଟି ଦେବେ ଯତ୍ନଂ କହିଲେ ପରମାର୍ଥ ବାଚ
ଇଇବ୍ରତ ଋଷି ବୋଇଲେ ତୁ ଯୁଧେଷ୍ଟି ଅଟୁ କି ? । ୨୭୪ ।
କୋନ୍ତେ ବୋଇଲେ ଶତ ସହସ୍ର ଦଣ୍ଡ ପ୍ରଣମ୍ୟ ମୋର ବିନୁଂ
ଚେତନା ମହାତମା ମୋର ବର୍ଣ୍ଣ ଦେଖି ଚିହ୍ନୁ । ୨୭୫ ।
ଶୁଣ ହେ ମହାତମା ବଦଯନ୍ତ୍ରୀ ବ୍ରହ୍ମଋଷି
ଇଇବ୍ରତ ଦେଶର ରାଜା ମୁଂ ବିଶ୍ୱାବସୁ ବଂଶୀ । ୨୭୬ ।
ବିଶ୍ୱାବସୁଂକର ନନ୍ଦନ ଉମାବସୁ ପ୍ରାପ୍ୟେବସୁ
ଉଦ୍ଧନ, କାନ୍ତନ ବୋଲିକରି ଯେହ୍ମାଂକର ବେନଶିଶୁ । ୨୭୭ ।
କାନ୍ତନ ବସୁଂକର ଉପୁଜିଲେ ଋରପୁତ୍ର
ରୁଦ୍ରବସୁ ରୁରୁବସୁ ରୁପବସୁ ରୁକ୍ଷପାତ । ୨୭୮ ।
ବହୁତ ଧର୍ମ ସେ ସାଧିଲେ ଋରପୁତେ
ସାଧନେ ବଞ୍ଚିଲେ ପଞ୍ଚସ୍ତରୀ ଯୁଗ ପରଯନ୍ତେ । ୨୭୯

୭ ।୨ ଖେଚଡ଼ା — ଖେଚରୀ ।

କହନ୍ତେ ନ ସରଇ ସେ ଶୃଙ୍ଖପୁତ୍ରଙ୍କର କଥା
ସେହୁ ବନେ ଆସିଣ ସେ ନ୍ୟୂତେ ବହନ୍ତା । ୨୮୦ ।
ରୁଦ୍ରବସୁଂକର ହୋଇଲା ଗୃହ ଯେ ଅପଣ
ମୂର୍ତ୍ତି ଧୃତ ଶୃଙ୍ଗ ଯେ ଆବର ସ୍ୱଶ୍ଚ । ୨୮୧ ।
ସେହୁଙ୍କର ନନ୍ଦନ ଯେ ଅପାପୀ ସେ୍ୱକଦଣ୍ଡୀ
ସେହୁ ସେ ସିଞ୍ଚଲେ ଅଜପା ବେଦକାଣ୍ଡି । ୨୮୨ ।
ସେହୁଙ୍କର ନନ୍ଦନ ଯେ ଅରୁଣ ଉଲ୍ଲୋଳ
କାନ୍ତରଖେଡେ ସେ ପିଇଲେ ସିନ୍ଧୁଜଳ । ୨୮୩ ।
ବାବୁ ମହାବ୍ରହ୍ମ ପୁରୁଷ ଯେ ସେହୁଙ୍କର ଧାତା
ନଗ୍ରକାର କୋଧୁଣ ସେ ହୋଇଲେ ବହନ୍ତା । ୨୮୪ ।
ସେହୁଙ୍କର ନନ୍ଦନ ଇଚ୍ଛାଯେ ଖାରଧୂଷ
ସେହୁଙ୍କର ନନ୍ଦନ ବୀରପାକ୍ଷ । ୨୮୫ ।
ସେହୁଙ୍କର ନନ୍ଦନ ହୋଇଲା ଯମନକ ଦକ୍ଷ
ସେହୁଙ୍କର ନନ୍ଦନ ଯେ ଜଳଣକ ଦକ୍ଷ । ୨୮୬ ।
ଜଳଣକ ଦକ୍ଷର ନନ୍ଦନ ରଣମାଳ
ରଣମାଳର ନନ୍ଦନ ସୋମବାହୁକ ମହାବଳୀ । ୨୮୭ ।
ସୋମବାହୁର ନନ୍ଦନ ସାମର୍ଥ ନୃପତ
ସେହୁଙ୍କର ନନ୍ଦନ ଯେ ହରଯାତ ସରଯାତ । ୨୮୮ ।
ସରଯାତର ମହିମା ଶୁଣ ହୋ ଯୁଧିଷ୍ଠିର
ସପତ ସମୋଦ୍ରେ ସେ କଲା ସେ୍ୱକବାଟି । ୨୮୯ ।
ଚଳନ୍ତେ ଚରଣ ସେହୁର ନ ବୁଡଇ ଜଳେ
ମୃତ୍ୟୁ ବଞ୍ଚାଇଲା ରାଜା ଧାରମିକ ପୁଣ୍ୟବଳେ । ୨୯୦ ।

---

୨୮୧।୨ (ପୁସ୍ତକ ବଶେଷରେ ପୁରି, ଷତ, ସମ୍ଭୂତ ଦ୍ରଭୃତ ନାମ ଦେଖାଯାଏ )

୨୮୨ } ସେହୁଙ୍କର ନନ୍ଦନ ଯେ ସେ୍ୱକାଙ୍ଗ ନିଦଣ୍ଡି
ସେହୁ ସେ ରଚଲେ ଅଲେକତ ବେଦକାଣ୍ଡି ।—ଠ, ଣ, ନ

୨୮୮।୧ ସୋମବାହୁର ନନ୍ଦନ ସୁବାହୁ ନପତ ।—କ, ଙ, ଛ,

ସେ ସୁରପାଳର ନନ୍ଦନ ଅନନ୍ତ ଶ୍ରୀକୃଷ୍ଣ
ଜମ୍ବୁନ୍ତକ ବୋଲିକରି ତାହାର ନନ୍ଦନ ବଳିଷ୍ଠ । ୨୯୧ ।
ଜମ୍ବୁନ୍ତକର ନନ୍ଦନ ମୁହିଁ ସେ ରଇବ୍ରତ
ଧାରମିକ ପଣେ ମୁଂ ପାଳିକଲି ଯୁଗ ସାତ । ୨୯୨ ।
ଧାରମିକ ପଣରେ ମୁହିଁ ବଞ୍ଚୁଥାଇ ଯୁଗ
ସାଧଇ ଯୋଗବିଦ୍ୟା ଅଲେଖ ଯୋଗ ମାରଗ । ୨୯୩ ।
ମୋତେ ହୋଇଲାଟୀଏକ ଦିଲା ଭୂବିବାହାନ ନପତି
ସେ କନ୍ୟାର ନାମ ହାଦେ ଅଟଇ ଯେ ପୃଥ୍ୱୀ । ୨୯୪ ।
ତାହାର ଗର୍ଭୁଂ ହୋଏ କନ୍ୟାଏ ଉତପତ୍ତି
ସେ ହୋଇଲାର ନାମ ମୁଂ ଦିଲଇଂ ରେବତୀ । ୨୯୫ ।
ଆହେ। ମହାରାଜା କକଡ଼ା ମାସ ଯେ ପୌର୍ଣ୍ଣମୀର ଦିନ
ଭୃଗୁବାର ଶ୍ରବଣା ନକ୍ଷତ୍ର ବିଦ୍ୟମାନ । ୨୯୬ ।
ସମ୍ପୂର୍ଣ୍ଣ ଗ୍ରହ ଯେ ହୋଇଅଛି ବତିଶ ଦଣ୍ଡ
ପାହେଣ କୁମାରୀ ଯେ ପଡିଲା ଭୂଅଖଣ୍ଡ । ୨୯୭ ।
ଚନ୍ଦ୍ର କିରଣ ଜାଣି ବିରାଜେ ସର୍ବଗୁଣ
ସରୂପେ ଶତଶ୍ରିୟାର ତଉବତିଶ ଲକ୍ଷଣ । ୨୯୮ ।
ବଡ଼ାଇ ଆଶ୍ରିଜ ସେ ଅଟଇ ମହିମା
ଜନ୍ମ ହୋଇବା ମାତ୍ରକେ ସେ ଶୁଣଇ ବେଦଧ୍ୱନି । ୨୯୯ ।
ଋକବେଦ ଆଧ୍ୟାନ ସେ କରଇ କୁମାରୀ
ମାତାର କ୍ଷୀର ସେହୁ ନ କରଇ ଆଧାର । ୩୦୦ ।
ସତ୍ୟଯୁଗ ବହି ଲକ୍ଷେକ ବରଷ ଗଲା
ବାଳୁତ ଭକତୁଂ ସେ ଯୁବାବସ୍ଥା ନୋହିଲା । ୩୦୧ ।
ମହାବ୍ରହ୍ମ ବାକ୍ୟତୁଂ ଆଧାରେ ନାହିଂ ଇଚ୍ଛା
ଶୁକ୍ଲାମ୍ବର ପୁରୁଷକଇଂ କରଇ ମନୋବାଞ୍ଛା । ୩୦୨ ।

---

୨୯୮।୨ ବତିଶ ଲକ୍ଷଣେ ଗୁଣବନ୍ତୀ ସେହୁ ପୁଣ ।—ନ ଖ ଣ
୩୦୨।୧ ମହାବ୍ରହ୍ମ ବାକ୍ୟ ବିନୁ ଆନେ ନାହିଂ ଇଚ୍ଛା ।—ଣ, ଭ, ଝ, ଖ, ନ

ଅନେକ ପୃଚ୍ଛାକଲି କୋଳେଣ ବସାଇ
କାହାକଇଂ ପ୍ରଦାନ ଗୋ କରିବ ମହାମାଈ । ୩୦୩ ।
ମୋହୋର ବଚନେ ସେ ବାରତା ମୋତେ ପୃଚ୍ଛି
ଭୁବ ଭୁବନ ଭିତରେ ମୋତେ ସ୍ୱାମୀ କାହିଂ ଅଛୁ । ୩୦୪ ।
ତୁହି ମୋତେ ଭ୍ରାନ୍ତ କଂପେ କରୁ ହୋ ପ୍ରଜାପତି
ମୋହୋର ସ୍ୱାମୀକି ଦେଖିଲେ ମୁଂ ହୋଇବ ରଜୋବତୀ । ୩୦୫
ତାହାର ଉପଲକ୍ଷ୍ୟେ ମୁଂ ଗଲଇଂ ଅମର ସରଗେ
ଯଶୋବନ୍ତୀପୁରେ ମିଳିଲି ପିତାମହର ଆଗେ । ୩୦୬ ।
ପିତାମହର ସନ୍ଧ୍ୟା ସୁମରିବାର କାଳେ
ମୁହିଂ ଉଭା ହୋଇ ଅଛୁ ଆସ୍ଥାନର ତଳେ । ୩୦୭ ।
ନିତ୍ୟକର୍ମ ସାରିଣ ଯେ ଦେବ ବେଦପତି
ତାହାଂକର ଭୁବନ ଯେ ନାହିଂ ଅବାରିତି । ୩୦୮ ।
କାଞ୍ଚିତ ଅବଲୋକନେ ମୋତେ ଗୃହିଂଲେ ଦେବସ୍ୱାମୀ
ଆସ୍ଥାନର ତଳେ ମୁଂ ଶ୍ରୁଣିଲି ମରଣ ମି । ୩୦୯ ।
ଧାତା ବୋଇଲେ ମୋତେ ତୋର ଲୋଡା କିସ ଅରଥେ
ମୁଂ ବୋଇଲି କ୍ଷଣେ ଅବଧାନ ହୋଇବା ଜଗତର ତାତେ । ୩୧୦
ଦୋହିତା ଗୋଟିଏ ଜନ୍ମିଲା ତା ନାମ ଯେ ରେବତୀ
ଶୁକ୍ଳାମ୍ବର ପୁରୁଷକଇଂ ସେ ଚନ୍ତଇ ଅନୁବରତି । ୩୧୧ ।
ଶୁକ୍ଳାମ୍ବର ବଂଶେ ଜାତ କେଉଂ ନୃପତି ପ୍ରବର
ତାହାକଇଂ ପ୍ରଦାନ କରିବ ଦୋହିତା ମୋହୋର । ୩୧୨ ।
ପିତାମହ ବୋଇଲେ ତୁ ଯେ ଅଇଲୁ ଆମ୍ଭର ତହିଂ
ତୁମ୍ଭି ହୋଇ ଉଭା ହୋଇଲୁ ଆମ୍ଭନ୍ତ ନ କହି । ୩୧୩ ।
ସତ୍ୟଯୁଗେ ସତରଲକ୍ଷ ଅଠାଇଶ ଯୁଗ ଗଲା
ତ୍ରେତୟା ଯୁଗ ବାରଲକ୍ଷ ଛୟାଳୋଇ ସହସ୍ର ବରଷ ସରିଲା । ୩୧୪ ।
ତୁ ଯେତେବେଳେ ଆସି ଦର୍ଶନ କଲୁ ମୁକୁ
ଦୁଇଯୁଗ ଗଲାଣି ସେ ମୃତ୍ୟୁ ମଣ୍ଡଳକୁ । ୩୧୫ ।
ଆମ୍ଭନ୍ତ ସେ ନିତାକର ଅରଧ ହୋଇଅଛି
ଯେଉଂମାନଂକୁ ବରି ଲୋଡ଼ି ସେମାନେ ନୋହନ୍ତି କିଛି । ୩୧୬ ।

ସେ ଦୋହିତାର ପୁଣ୍ୟ ଅଟଇ ଯାହାର ହୋଇବ ଭାରଯା
ଯାହାକଇଂ ପ୍ରଦାନ କରିବୁ ଶୁଣସି ମହାରାଜା । ୩୧୭ ।
ମଥୁରାନଗ୍ର ବୋଲି ଯମୁନାନଦୀ ତଟେ
ଗୋପପୁର କୁଞ୍ଜବନ ବସଇ ତହିଂର ନିକଟେ । ୩୧୮ ।
ନନ୍ଦ ବୋଲି କରଣ ତହିଂର ମହାଶୂର
ଅଶିପଦ୍ମ ଗାଇ ତାର ଗୋପେ ସେ ଅଟଇ ଠାକୁର । ୩୧୯ ।
ଷୋଳସହସ୍ର ଗୋପାଳଂକର ଗାଇମାନ
ପଞ୍ଚକୋଶ ମାଡିଣ ସେ ଚରନ୍ତି ଗୋଧନ । ୩୨୦ ।
ପ୍ରଳୟ ଉତ୍ତ୍ରଣୀ ଆଦ୍ୟମାତା କପିଳା
କପିଳା ତହୁଂ ଉତପତ୍ତି ହୋଇଲା ବଉଳା । ୩୨୧ ।
ବଉଳାର ତହୁଂ ଜାତ ହୋଇଲା ଅବମୀ
ଯେହାଂକର ଦୋହିତା ଆଦ୍ୟ ସେ ଅଶ୍ଵିମୀ । ୩୨୨ ।
ଅଶ୍ଵିମୀର ଦୋହିତା ହୋଇଲା ସୁରଭି
ସୁରଭିର ତହୁଂ ଉପୁଜିଲା ନନ୍ଦମୀ ମହାଦେବୀ । ୩୨୩ ।
ଆହୋ ରଇବ୍ରତ କ୍ଷୀରସମୋଦ୍ର ଚନ୍ଦ୍ରବଂଶ ଲକ୍ଷ ଯୋଜନ
କ୍ଷୁଧାସ୍ୟେ ନନ୍ଦମୀ ତାହା କଲକ ଆପ୍ୟାନ । ୩୨୪ ।
ସେ ନନ୍ଦମୀର ଦୋହିତା କୃତ୍ତିକା ନାମବୋଲି
ଯେହାର ତହୁଂ ଉପୁଜିଲେ ଅଶୀପଦ୍ମ ଗାଇପନ୍ତି । ୩୨୫ ।
କୃତ୍ତିକାର ଜ୍ୟେଷ୍ଠ ଦୋହିତା ଅଟଇ ରୋହିଣୀ
ଯେହାର ତହୁଂ ଉପୁଜିଲେ ଜେନା ପୃଥୁନା ନାମେ ତାର ବେନି ଯେ ଭଯେଣୀ । ୩୨୬ ।
ରୋହିଣୀ ବୋଲିକରି ଯେଉଁଣ ଗାଇଗୋଟି
କ୍ଷୀର ସମୋଦ୍ର ଯେହାର ତହୁଂ ହୋଇଲାକ ବୃଷ୍ଟି । ୩୨୭ ।
ଯୁଗାନ୍ତ କଳପୀ ସେ ନ ଜାଣଇ ରାଜଦ୍ଦବା
ପ୍ରଳୟ ହୋଇଲେ ବୋଲଇ ଦ୍ଵିବସେକ ଗଲା ଅବା । ୩୨୮ ।
ଯହିଁକ୍ଷେଣ ପରବତ ଯେ ଯମୁନା ନଦୀକୂଳେ
ରୋହିଣୀ ଗାଇର ଜଳ ଆଧାର କଣବାର ହେଲେ । ୩୨୯ ।

---

୩୧୯।୨ ପଞ୍ଚକୋଶ ମାଡିଣ ରହଇ ଗୋଷ୍ଠ ସ୍ଥାନ (ଗୋବର୍ଦ୍ଧନ)
—ଟ, ଅ, ଜ

ଜଳ ଉପୁଡଆଇ ଆସଇ ଯେ୍ସୂକବନ୍ଦ
ଶୁଦ୍ଧ ସଫ୍ଟିକ ପ୍ରାଯ୍ୱେ ଦିଶଇ ଜାଣି କି ଇନ୍ଦୁ । ୩୩୦ ।
ପାଣି ପିଅନ୍ତେ ସେ ପଶିଲା ଦେଖାର ଗରଭେ
ନ ପାଇଣ ଉଦ୍ଦେଶ ସେ ରହିଲା ଗୋହ୍ଣୀ କୁଛ ଠାବେ । ୩୩୧ ।
ଭ୍ରମଇ ନନ୍ଦନ ଯେ ଗର୍ଭର ହ୍ରଦ କମଳେ
ଧାଞ୍ଚକାରେ ବାହାର ସେ ହୋଇଲା ବାମଡୋଳେ । ୩୩୨ ।
ଶୁକ୍ଳାମ୍ବର ଶରୀର ନରମଳ ତେଜ ଜାଣି
ପୁତ୍ର ଦେଖି ପ୍ରାଣତ୍ୟାଜ ହୋଇଲା ଗୋହ୍ଣୀ । ୩୩୩ ।
ଶୁଭ୍ର ସୁନ୍ଦର ସୁଲକ୍ଷଣ ସପତଫେଣୀ ମାଥେ
ମେହମା ଦଳଦଳିତ ସେ କୁମର ପାଦଶାତେ । ୩୩୪ ।
ନୟନ କଟାକ୍ଷେ ଯେ ପଳାଇଲେ ଗୋରୁପଲ
ସୁତକଇଂ ଆବୋରି ରହିଲା ସେ ଅଣାକାର ବଇଲ । ୩୩୫ ।
ଦେଖୁଂ ଦେଖୁଂ କୁମରର ବିକାଶିଲା ସରୁପ ଡୋଳା ବେନ
ଦେଖିଣ ଦିନକର ନାଥ ତେଜଗଲା ହାନ । ୩୩୬ ।
ଦକ୍ଷିଣ ନୟନ ବିରାଜଇ ସୂର୍ଯ୍ୟ ବାମ ନୟନ ଶଶୀ
ବାଳୁତ ନନ୍ଦନର ବେନ ଲୋଚନ ପରକାଶି । ୩୩୭ ।
ଗୋପେ ଗୋରୁ ବିହଡନ୍ତ ଧାଂଇଲେକ ନନ୍ଦ
କୁମାରକଇଂ ଦେଖି ନନ୍ଦରାଯ୍ୱେ ହୋଇଲେ ସାନନ୍ଦ । ୩୩୮ ।
ଅଦଭୁତ ନନ୍ଦନ ଯେ୍ସହା କେହୁ ଯେ ପ୍ରସବେ
ଦେଖିଲେ ମୃତ୍ତୁଗତ ହୋଇଛୁ ସେ ଗୋହ୍ଣୀ ନାମେ ଗାଭ୍ରୀ । ୩୩୯ ।
ଆକାଶର ବାଣୀ ଯେ ଶୁଭଇ ଗଗନୁ
ସମ୍ଭାଳ ହୋ ମହାଖୁଣ୍ଡ ଯେ୍ସ ନୋହଇ କାହାର ତନୁ । ୩୪୦ ।
ଅଦଭୁତ ବାଣୀ ଯହୁଂ ଶୁଣିଲା ନନ୍ଦ ମହାଖୁଣ୍ଡେ
ସେ ବାଳୁତ ନନ୍ଦନକଇଂ ଧରି ଲୋଡଇ କୋଡେ । ୩୪୧ ।

---

୩୩୩।୨ ପୁତ୍ର ତେଜ୍ୟାକର କେଣେ ଗଲାକ ଗୋହ୍ଣୀ (ଛ)

୩୪୦।୨ ସମ୍ଭାଳ ମହାଖୁଣ୍ଡ ଯେ୍ସ ବାଳୁତର ତନୁ ।—ଜ, ଓ, ଚ

ବାନ୍ତୁତ ନନ୍ଦନ ଗୋଟି ସେ ଅଛଇ ମହାଗରୁ
କାହାର ଦର୍ପେ ତୋଳ ପାରଇ ସେ ମେରୁ । ୩୪୨ ।
ନସ୍ୟନେଣ ବୃହାନ୍ତେ ସେ ନନ୍ଦଗଲେ ମୂର୍ଚ୍ଛା
ଉଠି ବସିଲା କୁମାର ଆପଣାର ଇଚ୍ଛା । ୩୪୩ ।
ଅମୃତ ଦୃଷ୍ଟିରେ ସେ ବୃହିଂଲେ କୁମରମଣି
ସାଷ୍ଟମ ହୋଇ ଉଠିଲେ ନନ୍ଦ ଯେ ରୋହିଣୀ । ୩୪୪ ।
ଗୋଗୋଷ୍ଠେ ଖେଳଇ ସେ ନ ଯାଇ କାହା ପୁରେ
ସନ୍ନିଧେ ଖଟିଛନ୍ତି ଯଶୋଦା ନନ୍ଦ ମହାଖଣ୍ଡେ । ୩୪୫ ।
ରୋହିଣୀ ବୋଇଲେ ମୋତେ ସଂକଟ କଲୁ ଉଦ୍ଧାରଣ
ତେଣୁ ତୋହୋର ନାମଗୋଟି ଆହ୍ମୁଂ ହୋଉ ସଂହିଷେଣ । ୩୪୬ ।
ନନ୍ଦ ବୋଇଲା ତୁ ମହାବଳୀ ପୁରୁଷ ଉତ୍ତମ
ଗୋଗୋଷ୍ଠ ମଧ୍ୟରେ ଜନମ ନାମ ତୋର ହେଉ ବଳରାମ । ୩୪୭ ।
ଯଶୋବନ୍ତୀ ବୋଇଲେ ତୋର ନିକଳଂକ ଶରୀର
ମୁହିଂ ତୋହାର ନାମଗୋଟି ଦେଲି ନୀଳାମ୍ବର । ୩୪୮ ।
ଗୋପାଳୁଣୀମାନେ ବୋଇଲେ ଉଜ୍ଜ୍ୱଳ ଶୁଦ୍ଧକାମ
ସେନେହେ ବୋଇଲେ କାମପାଳ ହୋଉ ତୋର ନାମ । ୩୪୯ ।
କଳାନ୍ତକ ବୋଲି ଯ୍ୟେକ ମଣ୍ଡଳ ଆଧିପତ
ଲଂଗଳେକ ଘେନ ଆସି ମିଳିଲା ବଳରାମ କତ । ୩୫୦ ।
ପଞ୍ଚବକ୍ତ୍ର ଦେଖିଣ ସେହୁ କୁମାର ହରଷେ
ସେ ଲଂଗଳ ବଳରାମ ଧଇଲେ ହରଷେ । ୩୫୧ ।

---

୩୪୨।୨ କାହାର ଦର୍ପେ ହୋ ଘୂଳତ ହୋଅଇ ମେରୁ ।—(ଣତ,ଟନ)

୩୪୨।୨ ତାହାର ବେଳେ ସେ ତୋଳ ପାରଇ ମେରୁ ।—(ଥ)

୩୪୯ { ଗୋପାଳୁଣୀମାନେ ବୋଇଲେ ତୁ ଜନ୍ମ ପୂର୍ଣ୍ଣକାମ
ସର୍ବ ଗୋପୀମାନେ ଦେଲୁଂ କାମପାଳ ନାମ ।—କ,ଣ

୩୫୦ { କଳାନ୍ତକ ବୋଲି ଯ୍ୟେକ ମଣ୍ଡଳ ଆଧିପତ
ଲଗଂଳେକ ଘେନଆସି ମିଳିଲା ବଳରାମ କତ ।—ଟ

ନରସିଂହ ପାଦ ଭାବେ ସେ ପରବତେ ଅଛୁ ଅମ୍ଭ
ତାହା ରୋଷେ ଉପାଡ଼ି ଧଇଲେ ବଳଦେବ । ୩୫୨ ।
ବାମେଣ ସମର୍ଥକ ବଜ୍ର ଲଂଗଳ ତାଡ଼ଣେ ସଜନନ୍ଦ
ଗୋଗୋଷ୍ଟେ ଖେଳନ୍ତି ସେ ଦେବ ରାମଚନ୍ଦ୍ର । ୩୫୩ ।
ଶୁ ହେ। ରଇବ୍ରତକ ଯେବେ ଯାଅସି ବନ୍ଧନ
ବଳରାମଙ୍କଇଂ ରେବତୀଙ୍କ କରଯା ପ୍ରଦାନ । ୩୫୪ ।
ରଇବ୍ରତକ ବୋଇଲା ସ୍ୱାମୀ ଶୁଣି ହେ ଇଲଇଂ ବଡ଼ାଇ ଆଶ୍ଚର୍ଯ୍ୟ
ଅଦଭୁତେ କାହ୍ନୁଂ ଉପୁଚଆଇଲା ସେହୁ ରାଜ । ୩୫୫ ।
ରୋହିଣୀ ଉଦରେ ସେ ରହିଲା କେମନ୍ତେ
ସୃଷ୍ଟି କରତାନାଥ କହିବା ହୋଇ ମୋତେ । ୩୫୬ ।
ଶୁଣ ହେ। ରଇବ୍ରତକ ବୋଲନ୍ତି ବିରଞ୍ଚି
ପୂର୍ବର ଭକତ ବାକ୍ୟେ ନରକାର ଯାହା ସଞ୍ଚି । ୩୫୭ ।
ଶ୍ରୀକୃଷ୍ଣ ଉତପତ୍ତି ଲଭିଲେ ମାନୁଷର ଯୋନି
ତେବେ ସେ ଦୁରନ୍ତକ ବଳେ ନୁଆରିବେ ତାହାଙ୍କଇଂ ଜିଣି । ୩୫୮ ।
ମୁନି ବୋଇଲେ ମନୁଷ୍ୟେ ତାହା ବୁଝିବେ କିଅଁତ ପରାୟେ
ନାରାୟଣ ତାହାଂକୁ ଧଂସିବେ ଉପାୟେ । ୩୫୯ ।
ନିରାକାର ବୋଲଣ ସେ ଯେବଣ ପୁରୁଷ
ସେ ମହାତମା ଅଟଇ ନିରାଲମ୍ବ ପୁରୁଷ । ୩୬୦ ।

---

୩୫୨ { ନୃସିଂଘ ଦୃଷ୍ଟର ବୋଲି ଗିରସ୍ୟେ ଆରମ୍ଭ
ତାହା ଉପାଡ଼ି ଧଇଲେ ବଳରାମ ଦେବ ।—ଖ,ଣ,ଜ,ନ

୩୫୫ { ଭଇବ୍ରତକ ବୋଇଲା ଦେବ ବଡ଼ାଇ ଦୁର୍ଲଭ
ଅଦଭୁତେ କାହ୍ନୁଂସେ ଉପୁଜିଲା ଦେବ ।—ଖ,ଣ

୩୫୬ { ସେ ରୋହିଣୀ କ ଉଦ୍ଦେଶ୍ୟ ହେଲା କେଉଂମତେ
ସେ କାମପାଳ ଉତପତ୍ତି କହିଦେବା ମୋତେ ।—ଣ,ନ,ଠ

୩୫୮ { ତେବେ ଦଇତ୍ୟ ନିବାରଣ ହୋଅନ୍ତି ମେଦିନୀ
ତେବେ ସେ ଦୁରନ୍ତକ ବଳେ ହୋଇବେ ଛିନ୍ନି ।—ଟ

ନୀରର ବିନ୍ଦୁରୁ ଯେ ଫେଣର ସମ୍ଭବ
ସେ ଫେଣରୁ ସମ୍ଭୂତ ହୋଇଲାକ ହାଦେ ଡିମ୍ବ । ୩୬୧ ।
ସେ ଅବ୍ୟକ୍ତ ଡିମ୍ବରୁ ଯେ ଉପୁଜିଲା ନିରାକାର
ଅବଶ୍ରାନ୍ତେ ଖେଳ ତାର ଜଳର ଭିତର । ୩୬୨ ।
କାଳ ଅନରୂପେ ଯୁଗ ଉଦ୍ଧାରଣେ
ନାନା ରୂପ ସେ ଧରଇ କ୍ଷଣେ କ୍ଷଣେ । ୩୬୩ ।
ସେ ନିରାକାର ପୁରୁଷ ଜଳେ ଖେଳୁଥିଲା
ଇଚ୍ଛା ଉଦେକରି ବ୍ରାହ୍ମଣୀ ଗର୍ଭେ ସେ ପଶିଲା । ୩୬୪ ।
ଯେ ତୋହୋର ଦୋହିତା ନାମ ଯେ ରେବତୀ
ମହାମାୟା ଅବତାର ସେ ଅନାଦି ଶକତି । ୩୬୫ ।
ନିରାକାର ନିରନ୍ତର ପୁରୁଷ ତାହାର ଉଦରେ
ତିନ୍ହିଂ ଉତପତ୍ତି ହୋଇଲେ ବ୍ରହ୍ମା ବିଷ୍ଣୁ ମହେଶ୍ୱରେ । ୩୬୬ ।
ସେ ଆଦି ଅପର୍ଣ୍ଣା ମନେ ସ୍ୱେଚ୍ଛା ଇଚ୍ଛା
ଜାତ ଅନ୍ତ କରାଇ ଯେ ମନେଣ ଯାହା ବାଞ୍ଛା । ୩୬୭ ।
ମାତାହ୍ନିଂ ହୋଅଇ କ୍ଷଣେ ଭାର୍ଯ୍ୟା ସେ ହୋଅଇ
କ୍ଷଣକେ କାଳିକାରୂପ କ୍ଷଣେ ଅଗ୍ନିରୂପେ ଦହି । ୩୬୮ ।
ଅନାଦି ମାହେଶ୍ୱରୀ ନିରଂଜନ ଦାସୀ
ଶୁକ୍ଳାମ୍ବର ପୁରୁଷକଇଂ ସେ କରିବ ଯେ ଇଚ୍ଛା । ୩୬୯ ।
ପାଇଲା ବଲ୍ଲଭ ଯେବେ ମନର ହିଆଳ
ସେ ନିଂକ୍ରିଷେଣକୁ ପ୍ରଦାନ କରି ଯା ତୋହୋର ଦୁଲାଳୀ । ୩୭୦ ।
ଭରଦ୍ୱାଜ ବୋଇଲା ସ୍ୱାମୀ ନାଗେ ଛନ୍ତି ତାର ମାଥେ
ଫୁଫୁକାର ଶବଦ ସେ କରନ୍ତି ନିରତେ । ୩୭୧ ।
ଯେ ମୋହୋର ନନ୍ଦିନୀ ଯେ ଅବଳା ଯୁଗତେ
ବାଞ୍ଛିତ ନନ୍ଦିନୀକି ମୁଂ ଦେବଇଂ କେମନ୍ତେ । ୩୭୨ ।
ସନ୍ନିଧିକଇଂ ଗଲେ ସେ ଭଟ୍ଟାରଂଗ କାଳେ
ନ ପୁଣ ଦୋହିତାକଇଂ ମୋର ଡଂସନ୍ତି ମହାବ୍ୟାଳେ । ୩୭୩ ।
ଶୁଣ ହେ ଭରଦ୍ୱାଜ ବଦଯନ୍ତି ଆଦିଗୁରୁ
ସେ ସପତ ଫଣାକଇଂ ତୁ କମ୍ପେ ଭୟକରୁ । ୩୭୪ ।

ବିଶାଳଚନ୍ଦ୍ର ମଣିକର୍ଣ୍ଣିକା ରୁଦ୍ର ଶତ ଅବଧ
ଯେ ସପତ ମନୁଯେ ସଞ୍ଚରନ୍ତି ଯୁଗ ଅବଧ । ୩୭୫ ।
ଯେହାଙ୍କର ଉତପତ୍ତି ନ ଜାଣନ୍ତି କେହି
ଯେ ସପତ ମନୁ ପୁରୁଷେ ହୋଇଲେ ଜଳଶାୟୀ । ୩୭୬ ।
ସମୟେକେ ଗଲେ ସେହି ସାର ବଇକୁଣ୍ଠେ
ଯାଇଣ ଭେଟିଲେ ପାତାଳ ବାସୀଙ୍କ ନିକଟେ । ୩୭୭ ।
ମହାପ୍ରଳୟେ ନର୍ଣ୍ଣେ ହୋଅନ୍ତି ଭୂଧ ଅର୍କେ
ଜଳେ ବିହରନ୍ତି ସେ ସପତ ନାଗଲୋକେ । ୩୭୮ ।
ଦେବତାଙ୍କେ ନନ୍ଦେ ହୁଅନ୍ତି ସେ ଜଳେ ଥାନ୍ତି ଅସ୍ଥି
ପରମ ନବାକୁଳ ଉଡଂଗ ଶନ ଦେହୀ । ୩୭ ।
ଯେଉଂଣ ବଇକୁଣ୍ଠ ଅଣାକାର ପୁରୁଷ ସ୍ଥିରୁ
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ପବନ କେହି ପଶିତ ନୁଆରୁ । ୩୮୦ ।
ସେ ଭୁବନକଇଂ ଦେଖିବାକୁ ଚିନ୍ତେ ହୋଇଲେ ସକଳ
ଦେଖିଲେ ବିଷ୍ଣୁ ଭୁବନ ଅଧିକେ ବଳବନ୍ତ । ୩୮ ।
କୂର୍ମେକ ନାମେଣ ତହିଂ ଅଛଇ ଗରୁଡ
ଅଶୀ ଅଶୀ ଯୋଜନ ବିସ୍ତାର ତା କେଞ୍ଚ ପଛର ନାହୁଡ । ୩୮୨ ।
ସେ ଗରୁଡ ବାହାର ହୋଇଲା ଯତନେ ବେଳେ
ଭୟେଣ ସମ୍ଭାଇଲେ ଅହିୟେ ପାତାଳର ଜଳେ । ୩୮୩ ।
ସେ ନିରଞ୍ଜନ ପୁରୁଷ ତହିଂ ଜଳଶୟନ କରି
ଭୟେଣ ଶରଣ ଯାଇଂ ପଶିଲେ ତାହାଙ୍କରି । ୩୮୪ ।

---

୩୭୮।୨ "ଜଳେ ବିହରନ୍ତି ସେ ସପତ ନାଗଲୋକେ"
ପରେ 'ଣ' ପୋଥିରେ ଭିନ୍ନପାଠ :—
ସକଳ ଦେବତାମାନେ ହୋଇଲେ ଏକ ମେଳ
ସେ ଭୁବନ ଦେଖିବାକୁ ଗଲେକ ସକଳ
ଦେଖିଲେ ବିଷ୍ଣୁର ଭୁବନ ବଳବନ୍ତ
ରହିବାକୁ କେହି ତହିଂ ନୋହିଲେ ଶକତ ।

୩୮୩।୧ ଭୟେଣ ସମ୍ଭାଇଲେ ଅହିୟେ ପାତାଳ ଅଗ୍ନି ଜଳେ ।—କ, ଡ

ସେ ସପତ ମନୁ ସର୍ପଙ୍କଇଂ ଦେଖିଣ ମୀଳାମ୍ବର
ବୋଇଲେ କେବଣ ପୁଣ୍ୟେ ତୁମ୍ଭେ ଅଇଲ ଏଥେଦୂର । ୩୮୫ ।
ହେ ସ୍ୱାମୀ ଆମ୍ଭନ୍ତ କଷ୍ଟାକ୍ରୁଅଛୁ ଖଗେଶ୍ୱର
ଶରଣ ରକ୍ଷଣ ନାଥ ଆମ୍ଭନ୍ତ ବାରେ ରକ୍ଷାକର । ୩୮୬ ।
ଶୁଣିଣ ପରମାନନ୍ଦ ମନେ କଲେ ବଡ ଦୟା
ସେ ସପତ ମନୁ ସର୍ପେ ଗୋପ୍ୟାନ କଲେ ନିଜ କାୟା । ୩୮୭ ।
ସେ ସପତ ସର୍ପଙ୍କଇଂ ସଂହରିଲେ ଅଭୟେ କାୟେ ଜାଣି
ମଣ୍ଡଳ ଉଦେକଲେ ସେ ସପତ ଯେ ଫେଣୀ । ୩୮୮ ।
ରାମର ଶରୀର ସେ ଅଟଇ ଅଭିନ୍ନ
ଦେଖିଣ ଶାନ୍ତ ଭଜଲେ ବିନତା ନନ୍ଦନ । ୩୮୯ ।
ତୁ ଯେ ପୁଚ୍ଛାକଲୁ ହୋ ରଇବ୍ରତକ ରାୟେ
ସେ ସପତ ମନୁ ପୁରୁଷ ଯେ ମୀଳାମ୍ବର କାୟେ । ୩୯୦ ।
ତୁ ଯେବେ ବଡଭାଗ୍ୟ ଅର୍ଜିଲୁ ନରପତି
ସେ ବଳରାମଙ୍କଇଂ ପ୍ରଦାନ କରଯା ରେବତି । ୩୯୧ ।
ବିନୟଭାବ ହୋଇଣ ରଇବ୍ରତ ପିତାଂକୁ ବୋଇଲେ
ସେ କାମପାଳର ମାତା ପିତା କେଣ୍ଟି ହୋଇଲେ । ୩୯୨ ।
ଧାତାୟେ ବୋଇଲେ ସେ ପୂର୍ବର ବରଦାୟେ
ନନ୍ଦ ଯଶୋଦାୟେ ହୋଇଲେ ଯେ ପିତାମାୟେ । ୩୯୩ ।
ରଇବ୍ରତ ବୋଇଲେ ସ୍ୱାମୀ ଭେଟ କାହ୍ନିଂ ପୂର୍ବେ
ସେହାର ସନ୍ଧକଥା ମୋତେ କହିବା ଦେବ ସେବେ । ୩୯୪ ।
ବଦୟନ୍ତ ବେଦବର ମହାମନ୍ତ୍ର ଦୀକ୍ଷାଗୁରୁ
ଶୁଣ ହୋ ରଇବତ ତୁ ଯାହା ପୁଚ୍ଛାକରୁ । ୩୯୫ ।
ସପତମ ଅବତାରେ ଶ୍ରୀରାମ ମୂରତି
ଇକ୍ଷ୍ୱାକୁରୁ ବଂଶେ ଦଶରଥ ରାଜାଘରେ ହେଲେ ଜାତପତି । ୩୯୬ ।

---

୩୮୮।୧ ସେ ସପତ ନାଗଙ୍କଇଂ ଉଦ୍ଧାରିଲେ କାମପାଣି ।—ଣ,କ,ଠ,ନ

ରାବଣକଇଂ ବଧ ସେ କରିବା ନିମନ୍ତେ
କଳକାଳ ପୁରୁଷେ ସେ ପେଷିଲେ ବନସ୍ତେ । ୩୯୭ ।
ତେର ବରଷ ଭ୍ରମିରେ ଦଣ୍ଡକା ଅରଣ୍ୟ
ଜାନକୀଂକ ହରିନେଲା ବିଶ୍ରବାର ତନୁ । ୩୯୮ ।
ଶ୍ରୀରାମର ଉଦ୍ଦେଶେ ନ କଲା କିଛି ଶଂକା
ସୀତାଂକୁ ଗୋପ୍ୟକରି ଥୋଇଲା ନେଇ ଲଂକା । ୩୯୯ ।
ସୀତାକଇଂ ଖୋଜନ୍ତେଣ ଶ୍ରୀରାମ କ୍ଷୁଧାର୍ଥୀ
ଗୋଧନ ପଲ ଗୋଟିଏ ଠାବକଲେ ସଙ୍ଗମିହୀ ।୪୦୦ ।
ବିଭେକ୍ଷିତ ହୋଇଣ ସେ ମାଗନ୍ତେଣ କ୍ଷୀର
ମାର ମାର ବୋଲନ୍ତି ଲକ୍ଷ୍ମଣକଇଂ ବୋଲନ୍ତି ଗଉଡ । ୪୦୧ ।
ଦଇବେଣ ଅନ୍ଧ ସେ ଯେ ନାହିଂ ତାର ଚକ୍ଷୁ
ବୋଇଲା ଦୁଧ ଯେବେ ଦେବା କିସ ଧନ ଆଣିଅଛୁ । ୪୦୨ ।
ମହାଯଜ୍ଞ୍ୟଂ ଜାତ ଅମୁଲ୍ଯ ରତ୍ନମୁଦ
ଲକ୍ଷ୍ମଣ ବୋଇଲେ ବିଅରିଣ ପ୍ରବୋଧି । ୪୦୩ ।
ଯେନ ରେ ଗୋପାଳ ଯେ ଅମୁଲ୍ଯ ରତ୍ନ ମୁଦଗୋଟି
ଯେହା ନେଇ ଆମ୍ଭନ୍ତ ଦିଅ ଦୁଧପୁଟି । ୪୦୪ ।
ମୁଦ୍ର ଘେନ କରିଣ ଭିନକରକ ଦୁଧ ଦିଲେ
କ୍ଷୁଧା ତେଜି ଶ୍ରୀରାମ ଉଷତ ହୋଇଲେ । ୪୦୫ ।
ପଞ୍ଚକୋଟି ରତ୍ନ ଯେଉଂଣ ମୁଦ୍ରେ ଅଛି ଲାଗି
ମୂର୍ଖ ଗଉଡାଏ ଲେଉନ୍ତି ତାହା ଭାଂଗି । ୪୦୬ ।

---

୩୯୭।୨ ଅସ୍ତ୍ରକରି ପୁରୁଷେ ସେ ପେଷିଲେ ବନସ୍ତେ । -ଅ

୩୯୮ { ତେର ବରଷ ବୁଲିଲେ ଗହନ କାନନେ
ଜାନକୀ ହରିନେଲା ବିଶ୍ରବାର ନ ନେ । -- ଘ, ଖ, ଣ, ନ, ଛ

୪୦୩ { ମହାଯଜ୍ଞ୍ୟଂଜାତ ଅମୂଲ୍ୟ ରତ୍ନମଣି
ଲକ୍ଷଣ ବୋଇଲେ ମୁହିଂ ମୁଦ୍ର ଅଛି ଆଣି ।—ଣ, ତ, ଝ

୪୦୫ ମୁଦ୍ର ଘେନ କରିଣ କରକେ ଦୁଧ ଦିଲେ ।—ଛ, ତ ଘ ଅ, ଚ

୪୦୫।୧ କରକା=ମଠେଇ ପାତ୍ର ବିଶେଷ ।

ନାସିକାଯ୍ୟେ ଶୁଂଘନ୍ତି ନୁହଇ ତ ଗଂଧ
ଜିହ୍ୱାଇଣ ବୋଲନ୍ତି ନାହିଂ ତ ଯେଥେ ସ୍ୱାଦ । ୪୦୭ ।
କର୍ଣ୍ଣର କଣ୍ଠରେ ଯେ ବାବନ୍ତି ତାହା ନେଇ
ଶବ୍ଦ ନାହିଂ ବୋଲ ତାହା ହାତେ ଦଲେ ଫୋପଡାଇ । ୪୦୮ ।
କେ ବୋଲଇ ଶରୀର ଯେ ନିର୍ମଳ ଦଶଇ
ପାଣିକ ଫିଙ୍ଗିଦଅ ଯେଥେ କିଛି କାର୍ଯ୍ୟ ନାହିଂ । ୪୦୯ ।
ଅଂଧ ଗାପାଳ ଭାରଯା ନାମ ଯଶୋବନ୍ତୀ
ଯତ୍ନ କର ତାହା ଥୋଇଲାକ ମହାସନ୍ତ । ୪୧୦ ।
ଶରୀର ସୁସ୍ଥ କରି ଶ୍ରୀରାମ ଭୁଞ୍ଜିଲେକ ଦୁଧ
ଅମୂଲ୍ୟ ରତ୍ନମୁଦ୍ରିକ ନ କଲେ କିଛି ସଧ । ୪୧୧ ।
ଲକ୍ଷ୍ମଣ ବୋଇଲେ ସ୍ୱାମୀ ଯେ ଗୋପାଳ ମୋଢାଯ୍ୟେ
ମହାମର୍ଦ୍ଦନ ମଣିକ ଦଲେ କ୍ଷୀର ପୁଷ୍ଟିଯ୍ୟେ । ୪୧୨ ।
ଶ୍ରୀରାମ ବୋଇଲେ ବାବୁ ଯାଇକନା ସେ ଆଯ୍ୟେ
ସେ କ୍ଷୀର ପରସାଦୁଂ ପାଇଲୁ ଆମ୍ଭେ କାଯ୍ୟେ । ୪୧୩ ।
ଲକ୍ଷ୍ମଣକଇଂ ବୁଝାଇ ଚଳଲେ ରଘୁବୀର
ସେ ରତ୍ନମୁଦ୍ରିକ ଅବଧାନ ନ କଲେ ରାମ କିଛି । ୪୧୪ ।
ଆହୋ ରାବଣକଇଂ ବଧକରି ବାହୁଡବାର ବେଳେ
ବାହୁଡ ଭେଟିଲେ ରାମ ସେହି ସେ ଗୋପାଳେ । ୪୧୫ ।
ମାନସୀ ନଦୀତଟରେ ରାମ ସଂଧ୍ୟା ସୁମରନ୍ତି
ଲକ୍ଷ୍ମଣ ଆଗ୍ୟାଂ ଦଲେ ସୁଗ୍ରୀବର ନୃପତିଂକ । ୪୧୬ ।
କପିବଳନ୍ତ ଘେନ ଚଳ ହୋ ଦଣ୍ଡସାଇଂ
ଯେ ଗୋଧନ ପଲ୍ଲଯାକ ଘେନ ଅଯୋଧ୍ୟାକଇଂ ଓଡାଇଂ । ୪୧୭ ।
ଲକ୍ଷ୍ମଣ ବଚନେ ସୁଗ୍ରୀବର ଦଣ୍ଡ ଘେନ
ଗୋକୁଳ ଗୋଗୋଷ୍ଠକୁ ବେଢିଲେ ଗୋଲଂଜା ସଇନ । ୪୧୮ ।
ଓଡାବନ୍ତେ ଗୋକୁଳ କଲେ ବହୁତ ଦ୍ୱନ୍ଦ
ମହାଗୋଳ ଦେଖିଣ ଯେ ବୋଇଲେ ଶ୍ରୀରାମଚନ୍ଦ୍ର । ୪୧୯ ।

---

୪୧୮।୨ ଗୋକୁଳ ଗୋଗୋଷ୍ଠକୁ ବେଢିଲେ ଗୋଲଂଗୁଡ ସଇନ ।—ଜ, ଞ

ଲକ୍ଷ୍ମଣ ବୋଇଲେ ସ୍ୱାମୀ ଅଂଧ ଯେ ଗୋପାଳ ପଲ
ଛନକରକ ଦୁଧକୁ ଘେନଅଛୁ ରତ୍ନ ଯେ ଅମୂଲ୍ୟ । ୪୨୦ ।
ଶ୍ରୀରାମଚନ୍ଦ୍ର ହସିଲେ ଲକ୍ଷ୍ମଣ ବଚନେ
ତୋହୋର ବୁଦ୍ଧିରେ ଉପୁଗାର କରିବେ କା ଜନେ । ୪୨୧ ।
ସେ କ୍ଷୀର ଫୁଟିକ ଯେବେ ନ ଦଅନ୍ତା ତେତେବେଳେ
ସେ ସମ୍ପଦମାନ କାହିଂ ମୁଂ ଅରଜନ୍ତି ସ୍ୱେତେବେଳେ । ୪୨୨ ।
ଯାଅ ଯା ବାବୁ ହନୁମନ୍ତ ଗୋପାଳନ୍ତ ଆଣ ରାଇ
ସୁଖେଣ ଥାଆନ୍ତୁ ସେ ବନେ ଗୋଧନ ପଲ ଚରାଇ । ୪୨୩ ।
ସ୍ୱାମୀର ବଚନେ ଯେ ଚଳିଲା ମାରୁତି
ଓହୋକୁଲ ହନ୍ଦ ଯେ ହନୁମନ୍ତ ନବର୍ତ୍ତି । ୪୨୪ ।
ହନୁମନ୍ତ ବୋଇଲା ଆହୋ ଅନ୍ଧଗୋପାଳ ତୁ ଠାକୁରଂକୁ କରିବୁ ଦ୍ରୁଶନ
ସ୍ୱାମୀଂକ ଆଗ୍ୟାଂ ତୋତେ ତୁ ଆସସି ବନ୍ଦନ । ୪୨୫ ।
ଅନ୍ଧଗୋପାଳ ବୋଇଲା ସେ କେବଣ ଶ୍ରୀରାମ
ବାଳକ ନଶୋଧନ କଲା ସପତଶାଳା ଛେଦନ । ୪୨୬ ।
ଅନ୍ଧଗୋପାଳ ସାନନ୍ଦ ହୋଇଲା ତାହା ଶୁଣି
ଲକ୍ଷେଶ୍ୱର ଯୋଗାଡ଼ିଲା କ୍ଷୀର ଅଧାମ ଲବଣୀ । ୪୨୭ ।
ହନୁମନ୍ତ କର ଧରି ଆସଇ ସେ ଗୋପାଳ ଅନ୍ଧ
ବୋଇଲା ନକଟ ହୋଇଲେ ମୋତେ ଦେଖାଇବୁ ରଘୁକୁଳଚନ୍ଦ୍ର । ୪୨୮ ।
ଆହୋ ଅନ୍ଧଗୋପାଳ ପ୍ରଳମ୍ଭ ବେଗେ କର
ତୋତେ ଅବଧାନ ହୋଇଛନ୍ତି କୋଦଣ୍ଡ ଶୃପଧର । ୪୨୯ ।
ଅନ୍ଧ ବୋଇଲାକ ସ୍ୱାମୀ କଇଛାଂ ଜଗଜେଠୀ
ହଇଲୋକ ବନ୍ଦନ ନାଥ ତୋର ନାମଗୋଟି । ୪୩୦ ।
ଶୃଭବର ସୁନ୍ଦର ନାଥ ଭଗତ ମଙ୍ଗଳା
ମହୀ ଉଦ୍ଧାରଣ ପୁରୁଷ ତୁ ପ୍ରସନ୍ନେ ସର୍ବକଳା । ୪୩୧ ।
ରାଜୀବଲୋଚନ ସ୍ୱାମୀ ଶ୍ରୀରାମ ଗୋବିନ୍ଦ
ଶତସହ୍ରଦଣ୍ଡ ପ୍ରଳମ୍ଭ ହୋଇଲାକ ଅନ୍ଧ । ୪୩୨ ।

---

୪୨୨।୨ ଆହ କ ଜୀବନ ଥାନ୍ତା ମୋର ସ୍ୱେତେବେଳେ । — ଠ, ଣ, ନ, ଅ

ଦୁଖୀଜନ ଉଦ୍ଧାରଣ ନାଥ କେଉଂଣ କଷ୍ଟ ଅଛୁ
ବେନଭୁଜେ ଦରଣ୍ଡନ୍ତେ ଦର୍ଶିଲ୍ଲ ବେନ ଚକ୍ଷୁ । ୪୩୩ ।
ସୋମ ସତ୍ୟଯୁଗେ ସେ ଅନ୍ଧଗୋପାଳ ଅନ୍ଧ ହୋଇଥିଲା
ଶ୍ରୀରାମ ଦ୍ରୁଶନେ ତା ଅନ୍ଧପଟଳ ଫିଟିଲ୍ଲ । ୪।.୪ ।
ପଞ୍ଚସ୍ତ୍ରସ୍ତ୍ର ଯୁଗେ ସେ ପାଇଲ୍ଲ ଚକ୍ଷୁଦାନ
କରୁଣାକର ନାଥ ଯେ ହୋଇଲେ ପ୍ରସନ୍ନ । ୪୩୫ ।
ଯାବତ ଜୀବନ ତାବତ ଥିବ ସର୍ବସଞ୍ଜା
ପରଲୋକ ବଂଧୁ ତୁ ପ୍ରଳୟ କାଳ ବଞ୍ଚା । ୪୩୬ ।
ତ୍ରଇଲୋକ୍ୟ ବନ୍ଦନ ନାଥ ଯାହାର ନାମଗୋଟି
ପ୍ରସନ୍ନେଣ ଗୋପାଳର ଅନ୍ଧପଟଳ ଗଲାଫିଟି । ୪୩୭ ।
ଶତେ ସହସ୍ର ଦଣ୍ଡ ପ୍ରଳମ୍ବ କରଇ ଗୋପାଳ
ଦେଖଇ ରାମ ଲକ୍ଷ୍ମଣ ସୀତା ହରିରୁଷ ବଳ । ୪୩୮ ।
ଅନ୍ଧପଟଳ ଫିଟନ୍ତେ ଯେହ୍ନେ ସାନନ୍ଦ ହୁଅନ୍ତ ପ୍ରାଣୀ
ସଂସାର ଅନ୍ଧପଟଳ ଫିଟୁ ଶ୍ରୀରାମ ନାମ ଶୁଣି । ୪୩୯ ।
ପୁଣ୍ୟତୋୟା ସାଗର ଯେ ରାମାୟଣ ବାଣୀ
ଧନ ସଂପଦ ଲଭ ଜନେ ସଦବାକ୍ୟ ଶୁଣି । ୪୪୦ ।
କକୁହିଂ ପ୍ରସନ୍ନ ମୋତେ ଅଭୟେ ହିଂଗୁଳା
ଝଂକଖରପୁର ବାସିନୀ ଶ୍ରୀଚଣ୍ଡୀ ସାରୋଳା । ୪୪୧ ।
ବାଳୁତ ରୂପେ ଯାହାର ଖେଡ ମେରୁସ୍ଥଳେ
ଅଭୟେ କାନ୍ତାମା ଧ୍ୱଂସିଲ୍ଲ କଳକାଳେ । ୪୪୨ ।
ମମଶାପ୍ୟ ଉଦ୍ଧାରିଲ୍ଲ ଯେ ସୁଗ୍ୟାନ ଭାବ
ସର୍ବମଂଗଳା କରନ୍ତା ଶ୍ରୀସାରୋଳା ଚଣ୍ଡୀ ଦେବୀ । ୪୪୩ ।

---

୪୩୪।୧ ସେ ଅନ୍ଧଗୋପାଳ ସତ୍ୟଯୁଗେ ଅନ୍ଧ'ହୋଇଥିଲା ।—(ଖ,ଣ,ନ,ଜ)
୪୩୪।୧ ମନୁ ସତ୍ୟଯୁଗୁଂ ସତ୍ୟଯୁଗେ ଅନ୍ଧ ହୋଇଥିଲା ।—(ଫ)
୪୩୪।୧ ଋଷଭ ସତ୍ୟଯୁଗେ ସେ ଅନ୍ଧଗୋପାଳ
ସତ୍ୟଯୁଗେ ଅନ୍ଧ ହୋଇଥିଲା ।—(ତ)
୪୪୨।୨ ଅଭୟେବରଦାୟିନୀ ଦୁଖ ବିଧ୍ୱଂସିନୀ ସର୍ବକାଳେ ।—ଥ
୪୪୨।୨ ଅଭୟେବର ଦାୟିନୀ ଖେଡ କୃତ୍ହୋଳେ ।—ତ

ହେ ବୁଧଜନମାନେ ହୃଦଗତେ କର ଚନ୍ତା
ଯମଦଣ୍ଡ ଖଣ୍ଡଣ କରବେ ଅଭୟେ ବରଦାତା । ୪୪୪ ।
ପୂର୍ବଜନ୍ମ ଶାପରୁ ମୁଁ ଜନ୍ମିଲି ଶୂଦ୍ରଯୋନ
ତେଣୁକର ଭାବଲ ସେ ସାରେଲା ଦାସ ମୁନ । ୪୪୫ ।
ଶ୍ରୀରାମଚନ୍ଦ୍ର ବୋଇଲେ ହେ ଜୀବନ ତୋର ସାଧୁ ସାଧୁ
ଯେ ରାମ ଅବତାରକୁ ଭୁଜିବ ସେ ପ୍ରାଣବନ୍ଧୁ । ୪୪୬ ।
ତୁ ଯେବେ ମୁଦ୍ଧ ହେନ ନ ଦ୍ୟନ୍ତୁ କ୍ଷୀର ଫୁଟି
କାହୁଁ ଉଦେ ହୁଅନ୍ତା ଶ୍ରୀରାମ ନାମଗୋଟି । ୪୪୭ ।
ତୋହୋର ଉପୁଗାର ମୁଁ କହିବ କସ ହୁଦେ
ଦଶରଥ ରାଜା ତୋତେ ନୁହନ୍ତି ସମ ହାଦେ । ୪୪୮ ।
ଆଜହୁଁ ଭୁଜିବ ସେ ଅଟୁ ମୋହୋର ଧର୍ମ ପିତା
ଯେ ତୋହୋର ଘରଣୀ ମୋହୋର ନଜ ମାତା । ୪୪୯ ।
ତୋହୋର କ୍ଷୀର ଭକ୍ଷି ମୁଁ ହୋଇଲ ମହାବଳୀ
କଞ୍ଚିତ ମାତ୍ରକେ ମୁଁ ବନ୍ଧିଲ ସପ୍ତଶାଳା । ୪୫୦ ।
ଲକ୍ଷେକ ସିଂହର ପ୍ରାକ୍ରମ ଅଟଇ ଯେଉଂଣ ବାଳୀ
ତୋହୋର ପ୍ରାସାଦେଣ ମୁଁ ତାହାକଇଂ ମର୍ଦ୍ଧିଲି । ୪୫୧ ।
ତୋହୋର ପରସାଦେ ମୁଁ ବାନ୍ଧିଲଇଂ ବାରିନିଧି
ରାକ୍ଷସବଳ ଧ୍ୱଂସିଲ ତୋହୋର ଦୁଧ ମୋତେ ପରମ ମହୋଷଧି । ୪୫୨ ।
ତୋହୋର ପ୍ରବନ୍ଧେ ପ୍ରାପତ ମୋତେ ସୀତା ମହାସତୀ
ବାହୁଡି ଅଯୋଧ୍ୟାରେ ମୁଁ ହୋଇବି ଯେକଛତ୍ରୀ । ୪୫୩ ।

---

୪୪୪।୨ ଯମଦଣ୍ଡ ଖଣ୍ଡନ କରଇ କଳିକଲପ କରନ୍ତା ।—ଘ, ଜ, ଗ, କ

୪୪୪।୨ ଯମଦଣ୍ଡ ଖଣ୍ଡନ କରଇ ଅକଳିତ ପାପକୁ ତରନ୍ତା ।—ଚ

୪୪୬।୨ ଅକ୍ଷୟେ ଅବତାରେ ଭୁଜିବ ସେ ପ୍ରାଣବନ୍ଧୁ ।—ଣ, ଠ, ନ, ଡ

୪୪୮।୧ କ୍ଷୀର ଫୁଟିଯେ ଯେଣୁ ଦେଲୁ ମୋତେ ହାଦେ ।—ଖ, ଣ, ଡ, ନ

୪୫୧।୧ ତୋହୋର ପ୍ରସାଦେଣ ମୁଁ ତାହାକଇଂ ମର୍ଦ୍ଦିଲି ।—ଘ, ଝ

କହୁଂ କହୁଂ ସ୍ୱାମୀ ସାନନ୍ଦେ କର୍ମିଲେ ଶ୍ରୀରାମ
ଅନ୍ଧ ଗୋପାଳକଇଂ କର ଲୋଡନ୍ତି ପ୍ରଣାମ । ୪୫୪ ।
ଆମ୍ଭେ ବର୍ଣ୍ଣିଲୁଂ ଶ୍ରୀରାମ ହୃଦ କଥା
ଆକାଶରୁ ବାଣୀ ହେଲେ ସକଳ ଦେବତା । ୪୫୫ ।
ତୁ ଯେବେ ପ୍ରଣପତ୍ୟ ହୋଇ ଲେଉଡୁ ରଘୁପତି
ପିତାମହ ସମାନେ ଯେବେ ଧଇଲୁ ହୃଦଗତି । ୪୫୬ ।
ଦ୍ୱାପର ଯୁଗରେ ତୁ କହ୍ନା ଅବତାରେ
ସେହୁ ନନ୍ଦ ଗୋପାଳ ନାମ ହୋଇଥିବ ଗୋପପୁରେ । ୪୫୭ ।
ବସୁଦେବ ତୋତେ ପାଲଟ କରିବ କଂସ ଡରେ
ଗୋଗୋଷ୍ଠେ ବଢ଼ିବୁ ତୁ ଗୋପାଳଂକ ମେଳରେ । ୪୫୮ ।
ସେହୁ ନନ୍ଦ ମହାଖଣ୍ଡି ହୋଇବ ତୋର ପିତା
ସେହୁହାର ଭାରଯା ଯଶୋବନ୍ତୀ ହୋଇବ ତୋର ମାତା । ୪୫୯ ।
କ୍ଷୀରପାନେ ଯେବେ ତୋର ସେହୁତେକ ପୀରତି
ଅନେକ ଗୋରସ ଭୋଜ ତୁ କରୁଥିବୁ ନିତି ନିତି । ୪୬୦ ।
ତୁ ଯେ ବୋଇଲୁ ମୁହିଂ ତୋହୋର ପ୍ରସନ୍ନେ ପାଇଲି ସୀତା
ଅବଚ୍ଛନ୍ନେ ରମଣ କର ତୁ ଷୋଳ ସହସ୍ର ବନିତା । ୪୬୧ ।
ଶୁଣ ହୋ ରଇବ୍ରତ ବଦସୁନ୍ତ ବେଦବର
ସେହୁତେ କଥା ହୋଇଲାନ ତୋର ସ୍ୱର୍ଗକଇଂ ଅଇଲାର । ୪୬୨ ।
ରୁଦ୍ର ହେଲେ ଅବତାର ସଂକ୍ରିଷଣ ସରୂପ
ତୁ ଯାହା ପୁଛାକଲୁ ତା' କହିଲୁ ସଂକ୍ଷେପ । ୪୬୩ ।
ଶୁଣିଣ ଅନେକ ସାନନ୍ଦ ହୋଇଲା ରଇବ୍ରତକ ନୃପତି
ଆକାଶ ତେଜିଣ ରାଜା ଅଇଲା ତତକ୍ଷଣାନ୍ତ । ୪୬୪ ।
ରେବତୀକଇଂ ଘେନ ସେ ଗଲାକ ଗୋଗୋଷ୍ଠେ
ଦେଖଇ ଗୋପନଗ୍ର ଯମୁନା ନଦୀ ତଟେ । ୪୬୫ ।
ପଞ୍ଚ କୋଶ ମାଡଣ ଯେ ନଗ୍ରର ଆଯୁତନ
ସ୍ୱର୍ଗର ଇନ୍ଦ୍ରପ୍ରାୟୁ ବହଡନ୍ତି ଗୋପାଳମାନ । ୪୬୬ ।

---

୪୬୬। * ଗନ୍ଧର୍ବ ପ୍ରାୟେ ବହଡନ୍ତି ଗୋପୀ ଗୋପାଳମାନ । — ଗ, ଠ, ନ, ତ

ଶ୍ରୀବଳରାମଂକ ସରୂପ ସେ ଦେଖିଲେକ ରଇବ୍ରତ
ସୁବେଳେ ପ୍ରଦାନ ନେଇ କଲେକ ଦୁହିତ । ୪୭୭ ।
ଶୁଣ ବାବୁ ଧର୍ମରାଜା ପାଣ୍ଡବ ଯୁଧିଷ୍ଠି
ଶ୍ରୀବଳରାମକଇଂ ଦେଲଇଂ ମୁଂ ରେବତୀ କନ୍ୟାଗୋଟି । ୪୭୮ ।
କନ୍ୟା ସମର୍ପିଲା ଯେହ୍ନେ ରଇବ୍ରତ ପର୍ବତେ
ମହାଯୋଗନିଦ୍ରା ମୁଂ ବଞ୍ଚିଲି କାଳଯେତେ । ୪୭୯ ।
ରେବତୀଂକ ପିଅର ବଳରାମଂକର ଶ୍ୱଶୁରାନ୍ତ
ଧର୍ମର ନନ୍ଦନ ଶୁଣି ହୋଇଲେ ବିନୟ ଭଗତ । ୪୮୦ ।
। ୧୧୦୬୫ ।

—o—

---

୪୮୦ { ରେବତୀଂକ ପିଅର ମୁଂ ବଳରାମଂକ ଶ୍ୱଶୁର
ଧର୍ମର ନନ୍ଦନ ଶୁଣି ହୋଇଲେ ଭଗତ ଅପାର ।

## ଭୀମର ବନରେ ବିହାର
## ଓ
## କାଳଞ୍ଜି ରାକ୍ଷସୀ ସହିତ ଗନ୍ଧର୍ବ ବିବାହ

ରଇବ୍ରତ ପର୍ବତୁଂ ଚଳିଲେ ପଞ୍ଚ ଭାଇରେ
ପ୍ରବେଶ ହୋଇଲେ ଯାଇଂ କାଳଞ୍ଜି ବନସ୍ତରେ । ୧ ।
ବହଇ ଧବଳାଂଗୀ କାଳନ୍ଦୀ ନାମେ ନଦୀ
ଦକ୍ଷିଣ ଭାଗେ ଶରଣଭଦ୍ରା ନଦୀ ଭେଦ । ୨ ।
କାଳନ୍ଦୀ ନଦୀ ତୀରେ କାଳେବର ନାମେ ବନ
ଯେହୁଁଥେ ସେ ଉତପତ୍ତି ହୋଇଲା କାଳ ଯେ ଦମନ । ୩ ।
କାଳଞ୍ଜି ବୋଲକରି ଯେହୁକଇ ଅପସରୀ
କାଳଚକ୍ର ବିପ୍ରଭୁଲେ ସେ ହୋଇଲା ରତକାରୀ । ୪ ।
କୋପେଣ ଶାପ ସେ ଦିହିଲେ ବାସବ
ପରଦାରେଣୀ ତୁ ହୋଅସି ଠାବେ ଠାବ । ୫ ।
ତାହାର ବଂଶେଣ କାଳଞ୍ଜି ନାମେଣ ରାକ୍ଷସୀ
କାଳେବର ପରବତ ପରେ ସେହୁ ଅଛୁ ବସି । ୬ ।
ଭୀମସେନ ଯାଉଅଛୁ ବେଣ୍ଟି ଆହରେ
ଦେଖିଲା ଯୁବତୀ ସେ ମାନସୀ ଅବତାରେ । ୭ ।
ଅନଂଗ ଅବତାର ଦିଶଇ ମାରୁତି
ଭଜିଲା ରାକ୍ଷସୀ ଚିତ୍ତକଲା ଭ୍ରାନ୍ତି । ୮ ।
ସର୍ବ ଅଳଂକାର ଭୂଷଣ ତାର କାଯେ
ଦେଖିଣ ମୋହିତ ହୋଇଲା ପବନ ତନଯେ । ୯ ।
ଭୀମସେନ ବୋଇଲା ଆଯି ତୁ କାହାର କନ୍ତ
କେ ତୋହୋର ପିତାମାତା ତୁ କାହାର ଯୁବତୀ । ୧୦ ।

---

୭। ୮ ଅନଙ୍ଗ ସରୂପ ତୋହୋର ରୂପରାଶି ।—ଜ

ଅନଙ୍ଗ ଦର୍ପ ଧ୍ୱଂସିନୀ ଗୋ ତୋହୋର ତେଜ ପରକାଶି
ଯେ ରୂପ ଯଉବନ ଯେନ ତୋର କମର୍ଥେ ବଂ ବାସୀ । ୧୧ ।
ଶୁଣ ହେ ବୀରବର ବୋଲଇ ଶୁଭ୍ରକେଶୀ
ଯକ୍ଷଂର ନିମନ୍ତେ ମୁଂ ହୋଇଲି ବନବାସୀ । ୧୨ ।
ବୋଲଇ ରାକ୍ଷସୀ ମହେଶ୍ୱର ନନ୍ଦନ ଅମହେଶ୍ୱର ବୋଲି
ତାହାର ପୁତ୍ର ଜଟାସୁର ମୁଂ ତାହାର ଦୋହିତା ହୋଇଲି । ୧୩ ।
କେଶୀଦାନବ ଯେ ଅଟଇ ମୋର ଭାଇ
ବଶ ନୋହିଲ ମୁହିଂ ଇଚ୍ଛାବର ନଗାଇ । ୧୪ ।
ତୋତେ ଦେଖିଣ ଯେ ବଳିଲା ମୋର ଚିତ୍ତ
ମୁହିଂ ତୋହୋର ଭାରଯା ହୋଇଲି ତୁ ମୋହୋର ନିଜପତି । ୧୫ ।
ଚାଲ ଚାଲ ସ୍ୱାମୀ ତୋହୋର ଆଶ୍ରମକଇଂ ଯିବା
ବେଭାର ଯୁଗତେ ନାଥ ହୋଅସି ମୋତେ ବିଭା । ୧୬ ।
ଭୀମସେନ ବୋଲଇ ମୋହୋର ଭାରଯା ଦ୍ରୌପଦୀ
ତାହାର ବ୍ୟତିକେ ମୋର ନ ବଳେ ଆନେ ମତି । ୧୭ ।
ଅସୁରୀକ ବାକ୍ୟ କର୍ଣ୍ଣ ବାହୁଡଇ ବୃକୋଦର
ପଛେଣ ଦାନବୀ ଯେ ଗୋଡାଇ ସଂଗତର । ୧୮ ।
ଯୁଧିଷ୍ଠିର ଦ୍ରୌପଦୀ ଯେ ଆସ୍ରାନେ ଛନ୍ତି ବସି
ଭୀମସେନ ସନ୍ନିଧେ ହୋଏ ଆସି । ୧୯ ।
ପଛେଣ ଗୋଡାଇ ଅଛଇ ସେହୁ ଦୁରାପାଣି
ଯୁଧିଷ୍ଠିର ପୁଚ୍ଛାକଲେ ବାବୁ ଯେ କାହାର ଯୁବତୀ । ୨୦ ।
ଭୀମସେନ ବୋଇଲା ଯେ ବନର ଅଧିକାରୀ
ଜଟାସୁର ଦାନବ ଦେବ ପିଅର ଯେହାର । ୨୧ ।
ନାମ ସଂକେତ ଯେହାର ଅଟଇ କାଳଞ୍ଜି
ମୋତେ ଦେଖିଣ ଦେବ ଯେ ଗୋଡ଼ାଇ ଆସୁଅଛି । ୨୨ ।

---

୧୩।୧ ସମ୍ଭମ୍ବର ନନ୍ଦନ ଅମହେଶ୍ୱର ବୋଲି । - ଣ, ଛ
୧୩।୧ ମହିଷାସୁର ପୁତ୍ର ମହେଶ୍ୱର ବୋଲି ।—ଣ, ଠ, ଥ, ନ

ଯୁଧିଷ୍ଠିର ବୋଇଲେ ସେ ଯେବେ ବନର ଅଧିକାରୀ
ଥାଉ ସେବେ ସେ ବନସ୍ତେ ଇଚ୍ଛାଏ ବିହର । ୨୩ ।
ସେମନ୍ତର ସମୟେ ଅର୍ଜୁନ ନକୁଳ ସହଦେବ
ମୃଗଭାର ଘେନଣ ଯାଇଂ ବଜାଏ ଠାବ । ୨୪ ।
କାଳଞ୍ଜି ବୋଇଲା ତୁମ୍ଭେ ପାଞ୍ଚେ କ କ ହୋଅ
ଭୀମସେନ ବୋଇଲା ଆମ୍ଭେ ଏକ ପିଅର ପଞ୍ଚପୁଅ । ୨୫ ।
ରାକ୍ଷସୀ ବୋଇଲା ମୁହିଂ ତୁମ୍ଭର କଥା ପରମୁଖେ ଅଛୁ ଶୁଣି
ପାଞ୍ଚଂକର ହୋଇ କ ତୁମ୍ଭର ଏକଇ ଘରଣୀ । ୨୬ ।
ଲଜ ସଂକୋଚ କଂପେ ନ ପାଅ ଅଭିମାନ
ସେତେ ଧାର୍ମିକ ହୋଇ ଗୋଳକୁଣ୍ଡେ ନଅ ଦାନ । ୨୭ ।
ଗୃହଭ୍ରାଥ ଘେନ ଭୋଗ୍ୟକର ତୁ ମହାମ୍ବାଣୀ
ମୁହିଂ ସେ ଜଣକର ବାଞ୍ଛୟେ ହୋଇବନା ଘରଣୀ । ୨୮ ।
ପାଞ୍ଚେହେଂ ବସିଛନ୍ତି ମଉନବ୍ରତ ହୋଇ
ଦ୍ରୋପଦୀ ଭୟେକଲେ ଅସୁଖ ମୁଖ ଗୃହିଂ । ୨୯ ।
ଭୀମସେନ ବୋଇଲା ହେ କାହାର ଇଚ୍ଛା ଅଛି
କ୍ଷଣେକ ବଶୃର କହିବୁ ରହ ଗୋ କାଳଞ୍ଜି । ୩୦ ।
ଭୀମ ବୋଇଲା ମୁହିଂ ସେହାକୁ ପାରଇ ଅବା ଗଞ୍ଜି
ହିଡମ୍ବିକା ରାକ୍ଷସୀ ସେ ଭାରିଯା ମୋର ଅଛି । ୩୧ ।
ଆହେ ପରମ ପଣ୍ଡିତ ସୁନ୍ଦର ତୁ ଅଟୁରେ ବିବହି
ଦଇବେ ସେ ମିଳାଲ୍ଲ ଯେବେ ସେହାକୁହିଂ ଗଛ । ୩୨ ।
ଅର୍ଜୁନ ବୋଇଲା ମୋର ସୁଭଦ୍ରା ଘରଣୀ
ଯାହାର ଭ୍ରାଥ ଅସୁରକୁଳ ନଶୋଧନ ଦେବ ଚକ୍ରପାଣି । ୩୩ ।

---

୨୬।୧ ରାକ୍ଷସୀ ବୋଇଲା ମୁହିଂ ପରମେସୁଅଛୁ ଶୁଣି ।—କ, ଘ, ଝ
୨୬।୧ ରାକ୍ଷସୀ ବୋଇଲା ମୁହିଂ ଉପନେଶି ଅଛଇ ଶୁଣି ।—ଛ
୩୦।୨ ଜଣେ ବାଞ୍ଛକର ବରଲେ କାଳଞ୍ଜି ।—କ, ଜ, ଡ, ଥ, ଘ
୩୦।୨ ଜଣେ ଗଞ୍ଜ କର ବର ଲେ କାଳଞ୍ଜି ।—ଚ
୩୨।୧ ଦଇବେ ମିଳାଲ୍ଲ ତେବେ ସେହାକଇଂ ଲଞ୍ଜୁ ।—ଞ
୩୩।୨ ଅସୁରକୁଳ ନଶୋଧନ ନାମ ହାରମଣି ।—ଣ, ନ

ଜଳେ ଅନେଳେ କ ହୋଏ ଯେଜବାଠ
ଅସୁଖ ତୁଲେ କ ମୋହୋର ସଙ୍ଗ ଭେଟ । ୩୪ ।
ଭୀମସେନ ବୋଇଲା ତୁ ଶୁଣସି ନକୁଳ
ଯେ ମାଣିକିଅ ଗୋଟିକ ତୁ ନେଇଣ ସମ୍ଭାଳ । ୩୫ ।
ନକୁଳ ବୋଇଲା ମୁହିଂ ଅଟଇ ପରମ ଯତି
ଯେକା ଭରସାଙ୍କ ମୋର ଆନେ ନାହିଂ ମତି । ୩୬ ।
ଭୀମସେନ ବୋଇଲା ବାବୁ ଶୁଣରେ ସହଦେବ
ଆମ୍ଭନ୍ତ ଆଶ୍ରେକର ଯେ କ ନଷ୍ଟଳ ହୋଇବ । ୩୭ ।
ସହଦେବ ବୋଇଲେ ମୋର ଦ୍ରୌପଦୀ ବଲ୍ଲଭୀ
ତାହା ଚହୁଂ ଆନେ ମୋର ନାହିଂନ୍ତି ସମ୍ଭବ ! ୩୮ ।
ଭିନଂକର ନାସ୍ତି ଯେ ଶୁଣିଣ ବ୍ରିକୋଦର
ଧନସ୍ୱଭବେ ପୁଚ୍ଛାକଲା ସେ ଯୁଧିଷ୍ଠିର ଗୁମୁର । ୩୯ ।
ସ୍ୱାମୀ ବଂଶେ ନକଳଂକ ଯେ ଜଠାସୁର ଦୁଲାଳୀ
ତୁମ୍ଭେ ଦେବ ପାରିବ କ ଯେହାଂକୁ ସମ୍ଭାଳ । ୪୦ ।
ଯୁଧିଷ୍ଠିର ହେଠମାଥ ଭୀମର ବଚନ ଶୁଣି
କୋପେ ଭୀମସେନକୁ ପ୍ରତିବାକ୍ୟ ଦିଅନ୍ତ ଦ୍ରୌପଦୀ ଦୁଲଣୀ । ୪୧ ।
ତୁହେ ଭୀମସେନ ଅଟୁ ବଡ ମନ୍ଦ
ଯାବତ କାଳେ ତୋ ଚହୁଂ ସେ ଉପୁଜଇ ଦ୍ୱନ୍ଦ । ୪୨ ।
ଅସୁଖ ଗୋଠାଯେକ ତୁ ଆଣିଲୁ ଯାଇଂ କାହୁଂ
ସୁସ୍ଥ ହୋଇଅଛୁଂ ଯେବେ ଅସୁସ୍ଥ କରାଉ । ୪୩ ।
କର୍ମେ ଯେବେ ପାଇଲୁ ତୁହି ସେ ଧେନଅଛୁ
ଚନ୍ଦନ ବୃକ୍ଷକୁ କଂପେ କାଳସର୍ପ ଆଣିଅଛୁ । ୪୪ ।
କହୁଂ କହୁଂ କୋପଭର ହୋଇଲେ ପାଞ୍ଚାଳୀ
ଅନେକ ଭର୍ତ୍ସନା କରି ଭୀମକଇଂ ଦେଲେ ଗାଳି । ୪୫ ।

---

୪୦।୧ ସ୍ୱାମୀ ବଂଶେ ନକଳଂକ ଯେ ଜଠାସୁର ବାଳୀ ।—ବହୁପୋଥି ପାଠ

୪୨ { ଆଳେ କାଳିଞ୍ଜ ତୋତେ ନାହିଂକ କାହିଂ ପଥ ।—
କର୍ମାଇଂ ବସି ରୁ ସେଥି ଶୁଣୁଛୁ ଅମାଡ ।—ଣ, ନ

ଭୀମସେନ ବୋଇଲା ତୁମ୍ଭେ ଯାଅ ଯା କାଳଞ୍ଜି
ତୋହୋର ଯୋଗେ ମୁଂ ଯେବେ ଯେତେ ଅପଶ୍ରୁତ ପାଇଅଛୁ ।୪୬ ।
ଅସୁରୀ ବୋଇଲା ମୁଂ ଆବର କାହାଂକ ଯିବ
ତୁମ୍ଭ ତହୁଂ ଗୁଣବନ୍ତ ବଳବନ୍ତ ବଲ୍ଲଭ କାହୁଂ ମୁଂ ପାଇବ ।୪୭ ।
ତୁମ୍ଭେ ଅବା ପେଲି ପକାଅ ଲୋଡ଼ ମୋତେ
ପ୍ରାପତ ନିଧି ମୁହିଂ ଛାଡ଼ିବ କେମନ୍ତେ । ୪୮ ।
ଦ୍ରୌପଦୀଙ୍କ ବୋଲଇ ତୁ ଗୋ ତପୀଜନ୍ମ ହୋଇ
ତପୀଙ୍କର ବେଦନା ନ ଜାଣୁ କିସ ପାଇଂ । ୪୯ ।
ସ୍ୱାମୀର ବିହୁନେ ମୁଂ ହୋଇଛୁ ବଡ଼ଦୁଃଖୀ
ଦୟା କଂପେ ନ ବସଇ ଗୋ ମୋହୋର କଷ୍ଟ ଦେଖି । ୫୦ ।
ଦ୍ରୌପଦୀ ବୋଇଲା ତୁ ଗୋ ଅସୁରୀ ନିଲକ୍ଷଣୀ
ସୁଜନେ ସମ୍ଭୋଗ ଇଚ୍ଛାକରୁ ତୁ ନ ଜାଣି । ୫୧ ।
ଦ୍ରୌପଦୀ ବଚନେ ଯେ ବଢ଼ିଲା ତାର କୋପ
ଯଷ୍ଟି ପ୍ରହାରେ ଯେହ୍ନେ ଗର୍ଜଇ କାଳସର୍ପ । ୫୨ ।
ଯେୁକ ସ୍ତ୍ରିରୀକ ତୋହୋର ଅଛଇ ପଞ୍ଚ ପ୍ରତି
ଅଭ୍ୟାଗତ ପଡ଼ିଲେ ଗୋ ସମ୍ଭାଳିବା ନା ଯୁଗତି । ୫୩ ।
ଯେହ୍ନକ୍ଷଣି ମୁହିଂ ଭକ୍ଷପାନ କରିବଇଂ ତୋତେ
ଯେହ୍ନୁ ପାଞ୍ଚପୁରୁଷ ପ୍ରାପତ ହୋଇବାକ ମୋତେ । ୫୪ ।
ଯେତେବୋଲି କାୟା ବଢ଼ାଇଲା ଜଞ୍ଜାଳୀ
ତୁଣ୍ଡ ବିସ୍ତାରିଲା ସେ ସହସ୍ର ଯୋଜନ ଅଗୁଳି । ୫୫ ।
ଯୋଜନେ ଯୋଜନେ ବେନିବାହା ବଢ଼ାଇ କାମରୂପୀ
ଦ୍ରୌପଦୀ ଉପରକୁ ଦାନବୀ ପଡ଼ିଲାକ ଝେପି । ୫୬ ।
ଅସୁରୀ ଗୋଡ଼ାବନ୍ତେ ପଳାବନ୍ତି ଦ୍ରୌପଦୀ
ଭୟେଣ ଲୁଚିଲେ ଦେବୀ ଯୁଧିଷ୍ଠିରଙ୍କ ପଛକତି । ୫୭ ।
ଯୁଧିଷ୍ଠିରଙ୍କ ଦୁଇପାଖି ପକାଇଲା ପେଲି
ଦ୍ରୌପଦୀ ବୋଇଲେ ରଖ ରଖ ଧନୁର୍ଜୟେ ତୋହୋର ଶରଣ ମୁଂ
ଗଲି ।୫୮।

---

୫୭। ଭୟେଣ ଲୁଚିଲେ ଦେବୀ ଭୀମସେନ ପଛକତି ।—ବହୁପାଠ

ଧାଇଁଣ ଦ୍ରୋପଦୀଂକ ସେ ଅର୍ଜୁନ କଲା କୋଳ
ଆମ୍ଭନ୍ତ ଭେଟିଲୁ ଯେବେ ଆସି ତୋର କାର୍ଯ୍ୟ ହୋଇବ ସୁଫଳ । ୫୯ ।
ଯେମନ୍ତ ନାଶକର ତୁ ଅର୍ଜିବୁ କେଉଁଣ
ଦେବା ପଣ୍ଡଦାନ ତୋତେ ଆମ୍ଭର ବୋଲ ଶୁଣ । ୬୦ ।
ଅର୍ଜୁନ ବଚନେ ସେ ବୋଲଇ ଦୁରାଚାର
ଧର୍ମ ବଗୃରେ ଯେବେ ଯେହ୍ନେଲେକ ପ୍ରକୃତ । ୬୧ ।
ପୁରୁଷ କୁଳେ ହୀନ ତୁମ୍ଭେ ଅଟ ପାଞ୍ଚଭାଇ
ଯେକା ଭରଯାଉଁ ତୁମ୍ଭର ଆନ ଇଚ୍ଛା ନାହିଁ । ୬୨ ।
ଯେହ୍ନାକଇଁ ଭକ୍ଷିଲେ ହୋଇବ ମୁଂ ଯେକା ଘରଣୀ
ତୁମ୍ଭେ ପାଞ୍ଚହେଁ ହୋଇବ ମୋର ପ୍ରାଣମଣି । ୬୩ ।
ମୁହିଁ ଯେତେକ ବିଦ୍ୟାକର ଅଛଇ ଅଭ୍ୟାସ
ମୋ ତହୁଁ ଆନ କେହୁ ନ ଜାଣେ ରତିରସ । ୬୪ ।
ଚଉଷଠୀ ବନ୍ଧ ବିଦ୍ୟା ବାତ୍ସ୍ୟ ରତି ରଂଗକ୍ରୀଡ଼ା
ଅନ୍ତଅନ୍ତ ଭାବ ମୁଂ ଜାଣଇଂ ରସଖେଡ଼ା । ୬୫ ।
ଯେମନ୍ତ କର ତୁମ୍ଭନ୍ତ କରାଇବି ରତି
ମୋତେ ତେଜ କଂପା ତୁମ୍ଭେ ଯିବ ଆନର କତି । ୬୬ ।
ସ୍ତମ୍ଭନ ମୋହନ ଅଞ୍ଜନ ବଶ ଉଚାଟଣ
ପ୍ରେମ କୁତୂହଳ ଯେ ମାରଣ ଜାରଣ । ୬୭ ।
ନବୃତାନ୍ତ କର ଯେବେ କରାଇବ ରମଣି
ଶତେ ପୁରୁଷ ହୋଇଲେ କ ପାରବେ ମୋତେ ଜିଣି । ୬୮ ।
ପଞ୍ଚଭ୍ରଥା ଆବୋର ଲୋଡ଼େ ତୋର ଗର୍ବ
ବିହ୍ଵେଷିତ ହୋଇ କହିଲ ମୋତେ ଜଣେକହିଂ ନ ଦେବ । ୬୯ ।

---

୫୯।୨ ରହ ରହ ଅସୁରକ ବୋଲଇ ବାସବର ବାଳ ।—ତ
୫୯।୨ ରହ ରହ ବୋଲଣ ସେ ବୋଇଲେ ବୃକୋଦର ।—ଛ
୬୫।୨ ତୁମ୍ଭଂକୁ ସେବଣ ମୁଂହି ଛଡ଼ାଇବ ବ୍ରୀଡ଼ା ।—ଖ
୬୫।୨ ସ୍ନେହେ ତୁମ୍ଭଂକୁ ସେବଣ ଛଡ଼ାଇବ ବ୍ରୀଡ଼ା ।—ଙ, ଜ, ଠ
୬୬।୧ ଯେମନ୍ତ କଣ ତୁମ୍ଭନ୍ତ କରାଇବ ବେଶ୍ୟାବୃତ୍ତି ।—ଟ

ବନସୁଭବ ହୋଇଣ ଯେ ବଦ୍ଧଯୁନ୍ତ ପାଞ୍ଚାଳୀ
ଶାନ୍ତ ଭଜ ମାତ ଗୋ ନ ଦେବା ମୋତେ ଗାଳି । ୭୦ ।
ଛୋହୋର ବିକଟ ରୂପ ଦେଖି ମୁହିଂ ଭୟେକରି
ସବୁହୁଂ ବଳବନ୍ତା ଭୀମସେନକଇଂ ତୋତେ ଦେଲି । ୭୧ ।
ଶୁଣିଣ ସାନନ୍ଦ ଯେ ଜଟାସୁରର ଦୋହିତା
ପ୍ରଜାପତିର ଲେଖନ ମୋତେ ସେହି ସେ ପ୍ରାପତା । ୭୨ ।
ଦ୍ରୋପଦୀ ହରୁଚନ୍ତି ଯେ ଭୀମସେନର ଡରେ
ଭୟେଣ ଲୁଚଇ ଯାଇଂ ଅଗ୍ନିର ଭିତରେ । ୭୩ ।
ଦ୍ରୋପଦୀ ବୋଇଲେ ତୁମ୍ଭେ ଭୀମସେନେ ନେଲେ
କାହାର ହିଂସକା ନାହିଂ ଯେତ୍ର ଗୃହ ଭାଇରେ । ୭୪ ।
ଯେ ଯେବେ ଆଣିଲ ରାକ୍ଷସୀ ଯେହାକଇଂ ଖାଜ
ମତୁ ଦୁରନ୍ତକ ଶଲ ମୋର ଯାଜ । ୭୫ ।
ଗନ୍ଧର୍ବଯୋଗେ ବିଭା ହୋଇଲ ପାବନୀ
କାଳମେଘା ପରବତକୁ ଚଳଇ ତାକୁ ଘେନ । ୭୬ ।
ଯେକାନ୍ତେ ଦ୍ରୋପଦୀ ବୋଇଲେ ତୁ ଯେବେ ମୋହୋର ବଲ୍ଲଭ
ଭଂଜଣ ତୃରକର ତୁ ଯେହାର ମତ୍ତଗର୍ବ । ୭୭ ।
ପାଞ୍ଚାଳୀ ବଚନ ଅଲଂଘିତ ଶୀଘ୍ରତେ
ରାକ୍ଷସୀକି ଘେନ ପଶିଲ କାଳମେଘା ପରବତେ । ୭୮ ।
ଶୃଂଗାର ରଞ୍ଜିଲ ଭୀମ ସେ ଦାନବୀର ତୁଲେ
ସୂର୍ଯ୍ୟ କ୍ଷେତ୍ରେ କାମ ଦୃଢ଼କରି ଥକାଇଲେ । ୭୯ ।
ପବନ ଭଂଜାଇଲ ନେଇ ସେ ପାଟଣା ଶ୍ରାହତେ
ଧାତୁଲାଇ ଠେକିଲ ସେ ଶୁଶୁମୁନା ଜଲଟେ । ୮୦ ।
ଅନର୍ଗଳ କୋଠକ ନେଇ ସେ ବୁଡ଼ାଇଲ ଇନ୍ଦୁ
ବ୍ରହ୍ମଘରେ ଭେଦିଣ ଯେ ନ ଟଳିଲ ବିନ୍ଦୁ । ୮୧ ।

---

୮୦।୧ ଧାତୁ ଲୁଝିଲ ନେଇ ଶିଶୁମୁନା ପୀଠେ ।—ଖ, ନ

କ୍ରମେଣ କର କଷଣ ଟେକଇ ଅପର୍ଣ୍ଣା
ଶତ୍ରୁ ନବର୍ତ୍ତାଇ ଭାବ ନ ପାଇଲା ସେହ୍ନା । ୮୨ ।
ବାମ ଚରଣ କନଷ୍ଟ ଆଂଗୁଳରେ କାମ ଛନ୍ଦ
ବ୍ଵିଗୁଣ ଅକାଇଲା ପବନ ମେଳ ବାନ୍ଧ । ୮୩ ।
କାମେମା କଳଂକ ଛଡାଇଲା ନେଇ ଦୂରେ
ଥନ ଦନ୍ତ ରେଖନାକ ଟାଳିଲା କଟି ଗୃପିଲା ଗମ୍ଭୀରେ । ୮୪ ।
ମନ ବଚନ କର୍ତ୍ତବ୍ୟେ ଚଳୟେ ଉପେଖି
ଚେତନା ପୁରୁଷକଇଂ ସେ ସନ୍ନିଧେ ନ ଦେଖି । ୮୫ ।
ଅଭାବ କାମ ସେ ଯେ ଅଣାକାର ନାମ
ଉଜାଣି ପବନ ସେ ଶୃଂଗାର ଅବଶ୍ରାମ । ୮୬ ।
ମହାରନ୍ତ ଶାହ୍ଲାସ୍ତ୍ରେ ଜତା ସେ ପାଣ୍ଡବ ବୀର ଶ୍ରାମ
ଭଶ୍ୱଳଂଗ ଗର୍ବେ କରି ଟେକଲା ମହାତମ । ୮୭ ।
ପସ୍ଥାଣ ବୁଡାଇଲା ମସ୍ଥାଣ ବର୍ତ୍ତି ନାହ୍ନିଂ
ଶଶୀଘରେ ପବନ ହାବେ ଥକାଇବ ଅବା କାହ୍ନିଂ । ୮୮ ।
ତପନ ଉଦ୍ଧାନ ସେ କଲକ ପାବେନ
ତଳଲା ନବ୍ଵକୂଳେ ସେ ବୁଡଲା କାମିନୀ । ୮୯ ।
ଅସକତ ମନୁଆ ଯେ କହୁଥିଲା ଆଶ
ପବନ ନ ପାଇଣ ସେ ହୋଇଲା ନିରାଶ । ୯୦ ।
ବାହୁଡ ବକେକଲା ଯୋଗବଳ ବାଞ୍ଛା
ଡାକଇ ସୁନ୍ଦରୀ ଭୋଳାନାଥ କର ମୋତେ ରକ୍ଷା । ୯୧ ।
ଦୁସହ ସମରେ ମୋତେ ଜିଣିଲା ରାଉତ
ରଜ ଡାଳିଲା ସୁନ୍ଦରୀ ହୋଇଲା ଅସକତ । ୯୨ ।

---

୮୪।୨ ଅନ୍ତରୀର କଷନା କଟି ଗୃପିଲା ଗମ୍ଭୀରେ ।—(କ)
୯୦।୧ ଅଶକତ ତନୁ ଯେ କହୁ ଥିଲା ସାହସ ।—ଚ
୯୦।୧ ଠାବ ନ ପାଇଣ ସେ ହୋଇଲା ନିରାଶ ।—ଭ, ଟ, ଝ, ଜ

ଆଧାରେ ଶୃଙ୍ଗାରେ ଯେ ଅର୍ଦ୍ଧ ପୂର୍ଣ୍ଣ ଶ୍ୟାମା
ସମରେ ଅର୍ଦ୍ଧ ପୂର୍ଣ୍ଣ ଅଟଇ ଗାରିମା । ୯୩ ।
ଶୃଂଗାର ସମରେ ଯେ ତାଙ୍କୁ ହାରିଲା ସୁନ୍ଦରୀ
ଛାଡ଼ ଛାଡ଼ ବୋଲଣ ସେ ଶରଣ ଫୁକାରି । ୯୪ ।
ଦ୍ୱିଗୁଣ ପ୍ରତଗ୍ୟାଂ ସେ ପାଣ୍ଡବ ପାବନ
କରଇ ରତିରସ ଗାଢ଼ କରି ଯେନ । ୯୫ ।
ଆକ୍ରୋଷି ଧାତୁ ଯେ ନ ଛାଡ଼ଇ ପାବନ
ନ ସରଇ ଶୃଂଗାର ସେ ପ୍ରସରେ ଉପୁଣି । ୯୬ ।
ଉଦୟେ ଦିନକର ସେ ଗଗନ ବିହାରୀ
ଅସାଷ୍ଟମ ହୋଇଣ ସେ ଚଳିଲା ସୁନ୍ଦରୀ । ୯୭ ।
ସମସ୍ୟା ନ ପିଟଇ ଶରୀର ହୋଇଲା କାଲ
ଶରଣ ନ ରଖଇ ସେ ଭରଥ କୁଳ ମଲ୍ଲ । ୯୮ ।
ପରଭ ପରଜା ନ ସହେ ଗାଢ଼ବେଷେ କଦାଚିତେ
ସେ ଶୃଙ୍ଗାରେ ଯେ ଆଦିତ୍ୟ ଗଲେ ଅସ୍ତେ । ୯୯ ।
ଅଗ୍ନି ବୃଷ୍ଟି ହୋଇଲା ଗଲାକ ଭଗମୁଖେ
ଭୀମସେନ ଡାକ ଦିଅଇ ସମସ୍ୟା ନାହିଂ ମୁଖେ । ୧୦୦ ।
ଦୁଇ ଦିବସ ଦୁଇରାତ୍ର ହୋଇଲା ଯେତକଇ ଶୃଙ୍ଗାର
ନିଜଆତ୍ମା ଛାଡ଼ିଲା ସେ ଅସୁରୀ ଶରୀର । ୧୦୧ ।
ପ୍ରାଣ ବିସର୍ଜନ ଯତ୍ନଂ ହୋଇଲା କାମିନୀ
କାଳନ୍ଦୀ ନଦୀରେ ତାହା ମେଳିଲା ପାବେନ । ୧୦୨ ।
ଗଙ୍ଗାୟେ ସ୍ନାହାନ ସାରି ପ୍ରବେଶ ଆଶ୍ରମେ
ଦ୍ରୌପଦୀ ପଚ୍ଛରିଲେ ଭାରିଯା ଭୁଞ୍ଜିର କେମନ୍ତ
କଲ ହୋ ଭୀମେ । ୧୦୩ ।
ବୋଲଇ ଭୀମସେନ କଲଇଂ ଶୃଙ୍ଗାର ମୁଂ ପ୍ରତଗ୍ୟାଂ ତାର ଦେଖି
ପିଣ୍ଡ ଛାଡ଼ ପ୍ରାଣ ତାର ଗଲା ସଞ୍ଜୀବନୀ ପୁରୀକ । ୧୦୪ ।

---

୯୩।୨ ସମରେ ଛତ୍ରୀଂକର ସେ ଭାଂଗଇ ଗାରିମା ।—(ଝ, ତ)

କାଳଞ୍ଜ ବଦାରଣ କାଳେବର ବନଷଣ୍ଡ
ଅନର୍ଗଳ ସାରବର ଚେତନା ବଖଣ୍ଡା । ୧୦୫ ।

ହେ ବୁଧଜନେ ସେ୍ତ ଆରଣ୍ୟକ ପର୍ବ ଶୁଣ
ସେ୍ତ ବଧିରେ ସାଧି ପାରଲେ ଗିରଂକର ଦର୍ପ ଜଣ । ୧୦୬ ।

କନ୍ତୁନ୍ଦ୍ରଂ ସାଧିବ ମୁଂ ଦେବୀ ପ୍ରସନ୍ନ ହୋଇଲେ
ଶୂଦ୍ରମୁନ ସାରଳ ଦାସେ ଭକ୍ତ ଶାହାସ୍ତ୍ରେ ବୋଇଲେ । ୧୦୭ ।
ଜୟ ତୁ କାମସେଣୀ କାମରୂପୀ କାମାକ୍ଷୀ
ସେ୍ତ ଦୁରପଦ ପ୍ରତଗ୍ୟାଂକୁ ତୁମ୍ଭେ ସେ ମୋର ସାକ୍ଷୀ । ୧୦୮ ।
ନୋହଇ ପଣ୍ଡିତ ମୁଂ ନ ଜାଣଇଂ ଶାସ୍ତ୍ର
ସାଧନେ ବୋଧନେ ଯେ ଭାବଇଂ ହୃଦଗତ । ୧୦୯ ।
ଅଭସେ୍ତ ଅପର୍ଣ୍ଣା ଯେ ଜଙ୍ଗେରପୁରବାସୀ
ଯମଦଣ୍ଡ ଖଣ୍ଡଣ କର ମୋତେ ତବ ଭୁବନ ଦେସି । ୧୧୦ ।
ଶୀବର ସିଂହଦ୍ଵାରେ ଦ୍ଵାରପାଳ ମୁହିଂ ପୂର୍ବେ
କାଞ୍ଚିତ ପାତକେ ମୁଂ ମାନେବ ଜନ୍ମ ସେ୍ତବେ । ୧୧୧ ।
କନ୍ତୁଂ କପୃସେଣ ମୁଂ ପାଇଲି ଚେତନା
ହୃଦଗତେ ବକାଶି ଜଦେକ କାମନା । ୧୧୨ ।

---

୧୦୫।୨ ଆପଲ ବନ ଯେ ତାହ୍ନା ବରକତ ବଖଣ୍ଡା ।—ଘ

୧୦୫।୨ ଆପଲ ଯେ ବଞ୍ଚା ବକଚ ବଞ୍ଣ୍ଡା । (କ)
(ଆପଲ = ଆପଡ = ଆଗ୍ରମ)

୧୦୯।୨ ସାଧନେ ବୋଧନେ ଯେ ଭାବଇ ଭାଗବତ ।—କ, ଅ

୧୧୨।୨ ହୃଦଗତେ ଭାବଇ ରାମନାମ ସିନା ।—(ତ)

୧୧୨।୨ ହୃଦଗତେ ବକାଶୁଂ ମୋର ଶ୍ରୀରାମ ନ ମର ବାସନା ।—(ଛ)

ତାମସ ପ୍ରକୃତି ଅନ୍ତର କର ମନେ ଭାବେ
ଇତି ଶ୍ରୀ ମହାଭାରଥ ଆରଣ୍ୟକ ପର୍ବ ବଖାଣିଲ ପରସ୍ତାବେ । ୧୧୩ ।
ଶ୍ରୀ ମହାଭାରଥ ଯେ ଅମୃତ ରସ କଥା
ସଂସାର ବୋଧନେ ଯେ ପୁରାଣ ସଂହିତା । ୧୧୪ ।
ମାଳେନ୍ଦ୍ରୀ ସରୋବରରେ ଯେହ୍ନେ ଶତଦଳ ପଦ୍ମ ଫୁଟି
ଅନକୂଳ କାଳେ ଯେହ୍ନେ ଇନ୍ଦ୍ର କରଇ ବୃଷ୍ଟି । ୧୧୫ ।
ଶ୍ରବଣେ ଶୁଣିଣ ଯେ ହୃଦେ କରଇ ଗଣ୍ଠି
ଯମ ପାଶ ଛେଦନ ଯେ ସାଧନ ପୁଣ୍ୟଗୋଟି । ୧୧୬ ।
ବଧିର ଜଡ଼ା ଯେ ଅନ୍ଧ ଅପୁତ୍ରିକ
ଶୁଣନ୍ତେ ମୋକ୍ଷ ଗତି ଫିଟିବ ରୋଗ ଶୋକ । ୧୧୭ ।
ଶ୍ରୀଚଣ୍ଡୀ ସାରୋଳା ଦାସ ବାକ୍ୟ ଯେ ପ୍ରକାଶ
ବଦଯୁକ୍ତ ସାରୋଳା ଦାସ ଶ୍ରୀ ଚଣ୍ଡୀର ନିଜ ଦାସ । ୧୧୮ ।

। ୧୧୧୮୩ ।

—o—

---

୧୧୩।୨ ତାମସ ନିବୃତ୍ତି ଅତ୍ୟନ୍ତ କର ଭାବେ ।—(କ)

୧୧୩।୨ ତାମସ ନିବୃତ୍ତି କରି ମମହୃଦେ ଭାବେ ।—(ଡ)

# ଦୁର୍ବାସା ଚରିତ

ଏଥୁ ଅନନ୍ତରେ ଶୁଣ ହେ ଯୁଗପତି
ପାଣ୍ଡବଙ୍କ ପ୍ରମାଦ ଚିନ୍ତିଲା କୁରୁପତି । ୧ ।
ଶକୁନିଙ୍କ ଘେନି ରାଜା ଭାଳଇ ଏକାନ୍ତେ
ବନବାସେ ପାଣ୍ଡବେ ନାଶିବେ କେମନ୍ତେ । ୨ ।
ଶକୁନି ବୋଇଲା ରାଜା ଶୁଣ ଦୁର୍ଯୋଧନ
ଉପାୟେ ଅଛି ପାଣ୍ଡବଙ୍କୁ କରିବା ନିଧନ । ୩ ।
ଆପଣେ ନ ମାରି ପରହାତେ ମରାଇବା
ସୋଦର ବଧ ଦୋଷ ଯେମନ୍ତେ ନ ଲାଗିବା । ୪ ।
ଏକାନ୍ତେ ବସିଣ ଭାଳନ୍ତେ ଦୁର୍ଯୋଧନ ଶକୁନି
ଶୁଣ ହେ ଯୁଗପତି କହନ୍ତି ଅଗସ୍ତି ମହାମୁନି । ୫ ।
ଯେଉଁଦିନୁ ପାଣ୍ଡବେ ବନବାସ ଗଲେ
ଅନେକ ହିଂସାସ ତାଙ୍କୁ ଦୁର୍ଯୋଧନ କରାଇଲେ । ୬ ।
କୂଟ କପଟ ମନ୍ତ୍ରୀ ଶକୁନି ବୋଲାଇ
ବନବାସେ ପାଣ୍ଡବେ ଅଛନ୍ତି ଦୁଖ ସହି । ୭ ।
ଅଜ୍ଞାତ ବନବାସେ ଗୋପ୍ୟାନ ହୋଇବେ
ଆରବେଳେ ପାଣ୍ଡବଙ୍କୁ ହିଂସାସ କରି କୁରୁଦେବେ । ୮ ।
ଏମନ୍ତେ ବସିଣ ଭାବନ୍ତେଣ ବେନି
ପ୍ରବେଶ ହୋଇଲେ ଆସି ଦୁର୍ବାସା ମହାମୁନି । ୯ ।
ଦଶ ସହସ୍ର ଶିଷ୍ୟ ଅଛନ୍ତି ସଙ୍ଗତରେ
ପ୍ରବେଶ ହୋଇଲେ ଯାଇ ଦୁର୍ଯୋଧନ ସଭାରେ । ୧୦ ।
ଦେଖିଣ ଦୁର୍ଯୋଧନ ଆସ୍ଥାନୁ ଉଠିଲା
ପ୍ରଣମ୍ୟ ହୋଇଣ ନେଇ ଆସ୍ଥାନେ ବସାଇଲା । ୧୧ ।
ଧୂପ ଦୀପ ଆଦରି ଗନ୍ଧପୁଷ୍ପ ନେଇ
ଷଡଅର୍ଘ୍ୟ ପୂଜା ସେ କଲେ କୁରୁସାଇଁ । ୧୨ ।
କୃଷ୍ଣାଜିନ ଛୁଲି ସେ ଦେଲେ ଶିଷ୍ୟଗଣଙ୍କୁ ପୁଣ
ବସିଲେ ଶିଷ୍ୟଗଣ ହୋଇଣ ତୋଷମନ । ୧୩ ।

କୁଶଳ ବାରତା ଯେ ପଚ୍ଛନ୍ତି ତପରାଶି
ସୁଖେ ରାଜ୍ୟ କରୁଅଛୁ ନା ଦଣ୍ଡଧାରୀ । ୧୪ ।
ପାତ୍ର ମନ୍ତ୍ରୀଗଣେ ଅଛନ୍ତି ଆଜ୍ଞାରେ ଅନୁବ୍ରତେ
ଦେଶାନ୍ତରେ ବାରତା ଜଣାଉଛନ୍ତି ନିତ୍ୟେ । ୧୫ ।
ସୁବିଧାନେ ରାଜ୍ୟ କରୁଅଛୁ ନା ଦଣ୍ଡଧାରୀ
ଚୁମୁରେ ଖଟିଛନ୍ତି ନା ପାଶଦଣ୍ଡ ଆଦିକରି । ୧୬ ।
ସମସ୍ତ କୁଶଳ ଯେ ବୋଇଲା ରାଜନ
ଯେବେ ସୁଦୟା ମୋତେ କଲ ମହାମୁନ୍ୟ । ୧୭ ।
ସୂପକାରଙ୍କୁ ରାଇ ଆଜ୍ଞା ଦିଲେ ଦଣ୍ଡଧାରୀ
ଷଡରସ ବ୍ୟଞ୍ଜନ ପାକ ନର୍ଭାକରି । ୧୮ ।
ଆଜ୍ଞାପାଇ ସୂପକାର ବହନ ହୋଇ ଗଲା
ଯେ ବିଧି ବିଧାନେ ପାକ ସମ୍ପାଦିଲା । ୧୯ ।
ସ୍ନାହାନ ନିତ୍ୟକର୍ମ ସାରିଣ ମହର୍ଷି
ଶିଷ୍ୟଗଣନ୍ତ ସେନ ଭୋଜନ ସ୍ଥାନେ ବସି । ୨୦ ।
ଭୁଞ୍ଜିଣ ହିପୂର୍ତ୍ତ ଯେ ହୋଇଲେ ତପରାଶି
ଆଚମନ ସାରିଣ ତାମ୍ବୁଳ ଭୋଜନ କରି । ୨୧ ।
ସୁସ୍ଥ ହୋଇଣ ଯେ ବସିଲେ ମହାମୁନି
ବହୁତ କଲ୍ୟାଣ କଲେ ମାନଗୋବିନ୍ଦଙ୍କୁ ପୁଣି । ୨୨ ।
ଯାଉଅଛୁ ଆମ୍ଭେ ଶୁଣ ହେ କୁରୁପତି
ସମସ୍ତଙ୍କେ ଆସୁ ସିନା କ୍ଷମେଣ ଥାଅ ବ୍ରତି । ୨୩ ।
ବହୁତ ବିନୟ ହୋଇ ବୋଇଲେ ରାଜନ
ଦିନଗୃହ ମୋର ପୂରେ ଉହିବା ମହାଶୂନ୍ୟ । ୨୪ ।
ପବିତ୍ର ହୋଇବ ଯେ ମୋହୋର ପୁରଗୋଷ୍ଠି
ଯେବେ ଅନୁଗ୍ରହ କରି ଅଇଲ ତପନିଷ୍ଠି । ୨୫ ।
ଶୁଣିଣ ମହାମୁନି ହୋଇଲେ ହରଷ
ଉଠିଲେ ସଙ୍ଗତେ ଘେନି ଦଶ ସହସ୍ର ଶିଷ୍ୟ । ୨୬ ।
ଅନେକ ଭକତି ଭାବ ଯେ ହୋଇଲେ କୁରୁପତି
ରାଜାର ଭକତି ଦେଖି ଉଠିଲେ ମହାଯତି । ୨୭ ।

ସେକାଳେ ଶକୁନ କହିଲା ରଜାର ଆଗର
ପାଣ୍ଡବଙ୍କ ତହିଁକି ପେଶିବା ଦୁର୍ବାସା ମୁନିବର । ୨୮ ।
ସତ୍ୟବନ୍ତ ଅଟଇ ସେ ଯୁଧିଷ୍ଠିର ନୃପତି
ଅଠାଅଶୀ ସହସ୍ର ଋଷିଙ୍କ ଭୋଜନ ଦିଅଇ ନିତି । ୨୯ ।
ଫଳମୂଳ ଆହାରେ ସେ ବଞ୍ଚୁଥାନ୍ତି ଦିନ
ଦୁର୍ବାସାଙ୍କୁ ପେଶି ତାହାଙ୍କୁ କରାଇବା କଷଣ । ୩୦ ।
ଭୋଜନ ଅନ୍ତେ ପ୍ରବେଶ ହୁଅନ୍ତୁ ମୁନିବର
ଦଶ ସହସ୍ର ଶିଷ୍ୟନ୍ତ ଘେନିଣ ସଙ୍ଗତର ୩୧ ।
ଯୁଧିଷ୍ଠିର ଦେବଙ୍କୁ ମାଗନ୍ତୁ ସେ ଭିକ୍ଷା
ଦୟାବନ୍ତ ନୃପତି ସେ ଧର୍ମେଣ ବଡ କକ୍ଷା । ୩୨ ।
ସତ୍ୟକଲେ ଯୁଧିଷ୍ଠିର ଯେ ଦେଇ ନୁଆରିବ
ଦୁର୍ବାସାଙ୍କ କୋପେ ସେ ସପୋତ୍ରେ ନାଶ ଯିବ । ୩୩ ।
ସୋଦର ମାରନ୍ତେ ବହୁତ ଦୋଷ ଅରଜିବା
ଉପାୟ କରିଣ ପରହାଥେ ମରାଇବା । ୩୪ ।
ଶୁଣିଣ ଆନନ୍ଦ ହୋଇଲେ ମାନ ଚକ୍ରବ୍ରତୀ
ଧନ୍ୟ ଧନ୍ୟ ମାମୁଂହେ ଶକୁନି ମହାମନ୍ତ୍ରୀ । ୩୫ ।
ଶକୁନିକ ଘେନିଣ ବାହାର କୁରୁପତି
ଦୁର୍ବାସାଙ୍କ ସମ୍ମୁଖେ ପ୍ରବେଶ ହଉନ୍ତି । ୩୬ ।
ସମସ୍ତ ସଞ୍ଚପିଣ କହିଲା ରାଜନ
ଯେବେ ଅନୁଗ୍ରହ କରିବ ମହାମୁନ୍ୟ । ୩୭ ।
ସୁଦୟା କରି ଯେବେ ଅଇଲ ତପନସ୍ତ
ମୋହୋର ବଇରି ଯେ ଅଟଇ ଯୁଧିଷ୍ଠିର । ୩୮ ।
ବନବାସେ ଅଛନ୍ତି ଯେ ପାଣ୍ଡବ ପାଞ୍ଚଜଣ
ବନବାସେ ତାହାଙ୍କୁ କରି ଯା କଷଣ । ୩୯ ।
ସତ୍ୟବନ୍ତ ପୁରୁଷ ସେ ଅଟନ୍ତି ଯୁଧିଷ୍ଠିର
ତାହାଙ୍କୁ ଭିକ୍ଷା ପ୍ରକାଶ କରି ତପନସ୍ତ । ୪୦ ।
ଅଠାଶୀ ସହସ୍ର ଋଷି ଆବର ପାଣ୍ଡବ ଦ୍ରୌପଦୀ
ସେହୁଙ୍କ ଭୋଜନ ଅନ୍ତେ ଭିକ୍ଷା ପ୍ରକାଶ ମହାଯତି । ୪୧ ।

ଯେମନ୍ତ ସମୟେ ତାଙ୍କୁ ନ ମିଳଇ ଅନ୍ନ
ଯେମନ୍ତ ସମସ୍ତ ଜାଣି ଭିକ୍ଷା ପ୍ରକାଶ ବଦନ । ୪୨ ।
ମୋତେ ସତ୍ୟ ଯେବେ ଅଛଇ ମହାମୁନି
ପାଣ୍ଡବଙ୍କ କଷଣ ଦିଅ ଶିଷ୍ୟଗଣଙ୍କ ଘେନି । ୪୩ ।
ଶୁଣିଣ ସାନନ୍ଦ ଯେ ହୋଇଲେ ମହଋଷି
ଯୁଧିଷ୍ଠିରଙ୍କ ପାଶକୁ ଚଳିଲେ ସଙ୍ଗେ ଘେନି ଦଶ ସହସ୍ର ଶିଷି । ୪୪ ।
ଯୁଧିଷ୍ଠିରଙ୍କ ପାଶେ ଯାଇଂ ହୋଇଲେ ପରବେଶ
ଦେଖିଣ ଧର୍ମରାଯେ ଯେ ହୋଇଲେ ହରଷ । ୪୫ ।
ଆସନ ଅର୍ଘ୍ୟ ଦେଇଣ କଲେ ପାଦପୂଜା
ଆନନ୍ଦେ କୃତ କୃତ ହୋଇଲେ ଯୁଧିଷ୍ଠିର ମହାରାଜା । ୪୬ ।
ଦୁର୍ବାସା ବୋଇଲେ ଭିକ୍ଷା କରିବୁ ଯୁଧିଷ୍ଠିର
ଶୁଣିଣ ଧର୍ମରାଯେ ମନେ ମହାତୁଷ୍ଟି । ୪୭ ।
କଷଣ କରିବାକୁ ଯାଇଛନ୍ତି ଋଷି
ଯେହା ଜାଣି ନୁଆଁଇଲେ ପଣ୍ଡୁରାଜାର ଶିଶି । ୪୮ ।
ଯହିଂ ଧର୍ମ ତହିଂ ଜାଣ ପଡ଼ଇ କଷଣ
ଦୁର୍ବାସାଂକ ବଚନେ ଯୁଧିଷ୍ଠିର ସମ୍ମତ କଲେ ପୁଣ । ୪୯ ।
ଶିଷ୍ୟଙ୍କ ଘେନି ଋଷି ଗଲେ ନିତ୍ୟକର୍ମେ
ନକୁଳକଇଂ ହକାରି ବୋଇଲେ ଦେବ ଧର୍ମେ । ୫୦ ।
ଆରେ ବାବୁ ନକୁଳ ଦ୍ରୌପଦୀକ କହ ଯାଇଂ
ଦୁର୍ଭାସା ଭିକ୍ଷା କରିବେ ସଙ୍ଗତେ ଶିଷ୍ୟଙ୍କ ନେଇ । ୫୧ ।
ଶୁଣିଣ ନକୁଳ ଯେ ବହନ ହୋଇ ଗଲା
ଦ୍ରୌପଦୀଂକ ଯାଇଣ ସେ ସନ୍ଦେଶ କହିଲା । ୫୨ ।
ଶୁଣିଣ ଦ୍ରୌପଦୀ ଯେ ହୋଇଲେ ଅସ୍ଥିଭୂତ
ଭଣ୍ଡାରେ କିଛି ନାହିଂ ସରିଲାନି ସମସ୍ତ । ୫୩ ।
ଭୋଜନ ସାରିଣ ମୁଂ ଧୋଇଲିନି କୁଣ୍ଡୋଇ
ଅନ୍ନ ବ୍ୟଞ୍ଜନ ଆଦି ଫଳ ମୂଳ ନାହିଂ । ୫୪ ।
ଠାକୁରଂକ ଆଗେ ଯାଇଂ କହିଲା ନକୁଳ
ଅନ୍ନହିଂ ବ୍ୟଞ୍ଜନ ଠାରୁ ନାହିଂ ଫଳମୂଳ । ୫୫ ।

ଭୋଜନ ସାରଣ କୁଢ଼ୋଇ ଧୋଇଲେନ
ଅର୍ନ୍ତୀଭୂତ ହୋଇଲେ ଯୁଧିଷ୍ଠିର ନୃପମଣି । ୫୬ ।
ଆକୁଳେ ଯୁଧିଷ୍ଠିରଙ୍କ ନ ଫୁରଇ କଣ୍ଠ
ମନେଣ ବସୋଉ ବସିଲେ ଧର୍ମବହ୍ନି । ୫୭ ।
ଆରେ ବାବୁ ନକୁଳ କରିବା କେମନ୍ତ
କସ ଭିକ୍ଷା ଦେବା ହୋ ଦୁର୍ବାସା ତପୋବନ୍ତ । ୫୮ ।
ଯେତ୍ତେକ୍ଷଣି ଆସିବେ ଶିଷ୍ୟଗଣନ୍ତ ଘେନ
ଦୁର୍ବାସା କୋପକଲେ କ ବ୍ରତିବା ଆଜ ପୁଣି । ୫୯ ।
ଧର୍ମ ଧର୍ମ ସ୍ମର ବସିଲେ ରାଯେ ମନ
କଷଣ ଉପରେ କଷଣ ବଢ଼ିଲେ ଆପଣ । ୬୦ ।
ଆକୁଳେ ଯୁଧିଷ୍ଠିରଙ୍କ ନ ଫୁରଇ କଣ୍ଠ
ନକୁଳ ମୁଖ ଚାହିଁ କହନ୍ତ ଧର୍ମବହ୍ନି । ୬୧ ।
ସହଦେବଙ୍କୁ ବାବୁରେ ହକାରଆଣ ଯାଇଂ
ଦଶଦିଗ ଅନ୍ଧାର ଯେ ନ ଦିଶେ ବନଭୂଇଂ । ୬୨ ।
ହୃଦଗତେ ଚିନ୍ତିଲେ ସେ ଦେବ ନାରାୟଣ
ସର୍ବଦା ଆମ୍ଭେ ନାଥ ତୋହୋର ଶରଣ । ୬୩ ।
ଯେ କଷଣୁଂ ଉଦ୍ଧର ହେ ଦେବ ଦାମୋଦର
ସୁମରନ୍ତେ ଆସନ କମ୍ପିଲା ଚକ୍ରଧର । ୬୪ ।
ଅନ୍ତର୍ଯ୍ୟାମୀ ନାଥ ଅନ୍ତର୍ଗତ କଥା ଜାଣି
ବଇନେଇ ବାହାନେ ବିଜୟେ ଚକ୍ରପାଣି । ୬୫ ।
ପବନୁଂ ବେଗ ହୋଇ ଗମଇଂ ପକ୍ଷୀବର
ପ୍ରବେଶ ହୋଇଲେ ଯାଇଂ ଯୁଧିଷ୍ଠିରଙ୍କ ସ୍ଥମୁର । ୬୬ ।
ଗରୁଡ଼ ପିଠିରୁ ଓହ୍ଲାଇ ଦେବ ନାରାୟଣ
ଯୁଧିଷ୍ଠିରଙ୍କ ପାଦତଳେ ହୋଇଲେ ପ୍ରଣମ୍ୟ । ୬୭ ।
ଉଠିଣ କେଶବ ଯେ ବୋଲନ୍ତି ବଚନ
କ୍ଷୁଧା ଲାଗିଲା କିଛୁ କରିବା ଭୋଜନ । ୬୮ ।
କ୍ଷୁଧା ତୃଷାରେ ଯେ ଆକୁଳ ହୋଯେ କାଯେ
ଶୀଘ୍ର କିଛୁ ଆଣିଦଅ ବୋଲନ୍ତ ଦେବରାଯେ । ୬୯ ।

ଏମନ୍ତ ଶୁଣି ଧର୍ମସୁତ ପଡ଼ିଲେକ ଢଳି
ସହଦେବକୁ ସୁମରଣା କରନ୍ତି ବନମାଳୀ । ୭୦ ।
ଧାଇଁକାରେ ସହଦେବ ହୋଇଲେ ପ୍ରବେଶ
ସହଦେବକଇଁ ଗୃହଂ ବୋଲନ୍ତି ହୃଷୀକେଶ । ୭୧ ।
ଦ୍ରୋପଦୀଙ୍କ ରେ ବାବୁ ଶୀଘ୍ରେ କହ ଯାଇଁ
ଭୋଜନ କରିବାକୁ ବୋଲୁଛନ୍ତି ଲକ୍ଷ୍ମୀସାଇଁ । ୭୨ ।
କ୍ଷୁଧା ତୃଷାରେ ଯେ ଅସମ୍ଭାଳ ଦେହ
କହନ ଯାଇଁଣ ତୁ ଦ୍ରୋପଦୀଙ୍କ କହ । ୭୩ ।
ଶୁଣିଣ ସହଦେବ କହନ ହୋଇ ଗଲା
ଦ୍ରୋପଦୀଙ୍କ ଏମନ୍ତ ସମସ୍ୟା କହିଲା । ୭୪ ।
ଶୁଣିଣ ଦ୍ରୋପଦୀ ଯେ ହୋଇଲେ କାତର
ସମସ୍ତ ସରିଲାନ କିଛି ନାହିଂ ଭଣ୍ଡାର । ୭୫ ।
ନାରାୟଣଙ୍କ ଅଗ୍ରତେ ସହଦେବ କହିଲା
କୁଡୋଇରେ କିଛି ନାହିଂ ସମସ୍ତ ସରିଗଲା । ୭୬ ।
ଏମନ୍ତ ଶୁଣି ଜଗନ୍ନାଥେ ଆପଣେ ଚଳିଗଲେ
ଅନ୍ତପୁରେ ଦ୍ରୋପଦୀଙ୍କ ଗୃହରେ ମିଳିଲେ । ୭୭ ।
କହନ୍ତି ଜଗନ୍ନାଥେ ଶୁଣ କୃଷ୍ଣେସେମା
କିଛି ଆଣ ଭୋଜନ କରିବାକ ପୁଣି । ୭୮ ।
କ୍ଷୁଧାଭରେ ଅଶକତ ହୋଇଅଛି ଦେହ
ଯାହା ଅଛି ତାହା ତୁମ୍ଭେ ବେଗେ ଆଣିଦିଅ । ୭୯ ।
ଜଗନ୍ନାଥଙ୍କୁ ବୋଲନ୍ତି ଦ୍ରୋପଦୀ ବାରିତ
ଭୋଜନ ସାରି କୁଡୋଇ ଧୋଇଲିନ ପ୍ରତ୍ୟକ୍ଷ । ୮୦ ।
ପାକ ବଚନ ମୁଂ କରନ୍ତି ଏତେକ୍ଷଣ
ଭଣ୍ଡାରେ ଆଉ କିଛି ନାହିଂ ନାରାୟଣ । ୮୧ ।
ବୋଲନ୍ତି କେଶବ ଯେ ଆଣି ଦେଖା ଭାଣ୍ଡ
ଯିସ ଥିବ ତାହା ଭୁଞ୍ଜି ହିପୂର୍ତ୍ତ କରିବାକ ପିଣ୍ଡ । ୮୨ ।
ଶ୍ରୀକୃଷ୍ଣଙ୍କ ବଚନେ ଯେ ଚଳିଲେ ଦ୍ରୋପଦୀ
ପାକଭାଣ୍ଡ ଆଣିଣ ଯେ ଦେଖାଇଲେ ଶ୍ରୀପତି । ୮୩ ।

ନିରେଖି ହାଣ୍ଡିକୁ ଚାହିଁଲେକ ନାରାୟଣ
ଦେଖିଲେ ହାଣ୍ଡେ ଲାଗିଛି ଶାକ ବ୍ୟଞ୍ଜନ ପୁଣ ।। ୮୪ ।
କର ପ୍ରସାରି ତାହା ମାଗଲେ ଶ୍ରୀହରି
ଲାଗିଛି ବ୍ୟଞ୍ଜନ ଦିଅ ଦ୍ରୋପଦୀ କୁମାରୀ । ୮୫ ।
ନାରାୟଣ ଆକୁଳ ଦେଖି ଦ୍ରୋପଦୀ ତାହା ଦିଲେ
ଭୁଞ୍ଜି ଣ ସନ୍ତୋଷ ଯେ ଶ୍ରୀହରି ହୋଇଲେ । ୮୬ ।
ଧନ୍ୟ ସେ ପରମ ସାଧ୍ୱୀ ଦ୍ରୋପଦୀ ଦୁହିତା
ଶାକପତ୍ର ଭୁଞ୍ଜିଣ ଯେ ସନ୍ତୋଷ ଶ୍ରୀପତି । ୮୭ ।
ଶୁଣ ହେ ମନୁରାୟେ ବଦନ୍ତି ଅଗସ୍ତି
ଅନ୍ତର୍ଯାମୀ ନାଥ ସେ ସକଳ ଭୂତେ ଥିନ୍ତି । ୮୮ ।
ଯହୁଁ ସେ ତୃପ୍ତ ହୋଇଲେ ନାରାୟଣ
ସମସ୍ତ ଜୀବଜନ୍ତୁ ତୃପ୍ତ ହୋଇଲେକ ପୁଣ । ୮୯ ।
ନିତ୍ୟକର୍ମେ ଯାଇଥିଲେ ଦୁର୍ବାସା ମହାଋଷି
ନ ଭୁଞ୍ଜି ପେଟ ପୂରିଲା ନୁଆରିଲେ ଉଠି ବସି । ୯୦ ।
ଶିଷ୍ୟଗଣମାନେ ଯେ ଚଳି ନୁଆରିଲେ
ବିନା ଭୋଜନେ ଉଦର ପୂରିଲା ବୋଇଲେ । ୯୧ ।
ଶିଷ୍ୟଗଣନ୍ତ ଚାହିଁ ବୋଲନ୍ତି ତପୋରାଶି
ବିଭୋଜନେ ଆମ୍ଭେ ଯେ ଚଳିତ ନୁଆରୁ । ୯୨ ।
ସମସ୍ତ ଶିଷ୍ୟ ବୋଇଲେ ପ୍ରଭୁ ଅଟଇ ଦୁର୍ଘଟ
ଉଦର ପୂରଣ ଯେ ରୁନ୍ଧଇ କଣ୍ଠତଟ । ୯୩ ।
ଦୁର୍ବାସାପ୍ରଭୁ ବୋଇଲେ ଚାଲ ବନ୍ଧନ ହୋଇ ଯିବା
ଯେ ଯିସ ପାରି ତାହା ଭୋଜନ କରିବ । ୯୪ ।
ସମସ୍ତ ଶିଷ୍ୟମାନେ ବୋଲନ୍ତି ଉତ୍ତର
କିସ ଭୁଞ୍ଜିବା ଆଜ ପୂରିଲାନ ଉଦର । ୯୫ ।
ଏହାଶୁଣି ଦୁର୍ବାସାପ୍ରଭୁ ହୋଇଲେ ମଉନ
ବିଚାର କରନ୍ତି ସେହି ଆପଣ ମନେ ମନ । ୯୬ ।
ଆମ୍ଭ ଯୋଗେ ଯୁଧିଷ୍ଠିର ଯେ ପାକ କଲେ ନିର୍ଭା
ଯେ ଯିସ ପାରି ତାହା ଭୋଜନ କରିବା । ୯୭ ।

ଯେତେକ କଷଣେ ତାକୁ ଭିକ୍ଷା ପ୍ରକାଶିଲୁ
ଦଶ ସହସ୍ର ଜଣଂକୁ ପାକ ପଚନ କରାଇଲୁ । ୯୮ ।
ନ ଭୁଞ୍ଜିଲେ ପ୍ରାଣେହେଂ ମାରିବ ଆମ୍ଭଂକୁ
ଯେମନ୍ତ କହିଲେ ସେ ଶିଷ୍ୟଗଣମାନଂକୁ । ୯୯ ।
ଯେତେ ବରୁଣି ଦୁର୍ଭାସା ମହର୍ଷି
ସଙ୍ଗତେ ଘେନିଣ ଦଶ ସହସ୍ର ଯେ ଶିଷି । ୧୦୦ ।
ନିଜ ଆଶ୍ରମକଇଂ ଚଳିଗଲେ ଦେବ
ଅନ୍ତର୍ଯାମୀ ନାଥ ତାହା ଜାଣିଲେ ବାସୁଦେବ । ୧୦୧ ।
ସହଦେବ କଇଂ ଘେନିଣ ଦେବ ଦାମୋଦର
ପ୍ରବେଶ ହୋଇଲେ ଯାଇଂ ଯୁଧିଷ୍ଠିରଂକ ସନ୍ନିଧିର । ୧୦୨ ।
ଆସନେ ନେଇଣ ବସାଇଲେ ଧର୍ମସୁତ
ଅନ୍ତରେ ବଇକୁଣ୍ଠ ବାହ୍ୟେ ମଉନ ଯେ ବ୍ରତ । ୧୦୩ ।
ବଦନ୍ତି ଶ୍ରୀକୃଷ୍ଣ ଯେ ଶୁଣିମା ଧର୍ମଦେବ
କିସ ଅର୍ଥେ ଚିନ୍ତାକଲ କେବଣହିଂ ଭାବ । ୧୦୪ ।
ଶୁଣିଣ ଯୁଧିଷ୍ଠିର ଦେବ ହୋଇଲେ ମଉନ
ଆମ୍ଭା ବଇକୁଣ୍ଠେ କହି ନୁଆରନ୍ତି ବଚନ । ୧୦୫ ।
ସହଦେବ ମୁଖ ଚାହିଂ ବୋଲନ୍ତି ଦାମୋଦର
କହ ହେ ମନ୍ତ୍ରୀବର ଯେ କେବଣ ପ୍ରକାର । ୧୦୬ ।
ଯେସନେକ ସମୟେ ବାସବ ବୃକୋଦର
ପ୍ରବେଶ ହୋଇଲେ ଆସି ନାରାୟଣ ଛାମୁର । ୧୦୭ ।
କରପଦ ଯୋଡିଣ କହଇ ସହଦେବ
ସାବଧାନ ହୋଇଣ ଶୁଣିମା ଯେହ୍ନାର ପ୍ରସ୍ତାବ । ୧୦୮ ।
ବନବାସେ ଆମ୍ଭନ୍ତ କଷଣ ଦେବା ଅର୍ଥେ
ମନରେ ବିଚାର କଲାକ କୁରୁନାଥେ । ୧୦୯ ।
ଶକୁନିକ ଘେନିଣ ଭାଳନ୍ତି କୁରୁପତି
ଯେସନ ସମୟେ ଆସି ମିଳିଲେ ଦୁର୍ଭାସା ମହାଯତି । ୧୧୦ ।
ଅନେକ ଭଗତି ହୋଇଣ କୁରୁନାଥ
ଭିନାଚ୍ଛର ରଖିଲା ହସ୍ତିନା ପ୍ରଶସ୍ତ । ୧୧୧ ।

ଶକୁନ ମନ୍ତ୍ରୀ ଯନ୍ତ୍ରଂ କହିଲା ଯେତେ ବାଣୀ
ଦୁର୍ବାସାଂକୁ ପେଷିଲା ଦେବ ଆମ୍ଭର ତହିଁଂକ । ୧୧୨ ।
ଦୁର୍ଭାସା ଅଇଲେ ଯେବେ ଦଶ ସହସ୍ର ଶିଷ୍ୟ
କଷଣ ଦେବେ ବୋଲି ବୋଇଲେ ଭିକ୍ଷା ଦିଅ ଧର୍ମଶିଷ୍ୟ । ୧୧୩ ।
କପଟ କଥା ଦେବ ମଣିତ ନୁଆରିଲେ
ହଉ ବୋଲିଣ ଦେବ ସନମତ କଲେ । ୧୧୪ ।
ଦୁର୍ଭାସାପ୍ରେ ନଦୀକି ଗଲେ ସ୍ନାହାନ ସାରି
ଆଗ୍ୟାଂଦିଲେ ଦେବ ନକୁଳକଇଂ ହକାରି । ୧୧୫ ।
ଦ୍ରୋପଦୀଂକ ନକୁଳ କହିଇ ତତକ୍ଷଣ
ଦଶ ସହସ୍ର ଶିଷ୍ୟ ଯେବେ ଭିକ୍ଷା କରିବେ ଦୁର୍ଭାସା ମହାଯତି । ୧୧୬ ।
ନକୁଳ କହନ୍ତେ ଦ୍ରୋପଦୀ ନାସ୍ତି କଲେ ଯନ୍ତ୍ରଂ
ମନେ ଚିନ୍ତା ଦେବ ଲାଗିଲେକ ତହିଁଂ । ୧୧୭ ।
ବଇକୁଲ୍ୟେ ଦଶଦିଶ ଦିଶିଲା ଅସୁନ୍ଦର
ଧ୍ୟାନେଣ ଜଗନ୍ନାଥଂକୁ ଚିନ୍ତିଲେ ଅପାର । ୧୧୮ ।
ଅନ୍ତର୍ଯାମୀ ନାଥ ତାହା ଅନ୍ତରେ ଯାଣିଲେ
ବହନ ଆସି ଦେବ ପ୍ରବେଶ ହୋଇଲେ । ୧୧୯ ।
କ୍ଷୁଧାତେର ଭୋଜନ ଦେବ ମାଗିଲେକ ଯନ୍ତ୍ରଂ
ଦୁସହ କଷଣ ଦୁଖ ହୋଇଲାକ ତହିଁଂ । ୧୨୦ ।
ମନ ବୁଦ୍ଧି ହରାଇ ଦେବି ଚିନ୍ତାରେ ରହିଲେ
ଦ୍ରୋପଦୀଂକ ସ୍ବାମୀକୁ ନାରାୟଣ ବିଜେକଲେ । ୧୨୧ ।
କ୍ଷୁଧାରେ ଭୋଜନ ଯନ୍ତ୍ରଂ ମାଗିଲେ ଶ୍ରୀପତି
ନାହିଂ ବୋଲି ନାସ୍ତି କଲେକ ଦ୍ରୋପଦୀ । ୧୨୨ ।
ଶ୍ରୀକୃଷ୍ଣ ବୋଇଲେ ଦେଖାଅ ପାକଭାଣ୍ଡ
ଅଳପ ଭୋଜନେ ଗୋ ତୋଷ କରିବୁ ପିଣ୍ଡ । ୧୨୩ ।
ପାକଭାଣ୍ଡ ଯେବେ ଦେଖାଇଲେ ଯିଜ୍ଞସେନୀ
ବ୍ୟଞ୍ଜନ ଭାଣ୍ଡରେ ଶାକ ଭୁଞ୍ଜିଲେ ଚକ୍ରପାଣି । ୧୨୪ ।
ଭୁଞ୍ଜିଣ ସନ୍ତୋଷ ହୋଇଲେ ଦେବ ଯନ୍ତ୍ରଂ
ଅଭୋଜନେ ଦୁର୍ଭାସାପ୍ରେ ତ୍ରିପୁତି ହେଲେ ତହିଁଂ । ୧୨୫ ।
ଶିଷ୍ୟଗଣଙ୍କୁ ଋଷିଂ ବୋଇଲେ ବଚନ
କିସ ଭୁଞ୍ଜିବା ଯାଇଂ ଯୁଧିଷ୍ଠି ସ୍ବାମୀରେଣ । ୧୨୬ ।

ଦୁଷ୍ଟ ହୋଇ ତାହାର ଅଟଇ ଯେ ଖମା
ନ ଭୁଞ୍ଜିଲେ ପ୍ରାଣେ ସେ ମାରିବ ମହାତମା । ୧୨୭ ।
ତପୁଣ ମୁନିବର ନିଜ ଆଶ୍ରମକୁ ଗଲେ
ଅନ୍ତର୍ଯ୍ୟାମୀ ନାଥ ତାହା ଅନ୍ତରେ ଜାଣିଲେ । ୧୨୮ ।
ଛାମୁରେ ଆସି ପ୍ରବେଶ ହୋଇଲେ ନାରାୟଣ
ପୁଚ୍ଛେ କଷଣ ହେଲେ ଶକୁନି କୁରୁଗଣ । ୧୨୯ ।
ଶୁଣିଣ ହରଷ ଯେ ହେଲେ ଧର୍ମସୁତ
ପୁଚ୍ଛ କଷଣୁଂ ମୋତେ ଉଦ୍ଧରିଲୁ ଜଗନ୍ନାଥ । ୧୩୦ ।
ଦୁର୍ବାସା କୋପକୁ ମୁହିଂ ହୁଅନ୍ତ କି ଭାଜନ
ତବ ପ୍ରସାଦେ କାରଣ ପାଇଲି ଜନାର୍ଦ୍ଦନ । ୧୩୧ ।
ମେରୁ ଆଶ୍ରେ ଯେହ୍ନେ ଅଛଇ ବସୁନ୍ଧରା
ମହତ ଆଶ୍ରେ ଥିଲେ ନତପ୍ୟେ କଷ୍ଟୁଂ ଫେର । ୧୩୨ ।
ହର ଆଶ୍ରିତେ ଚନ୍ଦ୍ର ଅଛଇ ଯେସନେ
ତବ ଆଶ୍ରିତେ ପାଣ୍ଡବେ ଅଛନ୍ତି ସବନ୍ଧନେ । ୧୩୩ ।
ଶୁଣିଣ ପରମ ସାନନ୍ଦ ହୋଇଲେ ନାରାୟଣ
ବଇନେଇ ବାହାନେ ବିଜୟେ ଦ୍ୱାରିକା ଭୁବନ । ୧୩୪ ।
ପାଣ୍ଡବ ପାଞ୍ଚଜଣ ଦ୍ରୌପଦୀ ସହିତେ
ନିତନ୍ତେ ରହିଲେ ମନେ ଚିନ୍ତି ଜଗନ୍ନାଥେ । ୧୩୫ ।
ଜୟ ଜୟ ଜଗନ୍ନାଥ ଜଗତ ହିତକାରୀ
ଜୟ ଜୟ ଜଗନ୍ନାଥ ଶରଣ ଜନ ଉଦ୍ଧାରୀ । ୧୩୬ ।
ଜୟ ଜୟ ଜଗନ୍ନାଥ ଭଗତ ଭାବଗ୍ରାହୀ
ଜୟ ଜୟ ଜଗନ୍ନାଥ କ୍ଷୀରୋଦ୍ର ଅନନ୍ତଶାୟୀ । ୧୩୭ ।
ଜୟ ଜୟ ଜଗନ୍ନାଥ ଭକ୍ତଜନ ଉଦ୍ଧାରଣ
ଜୟ ଜୟ ଜଗନ୍ନାଥ ଦୁଷ୍ଟ ନିବାରଣ । ୧୩୮ ।
ଜୟ ଜୟ ଜଗନ୍ନାଥ ରାକ୍ଷସ କୁଳ ଗଞ୍ଜା
ଜୟ ଜୟ ଜଗନ୍ନାଥ ପିତାମହ ଦର୍ପଗଞ୍ଜା । ୧୩୯ ।
ଦୁଖୀଜନ ସୋଦର ନାଥ ନାମ ଜଗନ୍ନାଥ
ତବ ପାଦେ ଲୁବ୍ଧ ଶୂଦ୍ରମୁନି ସାରଳା ମାଥ । ୧୪୦ ।

---

। ୧୧୩୨୩ ।

## ନକୁଳର ସତ୍ୟନିଷ୍ଠା ଦର୍ଶନେ ରେବା ଦୈତ୍ୟର ପୁରସ୍କାର
## ଏବଂ
## ବସ୍ତ୍ରାହରଣ ଦୋଷେ ବ୍ରହ୍ମାଙ୍କ ଅପୂଜ୍ୟ ଅଭିଶାପ

ତୁଳମାସ ଶୁକ୍ଳପକ୍ଷ ପଞ୍ଚମୀ ତିଥିରେ
ମୂଳା ନକ୍ଷତ୍ର ଅଟଇ ପୁଣି ସେ ଦିନରେ । ୧ ।
ଧୃତି ନାମେ ଯୋଗ ବିଷ୍ଟି ନାମରେ କରଣ
ମେଷରାଶିକୁ ନବମ ଘରେ ଅଛି ପୁଣ । ୨ ।
ଯୁଧେଷ୍ଠ ଦେବ ପଚାରିଲେ ଶୁଣ ହୋ ସହଦେବ
ଆବର ବନବାସ ଆମ୍ଭର କେତେ ଦିବସ ହୋଇବ । ୩ ।
କର ଯୁଗଳକରିଂ ଗୃହିଂ ସହଦେବ କହଇ ସରୂପ
ସ୍ୱାମୀ ଦ୍ୱାଦଶ ବରଷକୁ କହିବ ଗୁଣିଣ କରି ଗୋପ୍ୟ । ୪ ।
ସ୍ମରଣ କରାଯେ ଆଦ୍ୟଦିନ ବନବାସ
କନ୍ୟାମାସ କୃଷ୍ଣପକ୍ଷ ଭୃଗୁବାର ଦିବସ । ୫ ।
ତନୁ ମନୁ ଅଗ୍ନି ଯେ ପ୍ରମାଥି ଜଳଦ
ଉଦାସୀନ ଧ୍ରୁବ ହର ଶରଣ ସାନୁମାନ ଆଦ୍ୟ । ୬ ।
ଦଶ ବରଷକୁ ସମ୍ପୂର୍ଣ୍ଣ ହୋଇଲାନ ଯେମନ୍ତେ
ଆବର କେନ ବରଷ ହୋଇବ ଲେଖନ୍ତେ । ୭ ।
ବରଷକେ ଦଶଦିନ ଦୁଅଇ ବର୍ଦ୍ଧିତ
ଦଶ ବରଷକୁ ଯେଉଁମତେ ହୁଅନ୍ତେ ଦିବସ ଶତ । ୮ ।

---

୬।୧ ବୁଧ, କପିଳ, ଦର୍ପକ ପ୍ରଭୃତି ସମ୍ବତ୍ସରମାନଙ୍କର ନାମ ପାଠାନ୍ତର ଦେଖାଯାଏ ।

ଛନମାସ ବଣବନ ହେବ ବଧିମତେ
ଯେତିଥିରେ ସନ୍ଦେହ ମାତ୍ର ନାହିଂ ଯେ କଞ୍ଚତେ । ୯ ।
କୂଟ କପଟ ମନ୍ତ୍ରୀ ଅଟଇ ଶକୁନ
ଧର୍ମ ନ ଶୁଣଇ ଛିଦ୍ରକଥା ସେହୁ ଘେନ । ୧୦ ।
କାଲେ ନ କଞ୍ଚବଟି ତୁମ୍ଭେ ତାହାର ବଚନ
ଦ୍ୱାଦଶ ବରଷକୁ ହୋଇବଟି ବଡ଼ା ବଣଗତେ ଧନ । ୧୧ ।
ଯୁଦ୍ଧେଷ୍ଟି ଦେବେ ବୋଇଲେଁ ତୁ ମୋର ପଣ୍ଡିତ ସାନଭାଇ
ଯୁଗତ ବୋଲକୁ ଆମ୍ଭେ କଞ୍ଚବୁଂ ଆଉ କାହିଂ । ୧୨ ।
କାବୁ କପଟ କୂଟ ହୋଇଲେ ତାହା ନବାରଇ ଦଇବ
ଆପାଦ କର୍ମ କାବୁରେ ଆଜ କେତେକାଳ ଥିବ । ୧୩ ।
ହୋଇ କନା ବଳମ୍ବ ପଛେ ଯେମନ୍ତ ତାହା ଶୁଝଇ
ମୋହୋର୍ ବୃତ୍ତିରେ ବନବାସ ଭଲଇଂ ବୁଝାଇ । ୧୪ ।
ରାଜ୍ୟଭାର କାବୁରେ ଅଟଇ ବଡ଼ାଇ ଜଞ୍ଜାଳ
ଧର୍ମ ନ ଗୋଡ଼ାଇ ଯେ ପାତକ ଶରୀକାଳ । ୧୫ ।
ରାଗ ମୋହ ଦ୍ୱନ୍ଦ ଯେ ବଡ଼ୁତର ଚନ୍ତା
ହତ୍ୟା ବିବାଦ ଦଣ୍ଡ ନ ଯାଇ ଗଣିତା । ୧୬ ।
ସହଦେବ ବୋଇଲେ ସ୍ୱାମୀ ଅଟଇ ଯୁଗତ
ସୋଦର ହୋଇ ବଗ୍ରର ନ କଲ୍ଲ ଯେମନ୍ତ । ୧୭ ।
ଶକୁନ ବଗ୍ରେ ପଶିଲଟି ମାନ ଯେ ଗୋବନ୍ଦ
ନ ଜାଣଇ ଚରିତ ଯତନେ କରଇ ଦ୍ୱନ୍ଦ । ୧୮ ।
ଯେତେ ମୂଢ଼ରାଜା ଦେବ ଅଟଇ ଧୃତରାଷ୍ଟ୍ରି
କାଲେ ଫଳବ ନାହିଂ କ ଦେବ ଯେତିଥିର ଅରଷ୍ଟି । ୧୯ ।
ତତ୍‌କ୍ଷଣ ବଜେକରି ଗଲେ ପାଣ୍ଡବ ପଞ୍ଚୁଭାରେ
ଋଷିଗଣନ୍ତ ସଙ୍ଗ ଘେନଣ ସଙ୍ଗତରେ । ୨୦ ।

---

୧୬।୧ { ରାଜତ୍ୱ ମହାଦ୍ୱନ୍ଦ ଯେ ଗରୁତର ଚନ୍ତା
ଦସ୍ଥା ବିବାଦ ଦଣ୍ଡତ ନ ଯାଇ ଗଣିତା । —ଙ୍ଗ

ବିହରନ୍ତି ପଣ୍ଡୁର ନନ୍ଦନ କୁତୂହଳେ
ବିଜୟେ ଧର୍ମନନ୍ଦନ ରେବାନଦୀ କୂଳେ । ୨୧ ।
ରେବାସୁର ବୋଲିକରି ଯେକଇ ଦାନବ
ଦେବଋଷି ରାଜଋଷିରେ ବଡାଇଁ ଅଗ୍ରବ । ୨୨ ।
ଋଷିମାନନ୍ତ ପାଇଲେ ମାରି କରଇ ଭୋଜ
ଜଳପି ମାଂସ ଖାଇ ବୁଲଇ ଅଇଶୂର୍ଯ୍ୟ । ୨୩ ।
ତାହାର ଭୟେ କେହି ତହିଂକ ନୁଆରନ୍ତି ଗମି
ନିତ ଦିବସେ ସେ ଶତେ ଯୋଜନ ଯାଏ ଭ୍ରମି । ୨୪
ଗୋପାଳକ ନାମେ ସତ୍ୟଯୁଗେ ବଇବ ନାମେ ହର
ସର୍ବପାପ ମୋଚନ କଲେ ସେ ରେବାତୀର୍ଥର । ୨୫ ।
ହି ପୁର ଅଂଶେଣ ଯେ ଅମ୍ବା ନାମେ ଦଇତ
ଯେହାକଇଂ ବଧକଲ୍ଲ ଅଞ୍ଜନାର ସୁତ । ୨୬ ।
ଅମ୍ବାର ନନ୍ଦନ ଯେ ପ୍ରଲମ୍ବାସୁର ବୀର
ପ୍ରଲମ୍ବାର ନନ୍ଦନ କାଳନଉମୀ ଅସୁର । ୨୭ ।
କାଳନଉମୀର ପୁତ୍ର ଶମ୍ଭୁନାମେ ଦଇତ୍ୟ
କେଶୀ ବୋଲିକରିଣ ଯେହାର ନିଜପୁତ୍ର । ୨୮ ।
କେଶୀର ପୁତ୍ର ଅଟଇ ଧୂମ୍ର ଯେ ଲୋଚନ
ଯେହାର ପୁତ୍ର ହୋଇଲ୍ଲ କାଳବିମୋଚନ । ୨୯ ।
କାଳବିମୋଚନର ପୁତ୍ର ବୀର ଭକ୍ଷଶ୍ରବା
ଯେହାର ପୁତ୍ର ନାମ ହୋଇଲ୍ଲ ବୀର ରେବା । ୩୦ ।
ସର୍ବଦା ଆକ୍ରୋଶ ଥାଇ ସେ ରେବା ନାମ ତୀର୍ଥେ
ଦେବତା ଋଷି ମାନବେ ପଶି ନୁଆରନ୍ତି ଯେଥେ । ୩୧ ।
ସେ ବନେ ପ୍ରବେଶ ଯାଇଂ ପଣ୍ଡୁର ନନ୍ଦନେ
ବିହରନ୍ତି ପାଣ୍ଡବେ ଯେ ନବପଲ୍ଲବ ବନେ । ୩୨ ।

---

୨୮।୧ କାଳନଉମୀର ଜମ୍ଭୁ, କଦମ୍ବା ପାଠାନ୍ତର ଦେଖାହ ।

ଆମ୍ର ପଣସ କଦଳୀ ଯେ ନଡ଼ିଆ ଫଳ
ପାଚଣ ଚଂକୁଫଳ ପଡ଼ୁଛନ୍ତି ତଳ । ୩୩ ।
ଯାହା ଇଚ୍ଛାକରି ତାହା ତହିଁ ପାଇ
ରେବାସୁର ଭୟେ ତହିଁ ପଶନ୍ତି ନାହିଁ କେହି । ୩୪ ।
ବହଇ ସେ ରେବାନଦୀ ଉତ୍ତର ବାହିନୀ
ଈଶାନ କୋଣେ ଅଛଇ ବଟ ଯେ ଭବାନୀ । ୩୫ ।
ସେ ବଟର ତଳେ ବସିଅଛନ୍ତି ପଞ୍ଚୁସାରେ
ସେ ମଧୁବନ ଶୋଭା ଦେଖି ପଚାରଇ ବୃକୋଦରେ । ୩୬ ।
ସ୍ୱାମୀ ଅଠାଇଶ ମାସ ଯେ ଅଛଇ ବନବାସ
ଯେହ୍ନେ ସ୍ଥାନୁଂ ସ୍ୱାମୀ ଆମ୍ଭେ ନ ଯିବା ଆନ ଦେଶ । ୩୭ ।
ଯୁଧିଷ୍ଠିର ଦେବ ବୋଇଲେ ହୋ ପିତୃକାର୍ଯ୍ୟ ଅର୍ଥୀ
ଗଣ୍ଡା ଗୋଟିଏ ବାବୁ ଲୋଡ଼ ରେ ବନସ୍ତର ଭିକାଣ୍ଡ । ୩୮ ।
ପଛିମେ ବୃକୋଦର ଉତ୍ତରେ ଫାଲଗୁନ
ପୂର୍ବେ ସହଦେବ ଦକ୍ଷିଣେ କୁମାର ଅଶ୍ୱିନୀ । ୩୯ ।
ଗଣ୍ଡାଗୀବ ନିମନ୍ତେ କରାତ ରୂପ ଧରି
ଧାମଣା କାଠର ଧନୁ କଣ୍ଟା ବାଉଁଶର ଗୁଣକରି । ୪୦ ।
ମଥାରେ ମଜୂର ଝାଳଂକଣ୍ଠେଣ ଗୁଞ୍ଜିମାଳ
କଟିରେଣ ବାଳପୁଞ୍ଜି ଗୋପୀଚନ୍ଦନ ଅଙ୍ଗେ ସାମଳ । ୪୧ ।
ଗନ୍ଧମା ଟୋପର ବନ୍ଧନୀ କୁଂକୁମର ରେଖା
ଫିରିକ ନାରଜ କୋଠାର ଶିଖୀପୁଚ୍ଛ ଶିଖା । ୪୨ ।
ଯେସନେକ ସରୂପେ କରାତ ରୂପ ଧରି
ପାଣ୍ଡିବାଟ ଜଗନ୍ତି ଖେଦନ୍ତି ବନ ହେରି । ୪୩ ।
ଯେମନ୍ତର ସମୟେ ସେ ରେବାସୁର ରାକ୍ଷସେ
ନଦୀକୂଳେ ବସିଅଛି ମନର ହରଷେ । ୪୪ ।

---

୩୩।୧ ବହୁତ ଚ୍ୟୁତଫଳ ପାଚି ପଡ଼ଇ ତଳ ।—କ, ଡ, ଞ, ଟ, ଘ
୪୨।୧ ( ଗନ୍ଧିମା—ଧନନ୍ତ୍ରୀ ଗଛ )
୪୨।୧ ପାଟର ଟୋପର ବନ୍ଧନୀ କୁସୁମ ରେଖା (କୁଂକୁମରେଖା) ।
୪୨।୧ ଫିରିକ ନାରଜ କୋଠରି ମୟୂର କଣ୍ଠ ଶିଖା ।—ଥ

ଦକ୍ଷିଣ ଅରଣ୍ୟେ ଯେ ବିହରଇ ନକୁଳ
ରେବାସୁରକୁ ଭେଟିଲେ ସେ ନଦୀର କୂଳ । ୪୫ ।
କୁହୁଳ ରବ କରଣ ଆସଇ ନକୁଳ ଚଳି
ବୋଲଇ ଦୁରନ୍ତକ ମୋତେ ମିଳିଲୁ ନରବଳୀ । ୪୬ ।
ଅନେକ କାଳକୁ ମୁହିଂ ବିହରଇ ଯେ ବନସ୍ତେ
ସୁଭୋଜନ ପ୍ରାପତ ହୋଇଲୁକ ଆସି ମୋତେ । ୪୭ ।
ଅନେକ ଅଳଂକାର ଆଭରଣ ଅଛଇ ତାର କାୟେ
ନକୁଳଙ୍କଇଂ ଭେଟିଲେ ସେ ଅସୁରକୁଳ ରାୟେ । ୪୮ ।
ନକୁଳକଇଂ ବୋଇଲେ ହୋ ବୋବଦଅ କସ ଅର୍ଥେ
ନକୁଳ ବୋଇଲେ ମୁହିଂ ଗଣ୍ଡାଜୀବ ଲୋଡଇ ମୋହୋର
ପିତୃକାର୍ଯ୍ୟ ଅର୍ଥେ । ୪୯ ।
ସେ ଦାନବ ବୋଇଲେ ଯେ ବନେ ଗଣ୍ଡା ନାହିଂ
ତୁ ମୋର ଭକ୍ଷପାନ ଗଣ୍ଡା ପାଇବୁ ଆଉ କାହିଂ । ୫୦ ।
ମୁହିଂ ରେବାସୁର ଧୂମ୍ରଲୋଚନର ପଣନାତି
ମୋହୋର ଭୟେ ଦେବତା ଋଷିୟେ ପଶି ନୁଆଇନ୍ତି ଯେଥି । ୫୧ ।
ନକୁଳ ବୋଇଲେ ମୋର ପିତୃକାର୍ଯ୍ୟ କାଳି
ଗଣ୍ଡାଜୀବ ନେବାକୁ ମୁଂ ଯେଥକୁ ଅଇଲି । ୫୨ ।

---

୪୬।୧ କଳକଳା ରବ ହୋଇଣ ଆସଇ ଅସୁର ଚଳି ।—ଖ, ଣ, ନ, ଠ

୪୯।୨ ନକୁଳ ବୋଇଲେ ବୋବଦଅ କସ ଅର୍ଥେ ।—ଖ, ଣ ନ, ଠ, ଢ
ଘ, ଙ, ଚ, ଛ

୪୯। ମୁହିଂ ଗଣ୍ଡାଜୀବ ହେରଇ ପିତୃକାର୍ଯ୍ୟ ଅର୍ଥେ ।—କ, ଥ

୫୦ { ଦାନବ ବୋଇଲେ ରେ ତୋହୋର କସ ଇଚ୍ଛା
ମୁହିଂ ନଶାଚର ତୁ ମୋର ଅଟୁ ନିଜ ଭକ୍ଷା ।—କ, ତ, ଧ, ନ }

୫୦ { ଦାନବ ବୋଇଲେ ରେ ନାହିଂ ତୋର ରକ୍ଷ
ମୁହିଂ ନଶାଚର ତୁହି ଅଟୁ ମୋର ଭକ୍ଷ ।—ଣ }

ଗଣ୍ଡା ଗୋଟିଏ ନେଇ ମୋର ସ୍ୱାମୀ ଆଗରେଣ ଦେଇ
ପରଦିନ ଆସିବି ମୁଂ ସତ୍ୟ କହିଲଇଂ । ୫୩ ।
ତୁ ହୋ ରେବାସୁର ଯେତ୍ନ ଠାବରେ ଥାଅ ବସି
ପରଦିନ ବେଳ ପ୍ରହରେକେ ମୁଂ ମିଳିବି ଯେତେଂ ଆସି । ୫୪ ।
ନରମାନୁଷ ରେ ତୁମ୍ଭେ ମୋହୋର ନଜ ଭକ୍ଷ
ସମ୍ପୂର୍ଣ୍ଣ ଆଧାର ମୋତେ ମିଳିଲ ପ୍ରତକ୍ଷ । ୫୫ ।
ପରଦିନ ବେଳ ପ୍ରହର ଯାଏ୍ୟ ବାଟ ଗୃହିଂଥିବି ତୁକୁ
ଆଜହୁଂ ଆହାର ତୁ ହୋଇଲୁ ଜାଣ ମୁକୁ । ୫୬ ।
ଆସ ଆସ ତୋତେ ଦେଖାଇବା ଗଣ୍ଡାଚର ଭୂମି
ଯାନ୍ତେଣ ଦେଖିଲ ଗଣ୍ଡାପଲ ଆସୁଛନ୍ତି ଭ୍ରମି । ୫୭ ।
ଆଗେଣ କୁମାର ନେଇ ଜାଲଫାଶ ଛନ୍ଦ
ବେନଗୋଟି ଗଣ୍ଡା ଯେ ଫାଶ କରି ବାନ୍ଧି । ୫୮ ।
ଚଳଇ କୁମାର ଯେ ଗଣ୍ଡାଭାର ଘେନକରି
ଯୁଧିଷ୍ଠିରଂକ ସ୍ମୁମୁରେ ପ୍ରଲମ୍ବ ବେନକାଣ୍ଡ ଯୋଡ଼ି । ୫୯ ।
ଅର୍ଜ୍ଜୁନ ଆଣିଲ ଯେ ଗୃହିଗୋଟି ଗଣ୍ଡା
ବେନଗୋଟି ଗଣ୍ଡା ଆଣିଲ ଭୀମ ପରିଚଣ୍ଡା । ୬୦ ।
ଘାରେକ ଘେନିଣ ସେ ଯେ ଅଇଲ ସହଦେବ
ନଖତ୍ର ବନସ୍ତେ ଥିଲେ ବହୁତ ଜୀବ । ୬୧ ।
ତୁଲମାସ ପଞ୍ଚମୀ ଯେ ପୁଣି ଗୁରୁବାର
ପିତୃକାର୍ଯ୍ୟ ସାରିଲେ ସେ ଦେବ ଯୁଧିଷ୍ଠିର । ୬୨ ।

---

୫୮ { ଆପଣେ କୁମାର ଜାନୁରେ ପାଦ ଛନ୍ଦ
ତୁରତେ ନାରିକ ଛନ୍ଦ ଗଣ୍ଡା ଆଣିଲ ବାନ୍ଧି ।—ଙ, କ

୫୮ { ଆଗେଣ ନାରିକ ଛନ୍ଦ ଜାଲପାଶ ଛନ୍ଦ
ତତକ୍ଷଣେ କୁମାର ଜଳଫାଶ ସନ୍ଧି ।—ଜ

୫୯।୨ ଯୁଧିଷ୍ଠିରଂକ ସ୍ମୁମୁରେ ହଭ ବେନକର ଯୋଡ଼ି ।—ଓ

୫୯।୨ ଯୁଧିଷ୍ଠିରଂକ ସ୍ମୁମୁରେ ପ୍ରଣପତ୍ୟ ଗଣ୍ଡା କରେ ଧରି । ଝ

ଋଷିମାନଂକୁ ନିମନ୍ତ୍ରଣ ଦିଲେ ଗଣ୍ଡାମାଂସ ଭୋଜ
କାମ୍ୟଶ୍ରାଦ୍ଧ ଅର୍ଥେ ଋଷିମାନେ ଭୁଞ୍ଜି ଶାନ୍ତ ଭଜ । ୬୩ ।
ବହୁତ କଲ୍ୟାଣ ସେ କଲେ ସର୍ବ ତପୋନିଷ୍ଠି
ଆୟୁଷ୍ୟ ଆରୋଗ୍ୟ ହୋଇ ତୋହୋର ଖଣ୍ଡଣ ହୋଇ ଅରିଷ୍ଟି । ୬୪ ।
ଆମ୍ଭର ଆଶିଷ ଘେନକରି ତୁମ୍ଭେ ହାଦେ ବ୍ରତ
ପଞ୍ଚୁକଣ୍ଟକରେ ତୁମ୍ଭେ ହୋଅସି ନରନାଥ । ୬୫ ।
ଯେତୁକାଙ୍ଗେ ରାଜ୍ୟ ଭୋଗକର ତୁ ଧର୍ମସୁତ
ଆମ୍ଭର କଲ୍ୟାଣେ ତୋର ଆପାଦ ହୋଉ ହତ । ୬୬ ।
ଶତ୍ରୁନିପାତନ ରାଜା ହୋଇ ଯେ ତୋହୋର
ପଞ୍ଚୁକଣ୍ଟକରେ ତୁମ୍ଭେ ହୋଅସି ଦଣ୍ଡଧାରୀ । ୬୭ ।
ମୁନିମାନେ ପାଣ୍ଡବନ୍ତ କଲେ ଯେ କଲ୍ୟାଣ
ନକୁଳ କହିଲ ଯେ ଯୁଧିଷ୍ଠିରଦେବଂକ ଆଗେଣ । ୬୮ ।
ଭୀମ ଅର୍ଜୁନ ସହଦେବ ଦ୍ରୋପଦୀ ସର୍ବଋଷି
ଧଉମ୍ୟ ପୁରୋହିତେ ମାରକଣ୍ଡେ ଛନ୍ତି ବସି । ୬୯ ।
ନକୁଳ ବୋଇଲା ସ୍ୱାମୀ ମୁଂ ବନେ ବିହରନ୍ତେ
ରେବାସୁର ଦାନବ ଯେ ଭେଟିଲାକ ମୋତେ । ୭୦ ।
ବୋଇଲା ନର ଜନ୍ତୁମାନ ମୋହୋର ହାଦେ ଭକ୍ଷ
ଯତନେ ଯାହା ଲୋଡଇ ତାହା ମିଳଇ ପ୍ରତକ୍ଷ । ୭୧ ।
ମୁହିଂ ବୋଇଲ ବାବୁ ନାଶ ତୁ ନ କର ମୋତେ
ପିତୃକାର୍ଯ୍ୟ ସାରି ମୁଂ ଭୋଜନ ଦେଇବି ତୋତେ । ୭୨ ।
ସ୍ୱାମୀ ବଡାଇ ଧାର୍ମିକ ସେ ଅଛଇ ବଳିଷ୍ଠ
ମୋହୋର ଯିବା ଯାଏଂ ସେ ରହିଥିବ ବାଟ । ୭୩ ।
ସ୍ୱାମୀ ମୁହିଂ ଯେବେ ଯିବଇଂ ସେ ରାକ୍ଷସ ତହିଂକ
ମୋତେ ସେ ଭୋଜନ ଦେବ କରିବ ନାହିଂକ । ୭୪ ।
ସ୍ୱାମୀ ଯୁଗତେ ଦାନବ ସେ ଅଛଇ ନିଶାଚର
ପିତୃକାର୍ଯ୍ୟ ବୋଲନ୍ତେଣ ସେ ଛାଡିଲା ଅସୁର । ୭୫ ।

---

୬୩।୧ କାମ୍ୟ ଶ୍ରାଦ୍ଧକରି ଋଷିମାନେ ସର୍ବେ ଭୁଞ୍ଜି ।—ଜ, କ

ସତ୍ୟକୁ ପାଳନ କଲା ଦାନବ ମାନେକ ହୋଇ
ମୁହିଂ କେମନ୍ତେ ସତ୍ୟଭଗ୍ନ ହୋଇବି ଗୋସାଇଂ । ୭୬ ।
ମୁହିଂ ଅବା କେମନ୍ତେ ନ ପିଇବି ତାର ରହିଂ
ସ୍ୱାମୀ ବିଶ୍ୱାସଘାତକ ଲୋକକୁ କାହିଂ ଠାବ ନାହିଂ । ୭୭ ।
ସ୍ୱାମୀ ବାକ୍ୟ ବିଚଳଇଟି ଯେବଣ ପୁରୁଷ
ଅସାର୍ଥକୁ ଅଟଇ ଯେ ତାହାର ମନୀଷା । ୭୮ ।
ଯୁଧିଷ୍ଠିର ଦେବ ତହିଂ ବଚନ ପରକାଶି
ଅସୁରେ ତୋହୋର କମେ ଯେତେକ ବିଶ୍ୱାସୀ । ୭୯ ।
ନୋହୋଇ ନୋହୋଇ ନକୁଳ ରେ ନୋହୋଇ ଯେ କଥା
ବାବୁ ଉପାୟେ କରି ଷର୍ବୀଂକର ଜୀଇଂବା ସର୍ବଥା । ୮୦ ।
ତୁ ମୋହୋର ସୋହୋଦ୍ର ରେ ବାଳୁତ ସୁବୁଦ୍ଧି
ତରି ଅଇଲୁ ରେ ବାବୁ କାର୍ଯ୍ୟକଲୁ ସିଦ୍ଧି । ୮୧ ।
ବାବୁ ନାନା ଧର୍ମ ଅରଜ ଯେ ଶରୀର ନମନ୍ତେ
ଶରୀର ନାଶଗଲେ ଧର୍ମ କିସ ଅର୍ଥେ । ୮୨ ।
ନକୁଳ କହଇ ବ୍ୟାସେ କହିଲେ ଶାସ୍ତ୍ର ଯୋଗେ
ସ୍ୱାମୀ ଗଉତମଂକ ଶିଷ୍ୟ ଅଟନ୍ତି ଉତ୍ତଙ୍କେ । ୮୩ ।
ଶୁଣିଲା କାଠଭାର ଆଣନ୍ତେ ଭେଟିଲା ସଉଦାସ
ସେ ବୋଇଲା ବ୍ରାହ୍ମଣ ତୁ ହୁଅସି ମୋର ଗ୍ରାସ । ୮୪ ।
ଉତ୍ତଙ୍କ ବୋଇଲା ମୁଂ କାଠଭାର ଥୋଇ
ଯେତେକ୍ଷଣି ଆସିବଇଂ ଗୁରୁଂକୁ ମୋର କହି । ୮୫ ।
ଗୁରୁଂକୁ କହି ସେ ଉତ୍ତଙ୍କ ପୁଣି ବାହୁଡି ଅଇଲା
ସେ ସଉଦାସ ରାଜା ତାକୁ ପ୍ରସନ୍ନ ହୋଇଲା । ୮୬ ।
ଯୁଧିଷ୍ଠିର ବୋଇଲେ ସେ କାଳର ଅନୁସାରେ
ସତ୍ୟଯୁଗେ ଯାହା ବୋଲି ସେ ହୋଅଇ ସରୁପେ । ୮୭ ।

---

୭୮ । ୧ ସ୍ୱାମୀ ବିଶ୍ୱାସଘାତକଟି ଯେବଣ ପୁରୁଷ । —ଣ, ନ, ଖ
୭୮ । ୧ ସ୍ୱାମୀ ବିଶ୍ୱାସଘାତକଟି ଯେବଣ ପୁରୁଷ । —ଠ
୮୧ । ୧ ଯେତେକେ କଥା ବାବୁ ନ କହ ଅବଧି । —ଙ

ନକୁଳ ବୋଇଲା  ସ୍ୱାମୀ ମୁଂ ତାହା ତୁଲେ ସତ୍ୟକଲି
ଆଶା ଦେଖାଇଣ ମୁଂ ଯେ ଭଣ୍ଡିଣ ଅଇଲି । ୮୮ ।
ଯୁଧିଷ୍ଠିର ଦେବେ ବୋଇଲେ ପୋଡୁ ପୋଡୁ ତାର ଆଶା
ଅଜ୍ଞାନ ପାପ ବୁଦ୍ଧିକ  କରୁ ତୁ ଭରସା । ୮୯ ।
ନକୁଳ ବୋଇଲାକ ସ୍ଥମୁରେ  ପରଣାମି
ଆଜ୍ଞାଂ ଦେବା ମୋତେ ମୁଂ ଅବଶ୍ୟ ଯିବଇଂ ଦେବ ସ୍ୱାମୀ । ୯୦ ।
ଅର୍ଜୁନ ବୋଇଲେ ସ୍ୱାମୀ ନ ବାର ଯେହ୍ନାକୁ
ଧର୍ମଥିଲେ ପାର ହୋଇବ ପଶିଠାଲ ପରମାଦକୁ । ୯୧ ।
ପରମ କଲ୍ୟାଣ ହୋଉ ବୋଇଲେ ଯୁଧିଷ୍ଠିର
ଅସୁର ନାଶି ପାର ହୋଇଆସ ମୋହୋର ଭାଇଗୋଟି । ୯୨ ।
ବାବୁ ମୃତ୍ୟୁକାଳେ ମାଦ୍ରୀଦେବୀ ସମର୍ପି ଗଲେ ମୋତେ
ମୁଂ ଯେବେ ଦେଖୁ ଦେଖୁ ମୁର୍ଛିବ କେମନ୍ତେ । ୯୩ ।
ତୋତେ ମୁଛ  ନୁଆରଇ ଯୁଧିଷ୍ଠିର ଦେବ ବୋଇଲେ
ଆରେ ଭୀମସେନ ତୁ ଯାଅ ନକୁଳର ତୁଲେ । ୯୪ ।
ଧର୍ମନନ୍ଦନର ଆଜ୍ଞାଂ ଶିରରେ  ବହି
ନକୁଳକଇଂ ଘେନ ଗଲେ ବୃକୋଦର ଆସି । ୯୫ ।
ରେବାନଦୀ କୂଳେ ଗଲେ ପଞ୍ଚସ୍ରତୀ ଜଣ
ଭେଟିଲେ  ରେବାସୁରକଇଂ ଘୋର ଯେ କାନନ । ୯୬ ।
ଭୀମସେନ ଗୋପ୍ୟ ହୋଇଲା ଅନୁସର  ପରବତେ
ବୋଇଲା ଯାଅ ଯାଅ ନକୁଳରେ କସ କଇଲ ଦାନବ ତୋତେ । ୯୭।
ତୋତେ ଲଂଘିତେ ଲେଉଟିଲେ ଗାତେ ଦେବୁ ବୋଲ
ଧାଇଁକାରେ ଯାଇଂଣ ମୁଂ ଅସୁର ମାରିବ । ୯୮ ।
ନକୁଳ ବୋଇଲେ ସ୍ୱାମୀ ଯେସନେ ତୋହୋର ଇଚ୍ଛା
ମୁହିଂତ ଅସୁରର ପୂରେଇବ ମନୋବାଞ୍ଛା । ୯୯ ।

---

୮୯।୨   ଅଜ୍ଞାନ ପାପବୁଦ୍ଧି ନ ଧର ମନୀଷା ।—କ, ଛ, ଞ
୯୮।୨   ତୋତେ ଭକ୍ଷି ଲେଉଟନ୍ତେ ଆଣ୍ଟେ ଦେବୁ ରଡ଼ି ।—ଣ

ରେବା ଅସୁର ସନ୍ନିଧେ ପ୍ରବେଶ ମହନାବଷ୍ଟାର ବଳା
ମହା ସାନନ୍ଦେ ସେ ତେଜ ଅନର୍ଗଳା । ୧୦୦ ।
ନକୁଳ ବୋଇଲା ବାବୁ ପାଇଲୁଁ ବଡ଼ କ୍ଷୁଧା
ମାସ୍ଥା ମୋହ ବଞ୍ଚିବାକୁ ମୁହାଂସ ବଡ କ୍ଷୁଧା । ୧୦୧ ।
କର ଯା ସାହାନ ହୋ ଭକ୍ଷକରି ମୋର ମାଂସ
ଦେଖି ତାକୁ ରେବାସୁର ହୋଇଲା ଦ୍ରୁହାସ । ୧୦୨ ।
ବନ୍ତ ଧାପନ ସାଶ କଲା ନତ୍ୟକର୍ମ
ବଡାଇ ସଂକଟ ତ ପଡଲ୍ଲା ଭେ ଧର୍ମ । ୧୦୩ ।
ଗଲ୍ଲର ମନଷ୍ୟ ତ ଅଛନ୍ତି ବାହୁଡ
କସ ଅରଜବ ମୁଂ ଯେହାକଇଂ ନାଶକର । ୧୦୪ ।
ଅସୁର ବୋଇଲା ଆହୋ ମହାତମା ଉପାୟେ କରିଗଲୁ
ଦେଖୁଂ ଦେଖୁ ମରଣ ଭୂମିକୁ କମ୍ପେ ଭୁ ଅଇଲୁ । ୧୦୫ ।
ନକୁଳ ବୋଇଲା ମୁଂ ତୋତେ ଦେଖାଇ ଗଲି ଆଶା
ମୁହ୍ନିଂ ଅବା କେବଣ ବାଗେ କରିବ ନିରାଶା । ୧୦୬ ।
ନକୁଳକୁ କୋଳକରି ଦାନବ ମୁଖେ ଦେଲା ଚୁମ୍ବ
ବାଳୁତ ବୟସେ ତୋର ଯେତେବଡ ଦମ୍ଭ । ୧୦୭ ।
ଆସ ଆସ ମହାତମା ମୁଂ ହୋଇଲି ନିପୁତ୍ର
ଅମୂଲ୍ୟ ରତ୍ନମାନ ତାହାକଇଂ ଦେଲାକ ଦତ୍ୟପତ୍ର । ୧୦୮ ।
ମଣି ମୁକୁଟ ରତ୍ନ ସୀମନ୍ତମ କର୍ଣ୍ଣାଞ୍ଚଳ
ହୃଦଭୂଷଣ ପଦକ ବାହୁଟି କଂକଣ ନଅାଳ । ୧୦୯ ।
ତାଡ ଗୁମ୍ଫା ସରଳ କଟଟି ବଦମୁଦ
ମୁକୁତଝାଲି ମାଥେ ପାଦେ ନୂପୁର ସିଦ୍ଧି । ୧୧୦ ।
ଯେସନେକ ସମ୍ପଦ କରି ଅସୁରେଶ୍ୱର ସ୍ୱାମୀ
ନକଳ ପାଦେ ସେ ହୋଇଲା ଶରଣାମି । ୧୧୧ ।

---

୧୦୯ । ହୃଦଭୂଷଣ ପଦକ କଂକଣ ନସରଳ ।—ଣ, ଖ, ନ, ଠ

ତୁ ମୋର ବାନ୍ଧବ ରେ ପ୍ରାଣରୁ ଅଭିନ୍ନ
ସତ୍ୟ ସତ୍ୟ ବାକ୍ୟ ମୋହୋର ତୋ ତହୁଂ ନାହିଂ ଆନ । ୧୧୨ ।
ପୁଣ ପୁଣ ସମସ୍ତେକ ତୁ ବାବୁ ହୋ ଆସିବୁଟି ସ୍ୱେଥ
ଧର୍ମହିଂ ସାକ୍ଷ ଆଜହୁଂ ତୁମ୍ଭନ୍ତ ହୋଇଲ ମଇଥ । ୧୧୩ ।
କାର୍ଯ୍ୟକାଳେ ମଇଥ ତୁ ଆସିବୁ ମୋର ତହିଂକ
ଆନେଇ ଧନ ଭଣ୍ଡାର ଦେବ ମୋର ସତ୍ୟବାକ । ୧୧୪ ।
ଦାରାକ୍ଷ ଫଳ ଭୁଞ୍ଜାଇ ବହୁତ ଗଉରବେ
ଥୋକାସ୍ୱେ ଦୁଟରେ ନେଇ ଗୁଡଲ ପ୍ରିୟଭାବେ । ୧୧୫ ।
ବାହୁଡାଇ ରେବାପୁରେ ଆପଣା ଭୁବନେ
ନକୁଳ ମିଳଲ୍ଲ ଯାଇଂ ଭୀମସେନର ସନ୍ନିଧାନେ । ୧୧୬ ।
ଚଳଇ ଭୀମସେନ ନକୁଳକଇଂ ଘେନ
ଦେଖିଣ ଆଶ୍ରିଜ ଯେ ହୋଇଲେ ସର୍ବମୁନ । ୧୧୭ ।
ଉଠିଣ ଧନୁର୍ଜ୍ଜ୍ୟେ କଲ୍ଲକ କୋଳାଗ୍ରତ
ସତ ଥିଲେ ଧର୍ମ ହାବେ ହୋଅଇ ଉଦିତ । ୧୧୮ ।
ଯାବତ ଚରିତ ନକୁଳ କହଇ ଯୁଧିଷ୍ଠିରଂକ
ଅନେକ ସାନନ୍ଦ ହୋଇଲେ ଭ୍ରାଥକଇଂ ଦେଖି । ୧୧୯ ।
ରେବା ତୀର୍ଥଗୋଟି ଜାଣି ଚଳଲେ ପଞ୍ଚୁ ଭାରେ
ଅଠାଶୀ ସହସ୍ର ଋଷି ଅଛନ୍ତ ସଙ୍ଗତରେ । ୧୨୦ ।
ଭ୍ରମଣ କରୁଛନ୍ତି ଗହନ ବନସ୍ତରେ
ଜଗନ୍ନାଥ ସୁମରନ୍ତ ଯୁଧିଷ୍ଠି ଠାକୁରେ । ୧୨୧ ।
ଜୟତୁ ନାରାୟଣ ଭଗବାନ ମୂରତି
ଅଷ୍ଟଗୁଣ ଲୋକେ ତୁ ବଳାଇଲୁ ପୀରତି । ୧୨୨ ।

---

୧୧୨।୨ ସତ୍ୟବାକ୍ୟ ତୋତେ ମୋର କାହିଂ ଆନମନ ।—ଛ, ଟ, ଡ

୧୧୩।୨ ଧର୍ମହିଂ ସାକ୍ଷ୍ୟ ଆଜହୁଂ ରୁ ମୋହୋର ମଇଥ । – ଞ, କ, ଟ, ଝ, ଙ

୧୨୨ { ଜୟତୁ ନାରାୟଣ ଅନନ୍ତ ମୂରତି
ଅଷ୍ଟଗୁଣେ ଲଭ ରୁ ବଳାଇଲୁ ପୀରତି ।—କ

ଅପରତେ ପରତେ ବାନ୍ଧବନାଥ ତୁମ୍ଭ ସେ କରତା
ସର୍ବ ଶୟନ ନାଥ ତୁ ଜଗତଜନ ଚିନ୍ତା ।୧୨୩।
ସର୍ବକର୍ତ୍ତ ଯେକତ୍ର କର ଶରୀର ସମ୍ଭାଳ
ତେଣୁ ସେ ନାମ ତୋହୋର ବହିଲୁ ବନମାଳୀ ।୧୨୪।
ଧର୍ମ ବାସନା ନାଥ ଦୁରନ୍ତକ ଦୋଷହର
ନାଶକର ଦଣ୍ଡେ ମୋତେ କେଳଣ ନ କର ।୧୨୫।
ବହୁତ ବିକୃତଯେ ସଂସାର ଜନ ଛନ୍ଦ
ମାୟାମୋହେ ପଡଣ ମୁଂ ହୋଇଲଇଂ ଅନ୍ଧ ।୧୨୬।
ନିରାକାର ପୁରୁଷ ସେ ନିରହନ୍ଦବାସୀ
ଯେ ମାୟା ମୋହ ସଂସାରୁ ମୋତେ କରିବା ଉଦାସୀ ।୧୨୭।
ତୁଳସୀର ବଲ୍ଲଭ ଚରଣ ମୋର ହୃଦେ
ଶୂଦ୍ରମୁନି ସାରଳା ଦାସ ଶ୍ରୀନାରାୟଣ ପଦ୍ମପାଦେ ।୧୨୮।
ଜୟତୁ ଦଧିବାବନ ଶଙ୍ଖ ଶରଦ ପଦ୍ମମୁଖ
କାମିନୀ କାମନା ପୂର୍ଣ୍ଣ ମୁନି ମାନ ରଖ ।୧୨୯।
ଶଙ୍ଖ ଚକ୍ର ଗଦା ଶାରଙ୍ଗ ଧନୁ ଦଣ୍ଡପାଣି
ଶିରେ କିରୀଟୀ ମୁକୁଟ ଦେବଦତ୍ତ ଶଙ୍ଖବାଣୀ ।୧୩୦।
ଶିରରେ ଅନ୍ତବର ସପତ କୁଣ୍ଡଳୀ
ଇନ୍ଦୁ ରବୁଣ ନୟନ ଭାବଇ ଧବଳୀ ।୧୩୧।

---

୧୨୫।୧ ଧର୍ମ ବିବର୍ଦ୍ଧନ ନାଥ ଦୁଷ୍ଟ ଦର୍ପହର ।—ଖ
୧୨୫।୧ ଧର୍ମ ବିବର୍ଦ୍ଧ ନାଥ ଦୁଷ୍ଟ ଦୋଷହର ।—ଠ, ନ
୧୨୫।୨ ନାଶକର ଦଣ୍ଡରୁ କରିବା ମୋତେ ପାର ।—ଣ, ନ
୧୨୬।୨ ମାୟାମୋହ ସଂସାରୁ ଉଦ୍ଧାର କରସି ।—ଟ, ଠ
୧୨୯ { ଜୟତୁ ଦଧିବାବନ ଶଙ୍ଖ ପଦ୍ମ ଦଳାକ୍ଷ
କାମିନୀ କାମନା ନାଥ ମହାତ୍ମା ପୁରୁଷ ।—ଥ
୧୨୯ { ଜୟତୁ ଦଧିବାବନ ମହିମାଂ ପ୍ରକାଶ
କର୍ମେ ଅକର୍ମେ ଯେକତ୍ର ମହାତ୍ମା ପୁରୁଷ ।—ଞ
୧୨୯ { ଜୟତୁ ଦଧିବାବନ ଶଙ୍ଖ ଧବଳ ମୁଖ
କାମ୍ୟକ କାମିନୀ ଯେ ମହାତ୍ମା ଗୋରେଖ ।—ଢ଼, ଟ

ଗହନ କନ୍ଦରବାସୀ ମାଳଶ୍ରୀ ବହରେ
ମାଳଶ୍ରୀ ର ବଲ୍ଲଭ ଯେ ମାୟାରୂପ ଧରି । ୧୩୨ ।
ଶିରରେ ଶୋଭିତ ଯେ ଚାନ୍ଦୁକା ଚୂଳଗୋଟି
ବହନ୍ତି ମକରନ୍ଦେ ପାଦୁଂ କମଳ ଫୁଟି । ୧୩୩ ।
ଆରକତ ନେତ୍ର ଲୋଚନ ମାଳେନ୍ଦ୍ରୀ ପୁଷ୍ପବର୍ଣ୍ଣା
ବେଣୁ ବାଦ୍ୟେଂଶୀ ସୁସ୍ୱରେ ମୋହିଲୁ ଗୋପାଙ୍ଗନା ବରାଙ୍ଗନା ।୧୩୪।
ଭୁଳ ଶୁକଳ ପଞ୍ଚମୀ ଯେ ପୁଣି ଗୁରୁବାର
ପିତୃକାର୍ଯ୍ୟ ଶେଷକଲେ ୨ଦେବ ଯୁଦ୍ଧେଶ୍ୱିର । ୧୩୫ ।
ଅନେକ ଅଳଂକାର ଅଳେଖ ଯୋଗାଡ଼ ଘେନଣ ରାଧିକା
ଯମୁନା ସ୍ନାହାନେ ସେ ଗବନ ରାଧିକା ଯେକା । ୧୩୬ ।
ଚନ୍ଦ୍ର ଉଦ୍ୟୋଷନ୍ତି ହରି ରାଧିକା ନିମନ୍ତେ
ଯାଆନ୍ତେଣ ଦେଖିଲେ ସେ ପୁଷ୍ପୋକ ଦୁହିତେ । ୧୩୭ ।
ସ୍ନାହାନ ସାରଣ ସେ ଯେ ବାହୁଡ଼ନ୍ତି ରାଧେ
ବହାନ୍ତ ଗୁଡ଼ଣ ଯାଇଂ ଭେଟିଲେ ଗୋବନ୍ଦେ । ୧୩୮ ।
ବୋଇଲେ ମୁହିଂ ଯାହା ବହୁରୁଥିଲି ହୃଦଗତେ
ପୁଷ୍ପୋକ ନନ୍ଦନୀ ଗୋ ପ୍ରସନ୍ନ ହୋଅ ମୋତେ । ୧୩୯ ।
ଅନେକ ବନୋସ୍ତ୍ରୀ ଯତ୍ନଂ ହୋଇଲେ ବନମାଳୀ
ସୁବେଳେ ପ୍ରସନ୍ନ ହୋଇଲେକ ଚନ୍ଦ୍ରାବଳୀ । ୧୪୦ ।
ରାଧା ମାଧବ ବେନ ବଜେ କୁଞ୍ଜଲତା ତଳେ
ବହଇ ମଳୟାନଳ ବସନ୍ତ ଶୟନେ । ୧୪୧ ।

---

୧୩୨ { ଗହନ କନ୍ଦର ବାହଂସୀ ମାଳଶ୍ରୀ ବରଷା
ଆଂକଣ ଅବଲୋକନ ମାଧବ ନ'ମ ବହି ।—ଘ

୧୩୩।୧ ଶିରରେ ଶୋଭିବନ ଚାନ୍ଦୁରେ ଚୂଳ ଗୋଟି ।—ଛ, କ

୧୪୧।୨ "ବହଇ ମଳୟାନଳ ବସନ୍ତ ଶୟନେ"
ପରେ 'ଚ' ପୋଥିରେ ଅଧିକା ପାଠ :—
ରାଧାମାଧବଂକର ହୋଇଲା ରତିରସ
ଆକାଶେ ଦେଖୁଣ ଅଛନ୍ତି ତ୍ରିଦଶ୍ୟ ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ରାଧା ମାଧବର ଯେ ଶୃଙ୍ଗାର ପ୍ରତୋଷେ ।
ବଢିଲା ଅନଙ୍ଗରସ ପ୍ରେମର ଲାଳସେ । ୧୪୬ ।

---

[ପୂର୍ବପୃଷ୍ଠାର ପାଠାନ୍ତର]
ଆକାଶେ ଥାଇ ବିଚାରଇ ବେଦବର
ଶ୍ରୀକୃଷ୍ଣ ରହିଛନ୍ତି ତେଣେ ରାଧିକା ସଙ୍ଗତର ।
ବତ୍ସା ବାଳକ ସବୁ ହରଣ ଆଣିମି
କମଳ ମଧ୍ୟରେ ଲୁଚାଇ ରଖିମି ।
ବିଚାର ବେଦବର ଶ୍ରୀବୃନ୍ଦାବନେ ପ୍ରବେଶ
ମାୟାରେ ଘେନଗଲା ବତ୍ସା ବାଳଶିଷ୍ୟ ।
ରାଧାମାଧବଂକର ସରିଲା ରତିରସ
ରାଧିକା ବିଜେକଲେ ଆପଣା ଗୃହବାସ ।
ଶ୍ରୀକୃଷ୍ଣ ଯାଇଂ ଦେଖିଲେ ବନ କନ୍ଦର ଭୂମି
ବତ୍ସା ବାଳକ ନ ପାଇ ହୋଇଲେ ପଥଶ୍ରମୀ
ତୃଷାରେ ଯମୁନାରୁ ଜଳ ଯେ ସାରଲେ
କୋମଳ ପଲ୍ଲବରେ ବିଶ୍ରାମ ହୋଇଲେ ।
ମନରେ ବିସ୍ମୟ ହୋଇ ଯମୁନା ତୀରେ ବସି
କେଉଣ ପୁରୁଷ ମାୟାରେ ନେଲା ବାଳଶିଷି ।
ମନେ ବିଚାରଲେ ବ୍ରହ୍ମା ମାୟାକଲା
ଯେମନ୍ତ କଥାତ କାଲେ କାଲେହେଂ ନଥିଲା ।
ବିଚାର ଶ୍ରୀଅଙ୍ଗୁ ବତ୍ସା ବାଳକ ଜାତକଲେ
ନାଟନୃତ୍ୟ କରଣ ଗୋପକୁ ଚଳିଲେ ।
ବେଲ ଅବସାନେ ଯାଇ ଗୋପରେ ପ୍ରବେଶ
ଦେଖି ନନ୍ଦ ନାରୀମାନେ ମହା ଯେ ହରଷ ।
ସର ଲବଣୀ ଦଧି ଅନ୍ନ ମାତା ଆଣିଦଲେ
ପରମ ସନ୍ତୋଷେ ଯେ ଶ୍ରୀକୃଷ୍ଣ ଭୁଂଜିଲେ ।
ବତ୍ସା ବାଳକ ସବୁ ମାତା ପାଶେ ଗଲେ
ଶ୍ରୀକୃଷ୍ଣ ମାୟାରେ କେହି କାହାକୁ ନ ଚହ୍ନିଲେ ।
ଆନନ୍ଦେ ମାୟା ବାଳକ ଘେନ ରହିଲେ ସନ୍ତୋଷେ
ବତ୍ସାନ୍ତ ଘେନ ବ୍ରହ୍ମା ରହିଲେ ବରଷେ ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ଶ୍ରୀକୃଷ୍ଣ ପୀରତି ଭାବେ ବର୍ଣ୍ଣିଲ୍ଲ ଜାମଜଟା
ସ୍ୱାମୀର ଭଟଣ୍ଡ ସେ ଗୁଡିଲ୍ଲ ବନଟା । ୧୪୩ ।
ବିଧାତା ବିଚାରିଲେ ଯେଣୁ ନ ମାରିବ କଂସକୁ
ଅନୁବ୍ରତେ ବର୍ଣ୍ଣିଲ୍ଲ ଯେଣୁ ଶୃଙ୍ଗାର ରସକୁ । ୧୪୪ ।
ଧାତୁବାଦ ପୁରୁଷ ଯେଣୁହେନ୍ନେକ ବୋଲି
କମଣ୍ଡଳେ ଭରି ବ୍ରହ୍ମା ହରିନେଲେ ବତ୍ସାପଲ୍ଲୀ । ୧୪୫ ।
ବେନଜନେ ଯେଣୁକଭାବ ନ ସହିଲ୍ଲ ରତି
ବେଲ ଅସ୍ତ ଗଲାନ ପଶ୍ଚିମ ମୁରତି । ୧୪୬ ।
ଗୋଗୋଷ୍ଠର ମଧ୍ୟେ ଆସି ହାବୋଡିଲେ ଗୋକୁଳେ
ବତ୍ସାନ୍ତ ନ ପାଇ ହମ୍ବାରବ କରନ୍ତି ଦେଖିଲେ ଗୋପାଳେ । ୧୪୭ ।
ଶୃଙ୍ଗାର ସାର ରାଧିକା ବଜଯେଣୁ ନିଜ ପୁରର
ବତ୍ସାନ୍ତ ଲୋଡନ୍ତି ହରି ଯମୁନା ନଦୀ କୂଳେ । ୧୪୮ ।
ଧବଳୀ ବଉଳୀ କାଳୀ କସ୍ତୁରୀ ଶାମଳୀ
ନ ପାଇଣ ଚଉକତି ଲୋଡନ୍ତି ବନମାଳୀ । ୧୪୯ ।
ବୃକ୍ଷର ଉପରେ ଯେ ଗୋପାଳମାନେ ଉଠି
ଉଚ୍ଚସ୍ୱରେ ହାକ ଦିଅନ୍ତି କହ୍ନାଇ ନାମଗୋଟି । ୧୫୦ ।
ବତ୍ସାନ୍ତ ନ ଦେଖିଣ ସେ ଧାଇଁଲେକ ନନ୍ଦ
ବୃକ୍ଷେ ଚଢି ହାକ ଦିଅନ୍ତି ଗୋବିନ୍ଦ ଗୋବିନ୍ଦ । ୧୫୧ ।

---

[ପୂର୍ବପୃଷ୍ଠାର ପାଠାନ୍ତର ]

ଯେଣୁକ ଦିନକରେ ବ୍ରହ୍ମା ମନେ ବିଚାରିଲା
ବତ୍ସାନ୍ତ ଲୋଡିବାକୁ କୃଷ୍ଣତ ନଇଲା ।
ଦେଖିବ ବୋଲି ଗୋପହଠକୁ ଅଇଲା
ଯେଉଂ ବତ୍ସା ବାଳକ ନେଇଥିଲା ସମସ୍ତ ଦେଖିଲା ।
ମନେ ବିଚାରିଲା ଶ୍ରୀକୃଷ୍ଣ ମାୟାକଲେ
ବତ୍ସାନ୍ତ ଆଣିଣ ଶ୍ରୀକୃଷ୍ଣ ସମର୍ପିଲେ ।
କମଣ୍ଡଳୁଂ ଯାଇଂ ବତ୍ସା ବାଳକ ଅଣିଲା
ଶ୍ରୀକୃଷ୍ଣ ଗ୍ରୀମୁରେ ଯାଇଂ ପ୍ରବେଶ ହୋଇଲା ।
ଧାତା ମୁଖ ଗୃହଂ କୋପ କଲେକ ଗୋବିନ୍ଦ ।

ଧାମନ୍ତ ଗୋପାଳ ଯେ ଲୋଡନ୍ତ ଚଉକଣ୍ଠ
କେ ଡାକଇ ମାଧବ ରେ କେ ଡାକେ ଶ୍ରୀପଣ୍ଠ । ୧୫୨ ।
କେ ବୋଲଇ ହରି କେ ଡାକଇ ଜଗନ୍ନାଥ
କେ ବୋଲଇ କେଶବ କେ ବୋଲଇ ଗୋପୀନାଥ । ୧୫୩ ।
କେ ଡାକଇ ଅନନ୍ତ କେ ବୋଲଇ ଅଚ୍ୟୁତ
କେ ବୋଲଇ ଶ୍ରୀଧର କେ ବୋଲଇ ଜଗଭୂତ । ୧୫୪ ।
କେ ବୋଲଇ କହ୍ନାଇ କେ ବୋଲଇ ଦାମୋଦର
ବହାନ୍ତ ବେଗକର ଆଣରେ ଗୋଗୋଷ୍ଠର । ୧୫୫ ।
ଗାଈଂକର ହମ୍ବାରବ ଗୋପାଳଂକ ଡାକ
ଧାମନ୍ତ ମହାଖୁଣ୍ଟିଆ ପାଇଣ ବିମୁଖ । ୧୫୬ ।
କୁଞ୍ଜବନେ ବହାନ୍ତ ନ ପାଇଲେ ଲୋଡ଼
ଘରକୁ ଗଲେ ବୋଲି ଅବା ଧାମନ୍ତ ଖରକରି । ୧୫୭ ।
ନନ୍ଦ ମହାଖୁଣ୍ଟ ଲୋଡ଼ ଆସନ୍ତ ଅତି ବେଗେ
ଆସନ୍ତେ କେଶବ ଯେ ପଡ଼ିଲେ ନନ୍ଦ ଆଗେ । ୧୫୮ ।
ବୋଇଲେ ବହାପଲ୍ଲ ସୂେବେ କାହୁଂ ଗୁଡ଼ି ଗଲୁରେ କହ୍ନା
ଦଣ୍ଡେ ଭୁହି ନ ଗୁଡ଼ୁରେ ସୂେ କୁଞ୍ଜବନ ଯମୁନା । ୧୫୯ ।
ମାଧବ ବୋଇଲେ ଚାତ ନିରୁତାନ୍ତ ବଇଶାଖ ମାସ
ନିଦ୍ରା ଘାରିଲା ଦେହ ବଢାଇ ଆଳସ । ୧୬୦ ।
ଚଉକଣ୍ଠ ଲୋଡ଼ିଲି ମୁଂ ବହାନ୍ତ ଯେଉଂଠି
ରାଗେ ନନ୍ଦ ଧଇଲା କେଶବ ଚୂଳଗୋଟି । ୧୬୧ ।

---

୧୬୧ "ରାଗେ ନନ୍ଦ ଧଇଲା କେଶବ ଚୂଳଗୋଟି"
ପରେ "ଚ" ପୋଥିରେ ଅଧିକା ପାଠ :—
ରାଜ ପାହିଲେ କଂସ ନିଯୋଗ ଖଟଇ
ବହାପଲ୍ଲ ହରାଇଲୁ ମୋର କେଉଣେ ନେଇ ।
କାହୁଂ ଆଣି ଦେବ ମୁହିଂ ଗୋରସ ଶଗଡ଼ଭରି
ଛେନା ଦୁଧ ଦହି ଅଧାମ ଗୋଟିକା ଲବଣୀ ସର ।

[ଅବଶିଷ୍ଟାଂଶ ପରପୃଷ୍ଠାରେ]

ରାଜ ପାଳିଲେ କଂସେ ମୁଂ ନଯୋଗ ଦିଅଇ
ଲକ୍ଷେକ କ୍ଷୀର ଦୁଧ ନେଇ ନଚ୍ଛେ ମୁଂ ଖଟଇ । ୧୭୨ ।
ବଚ୍ଛାପଲ୍ଲୀ ମୋହୋର ତୁ ହରାଇଲୁ କାହ୍ନୁଂ
ଚଳ ଧର ନନ୍ଦ ନବତେ ଝିଂକଣ ବୁଲାଇ । ୧୭୩ ।
ତେନ୍ତୁଳି ବୃକ୍ଷରୁ ନନ୍ଦ ଧଇଲା ସ୍ନେହକ୍ଷ୍ଟାଟେ
କେଶବର୍ଙ୍କ ବଚନେ ସେ ହୋଇଲେକ ଆଣ୍ଠେ । ୧୭୪ ।
ଗାଲେଣ ବୃଟପାଡେ ସେ କଲେକ ପ୍ରହାର
ଶ୍ରୀମୁଖରୁ ରୋଧିର ଯେ ହୋଇଲା ବାହାର । ୧୭୫ ।
ଭୂମିରୁ ଉପାଡନ୍ତେ ସେ ଆବର ବୃକ୍ଷଗୋଟି
ତୁ ବଜ୍ର ହୃଅ ବୋଲି ହରି କଲେ ଦୃଷ୍ଟି । ୧୭୬ ।

---

[ପୂର୍ବ ପୃଷ୍ଠାର ପାଠାନ୍ତର]

କାହ୍ନୁଂ ଖଟାଇବ ନେଇ କଂସର ହୁମୁର
ନୋହିଲେ କି ରହିବଇଂ ସ୍ନେହ ଗୋପ ନଗର ।
ଚୂଳ ଧରି ନନ୍ଦ ଯେ ଝିଂକଣ ବୁଲାଇ
ତେନ୍ତୁଳି ବୃକ୍ଷରୁ ଗୁଡ଼ ଭାଙ୍ଗି ପିଟିଲେ କହ୍ନାଇ ।
ଗୋବିନ୍ଦ ଶରୀରେ ବାଜି ହୋଇଲାକ ଆଣ୍ଠ
ଦେହେ ଲୋଳା ତାଂକର ଦଶୁଛି ଝଟଝଟ ।
ବେକରେ ବୃପୁଡେକ କଲାକ ପ୍ରହାର
ଶ୍ରୀମୁଖରୁ ରୋଧିର ହୋଇଲା ବାହାର ।
ମାତା ମାତା ବୋଲିଣ କାନ୍ଦନ୍ତି ଶ୍ରୀହରି
ଲୋଟିଣ ଧରଣି ଯେ ଗଡନ୍ତି ମୁରାରି ।
ପୁଣି ଭୂମିରୁ ପାଡଇ ବୃକ୍ଷ ଯେ ଗୋଟାଏ
ବେଳ ପାଞ୍ଚଘଡି ପ୍ରହାର କଲା ଶ୍ରୀକୃଷ୍ଣର କାଏ
କୋମଳ ଶରୀର ଗୁଡ଼ ବାଜି ବହଇ ଯେ ଶ୍ରୋଣି
ଦେଖିଣ ମାତା କ୍ରନ୍ଦନ କରନ୍ତି ଯେ ପୁଣି ।
ବୋଲନ୍ତି ନନ୍ଦକୁ ଶୁଣ ଯଶୋଦା ଯେ ରାଣୀ
ସ୍ନେହେ ଅଗ୍ୟାନ ତୁମ୍ଭେ ହୋ ଅଛ ନୃପମଣି ।—

ଗୋପାଳଂକ ହାକ ଶୁଣି ନନ୍ଦର କୋପ ବଢି
ନାଚେଜ ମାଇଲେ ନନ୍ଦ ପଡିଲେ ମୁଖମାଡ । ୧୬୭ ।
ନଷ୍ଟିକାଳ ବୃକ୍ଷରୁ ସେ ଖଡିକା ଲେଚାୟେ
ପାଞ୍ଚବେଳ ପ୍ରହାର କଲା ସେ ଶ୍ରୀହରିର କାୟେ । ୧୬୮ ।
କୋମଳ ଶରୀରେ ବାଜ ବହିଲାକ ଶ୍ରୋଣି
କଟ୍ଟୋର ଦେଖିଣ ବ୍ରହ୍ମା ବହ୍ରାନ୍ତ ହେଲେ ଆଣି । ୧୬୯ ।
ହମ୍ବାରବ କରଣ ଯେ ଧାମନ୍ତ ସର୍ବ ବଚ୍ଛା
ଆବୋରିଲେ ମାତାନ୍ତ ଯେ ଯାହାର ଇଚ୍ଛା । ୧୭୦ ।
ବହ୍ରାନ୍ତ ଦେଖିଣ ନନ୍ଦ ଧାଇଂଲେ ତେଣିକ
ବ୍ରହ୍ମା କୋଳକରଣ ଧଇଲେ ଶ୍ରୀହରିଂକ । ୧୭୧ ।
ଅସାଷ୍ଟମେ ନାରାୟଣ ଶୋଣିତ ବହେ ମୁଖେ
ଲେଉଟି ଚାହିଂଲେ ହରି ବଜେ ଚତୁର୍ମୁଖେ । ୧୭୨ ।
ବିଧାତା ମୁଖ ଚାହିଂ ବୋଇଲେ ଗୋବିନ୍ଦ
ଆହେ ବେଦବର ତୁ ଅଛୁ ଯେଉଁ ମନ୍ଦ । ୧୭୩ ।
ଯଦ୍ୟପି ବହ୍ରାନ୍ତ ତୁ ହୋ ହରିଲୁ କୁତୂହଳେ
ଧାତ୍ରିକାରେ ନ ହେଲୁ ତୁ କଂପେ ନନ୍ଦର କଟାଳେ । ୧୭୪ ।
ଚୋହୋର ବଚନେ ମୁହିଂ ଜନ୍ମି ଲଇଂ ମଞ୍ଚ
କାଳେ କରାଇଲୁ ମୋତେ ଲେଉଡେ ପରପଞ୍ଚ । ୧୭୫ ।
କହୁଂ କହୁଂ କେଶବ ଯେ ବ୍ରହ୍ମାଂକୁ ଶାପ୍ୟଦେଲେ ରାଗେ
ବୋଇଲେ ତୁହୋ ବ୍ରହ୍ମା ଅପୂଜ୍ୟକ ହୁଅ ମଧ୍ୟସ୍ୱର୍ଗେ । ୧୭୬ ।
ନାରାୟଣ କୋପ ଦେଖି ବ୍ରହ୍ମା ପଳାଇଲା ଡରେ
ରହି ନୁଆଁରିଲା ଧାତା କେଶବ ସମ୍ମୁରେ । ୧୭୭ ।
କଉତୁକ ପୁରୁଷ ତୁ ସର୍ବକଥା ସହୁ
ଜନ ଆଦରଣେ କରି ଜନାର୍ଦ୍ଦନ ନାମ ବହୁ । ୧୭୮ ।
ସ୍ୱାମୀ ଆପଣେ ବଢାଇଲୁ ବାଳୁତ କୁତୂହଳା
ଅନର୍ପିପ ଶୃଙ୍ଗାର ତୁ କଲୁ ମହାଖେଳା । ୧୭୯ ।
କଉତୁକେ ନ ମାନିଲୁ ମାନଷ୍ଟ ଗଉରେଖା
ତବ କଲୁକର୍ମ ଯେବେ ସମସ୍ତେ ଯେଥି ଦେଖ । ୧୮୦ ।

ମନ ବଚନ କର୍ମେବେ ଦାରାହରଣ ଦୋଷ
ସେହୁ ପାପ ଖଣ୍ଡଣ ମୋତେ କରିବା ହୃଷୀକେଶ । ୧୮୧ ।
ବର୍ଣ୍ଣିଲି ମୂର୍ଖପଣେ ମୁଂ ନ ଜାଣଇ କିଛି
ସେଥିପାଇଂ ପ୍ରତିକାର ମୁଂ ମାଗଇ ଶ୍ରୀକଛି । ୧୮୨ ।
ଅବ୍ୟର୍ଥ ହୋଇ ଶ୍ରୀ ପୁରୁଷୋତ୍ତମ ଚରଣେ ସେବ
ଶ୍ରୀଜଗନ୍ନାଥଂକ ଚରଣେ ଶରଣ ଶୂଦ୍ରମୁନି ସାରଳା ଦାସ କବ । ୧୮୩ ।

। ୧୧୫୦୭ ।

---

## ସତୀସ୍ତ୍ରୀର ଉପାଖ୍ୟାନ

ସେଥୁ ଅନନ୍ତରେ ବଇବସ୍ବତ ମନୁ ରାଜା
ବ୍ରହ୍ମାଂକ ନନ୍ଦନ ଚରଣେ କଲେ ଢବ୍ୟପଜା । ୧ ।
ମୁହିଂ ତୁମ୍ଭ ଦାସର ଦାସ ଭୃତ୍ୟର ଭୃତ୍ୟ ମୁହି
ପ୍ରଳୟୁ ଉଦ୍ଧାରଣ ତୁ ଧାର୍ମିକ ମହାଗ୍ୟାନୀ । ୨ ।
ଶ୍ରୀବିଷ୍ଣୁ ପୁରାଣ କଥସୁନ୍ତ ଜନହିତେ
ଅଥବା ସମ୍ବୋଧନା ଶ୍ଳୋକବାକ୍ୟ ହିତେ । ୩ ।
ଆରଣ୍ୟକ ବନବାସ ଅନ୍ତରେ ଦ୍ୱାଦଶ-ବରଷ ପୂରି
ନଗଲେ କି ପାଣ୍ଡବେ ହସ୍ତିନା ନଗରୀ । ୪ ।
ଆହେ ମନୁ ପୁରୁଷ ଯାହା ତୁହି ଅଛୁ ପୁଛି
କାହିଂ ଯିବେ ଅଗ୍ୟାଂତବାସ କରନ୍ତେ ଚେଉଦ୍ଦନି ଅଛି । ୫ ।
ପିତାମହଂକର ଆଗ୍ୟାଂ ଯେ ଅଛଇ ଆକାଶେ
ଗୋପ୍ୟାନକର୍ମ ହୋଇବ ସେ ଅଗ୍ୟାଂତ ବନବାସେ । ୬ ।

କୁମ୍ଭମାସ କୃଷ୍ଣପକ୍ଷ ଚଉଠୀର ଦିନ
ଅର୍କବାର ହସ୍ତା ନକ୍ଷତ୍ର ଯେ ବିଦ୍ୟମାନ । ୭ ।
ବିଷ୍ଟି ନାମେ କରଣ ଗଣ୍ଡ ନାମେ ଯୋଗ
ଆଦିତ୍ତୁଂ ସେଦିନୁଂ ବନବାସ ବାରବରଷ ଯେ ଭୋଗ । ୮ ।
ଅସକନ୍ଦ ବନେ ବସିଣ ଅଛନ୍ତି ପାଣ୍ଡବାଇ
ବ୍ୟାସେ ଧଉମ୍ୟ ପୁରୋହିତେ ଅଛନ୍ତି ମାତ୍ର ସାହ୍ନି । ୯ ।
ମାରକଣ୍ଡେ ଉଦ୍ଦାଳକେ ଅଗସ୍ତି ପଉଲସ୍ତ୍ୟେ
ବାଲମ୍ମିକ ଦୁର୍ବାସା ବଶିଷ୍ଠେ ବିଶ୍ୱାମିତ୍ରେ । ୧୦ ।
ଅସକନ୍ଦ ଗୋପାଳଚନ୍ଦ୍ରଂ ବହୁତ କ୍ଷୀର ଆଣି
ଛେନା ଅଧାମ ସର ଦଧି ଗୁଣ୍ଠିକା ଲବଣୀ । ୧୧ ।
ଗଣ୍ଡା ହରଣ ଯେ କନ୍ଦମୂଳ ଦାରାକ୍ଷ
ଆମ୍ବ ପଣସ କଦଳୀ ମହୁଲ ସୁଭକ୍ଷ । ୧୨ ।
ଋଷିମାନନ୍ତ ସେ ସନ୍ତୋଷେ ଦିଅନ୍ତି ଯେ ଭୋଜା
ପାଦେ ପ୍ରଣପତ୍ୟ ହୋଇଣ ଶୁଣ ବୋଇଲେ ଧର୍ମରାଜା । ୧୩ ।
ତୁମ୍ଭନ୍ତ ସେବାକଲ ମୁଂ ଦ୍ୱାଦଶବରଷ
ଅନେକ ତୀର୍ଥ କଲଇଂ ମୁଂ ମନର ହରଷ । ୧୪ ।
ଅନେକ ତୀର୍ଥେ ମୁହିଂ କଲଇଂ ପିତୃକାର୍ଯ୍ୟ
ପାପବାଧା କର୍ମଣ ମୋତେ ଘୋଟିଲା ଆସି ଆଜ । ୧୫ ।
ସ୍ୱାମୀ ତୁମ୍ଭେ ସମସ୍ତେକେ ସ୍ନେହେ ଯିବା ଅନ୍ୟଦେଶେ
ମୁହିଂ ଗୋପ୍ୟାନ ହୋଇବଇଂ ଅଗ୍ୟାଂତ ବନବାସେ । ୧୬ ।
କ୍ରୋଧେ ଗଦ ଗଦ ହୋଇ କହନ୍ତି ଧର୍ମରାୟେ ଶିଷି
ଦେଖିଣ କ୍ରୋଧିତ ହୋଇଲେ ସକଳ ମହର୍ଷି । ୧୭ ।
ସମ୍ବୋଧନା କଥା ହାଦେ କହନ୍ତି ଲୋମଶେ
ବାବୁ ଅଗ୍ୟାଂତେ ତୁମ୍ଭେ ବଞ୍ଚିବ କେଉଁଣହିଂ ଦେଶେ । ୧୮ ।

---

୯।୨ ସାହ୍ନି—ସହିତରେ (ସଙ୍ଗତରେ) ।
୧୨।୧ ଫଣ୍ଡାଶାକର ଯେ କନ୍ଦମୂଳ ଦାରାକ୍ଷ ।—ଖ, ଘ, ନ, ଠ

ଆମ୍ଭର କଲ୍ୟାଣେ ଗୋପ୍ୟହୋଅ କୁରୁସାନୁ
ତୁହି ସବୁନ୍ତ ଚିହ୍ନିବୁ ତୋତେ କେହ୍ନ ଯେ ଚିହ୍ନ । ୧୯ ।
ଯେବେ ଆମ୍ଭର ଶାହାସ୍ତ୍ର ମନ୍ତ୍ର ଅଛଇଟି ସତ
ସେହି ଆମ୍ଭର ଆଶିଷ ତୁକୁ ହୋଉ ପରାପତ । ୨୦ ।
ଅନେକ ସାନନ୍ଦ ଆମ୍ଭେ ହୋଇଥାଉଂ ତୋତେ ଦେଖି
ଅନେକ ଦାନବ ମାରି ଆମ୍ଭ ତପ ରଖି । ୨୧ ।
ମାରକଣ୍ଡ ବୋଇଲେ ମାଗୋ ଶୁଣସି ପାଞ୍ଚାଳୀ
ସ୍ତିରିଲିଙ୍ଗ କଷଣଟି ଗୋ ଝିଂଘାସ ଅଗୁଳ । ୨୨ ।
ଶୁଣ ଗୋ ମହାସ୍ୱଣ୍ଟି କହଇ ତୋର ଆଗେ
ବ୍ରହ୍ମରାକ୍ଷସ ବୋଲିକରି ସେହ୍ନକଇ ସତ୍ୟଯୁଗେ । ୨୩ ।
ବଇତରଣୀ ନଦୀକୂଳେ ରୁଦ୍ରପୁର ବୋଲିକରି ସେହ୍ନକଇ ଶାସନେ
ବାଜନସସ୍ତ୍ର ତହିଂ ବସନ୍ତ ମହାଜନେ । ୨୪ ।
ବାଜନସସ୍ତ୍ର ତହିଂ ସେହ୍ନକଇ ଲିଙ୍ଗ କାଶୀ
ଅନନ୍ତ ନାଭି ସେ ପ୍ରତକ୍ଷେ ବାଣରାଶୀ । ୨୫ ।
ସେ ନଗ୍ର ପଶ୍ଚିମଭାଗେ ଉତ୍ତର କଇଣ୍ଡେ
କଉଶିକ ବୋଲିକରି ସେହ୍ନକଇ ଦ୍ୱିଜବରେ । ୨୬ ।
ଧାର୍ମିକ ବିବେକ ସେ ପୁରାଣେ ନିରଜିତା
ଚତୁର୍ବେଦ ଶାହାସ୍ତ୍ରେ ତାକୁ କେ ନାହିଂ ଜିଣନ୍ତା । ୨୭ ।
ଯାଗଯଜ୍ଞଂ କର୍ମେଣ ସେ ମହା ବ୍ରହ୍ମବେତ୍ତା
ପରସ୍ତିରି ଶୃଙ୍ଗାରେ ଯେ ଅଧର୍ମ ପ୍ରବୃତ୍ୟା । ୨୮ ।

---

୧୯।୧ ମୋର ତୋଷେ ତୋତେ ଗୋପୀ କରନ୍ତୁ ଲଣାନୁ ।—ଖ, ଣ, ଜ

୨୫ { ପ୍ରାଣେଶ୍ୱର ତହିଂ ସେହ୍ନକଇ ଲିଙ୍ଗଗୋଟି
ଅନନ୍ତ ନାଭିରୁ ସେ ପ୍ରତକ୍ଷେଣ ଫୁଟି ।—ଣ
ପ୍ରାଣେଶ୍ୱର, ରାମେଶ୍ୱର ସେହିପରି ଭିନ୍ନ ନାମ ଅଛୁ ।—ଘ, ଖ, ଜ

ଯେଉଂଣ ବ୍ରାହ୍ମଣ ଅଷ୍ଟାଦଶ ପୁରାଣ ଶାହାସ୍ତ୍ରେ ମହାଭାଗ୍ୟଂ
ଧୃତ୍ତି ଚତୁର୍ଭୁଜ ନାମ ବେଶ୍ୟାପୂର୍ଣ ସଙ୍ଗ । ୨୯ ।
ସେ ବ୍ରାହ୍ମଣ ଭାରଯାର ନାମ ଅଟେ ସତ୍ୟା
ପରମ ମାହେଶ୍ୱରୀ ସେ ଅଟଇ ପତିବ୍ରତା । ୩୦ ।
କଉଶିକ ବ୍ରାହ୍ମଣହୁଂ ତାହାର ଆନେ ନାହିଂ ମତି
ସ୍ତ୍ରି ଶ୍ରିକୁଳେ ସାଧବୀ ସେ ପରମ ମହାସତୀ । ୩୧ ।
ବ୍ରାହ୍ମଣୀର ଅଧର୍ମ ଦେଖି ନଗ୍ରଜନମାନେ
ସେ ସତୀକ ହରି ନେଉଛନ୍ତି ସେ ଚପଳ ଜନମାନେ । ୩୨ ।
ଦୂତିକା ପ୍ରେଷଣେ ବୋଲନ୍ତି ବହୁତ ଯେ ଦ୍ରବ୍ୟ
ଯେତେକାବେଳେ ଆମ୍ଭନ୍ତ ସେ ହୋଇ ପ୍ରିୟଭାବ । ୩୩ ।
ଚଳଇ ନାରୀ ସେ ପରେଣ ପ୍ରେଷକାରୀ
କଉଶିକ ପଣ୍ଡ୍ୟାଂକ ନଗ୍ରେଣ ବେଦପଢି । ୩୪ ।
ନାରୀ ପ୍ରବେଶ ଯାଇଂ ସେ ସତୀର ସନ୍ନିଧାନେ
ଆଉଖୋଷା ଖୋଷି ଗୃହେଂ ବଂକମା ନୟନେ । ୩୫ ।
ଗାଲେଣ ହଳଦୀ ପାଦେ ଅଳତା ରେଖାବଳି
ରଂଜକ ଆଂଗୋଛ ପିନ୍ଧି ପଶୁ ଛଇଳ ମୁଖେ ଶାମଳୀ । ୩୬ ।
ଅଣ୍ଟିରେ କଉଡି କାଖେ ଖଟୁଲି ଖଣ୍ଡେ
ସେ ସତୀକ ଦେଖି ବୋଲଇ ବସିବା ଯେତ୍ଥି ଦଣ୍ଡେ । ୩୭ ।

---

୩୪ "କଉଷିକ ପଣ୍ଡ୍ୟାଂକ ନଗ୍ରେଣ ବେଦ ପଢି"
ପରେ "ଣ" ପୋଥିରେ ଭିନ୍ନପାଠ:—
ଦୂତକାରୀ ବସିଅଛୁ ସ୍ୱତୀ ସନ୍ନିଧାନେ
ଆଉଖୋଷା ପାଉହାଏ ଘେନଅଛୁ ବହୁ ରତ୍ନେ
ବ୍ରାହ୍ମଣକୁ ଦେଖି ଦୂତକାରୀ ଫେରଗଲା
ସେ ଦନ ବ୍ରାହ୍ମଣ ଯେ ଗୃହରେ ରହିଲା ।
୩୬।୧ ରଜକ ଘରୁ ବସ୍ତ୍ର ପିନ୍ଧି ସୁଖେ ଚଳି । —ଚ,
୩୬।୨ ରଜକ ଅଂଶେ ଶାଢ଼ୀ କସ୍ତୁରୀ ଦେହେ ବୋଳି । —କ,
୩୬।୨ ରଜକର ଆଂଗୋଛ ପିନ୍ଧି ତଳେ ଲେଟେ ଶାଢ଼ୀ । —ଟ
୩୬।୨ କୁଞ୍ଚକର ଆଂଗୁଛ ପିନ୍ଧି ବସ୍ତ୍ର ପ୍ରଣୟେ ସୁଖେ ଖେଳି । —ଝ,

ଓଳଗି ଶୁକ ବୋଇଲା ଆଗୋ ପଣ୍ଡିଆଣୀଯେ
ବିଶ୍ୱାସ କଥାଯେ ତୁମ୍ଭକୁ ପଚାରଇ ସନ୍ଦେହେ । ୩୮ ।
ପଣ୍ଡାଯେ ତୁମ୍ଭର ମହାମନ୍ତ୍ର ବେଦବର
ପରସ୍ତ୍ରୀ ପ୍ରସଙ୍ଗେ ପୁଣ ଅଟନ୍ତି ବଡ ଖର । ୩୯ ।
ଯେ ତୁମ୍ଭର ବୟସତ ସମ୍ପୂର୍ଣ୍ଣ ରୂପବନ୍ତୀ
ତୁମ୍ଭନ୍ତ ଉପେକ୍ଷି କିଂପେ ଆନେ ଭଜନ୍ତି ପାପ ପରକୃତି । ୪୦ ।
ତାହାଂକର ଯେ ଅମାତ ତୁମ୍ଭେ କିସ କର
ତୁମ୍ଭେ ପରଯୋଗ ନୋହ କିଂପେ ଆନ ସଙ୍ଗତର । ୪୧ ।
ଯେ ନଗ୍ର ବ୍ରାହ୍ମଣମାନଂକ ଉପରେଣ ସେ ରାଜା
କାମଦେବ ଟଇନ ଗୋ ତାହାଂକର ଆତ୍ମଜା । ୪୨ ।
ସେ ତୁମ୍ଭନ୍ତ ଦେଖିଲେ ଗୋ ସ୍ତ୍ରୀହାନର କାଳେ
ମୁକୁଳିଂ ରାଇଣ ସେ ପଚାରିଲେ ସକଳେ । ୪୩ ।
ବଡଲୋକର ପୁଅ ଗୋ ସେ ସୁନ୍ଦର ବଳବନ୍ତା
ତିରିଶି ବରଷ ବୟସ ସେ ଶୃଙ୍ଗାରେଣ ଶକତା । ୪୪ ।
ଯିବା କି ଆମ୍ଭେ ଗୋ ମୋହୋର ଘରଯାଏ
ଯତ୍ନକରି ଦେଇଛନ୍ତି ଗୋ ଅଳଂକାର ଗୁଡାଏ । ୪୫ ।
ଯେହା ଆଭରଣକର ତୁମ୍ଭେ ପାଅ ପାଦପୂଜା
ଅପାର ଦ୍ରବ୍ୟ ଗୋ ବଢାଇବା ଭଲ ଭୋଜା । ୪୬ ।
ପାଣିଦ୍ରବ୍ୟ ଘଟଣ ଯତ୍ନଂ ଦେଖାଇଲା ଦୁଷ୍ଟ
କୋପେଣ ପ୍ରତିଉତ୍ତର ସେ କଲେକ ମହାସ୍ପଷ୍ଟ । ୪୭ ।
ଆଇଷ କ୍ଷୀଣ ହୋଇଲାକ ଯେ ତୋହୋର ଶରୀର
ଯେତେ ବୟସରେ କହ୍ଣଂ ଅମାତ ଆଗ୍ରର । ୪୮ ।

---

୪୦।୧ ତୁମ୍ଭନ୍ତ ଛୁଡି କିଂପେ ଆନେ ବଳାନ୍ତି ମତ୍ତ ।—ଣ, ଠ
୪୧।୨ ତୁମ୍ଭେ ସଂଯୋଗ, ଯୋଗ, ଭୋଗ ବହୁତକର ପାଠାନ୍ତର ସ୍ଥାନ ବିଶେଷରେ ଦେଖାଯାଏ ।
୩ { ଆୟୁ ଗୋ ପାପ ଗଳିତ ଶରୀର ଗୋ ଅଟଇ ତୋହୋର
ହେତେକ ବୟସେ ଗୋ ହେତେକ ଦୋଷ୍ୱସ ।—ଛ, ଟ, ଡ

ମୁହିଂ ପତିବ୍ରତା ଗୋ ଯେ ନ ଛୁଅଇଂ ଆନ
କଉଶିକ ବ୍ରାହ୍ମଣ ମୋହୋର ଦେବତା ସମାନ । ୪୯ ।
ଆଲୋ ପାପିଷ୍ଠା ଦୋଗ୍ରୁଣୀ ତୁ ବହନା ହୋଇ ପଳା
ଅନ୍ୟ ସ୍ତ୍ରିଙ୍କ ନେଇ ଯେ ଧନଦେଇ ବଳା । ୫୦ ।
ଯେକସ୍ତ୍ରିଙ୍କ ଆନ ପୁରୁଷ ଭୁଆଇଲେ
ବେଶ୍ୟାହୋଇ ମୁଖରେ ରେତ କରାଇ ପୂରଣ ପଣ୍ଡାଯେ
ଆସନ୍ତ କହିଲେ । ୫୧ ।

ଅନେକ ଭ୍ରଞ୍ଛନା କରି ବେଶ୍ୟା ଢଲେ ଗାଳି
ପୁଣି ପୁଣ ପ୍ରତିଉତ୍ତର ସେ ଦଅଇ ଜଂଜାଳୀ । ୫୨ ।
ଖଣ୍ଡା କୁରୁଳ ଦେଇଣ ବେଢି ପାଡିଲ୍କ ବୋବ
ପଳାବଇ ଦୁଷ୍ଟ ତହୁଂ ଅନେକ ପ୍ରାଭବ । ୫୩ ।
ଯେହ୍ନମତ ତା ତହିଂକ ପେଷଲେ ଅନେକ ଦୁଷ୍ଟ
ଧନେଣ ବଶ ନୋହିଲା·ତାହାର ପରକୃତ । ୫୪ ।
ମାନୁଷ୍ୟେ ବଶ୍ୟ ସେ ନୋହିଲ୍କ ଯହୁଂ
ବହନ୍ୟା ପୁରୁଷମାନେ କଷଣ କଲେ ତହୁଂ । ୫୫ ।
ଥାପିତ ଧନମାନ ହରିଲେ ଉଦାସୀ
ଗଜସେବ ଖଜଲା ସେ ହୋଇଲା ଭିକ୍ଷାବାସୀ । ୫୬ ।
ତନୁ କ୍ଷୀଣ ବ୍ରାହ୍ମଣ ଯେ ଅନ୍ନର ଅଭାବେ
ଭିକ୍ଷାହିଂ ନ ମିଳିଲା ଦଇବ କଷଣ ଭାବେ । ୫୭ ।
ସ୍ୱସ୍ତିକ ଦୁତ ପେଷନ୍ତ ଦଇବତ ପୁରୁଷେ
କଂପେ ମହାସ୍ମାଣୀ ମରୁ ପତି ଆଶେ । ୫୮ ।

---

୫୦ { ଆଲୋ ପାପେଷ୍ଠୀ ଦୋଷ୍ଚରୁଣୀ ତୁ ବହନ ଯେଥି ଯା ଯା
ଆନ ସ୍ତ୍ରିଙ୍କୁ ଯେ ଧନ ନେଇଣ ତୁ ମଙ୍କା ।—କ

୫୬ । { ଗଡ଼ସେବ ଖଜଲା ତାର ହୋଇଲା ଭିକ୍ଷାସୀ
ଭିକ୍ଷାମାଗି ବୁଲଇ ସେ ନଗ୍ରପୁରେ ପଶି ।— ଓ, କ

କାହାରିଙ୍କ ବଚନ ସେ ନ କରଇ ପତିବ୍ରତା
କଉଶିକ ଦରିଦ୍ର ବ୍ରାହ୍ମଣଙ୍କୁ ନାହିଁ ଆନ ଭ୍ରଥା । ୫୯ ।
ସେ ସ୍ୱାମୀର ବ୍ରତ ନାଶ କରିବାର ବୁଦ୍ଧି
କଉଶିକ ବ୍ରାହ୍ମଣ ଦେହେ କରାଇଲେ ଗଳିତ କୁଷ୍ଠବ୍ୟାଧି । ୬୦ ।
କ୍ଷୋଭେ ରୋଗ ସନ୍ତୁଂ ହୋଇଲା ପ୍ରବଳଇ
ରକତ ପୂଜ ଦୁର୍ଗନ୍ଧ ଅନୁବ୍ରତେ ଗଳଇ । ୬୧ ।
ତପତ ଜଳ ଘେନ ସ୍ୱାମୀ ପଖାଳଇ ତାର କାୟେ
ସେ ଦୁର୍ଗନ୍ଧ ମଣଇ ଯେ କର୍ପୂର ବାସ ପ୍ରାୟେ । ୬୨ ।
କୋମଳ ପତ୍ର ପାଡ଼ି ସେ ବ୍ରାହ୍ମଣକଇଂ ଶୁଆଇ
ନଗ୍ରେ ପଶିଣ ସେ ଭିକ୍ଷା ମାଗିଣ ଆଣଇ । ୬୩ ।
ତାହାଂକ ପଡ଼ିଲା ହାଦେ ଦଇବର କଷଣ
ପଞ୍ଚ ଗ୍ରାସ ମାଗିଣ ସେ ନ ପାଇ ଚଣ୍ଡାଳ ପ୍ରେକମାଣ । ୬୪ ।
ଯାନ୍ତେଣ ସୁନ୍ଦରୀ ଅନ୍ୟ ନଗ୍ରେ ଭିକ୍ଷା ମାଗି
କାମଦେବ ପରାୟେକ ହୋଇ ପୁରୁଷେ ବାଟେ ଥାନ୍ତି ଜଗି । ୬୫ ।
ଆଗୋ ତରୁଣୀ ଇନ୍ଦୁକାନ୍ତି ଯେ ୟେ ତୋହୋର ବୟସ
ୟେ ନବ-ଯଉବନ କାଂପେ କରୁଅଛୁଂ ନାଶ । ୬୬ ।
କୁଷ୍ଠିଆ ବ୍ରାହ୍ମଣ ଗୁରର କ ତୋହୋର ନିଜ ପତି
ଦୁର୍ଗନ୍ଧରେ ଯାଇ ନୋହୋଇ ତାର କତି । ୬୭ ।

---

୬୦।୨ "କଉଶିକ ବ୍ରାହ୍ମଣ ଦେହେ କରାଇଲେ ଗଳିତ କୁଷ୍ଠ ବ୍ୟାଧି"
ପରେ 'ଣ' ପୋଥିରେ ଅଧିକା ପାଠ :—
କୁଷ୍ଠବ୍ୟାଧି ବ୍ରାହ୍ମଣ ଗୋ ତୋହୋର ଯେ ପତି
ତାହା ଗୁରକୁ ଗୋ ଆରାଧନା କରୁ ତୁ ଗୋ ନିତି ।
ଶରଦ ପୂର୍ଣ୍ଣମୀ ଶଶୀ ୟେ ତୋହୋର ବଦନ
କାଂପାଇଂ ଗଞ୍ଜାଇ ତୁ ଗୋ ନକହୁ ବଚନ
ସୁଖ ଉପେକ୍ଷି କାଂପାଇଂ ଯତ୍ନେ ହୋଉ ଦୁଖୀ
ଇଚ୍ଛା କାଂପେ ନକରୁ ଗୋ ଆମ୍ଭର ରୂପ ଦେଖି ।

ସୁଖେ.ଯିବାହନ କଂପାଇଂ ହୋଇ ଦୁଖୀ
ଶରଧା ନ ବଳଇ କ ଆମ୍ଭର ରୂପ ଦେଖି । ୬୮ ।
ସେ କୁଷ୍ଟବ୍ୟାଧି ବ୍ରାହ୍ମଣକଇଂ ଆଜନ୍ମଂ କର ପରଚେଜ୍ୟା
ଯେ଼ ଭକ୍ତମାନଂ ବଳସୀ ଗୋ ଆମ୍ଭର ହୋଅଁସି ଭାରଯା । ୬୯ ।
ଦାସୀନେତ ପାଣ୍ଡବସ୍ତ୍ରୀନ ଯେ ପତମା
ଯେହ୍ନା ପରହରଣ କର ଗନ୍ଧପୁଷ୍ପ ଯେନ । ୭୦ ।
ଗୋଡାଇ ବୋଲନ୍ତ ସେ ଆଗ ଓଗାଳନ୍ତ ପୁଣପୁଣି
ବଧିର ନ ଶୁଣଇ ଯେହ୍ନେ କମ୍ବୁର ଶବଦ ବାଣୀ । ୭୧ ।
ସ୍ୱଷ୍ଟି ବୋଇଲେ ହୋ ତୁମ୍ଭେ ଦୁଷ୍ଟେ ବଡ ପାପୀ
ପାପେ ବର୍ଦ୍ଧୁତ ତୁମ୍ଭେ ହୋଇଅଛ ଅଦ୍ୟାପି । ୭୨ ।
ହୀନ ଆଗ୍ରର ପୁରୁଷେ ତୁମ୍ଭେ ଯତ ସତ ଲୋଡ ଭୁଞ୍ଜ
ତପୀଲୋକନ୍ତ ତୁମ୍ଭେ ଦୁର୍ବୁଦ୍ଧି କହ୍ନ ଗଞ୍ଜି । ୭୩ ।
କୋପେଣ ବୋଇଲେ ସେ ବହନ୍ତା ପୁରୁଷେ
ବଳାତ୍କାର କଲେ କେହ୍ନ ଅଛୁ ଚୋର ପାଶେ । ୭୪ ।
କେଶ ଧରି ଯେହ୍ନଷଣି ନେମୁଂ ଅନ୍ତଶଛେ
କେଉଂଣ ପାତକ ଲାଗବ ଲାଗୁ ଆସି ପଛେ । ୭୫ ।
ନାରାୟଣ ବାକ୍ୟତ ରୂପେ ଯେ ଭ୍ରଅ ଖଣ୍ଡ ଭୂମି
ଗଜବେକ ମାନଷ୍ଟି ସ୍ତ୍ରିଶ୍ରନ୍ତ ଯେ ସବୁନ୍ତହ୍ନଂ ରମି । ୭୬ ।
ଆପଣେ ହରଣ କଲ୍ଲ ଯେଥେଂ ଶ୍ରୀବନ୍ତ ପୁରୁଷ
ଯେ଼ ଭୂମିରେ ଚଢ଼ବଂଶ ଜନୁଣ୍ଣ ପରଯନ୍ତେ ନ ଲାଗଇ
ପରସ୍ତ୍ରି ସ୍ରୀ ହରଣ ଦୋଷ । ୭୭ ।
ସ୍ୱଷ୍ଟି ବୋଇଲେ ପାପକୁ ଭୟେ ନ କରନ୍ତି ଦୁଷ୍ଟଜନ
ମୋତେ ନଛୁଅଂ ବୋଲି ତୁମ୍ଭଂନ୍ତ ଚୋତେ ପୁରରବାଂକର ସାଣ ।୭୮।

---

୭୭।୧ ଆପଣେ ହରଣ କଲ୍ଲ ଅବକାର ପୁରୁଷ ।—ଣ, ନ

୭୭।୨ ସ୍ୱେ ଭୁବରେ ପରଦାସ୍ର ହରଣ ଦୋଷ
ନାହିଂ ଯୋଜନ ପଞ୍ଚାଶ ।—କ, ଅ

ବନ୍ଦନା ପ୍ରକୁଷେ ଶୁଣି କଲେ ମନେ ଭୟେ
ସେହିଠାରେ ଧାଡିକାରେ ହେଲେ ଅନ୍ତର୍ଦ୍ଧାୟେ । ୭୯ ।
ଶୁଣ ଗୋ ଦ୍ରୌପଦୀ ପତିଭକ୍ତାଂକ ମହିମାଂ
ସେ ସ୍ତ୍ରୀର ଶାପକୁ ଡରିଲେ ବେଦବ୍ରହ୍ମା । ୮୦ ।
ଦ୍ରୌପଦୀ ଦେବୀ ବୋଇଲେ ଶୁଣ ସୁଦେବ ସୂନୁ
କାଳେ କେମନ୍ତ ହୋଇଲା ସେ କଉଶିକ ବ୍ରାହ୍ମଣର ତନୁ । ୮୧ ।
ବଦସୃନ୍ତ ମାରକଣ୍ଡେ ଭୁହୋ ଶୁଣସି ଅପର୍ଣ୍ଣା
ସ୍ତ୍ରୀର ବ୍ରତକୁ ଅଟଇ ଧର୍ମର କଉଣ ସିନା । ୮୨ ।
ମୀନମାସ ଶୁକ୍ଳପକ୍ଷ ସୋମବାର ଚଉଠୀ
ହ ନା ନାମ ନକ୍ଷତ୍ର ଯେ ବେଳ ନବଘଟି । ୮୩ ।
ଅଳଂକାର ବେଶ ହୋଇଣ ସେ ନାଚେଣୀ ଗାୟେଣୀ
ସେ ବେଶ୍ୟାମାନେ ଯାଉଛନ୍ତି ଧୂପ ଯେ ଖଟଣି । ୮୪ ।
ତାହାଙ୍କ ଦେଖି ହସିଲା ସେ କଉଶିକ ବ୍ରାହ୍ମଣ
ଯେମାନଙ୍କ କେତେ ମୁଂ କରନ୍ତି ରମଣ । ୮୫ ।
ସ୍ତ୍ରୀ ବୋଇଲେ ସ୍ୱାମୀ କମର୍ଥେ ତୁମ୍ଭର ହାସୀ
ବ୍ରାହ୍ମଣ ବୋଇଲା ତୁ ଗୋ ଶୁଣ ଶୁଭ୍ରକେଶୀ । ୮୬ ।
ବେଶ୍ୟାମାନ ଯାଆନ୍ତେଣ ମୁହିଂ ହେଲା ଖୁସି
ପୂର୍ବକଥାମାନ ଯେହାଂକର ମନେଣ ପରକାଶି । ୮୭ ।
ଯେବେ ବେଶ୍ୟାଙ୍କଇଂ ନାଥ କଲ ତୁମ୍ଭେ ଇଚ୍ଛା
ନେଇ ସମର୍ପିଇ ମୁଂ ପୂରାଅ ମନୋବାଞ୍ଛା । ୮୮ ।
ବ୍ରାହ୍ମଣ ବୋଇଲା ସତ୍ୟା ତୁ ମୋତେକ ଅଗ୍ୟାନ ବାଇ
ମୋ ଦୁର୍ଗନ୍ଧେ ଖଣ୍ଡେ ଦୂରେ ଜନେତ ନ ଯାଇ । ୮୯ ।
ସେ ସତୀ ବୋଇଲା ସେ ମୋହୋର ବଚନକୁ
ଅତ୍ୟନ୍ତ ଭଗତେ ନାଥ ଆଦରି କରିବେ ତୁକୁ । ୯୦ ।

---

୮୫।୨ ଯେମାନଂକୁ କେମନ୍ତେ ମୁଂ କରିବ ରମଣ । -ଛ. ଜ

ଧୂପ ଖଣ୍ଡି ସାରଣ ବାହୁଡାଇ ମେଖଳକା
ତନୁ ମୋହିନୀ ଯେ ଅମ୍ବକା ଚନ୍ଦରେଖା । ୯୧ ।
ସତ୍ତି ବୋଇଲା ମୋର ଗଳିତ କୋଢ଼ିଆ ବ୍ରାହ୍ମଣ
ଭୁଞ୍ଜନ୍ତ ଇଚ୍ଛାକଲା ଗୋ ସେ ପୂର୍ବର ରମଣ । ୯୨ ।
ମେଖଳକା ବେଶ୍ୟା ବୋଇଲା ଗୋ ଆସି ତୋହୋର ଆଗ୍ୟାଂକୁ
ଦେବଇଂ ଅଙ୍ଗଭୋଗ ଘେନଆସ ମୋର ଭୁବନକୁ । ୯୩ ।
ସମ୍ମତ କରାଇ ସ୍ୱତ୍ତି ଗଲା ନିଜ ବାସ
ସେ କୋଢ଼ିଆ ବ୍ରାହ୍ମଣକଇଂ କରାଇ ସୁବେଶ । ୯୪ ।
ମହାଘୋର ଅନ୍ଧାର ରାତ୍ର ଯେ ଘୋର ବରଷଣ
କାନ୍ଧରେ ବସାଇ ସତ୍ତି ବେଶ୍ୟାଘରକୁ ନିଅଇ ବ୍ରାହ୍ମଣ । ୯୫ ।
ବଇତରଣୀ ନଦୀ ଯେ ପଚ୍ଛିମ କଇଛାଡ ତଟେ
ମାଣ୍ଡବ୍ୟ ମହଋଷି ଶୂଳେ ବସିଛନ୍ତ ତହିଂର ନିକଟେ । ୯୬ ।
ଗୋକଣ୍ଡିକା ଅର୍ଥେ ମୀନ ଗୋଟିଏ ଶୂଳଦେଇ ମାଇଲେକ ପୂର୍ବେ
ତଦଦୋଷେ ଶୂଳରେ ସେ ମାଣ୍ଡ ବସିଛନ୍ତି ଯେବେ । ୯୭ ।
ଅନ୍ଧାର କାଳେ ସୁନ୍ଦରୀ ଗମଇ ବେଗି ବେଗି
ସେ ବ୍ରାହ୍ମଣ ଚରଣ ମାଣ୍ଡବ୍ୟ ଋଷିଶିରେ ଲାଗି । ୯୮ ।
କୋପେଣ ମହାତମା ତତ୍କ୍ଷଣ ଧୀତ୍କାରେ
ବୋଇଲେ ଶୂଳେ ବସିଲାର ଚାଳଇ ମୋତେ କେରେ । ୯୯ ।
ପୁରୁଷ ହୋଇ ଯେବେଟି ଚାଳିଲୁ ଅନମିତେ
ଶିରଚ୍ଛେଦନ ହୋଉ ଆଦିତ୍ୟ ଉଦେ ମାତ୍ରେ । ୧୦୦ ।
ଝଷ ଯେବେ ଚାଳିଲା ମୋର ଶୂଳ
ନାସା ଛେଦନ ତାର ହୋଉ ପ୍ରାତକାଳ । ୧୦୧ ।
ଯେସନେକ ଶାପ୍ୟ ଯହୁଂ ଦେଲେକ ମାଣ୍ଡବ୍ୟ
ପତିଭଗତା ବୋଇଲା ନାଥ କାହିଂକ ଆର ଯିବ । ୧୦୨ ।
ବଣ୍ଣପାଶ ଟିକ ଯେ ମହାତମାର ବୋଲେ
ସ୍ୱାମୀ ଯେବେ ଶିର ଛେଦନ ହୋଇବ ରଣ୍ଡୁଣୀ ପାହିଲେ । ୧୦୩ ।
ଭୁଆନ୍ତ ଆରୋହି ତହିଂ ସୂର୍ଯ୍ୟକଇଂ କଲା ଗୁସ୍ତ
ଉଦେ ଆଜ ନୋହିବୁ ତୁ ଗୁମ୍ଫାଦେଶାର ପତି । ୧୦୪ ।

ମୁହିଁ ଯେବେ ସ୍ୱାମୀରେ ଅଟଇ ପତିବ୍ରତା
ଉଦୟେ ନୋହନ୍ତୁ ସେ କରତାର ଦେବତା । ୧୦୫ ।
ଯଦ୍ୟପି ହୋଇବୁ ତଦେ ମୋହୋର ବୋଲ ପରିତ୍ୟାଗି
ମୋହୋର ସ୍ୱାମୀ ପ୍ରାୟେ ତୁ ହୁଅ କୋଷ୍ଠ ରୋଗୀ । ୧୦୬ ।
ଶାପ୍ୟ ମାଇଣ ସ୍ୱସ୍ତି ନିଜପୁର ଗଲା
ଦିନକର ନାଥ ଆଜ ଉଦୟେ ନୋହିଲା । ୧୦୭ ।
ସପତ ଦିବସ ସପତ ରାତ୍ର ଉଦୟେ ନୋହିଲେ
ନିତ୍ୟକର୍ମମାନ ନୋହୋଇ ସ୍ୱସ୍ତିର ଯେ ବେଳେ । ୧୦୮ ।
ବ୍ରହ୍ମା ଈଶ୍ୱର ଯେ ବାସବ କୁବେର
ବୋଇଲେ ତଦେ କଂପେ ନୋହିଲୁ କରତାର । ୧୦୯ ।
ଆଦିତ୍ୟ ବୋଇଲେ ପତିବ୍ରତାର ଶାପ୍ୟେ
ମୁହିଂ ଉଦେ ହୋଇ ନୁଆରଇ ସସ୍ତିର ମହାକୋପେ । ୧୧୦ ।
ଦିଗପାଳମାନନ୍ତ ସଙ୍ଗତେ ଘେନ ଦେବ ଧାତା
ଆସିଣ ମିଳିଲେ ଯହିଂ ଅଛଇ ପତିବ୍ରତା । ୧୧୧ ।
ବ୍ରହ୍ମାୟେ ବୋଇଲେ ଆଦିତ୍ୟଂକୁ କଂପେ କୋପକଲୁ ମାୟେ
ସଚରାଚର ନାଶ ଯାଉଛନ୍ତି ଆଦିତ୍ୟ ଅଣ ଉଦୟେ । ୧୧୨ ।
ସ୍ୱସ୍ତି ବୋଇଲେ ସେ ଉଦେ ନୋହୁକନା ଦିନା
ସ୍ୱାମୀ ତେବେ ନାଶଯିବ ମୋହୋର ଧର୍ମଜନା । ୧୧୩ ।
ବ୍ରହ୍ମାୟେ ବୋଇଲେ ମାଗୋ ଉଦେହୋଉ କରତାର
ଶିର ପଛକେ ଛେଦନ ହୋଉ ତୋହୋର ସ୍ୱାମୀର । ୧୧୪ ।
ତୁ ତାହା ପିଣ୍ଡ ଘେନ ଦହନ ହୋଅ ଅଗ୍ନି
ନିକଳଂକ କର ଜାତ କରିବୁ ପତିପଦ୍ନୀବେନ । ୧୧୫ ।
ସ୍ୱତୀ ବୋଇଲା ଉଦେ ହୋଅ ଦିନମଣି
ଦିଶିଲା କମଳଲୋଚନ ପ୍ରସର ହୋଇଲା ରଜ୍ୟେଣୀ । ୧୧୬ ।
କଉଶିକ ବ୍ରାହ୍ମଣ ଯେ ଶିରଛେଦନ ଗଲା
ସେ ଋଷିର ଶାପ୍ୟ ଦ୍ରୋପଦି ଗୋ ତହିଂ ଫଳିଲା । ୧୧୭ ।
ତାହା ଆରୋପଣ ତହିଂ କଲେକ ଦିଗପାଳେ
ସ୍ୱାମୀର ପିଣ୍ଡ ଘେନ ସ୍ୱସ୍ତି ପଶିଲା ଅନଳେ । ୧୧୮ ।

ଅଶ୍ୱମେଧ ଯଜ୍ଞ ଯେମନ୍ତ ଉଦ୍ଧାର କଲେ କାୟେ
ସେ ପାଣ୍ଡବଂଶ ଗୁଡ଼ାକ ଯେମନ୍ତ ଲୋଚକରି ଯେମନ୍ତ କଲେ
ଦେବତାୟେ । ୧୧୯ ।
ତପସ୍ୟକ ପୂର୍ବ ଯେମନ୍ତ କଲେ ଯେମନ୍ତ ଯେ ପିଙ୍ଗଳୀ
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର ଅମୃତ ଦେଇ ତୋଳ ।୧୨୦ ।
ଚେତନା ପାଇ ଉଠିଲେ ଯେହ୍ନେ ନିଦ୍ରାଗତ ପ୍ରାଣୀ ଜାଣି
ସେକ୍ଷଣକେ ଉଠି ବସିଲେ ବ୍ରାହ୍ମଣ ବ୍ରାହ୍ମଣୀ । ୧୨୧ ।
କାମଦେବ ଜାଣି ସେ ବ୍ରାହ୍ମଣ ଅବତର
ରମ୍ଭାଙ୍କ ସୁନ୍ଦରୀ ସେ ପତିବ୍ରତା ତପ ।୧୨୨ ।
ଦେବତାୟେ ବିମାନେ ବସାଇ ଆଣିଲେ ଆକାଶେ
ନକ୍ଷତ୍ର ହୋଇ ଉଦୟେ ହୋଇଲେ ସେ ସପ୍ତଋଷିଂକର ପାଶେ ।୧୨୩।
ଶୁଣ ଗୋ ପାଞ୍ଚାଳୀ ବଦୟନ୍ତି ମାର୍କଣ୍ଡେ
ପତିବ୍ରତା ହୋଇଲେ ଗୋ ପୁଣ୍ୟ ହୋଅଇ ଯେତେ । ୧୨୪ ।
ଶୁଣ ଗୋ ପାଞ୍ଚାଳୀ ପତିବ୍ରତାର କଥା
ସ୍ୱାମୀରେ ଭଗତ ହୋଇଲେ ଯେସନେକ ପୁଣ୍ୟ ଯଥା । ୧୨୫ ।
ଅନିତ୍ୟ ସଂସାର ଯେ ବିଚାର ନୋହେ କିଛି
ନାଶକର ଦେବତା ସେ ଅନେକ ଦୋଷ ବାଛି । ୧୨୬ ।
ସ୍ୱାମୀ ସେବାହୁଂ ସ୍ତ୍ରୀଙ୍କ ନ ଦିଶଇ ଆନ ପୁଣ୍ୟ
ଯେହ୍ନି ସେ ମୋକ୍ଷଗତି ଧର୍ମନ୍ତିଙ୍କ କାରଣ । ୧୨୭ ।
ସ୍ୱାମୀ ଅଟେ ଦେବ ଧର୍ମ ସ୍ୱାମୀ ଯେ ଦେବତା
ସ୍ୱାମୀ ଅଟେ ନାରାୟଣ ସ୍ୱାମୀ ଯେ ତୀର୍ଥଯାତ୍ରା । ୧୨୮ ।
ତେଜ ହୋ ପରଦାର ସଂସାର ମୋହବନ୍ଧେ
ହରଇ ସର୍ବଦୋଷ ପତିଭଗତ ପରସାଦେ । ୧୨୯ ।
ଆଦିଅନ୍ତ କିଛି ନାହିଂ ବୟସ ମଣ୍ଡଳ ମଧ୍ୟେ
ଯେଣୁ ସେ ପାପ ବର୍ଦ୍ଧିତ ହୋଅଇ ଲୁବୁଧେ । ୧୩୦ ।

---

୧୩୦।୨ ଲୁବୁଧେ—ଲୋଭ ।

ବୟସ ସରଲେ ସେ ବର୍ଗର ନୋହେ କଛୁ
କଞ୍ଚିତ ଦୋଷରେ ଗୋ ବହୁତ ପାପ ଅଛୁ । ୧୩୧ ।
ମଧ୍ୟ ବୟସ ଖଣ୍ଡିକ ବର୍ଗର କର ପୁଣ
ନଜ ପ୍ରଭୁ ପ୍ରସାଦେ ଗୋ ଉପୁଜଇ କାରଣ । ୧୩୨ ।
ତୁମ୍ଭେ ବୋଲ ଯେହ୍ନା ଅବା ବଞ୍ଚିବା କେମନ୍ତେ
ପତିଭକ୍ତା ସ୍ତ୍ରୀଙ୍କ କଥା ବର୍ଗର ହୃଦଗତେ । ୧୩୩ ।
ଯାହାଙ୍କ ନ ବୁଡାଇ ଗୋ ଶାହାସ୍ତ୍ର କଥା ଶୁଣ
ସଂସାର ସାଗରୁଂ ତରିବାକୁଟି ନାବ ଯେ ଶ୍ରୀ ବିଷ୍ଣୁ ପୁରାଣ । ୧୩୪ ।
ସୁସ୍ତ୍ରୀ ସୁବୁଦ୍ଧି ଯେ ଅଛନ୍ତି ଗୁଣବନ୍ତୀ
ଅମାନ୍ତ ସଂସାରୁ ସେ ପାବନ୍ତି ସଦଗତି । ୧୩୫ ।
ଶ୍ରୀ ମହାଭାରଥ ଆରଣ୍ୟକ ପର୍ବ କଥା
ଶୂଦ୍ରମୁନ ସାରଳା ଦାସ କହିଲେ ପତିବ୍ରତା ସ୍ତ୍ରୀର ବାରତା ।୧୩୬।

—୦— । ୧୧୬୪୨ ।

## ତ୍ରିପୁରମୋହନୀ ହରଣ ଓ ମେରୁଶୂଳ ବଧ କଥା

ଯାହା ସେ କହିଲେ ସତ୍ୟବତୀର ଶିଶି
ସାତକଳ୍ପ ବଞ୍ଚାଇଲେ ମାରକଣ୍ଡ ମହଋଷ । ୧ ।
ପ୍ରସ୍ତାବ ବାକ୍ୟେଣ ଯାହା କହିଲେ ବିଧାନେ
ଦ୍ରୌପଦୀଙ୍କ କହିଲେ ସେ ପତିବ୍ରତା ଆଚ୍ଛାନେ । ୨ ।
ମାଗୋ ତୁ ମହାସତୀ ପ୍ରସନ୍ନ ଅପର୍ଣ୍ଣା
ସତୀ ସାଧବୀ ତୁ ଅଭୟେ ବରାଙ୍ଗନା । ୩ ।
ଅଗ୍ନିର ମଧ୍ୟୁ ଯେବଣ ଦେବୀ ଅବତର
ପଞ୍ଚ ଇନ୍ଦ୍ର ମୋହନୀ ଗୋ ତୁ ଅଛୁ ପରମ ଯୋଗେଶ୍ୱରୀ । । ୪ ।

ଯେମନ୍ତେ ଗୋପ୍ୟାନେ ଗୋ ଧନ ହୋଅଇଛି ପାର
ସେହିମନ୍ତେ କର ତୁମ୍ଭେ ଚିତ୍ତରେ ଥିବ ଧରି । ୫ ।
ଦ୍ରୋପଦୀ ପ୍ରତିଉତ୍ତର ଦେଲେ ମାର୍କଣ୍ଡ ବାକ୍ୟ ଶୁଣି ।
ପାଣ୍ଡବଙ୍କୁ ଭଗତ ମୋର ନାହିଁ ଆନେ ବାଣୀ । ୬ ।
ପାଣ୍ଡବେ ଯେ ଜଗତଗୁରୁ ମୁହିଂ ଗୁରୁପତ୍ନୀ
ମୋତେ ଯେ ଇଚ୍ଛିବ ସେ ହେବ ଖଣ୍ଡ ତନ । ୭ ।
କଲ୍ୟାଣ କରଣ ଯେ ସମସ୍ତ ମହର୍ଷି
ଭୀମସେନ ଆଦିକରି ଭାଆରନ୍ତ ବସି । ୮ ।
ବାଭୟେ ବୃଷଦେଂ ଗୋପ୍ୟ ହୋଇ ପାରନ୍ତନ ଭଲେ
ବିବ୍ରତ ନୋହିବୁ ତୁମ୍ଭେ କାହାରହିଂ ବୋଲେ । ୯ ।
କର୍ମର ବିପାକ ଯେବେ ପଡିବ ସମୟେ
ସଂହରିବ ବଲବୀର୍ଯ୍ୟ ସଂବତ୍ସର ଯାଯେ । ୧୦ ।
ବ୍ରତମାନ ଆଚରି ଗୋପ୍ୟାନେ ବଞ୍ଚୁଥିବ ଦିନ
ପ୍ରଥମେ ଆଶିଷ ଦେଲେ ସମସ୍ତ ଋଷିମାନ । ୧୧ ।
ବାବୁ ଯୁଧିଷ୍ଠି ଆମ୍ଭେ ଯାଉଛୁଂ ତୀର୍ଥସ୍ଥାନେ
ତୋର ବିହ୍ନନେ ସଂବତ୍ସରେ ଆମ୍ଭେ ବଞ୍ଚିବୁ କେସନେ । ୧୨ ।
ଆୟୁ ଆରୋଗ୍ୟ ହୋଇ ବର୍ଦ୍ଧିତ ହୋଇବ ଯଥା
ପଞ୍ଚ କଣ୍ଟକ ପ୍ରାପ୍ତି ତୋତେ ହୋଉ ଯେଉଁସବୁଥା । ୧୩ ।
ଆରୋଗ୍ୟ କଲ୍ୟାଣ କଲେ ଋଷିମାନେ
ଚଳିଲେ ବାଲଖିଲ୍ୟା ଯେ ଯାହା ଆଶ୍ରମେ । ୧୪ ।
ଭୃଲେ ଉହିଲେ ବ୍ୟାସ ମାର୍କଣ୍ଡ ବଶିଷ୍ଠ
ଅଗସ୍ତି ପଉଲସ୍ତି ବାଲମୀକ ଲୋମଶ ତପନିଷ୍ଠ । ୧୫ ।
ପାଣ୍ଡବ ପଞ୍ଚାଣ ସମସ୍ତ ମହାମୁନି
ସନ୍ନିଧେ ପାଞ୍ଚାଳୀ ବିଜେ କଦ୍ରସେନୀ । ୧୬
ଯୁଧିଷ୍ଠି ଦେବେ ବୋଇଲେ ଶୁଣ ଫାଲଗୁନି
ହରିଂକ ସଂକେତ ସୁମରଣା ତୁ କରହୋ ବନ୍ଦନ । ୧୭ ।
ଅନେକ ଶଙ୍କଟବନ୍ତେ ସେ ବାସେବର ବଳା
ନାରାୟଣଂକୁ ସୁମରଣା କଲ୍ୟ ଶୁଭ ବେଳା । ୧୮ ।

ଅର୍ଜୁନ ସୁମରନ୍ତେଣ ଯେ କର୍ମିଲ ଆସନ
ଜାଣିଲେ ହୃଦଗତେ ଶ୍ରୀ ମଧୁସୂଦନ । ୧୯ ।
ଅଗ୍ୟାଂତ ବନବାସ ଯେ ଜାଣିଲେ ନିକଟେ
ବିଜେ ନାରାୟଣ ଖଗେଶ୍ୱର ପୃଷ୍ଠେ । ୨୦ ।
ବିନତା ନନ୍ଦନ ଗମଇ ଆକାଶେ
ପ୍ରବେଶ ନାରାୟଣ ଯୁଧିଷ୍ଠିର ଦେବଂକ ପାଶେ । ୨୧ ।
ଶ୍ରୀ ବାସୁଦେବ ଯେ ଯୁଧିଷ୍ଠିର ଦେବଂକୁ ଦେଖି
ଗରୁଡ ପିଠିରୁ କୃଷ୍ଣ ଆସନ ଉପେକ୍ଷି । ୨୨ ।
ସନ୍ନିଧେ କେଶବ ହୋଇଲେ ପରଣାମି
ଉଠି କୋଳାଗ୍ରତ କଲେକ ଯୁଧିଷ୍ଠିର ଦେବସ୍ୱାମୀ । ୨୩ ।
ଯୁଧିଷ୍ଠିର ପଚ୍ରିଲେ କୁଶଳ ଟିକି ବଳରାମେ
ଦ୍ୱାରିକାରେ ସମସ୍ତେ ଅଛନ୍ତିନା କ୍ଷଣେ । ୨୪ ।
ଗୋବିନ୍ଦେ ବୋଇଲେ ଶୁଣିମା ଦେବ ଧର୍ମ
ସ୍ୱାମୀ, ତୋହୋର ପରସାଦେ ସମସ୍ତେ ଅଛନ୍ତି କ୍ଷମ । ୨୫ ।
ତୁ ଦେବ ମହାରାଜା ଅଟୁ ଧର୍ମ ଯୁଧିଷ୍ଠିର
ଅନୁବ୍ରତେ ଭାବୁଥାଇ ତବ ନାମଗୋଟି । ୨୬ ।
ବ୍ୟାସେ ବୋଇଲେ ତୋହୋରେ ଚିନ୍ତା ନ କଲେ
ଯେତେ ବଡ ଦୁର୍ଗତିରୁ ଅରଣ୍ୟେ କେମନ୍ତେ ବଞ୍ଚିଲେ । ୨୭ ।
ସର୍ବଭୂତ ନାଥ ତୁ ସମୂଳ ପ୍ରତିପାଳ
ସର୍ବଜନ ଚିନ୍ତା ତୋର ନାମ ବନମାଳୀ । ୨୮ ।
ବ୍ୟାସେ ବୋଇଲେ ହରି ଯେତେ ବଞ୍ଚିଲେ ଅରଣ୍ୟେ
ଆବର ଅଛି ବର୍ଷ ବଡ଼ା ବରଷେ ତେରଦିନେ । ୨୯ ।
ବିଶାଶରେ ଦିନ ଯେ ହୋଇବ ଲେଖନ୍ତେ
ଅରଣ୍ୟେ ବଞ୍ଚିବେଟି ଗୁରୁର୍ମାସ୍ୟା ପରିଯନ୍ତେ । ୩୦ ।
ଯେତେକ ସରିଲେ ଯେ ହୋଇବ ଅଗ୍ୟାଂତ
ତେଣୁକର ସୁମରଣା କଲେ ଧର୍ମସୁତ । ୩୧ ।
କୂଟ କପଟ ମନ୍ତ୍ରୀ ଶକୁନି ମନ୍ଦବୁଦ୍ଧି
ବଢାଦିନ ଲେଖିକରି ପାରଇ ବିରୋଧି । ୩୨ ।

ଏମ୍ଭେ ପୁଣ ଧର୍ମନ୍ତ ନ ଛାଡିବ ଯୁଗତେ
ପୁଣିହିଂ ବନବାସ ହୋଇବ·ଲେଖନ୍ତେ । ୩୩ ।
ଯୁଧେଷ୍ଠି ଦେବେ ବୋଇଲେ ଏକଥା ଅଟଇଟି ସତ
ଏହୁ ଅରଣ୍ୟକଇଂ ମୁଂ ପୁଣ ବୁଝୁଅଛୁ ସୁସ୍ଥ । ୩୪ ।
ବ୍ୟାସ ମାରକଣ୍ଡ ଯୁଧେଷ୍ଠି ତିନଜଣ ଯେନ
ଏକାନ୍ତେ ବସି ଭାଳନ୍ତ ନାରାୟଣ ଦେବସ୍ୱାମୀ । ୩୫ ।
ଅଗସ୍ତି ବାଲମୀକ ଯେ ବଶିଷ୍ଠ ଲୋମଶ
ଏମ୍ଭେ ସପ୍ତଋଷିଂକ ଭାଇ ବୋଲନ୍ତ ଋଷିକେଶ । ୩୬ ।
ମୁହିଂ ତୁମ୍ଭନ୍ତ ପଚାରଇ କଥାର ବିଧାନ
ପାଣ୍ଡବେ ଗୋପ୍ୟ ହୋଇବେ କେବଣହିଂ ଥାନ । ୩୭ ।
ମାରକଣ୍ଡେ ବୋଇଲେ ଉତ୍ତର ହେମବନ୍ତେ
ତହିଂକ ଆତାଗମନ ନାହିଂ ଶତଜଣ୍ଡ ପରଯନ୍ତେ । ୩୮ ।
ଆବର ଥାନେକ ଅଛୁ ରଣଥମ୍ଭ ଗଡେ
କାର୍ତ୍ତିକସାର୍ଜ୍ଜ ସଞ୍ଚଳ ଅଟଇ ସେହୁ ଦୃଢେ । ୩୯ ।
ବିଜୟେ ମାହେଶ୍ୱରୀ ତହିଂ ପ୍ରସନ୍ନେ ହିଙ୍ଗୁଳା
ଯୋଗିମା ବୃନ୍ଦ ଯେନଣ ଖେଳଇ ମହାଖଳା । ୪୦ ।
ତାହାର ତହିଂକ ଭୟେ ଲୋକେ ନାହିଂ ଯାଏ
ଗୋସାମଣିକ ହି ପୁତ କର ଲୁହାଇବା ସେଇଠାଏ । ୪୧ ।
ଅଗସ୍ତି ବୋଇଲେ ଦକ୍ଷିଣ କୋଶଳ କୋଣେ
ଏମ୍ଭେ ଗୋପ୍ୟ ହୋଇ ପାରନ୍ତ ଜେନାବଳୀ ପାଟଣେ । ୪୨ ।
ଶୁଣିଣ ପ୍ରତିଉତ୍ତର ଯେ ଦିଲେକ ବଶିଷ୍ଠେ
ଭଲ ଗୋପ୍ୟଥାନ ଅଛୁ ସେ ମନ୍ଦର ନିକଟେ । ୪୩ ।
ମନ୍ଦର ଗନ୍ଧମର୍ଦ୍ଦନ ଲୋକାଲୋକ ଗିରି ପିଠା
ମଧ୍ୟେ ରାଜ୍ୟ କରଇ ସେ ମେରୁଶୂଳ ମହାବୀର । ୪୪ ।
ରଥ ଗଜ ଅଶ୍ୱ ତାର ନାହିଂ ଅନ୍ୟ ଆଠ
ସହସ୍ରେକ କନ୍ୟା ଯେନ ଥାଇ ସେ ଦ୍ରୁପିଷ୍ଟ । ୪୫ ।
ତାହାକଇଂ ବଧ ଯେ କରିପାରଇ ରଣେ
ଗୋପ୍ୟାନ ହୋଇ ପାରିବ ସେ ମଳେ ଏକଜଣେ । ୪୬ ।

ଅମର ପୁରକଇଂ ସେ ମେରୁଶୂଳ ହସ୍ତେ ଧାଡ଼
ଅନୁବ୍ରତେ ଥାଇ ସେ ସମ୍ଭାନ୍ତ ପିଠି ଚଢ଼ି । ୪୭ ।
ଧନୁଗଦା ଖଡ୍ଗ ସେ ନ ଧରଇ ହାଥେ
କୋହାଳ ଆୟୁଧ ସେ ଧରିଥାଇ ଅନୁବ୍ରତେ । ୪୮ ।
ଯୁଧିଷ୍ଠିର ଦେବ ପୃଚ୍ଛାକଲେ ବଶିଷ୍ଠ ମହର୍ଷି
ମେରୁଶୂଳ ବୋଲକର ସେ ଅଟଇ କେବଣ ବଂଶୀ । ୪୯ ।
ବଶିଷ୍ଠେ ବୋଇଲେ ହୋ ଅନନ୍ତ ଦୈତ୍ୟ ପୁତ୍ର
ସିଂହନାଦ ବୋଲକର ପୂର୍ବରେ ଦଇତ । ୫୦ ।
ବଜ୍ରଶୂଳ ବୋଲକର ତାହାର କୁମର
ଯୋଦ୍ଧାପଣେ ସମନାହିଂ ତାକୁ ମଧ୍ୟପୁର । ୫୧ ।
ବଜ୍ରଶୂଳ ପୁତ୍ରନାମ କୃତାନ୍ତକ ଶୂଳ ବୋଲି
ରେବାଶୂଳ ବୋଲକର ତା ପୁତ୍ର କହିଲି । ୫୨ ।
ରେବାଶୂଳ ପୁତ୍ରନାମ ଅଟେ ତ୍ରାକେଶ୍ୱର ଶୂଳ
ତ୍ରାକେଶ୍ୱରର ପୁତ୍ର ନାମ ନର୍ଘାତେକ ଶୂଳ । ୫୩ ।
ତାହାର କୁମର ପୁଣି ଅଟେ ଅର୍ଥଶୂଳ
ଅର୍ଥଶୂଳ ପୁତ୍ର ନାମ ହେଲା ଜପାସୁର । ୫୪ ।
ତାହାର ତହୁଂ ଜାତ ପୁଣ ହେଲା ଜପାଶୂଳ
ଜପାଶୂଳର କୁମର ହୋଇଲାକ ରୁପାଶୂଳ । ୫୫ ।
ଦାନବାଶୂଳ ବୋଲି ତାର ବଳିଷ୍ଠ ପୁତ୍ରଇଂ
ଯେହାର ନନ୍ଦନ ଯେ ମହାଶୂଳ କହି । ୫୬ ।
ମହାଶୂଳର ନନ୍ଦନ ବଜ୍ରାଙ୍ଗଶୂଳ ବୋଲି
ବିଷମଶୂଳ ତାହାର ନନ୍ଦନ କହିଲି । ୫୭ ।
ବିଷମଶୂଳର ପୁତ୍ର ମହାଶୂଳ ବୋଲି
ଯେକସରେ ବୁଲୁଥାଇ ରାଜ୍ୟ ମହାଆଳି । ୫୮ ।
ବିରୂପ ସତ୍ୟଯୁଗେ ସେ ବିରଞ୍ଚିକ ସେବିଲା
ଜଗୁଜତା ପୁତ୍ରେକ ହୋଇ ବର ସେ ମାଗିଲା । ୫୯ ।
ହୋଲେଣ ପ୍ରସନ୍ନ ହେଲେ ସେ ବିରଞ୍ଚି ଦଇବତ
ଯାଅରେ ମହାଶଳ ତୋହୋର ହୋଉ ଯେକପୁତ୍ର । ୬୦ ।

ସନ୍ତାପେ କରଣ ବର ଦେଲେକ ବିରଞ୍ଚି
ତନ୍ତୁଂ ସେ ପୁତ୍ରେକ ତାହାର ହୋଇଲା ଉତପତ୍ତି । ୬୧ ।
ସେ ପୁତ୍ରଗୋଟି ଅଟଇ ମହା ବଳବାନ
ମେରୁଶୃଙ୍ଗ ବୋଲିକରି ତାହାର ଯେ ନାମ । ୬୨ ।
ସେ ମେରୁଶୃଙ୍ଗ ଭାରଯାର ନାମ କାତ୍ୟାୟିନୀ
ତାହାର ଦୋହଦତାପେ ଉପୁଜିଲା ତ୍ରିଭୁବନ ମୋହିନୀ । ୬୩ ।
ତାହାର ସାରକ୍ଷେ ନ ପାଇଲା ସାପେ ବର
ଯତନକରି ନୃପତି ରୁହାଇଲା ମେଢର । ୬୪ ।
ପାଞ୍ଚକୋଶ ଆୟତନ ପାଞ୍ଚତାଳ ଉଚ୍ଚର୍ଗ
ତହିଂ ଥାଇ ଗୃହିଂଲେ ଅମର ସ୍ୱର୍ଗ । ୬୫ ।
ସେ ଭୁବନେ ଥୋଇଲେ ନେଇ ସେ ତ୍ରିଭୁବନ ମୋହିନୀକ
ଯେତେକରେ ଥାଇ ସେ କେହି ନ ଯାଇ ତାହାର:ତହିଂକ । ୬୬ ।
ଶୁଣିଣ ଯୁଧିଷ୍ଠିର ଦେବ ହୋଇଲେ ହରଷ
ଯେଉଁ ଅନନ୍ତରେ ଯେ ଶୁଣିମା ଆନରସ । ୬୭ ।
କାର୍ତ୍ତିକ ଶୁକଳ ଯେ ଦଶମୀ ଗୁରୁବାର
ଶ୍ରବଣା ନାମେ ନକ୍ଷତ୍ର ଭୋଗ ସେ ଦିନର । ୬୮ ।
ବାଳବ ନାମେ କରଣ ଶୂଳ ନାମେ ଯୋଗ
ତୁଳ ସଂକ୍ରାନ୍ତିକ ବିଂଶଦିନ ଭୋଗ । ୬୯ ।
ଯେଉଁ ତଥିଦିନେ ବିଜେ ଦୁର୍ବାସା ମହର୍ଷି
ମେଢେ ତ୍ରିଭୁବନ ମୋହିନୀକ ଭେଟିଲେକ ଆସି । ୭୦ ।
ବହୁତ କଲ୍ୟାଣ ଆଶିଷ ତାକୁ କଲେକ ଦୁର୍ବାସା
ବୋଇଲେ ଆୟି ଗୋ ସିଦ୍ଧ ହେଉ ତୋହୋର ମନୀଷା । ୭୧ ।
ଶୁଣିଣ ବୋଇଲା ସେ ତ୍ରିଭୁବନ ମୋହିନୀ
ମୋତେ ବର ଗୋଟିଏ ଠାବକର କନା ଦୁର୍ଭାସା ମହାମୁନି । ୭୨ ।
କନ୍ୟାର ବଚନେ ସେ ପଞ୍ଜଲସ୍ତ୍ରୀର ବାଳ
ଆଧାରରୁ କାଢିଲେ ମୁନି ଶତ ଯେ ପଟଳ । ୭୩ ।
କନ୍ୟାର ଅଗ୍ରତେ ଦେଖାଇଲେ ତପନିଷ୍ଠି
ବୋଇଲେ, ମାତା ଯେହାର ପାବଣ୍ଟ ପିତା ଯେ ଧୂର୍ଜଟି । ୭୪ ।

ଆବର କାମକଇଂ ଦହନ କରଣ ଯେହ୍ନ ଈଶ୍ବର କଲେ ଜାଯେ
ପ୍ରତକ୍ଷେ ସୁନ୍ଦର ଯେ ଅନଙ୍ଗ ତେଜ ପ୍ରାଯେ । ୭୫ ।
ମହା ଅନଳ ଭେଦି ଉତପତ୍ତି ଯେ କୁମାର
ଜନ୍ମହୋଇ ମାଇଲା ଯେହ୍ନ ତାଡକା ଅସୁର । ୭୬ ।
ହାଟକେଶ୍ବର ବବାଦେ କାର୍ତ୍ତିକ ଦର୍ପଧ୍ବଂସା
ପ୍ରସନ୍ନେ ସଦାନନ୍ଦ ପୂରେଇ ମନାଷା । ୭୭ ।
ଛଡବଦନ ଦ୍ଵାଦଶ ଭୂଜ ଦ୍ଵାଦଶ ଯେ ନେତ୍ର
ଯେକଦୃଷ୍ଟିରେ ଦେଖଇ କୋଟିଯେ ଯୋଜନ [ପର୍ଯ୍ୟନ୍ତ] ।୭୮।
ଶୂରବନ୍ତ ଗୁଣବନ୍ତ ଧାମକ ପଣ୍ଡିତ ପରମଯୋଗୀ
ମନୁକଳ୍ପ ବଞ୍ଚନ୍ତା ପ୍ରଳୟାନ୍ତକ ଭୋଗୀ । ୭୯ ।
ଅନେକ ପୁଣ୍ୟ ଯେବେ ତୁ କରିଅଛୁ ପୂର୍ବେ
ମହାରୁଦ୍ର ପୁରୁଷ ପ୍ରାପତ ହୋଇବ ଯେବେ । ୮୦ ।
ପ୍ରଶୁ କୁଠାର ଯେ ପିନାକୀ ନାମେ ଧନୁ
ଶୂଳ ଶକତ ଧାରଣ ଅଭଯେ କୁରୁଶାନୁ । ୮୧ ।
ରଣ ସୋହେଁଡ ପୁରୁଷ ସାଂଗ୍ରାମେ ଜଗୁଜତା
ଈଶ୍ବରୁଂ ଶତେଗୁଣ ଅଟଇ ବଳବନ୍ତା । ୮୨ ।
ବାରହାତା କନ୍ୟା ସେ ମଦନ ଆରତେ
ଟେହ୍ନ ମହାତମା ସେ ପୁରୁଷକଇଂ ଭେଟାଇବ ମୋତେ । ୮୩ ।
ଦୁର୍ଭାସା ବୋଇଲେ ଯେବେ ଇଚ୍ଛା ତୋର ତ୍ରିଭୁବନ ମୋହନୀ
ଯେହ୍ନ ସପତ ଦ୍ଵିବସ ମଧ୍ୟେ ମୁଂ ଆସିବଇଂ ତାହାକଇଂ ଘେନି । ୮୪ ।
ତେଜଲ ପିତାମାତା ମୁନି ହେ ତୋହୋରେ ଶରଣ
ଭଗତଜନ ମଚ୍ଛଳ ତୁମ୍ଭେ ତାହା କହନ କରିଆଣ । ୮୫ ।
ଦୁର୍ଭାସାଯେ ବୋଇଲେ ଆମ୍ଭି ଆମ୍ଭେ ପର ଦୁଖେ ଦୁଖୀ
ତୁ ଅନେକ ଭୋଗ ଭୁଞ୍ଜିବୁ ଗୋ ଶରଦ ଚନ୍ଦ୍ରମୁଖୀ । ୮୬ ।
ଚଳନ୍ତି ଦୁର୍ଭାସାଯେ ମୋହନୀକ ଯେହ୍ନ କହି
କାର୍ତ୍ତିକେଶ୍ବରକୁ ଆଣିତେ ବେଗେ ଯାଇଂ । ୮୭ ।
ଯେଥିଅନ୍ତେ ବଶିଷ୍ଠେ ଯେ ଧର୍ମଂକ ଆଗର
ବୁଝାଇଣ କହନ୍ତି ଯେ ସକଳ ସମାଚ୍ଚର । ୮୮ ।

ସଦୟେ କରଣ ବର ଦିଲେକ ବିରଞ୍ଚି
ତହୁଂ ସେ ପୁତ୍ରେକ ତାହାର ହୋଇଲା ଉତପତ୍ତି । ୬୧ ।
ସେ ପୁତ୍ରଗୋଟି ଅଟଇ ମହା ବଳବାନ
ମେରୁଶୃଙ୍ଗ ବୋଲିକରି ତାହାର ଯେ ନାମ । ୬୨ ।
ସେ ମେରୁଶୃଙ୍ଗ ଭାରିଯାର ନାମ କାତ୍ୟାୟିନୀ
ତାହାର ଦୋହିତାୟେ ଉପୁଜିଲା ତ୍ରିଭୁବନ ମୋହିନୀ । ୬୩ ।
ତାହାର ସାରିଖେ ନ ପାଇଲା ସପ୍ୟେ ବର
ଯତନକରି ନୃପତି ଚୁହାଇଲା ମେତର । ୬୪ ।
ପାଞ୍ଚକୋଶ ଆୟତନ ପାଞ୍ଚତାଳ ଉଚ୍ଚର୍ଗ
ତହିଂ ଥାଇ ଗୃହିଂଲେ ଅମର ସ୍ୱର୍ଗ । ୬୫ ।
ସେ ଭୁବନେ ଥୋଇଲେ ନେଇ ସେ ତ୍ରିଭୁବନ ମୋହିନୀକ
ପ୍ରେବସରେ ଥାଇ ସେ କେହି ନ ଯାଇ ତାହାର:ତହିଂକ । ୬୬ ।
ଶୁଣିଣ ଯୁଧିଷ୍ଠିର ଦେବ ହୋଇଲେ ହରଷ
ପ୍ରେଥି ଅନନ୍ତରେ ଯେ ଶୁଣିମା ଆନରସ । ୬୭ ।
କାର୍ତ୍ତିକ ଶୁକଳ ଯେ ଦଶମୀ ଗୁରୁବାର
ଶ୍ରବଣା ନାମେ ନକ୍ଷତ୍ର ଭୋଗ ସେ ଦିନର । ୬୮ ।
ବାଳବ ନାମେ କରଣ ଶୂଳ ନାମେ ଯୋଗ
ତୁଳ ସଂକ୍ରାନ୍ତିକ ବଂଶଦିନ ଭୋଗ । ୬୯ ।
ପ୍ରେହି ତିଥିଦିନେ ବିଜେ ଦୁର୍ବାସା ମହର୍ଷି
ମେତେ ତ୍ରିଭୁବନ ମୋହିନୀକି ଭେଟିଲେକ ଆସି । ୭୦ ।
ବହୁତ କଲ୍ୟାଣ ଆଶିଷ ତାକୁ କଲେକ ଦୁର୍ବାସା
ବୋଇଲେ ଆୟି ଗୋ ସିଦ୍ଧି ହେଉ ତୋହୋର ମନୀଷା । ୭୧ ।
ଶୁଣିଣ ବୋଇଲା ସେ ତ୍ରିଭୁବନ ମୋହିନୀ
ମୋତେ ବର ଗୋଟିଏ ଠାବକର କନା ଦୁର୍ବାସା ମହାମୁନି । ୭୨ ।
କନ୍ୟାର ବଚନେ ସେ ପଞ୍ଜଲସ୍ତ୍ୟର ବାଳ
ଆଧାରରୁ କାଢିଲେ ମୁନି ତହ ଯେ ପଟଳ । ୭୩ ।
କନ୍ୟାର ଅଗ୍ରତେ ଦେଖାଇଲେ ତପନିଷ୍ଠି
ବୋଇଲେ, ମାତା ସ୍ୱେହାର ପାଦଙ୍କ ପିତା ଯେ ଧୂରୁଜଟି । ୭୪ ।

କଣିଷ୍ଟେ ବୋଇଲେ ଈଶ୍ୱର କହ ବୁଝ
ପାଣ୍ଡବଂକ ବଳେ କି ସେ ମରଇ ମେରୁଶୂଳ । ୮୯ ।
ଯୁଧିଷ୍ଠିର ଦେବ ବୋଇଲେ ବାବୁ ଶୁଣରେ ସହଦେବ
ଈଶ୍ୱର ମେରୁଶୂଳର କି ହୋଇବ ବନ୍ଧୁଭାବ । ୯୦ ।
ସହଦେବ ବୋଇଲେ ଦେବ ହୋଇବ ବହୁତ କଥା
ଅର୍ଜୁନ ଠାକୁରଂକ ହାଥେ ତାହାର ମୃତ୍ୟୁ ଯଥା । ୯୧ ।
ମାରକଣ୍ଡେ ବୋଇଲେ ସହଦେବ ମନ୍ତ୍ରୀ ବଚନ ଶୁଣି
ଅନ୍ୟ ଅନ୍ତର କଥା ଯେଉଁଥି ହୋଇବ କି ପୁଣି । ୯୨ ।
ସହଦେବ ବୋଇଲେ ଦେବ ଶୁଣିମା ମଧରିପୁ
ବହୁତ ଦ୍ୱନ୍ଦ୍ୱ ଯେ ହୋଇବ ଯେଉଁଟି ପରସ୍ତାପୁ । ୯୩ ।
ଦୁର୍ଭାସା ଗଲେ ତ୍ରିଭୁବନ ମୋହିନୀ ଚିତ୍ରପଟ ଘେନି
ମନ୍ଦର ପର୍ବତେ ଭେଟିଲେ ନାରଦ ମହାମୁନି । ୯୪ ।
ଦୁର୍ଭାସା ନାରଦ ବସିଲେ ଯେଉଁକମେଳେ
ନାରଦଂକୁ କହିଲେ ମୁନି କଥା କୁତୂହଳେ । ୯୫ ।
ମେରୁଶୂଳ ଦୋହିତା ଯେ ତ୍ରିଭୁବନ ମୋହିନୀ
ତାହାକୁ ବର ନିମନ୍ତେ ଆସିବ କାର୍ତ୍ତିକେଶର ଘେନି । ୯୬ ।
ନାରଦେ ବୋଇଲେ ତୁମ୍ଭେ କଲ ହୀନକାର୍ଯ୍ୟ
ସେ କଥା ନିଫଳ ହୋଇବ ପାଇବ ବଡଲଜ୍ଜ । ୯୭ ।
ଚିତ୍ରପଟ ଦେଖାଇ ତୁମ୍ଭେ ଭଣ୍ଡିଲ ବାଳୁତ କୁମାର
ସେ ତ୍ରିଭୁବନ ମୋହିନୀକି କାର୍ତ୍ତିକେଶ୍ୱରର ମନରୁ ହିଆଳ । ୯୮ ।
ଭିତରେ ଲୁଚାଇ ଦେଖାଇଲ ଗୁଣନିଧି
ମାଙ୍କରେ ଗଳଇ ତାର ଗଳିତ କୁଷ୍ଠ ବ୍ୟାଧି । ୯୯ ।
ହାଡମାଳ କଂକାଳ କଇପୁନିବାସୀ
ଉଡଙ୍ଗ ଭୂଷଣ ସେ ପରପଞ୍ଚ ତପୁସୀ । ୧୦୦ ।
ଛଡମୁଖ ବାରଭୁଜ ଦ୍ୱାଦଶ ଯେ ନେତ୍ର
ଯେଉଁକଥା ଦେଖିଲେ କି କରିବ ସନମତ । ୧୦୧ ।
ଦୁର୍ଭାସା ବୋଇଲେ ନାରଦେ ହୋ ନ କହ ଯେଉଁମନ୍ତ ବାଣୀ
ସେ କନ୍ୟା ମନ କରିଛି ଆମ୍ଭର ବୋଲ ଶୁଣି । ୧୦୨ ।

ଦୁର୍ବାସାଙ୍କୁ ତେଣେ କପିଳାସ ସ୍ୱର୍ଗ ଗଲେ
ଯେଣେ ନାରଦେ ବେଗେ ଯାଇଂ କନ୍ୟାକୁ ଭେଟିଲେ । ୧୦୩ ।
ଧାଡିକାରେ ବଜସ୍ତେ ନାରଦ ମହାମୁନି
ଦେଖିଣ ପାଦାର୍ଘ ଦେଲା ତ୍ରିଭୁବନ ମୋହନୀ । ୧୦୪ ।
ଅନେକ ଭଗତ ସେ ଯେ ମେରୁଶୈଳର କୁମାରୀ
ବୋଇଲେ ପ୍ରସନ୍ନ ମୋତେ ହୋଇବା ବ୍ରହ୍ମଋଷି । ୧୦୫ ।
ପିଅର ମୋ ମେରୁଶୈଳ ଦୁରନ୍ତକ ଦେବା
ପ୍ରଦାନ ନକଲା ମୋତେ ହୋଇଲ ଆସି ଯୁବା । ୧୦୬ ।
ଭନପୁରେ ପ୍ରବେଶ ତୁମ୍ଭେ ଅଟ ତପନିଷ୍ଠି
ମୋହୋର ସାକ୍ଷେ ତୁମ୍ଭେ ଆଣ ବରଗୋଟି । ୧୦୭ ।
ନାରଦେ ବୋଇଲେ ଆମ୍ଭୁ ଆମ୍ଭରେ ଭଗତ
ତ୍ରଇଲୋକ୍ୟ ସୁନ୍ଦର ତୋତେ ଆଣିଦେବ ନିଜପତି । ୧୦୮ ।
ପଦ୍ମନର ଚିତ୍ରପଟଳ ଅଲେଖ ଲେଖନ
କନ୍ୟାର ଅଗ୍ରତେ ତାହା ଦେଖାଇଲେ ତପୋଧନ । ୧୦୯ ।
ପ୍ରତକ୍ଷେ ଅନଙ୍ଗ ସେ ଆରକ୍ଷେ ମଯ୍ଯାଣ
ଦେଖିଣ ସୁନ୍ଦରୀର ଚଳିଲା ପଞ୍ଚପ୍ରାଣ । ୧୧୦ ।
ଅଗୁଣିତ ପୁରୁଷ ସେ ସହସ୍ରାଗୁଣେ କଳା
ମନସିଜ ମୋହନ ସେ ଲକ୍ଷ୍ମୀ ନାରାୟଣଂକର ବଳା । ୧୧୧ ।
ସ୍ତମ୍ଭନ ମୋହନ ମାଦନ ବଶ ଉଚ୍ଚାଟନ ପଞ୍ଚଶର
ପୁଷ୍ପଧନୁ ପୁଷ୍ପବାଣ ଘେନି ନିଜକର । ୧୧୨ ।
ପୁଷ୍ପବିମାନ ଆରୋହଣ ପୁଷ୍ପରୂପ ପାଣି
ପୁଣ ପୁଣ ପ୍ରଳମ୍ବିତ ହୋଇଲା ବରବର୍ଣ୍ଣୀ । ୧୧୩ ।
ହେ ମୁନି ନାରଦେ ତୋତେ ଶତେ ସହସ୍ର ଦଇନ
ଯେ ମୋହୋର ସ୍ୱାମୀକି ଆସ ବେଗେ ଘେନି । ୧୧୪ ।
ଦୁର୍ବାସାଙ୍କୁ ଯାଇଛନ୍ତି କାର୍ତ୍ତିକେଶ୍ୱରକଇଂ ଆଣି
ମୁହିଂ ତାହାଂକୁ ଉପେକ୍ଷିଲି ଦୃଢବ୍ରତ ଜାଣି । ୧୧୫ ।
ନାରଦେ ବୋଇଲେ ଆମ୍ଭି ଦକ୍ଷିଣ ଦ୍ୱାରିକା
ଅଣି ସହସ୍ର ଯୋଜନ କ୍ଷୀରୋଦ୍ରଶାୟୀ ଯେକା ।୧୧୬ ।

ପଦ୍ମନର ଚନ୍ଦପଟ୍ଟ ମୁନସ୍ତେ ଦେଇଯିବା ମୁକ୍ତ
ଆଜହୁଂ ଖଟିଣଥିବ ମୁହିଂ ଯେ ତାହାଂକୁ । ୧୧୭ ।
କହିଣ ନାରଦ ଗଲେ ଆକାଶ ପୁର ଭ୍ରମି
ମନପବନ ଦଣ୍ଡେ ଆଟସିହ୍ନି ସେ ଦ୍ୱାରକାପୁର ଗମି । ୧୧୮ ।
ସହଦେବ ବୋଇଲା ଦେବ ଶୁଣିମା ଧର୍ମସ୍ତେ
ଯେହ୍ନିକ୍ଷଣି ନାରଦେ ପଦ୍ମନ ତହିଂକ ରାଜସ୍ତେ । ୧୧୯ ।
ତ୍ରିଭୁବନ ମୋହିମାର ଚିତ୍ର ଯେ ପଟଳ
ପଦ୍ମ ନକଇଂ ଦେଖାବନ୍ତି ବ୍ରହ୍ମାଂକ ଦୁଲାଳ । ୧୨୦ ।
ସହଦେବର ବଚନେ ହସିଲେ ଚକ୍ରଧାରୀ
ଆସିବ ଟିକ ପଦ୍ମନ ସେ ଶମ୍ବର ଅଇରି । ୧୨୧ ।
ସହଦେବ ବୋଇଲେ ସ୍ୱାମୀ ରାଜସ୍ତେ ପୁଷ୍ୟରଥେ
ଯେହ୍ନିକ୍ଷଣି ହଜେ କରିବେ ମନୁମଥେ ନାରଦ ସଙ୍ଗତେ । ୧୨୨ ।
ବ୍ରହ୍ମାର ନନ୍ଦନ ଯେ ପଦ୍ମନକଇଂ ପରକାଶି
ବାବୁ ଭୁହି ସେ ବଳସନ୍ତା ପବନ ଗରୁହଂସୀ । ୧୨୩ ।
ଦୁର୍ଭାସାସ୍ତେ ଯାଇଛନ୍ତି ଆଣି କାର୍ତ୍ତିକେଶ୍ୱରଂକୁ
ସମ୍ମୋତେ ସୁନ୍ଦରୀ ସେ ଇଚ୍ଛାକଲା ତୁକୁ । ୧୨୪ ।
ପଦ୍ମନ ବୋଇଲା ମୁନି ହେ ଯିବାକ ଯେହ୍ନିକ୍ଷଣ
ଆଜକ ବିଶ୍ରାମ କରି ଆସନ୍ତୁ ନାରାୟଣ । ୧୨୫ ।
ନାରଦେ ବୋଇଲେ ତୁ ଯେତେ ବିଳମ୍ବ କହୁ ।
କାର୍ତ୍ତିକେଶ୍ୱର ଅଇଲେ ତୋତେ ପ୍ରାପତ ହୋଇବ କାହୁଂ । ୧୨୬
ବାବୁ ତିନିଭୁବନ ମଧ୍ୟେ ସେ କନ୍ୟାକୁ ନାହିଂ ସମସର
ରୂପଗୁଣ ତାହାର ନାହିଂ ପଟାନ୍ତର । ୧୨୭ ।
ଆଂକୁଚିତ କଟେବରି ଚିକୁର ଅଙ୍ଗଭାର
ପ୍ରଲମ୍ବ ଖୋପା ବିସ୍ତୀର୍ଣ୍ଣ ଦିଶଇ ସୁନ୍ଦରୀ । ୧୨୮ ।
କୁସୁମ ନ ଘେନଇ ସେ ଗରୁହେବ ଗନ୍ଧ ବୋଲି
କେଶବାସ ସୁଗନ୍ଧକୁ ମଧୁକରେ ଭୁଲି । ୧୨୯ ।
ଦସାଣ ପ୍ରତିମା ପ୍ରାୟେ ଲଲାଟ ରେଖ ପାଟି
କୁଞ୍ଚିତ ରୋମାବଳୀ ନୀଳା ରେଖଗୋଟି । ୧୩୦ ।

ଲଲାଟ ତଳେ ଯେ ଭ୍ରୁଭଙ୍ଗୀ ଶ୍ୟାମ ରଞ୍ଜି
କାମଦେବର ଧନୁ କି ଥୋଇଛନ୍ତି ନେଇ ସଞ୍ଜି । ୧୩୧ ।
ସେ ଧନୁକୁ ଆମଞ୍ଜନ ନୟନ ତୀକ୍ଷ୍ଣବାଣ
କଞ୍ଚେ ବିନ୍ଧିଲେ ପୁରୁଷ ଛୁଟଇ ନିଜ ପ୍ରାଣ । ୧୩୨ ।
ଯଦ୍ୟପି ପାଷାଣ ହୋଇବ ବଜ୍ରଘୋଟି
ଅପାଙ୍ଗେ ଚାହାନ୍ତେ ସେହୁ ଯିବ ଫୁଟି । ୧୩୩ ।
ହତ୍ୟା ଅପବାଦକୁ ଭୟେକର ବାଲୀ
ତେଣୁକରି ବଦନ ସେ ନ ଚାହିଁଇ ତୋଳି । ୧୩୪ ।
ଘଟଣେ ତିଳଫୁଲ ପ୍ରାୟେ ଅଟେ ତାର ନାସା
ହସି ବଚନ କହିଲେ ବଞ୍ଚିବ କେବଣ ପୁରୁଷା । ୧୩୫ ।
ନାସାର ପବନ ଯେ କରଇ ପରକାଶ
ମୃଗନାଭି କସ୍ତୁରୀ ପ୍ରାୟେ ଗନ୍ଧବାସ । ୧୩୬ ।
ଓଂକୁ ବିମ୍ବଫଳ ଜାଣି ଚଳନ୍ତି ବେନପାଟି
ବିଘଂସିତ ମଞ୍ଜୁଳ ଯେହ୍ନେ ଦଶନ ବେନଗୋଟି । ୧୩୭ ।
ବଚନ ଭାଷନ୍ତେ ନ ରହିବେ ପିକଜନ୍ତୁ
ଶୁଣିଲେକ ନିଜସ୍ଥାନ ଅକାଳେଣ ମୃତ୍ୟୁ । ୧୩୮ ।
ମୁନିଜନମାନେ ଧ୍ୟାନ ନ ଧରନ୍ତି ହୃଦେ
ଭାଙ୍ଗିଲେକ ଜପତପ ତାହାର ପରସାଦେ । ୧୩୯ ।
ପବନ ବିକାରେ ଚଳନ୍ତି ବେନି ଯେ ଶ୍ରବଣେ
ଭାରା ହୋଇବ ବୋଲି ନ ବହଇ କର୍ଣ୍ଣ ଘଟଣେ । ୧୪୦ ।
ନିବନ୍ଧ କୁଳ ଜାଣି ହିରଣ୍ୟ ଗଣ୍ଡସ୍ଥଳ
ଗଳାର ନାଭି କଣ୍ଠତଟ ସୁସଞ୍ଚ ସରଳ । ୧୪୧ ।
ହସ୍ତୀର ହୃଦୟ ଜାନୁ ରମ୍ଭାବୃକ୍ଷ ପ୍ରାୟେ
ନିବିଡ଼ ପ୍ରଲମ୍ବ ଭୁଜ ବେନିଗୋଟି ବାହେ । ୧୪୨ ।
କୁମୁଦ ମୃଣାଳ ଯେହ୍ନେ ଶୀତଳ ସୁସଞ୍ଚ
ନୋହୋଇ ସଙ୍କୀର୍ଣ୍ଣ ସେ ଯେ ନୋହୋଇ ବଡ଼ ଉଚ୍ଚ । ୧୪୩ ।
ଉଳଟି କର୍ଣ୍ଣ ଯେହ୍ନେ ବେନି କରସ୍ଥଳୀ
ସ୍ୱଭାବ ସାରସ ଯେହ୍ନେ ଅର୍ପେଂଲା ପୁଷ୍ପାଞ୍ଜଳୀ । ୧୪୪ ।

ସୁଗଠିତ ସୁବର୍ଣ୍ଣ ଯେହ୍ନେ ବଳିତ ଅଙ୍ଗୁଳି
ଶୁଦ୍ଧ ମର୍କତ ପ୍ରାୟେକ ନଖରେଖ ଝଳି । ୧୪୫ ।
ସୁସଞ୍ଚ ମଝ୍ଝା ଯେ କରଅର ପରାୟେ
କୁଞ୍ଜ ଶ୍ରୀଫଳ ପ୍ରାୟେ କୁଚ ଶୋଭାପାୟେ । ୧୪୬ ।
ଝଳକପଙ୍କ ପ୍ରାୟେ କନ୍ୟାର କର୍ଣ୍ଣ କୁକ୍ଷି
ଅତୁଲ୍ୟ ଶୋଭା ତାହାର ସର୍ବଗୁଣ ଗଛି । ୧୪୭ ।
ସୁରଭି ପାଖୁଡ଼ା ପ୍ରାୟେ ଦଶଇ ତାର ପିଠି
ହେମ ଅଞ୍ଚଳ ପ୍ରାୟେ ଝଳତ ଦେହଗୋଟି । ୧୪୮ ।
ଅଳପ ବସ୍ତ୍ରାର ଯେହ୍ନେ ଭୁଲତ ବେନଜା
ଦେଖି ପୁରୁଷମାନେ ଧରିବେ କାହୁଂ ତନୁ । ୧୪୯ ।
କଣୟ ସ୍ତମ୍ଭ ଯେହ୍ନେ ଓଲଟ ରାମ କଦଳୀ
କଟି ପରଯନ୍ତେ ଭେଦିଲ୍ଲ ରୋମାବଳୀ । ୧୫୦ ।
ସୁରଭି ପୁଷ୍ପପ୍ରାୟେ ପାଦ ତଳପା କାନ୍ତି
ସୁସଞ୍ଚ ପୋୟେଳା କ ଅଙ୍ଗୁଳି ବିରାଜନ୍ତି । ୧୫୧ ।
ତରାଟ ପାଖୁଡ଼ା ପ୍ରାୟେକ ଦଶଇ ନଖରେଖ
ପାଦେ ପଦ୍ମଚିହ୍ନ ତାର ତଳପାର ଶୀଖ । ୧୫୨ ।
ଶଙ୍ଖନଧ୍ୱି ପଦ୍ମନଧ୍ୱି ଶୋଭିତ ବେନକରେ
ପାଣିଦ୍ରବ୍ୟ ହୋଇବ କର ଲାଗିଲେ ପଥରେ । ୧୫୩ ।
ଅଳିକୁଳ ଆମୋଦିନୀ ଚିକୁର ଅଟେ ବାମା
ପ୍ରତକ୍ଷେ ପଦ୍ମିନୀ ସେ ସ୍ତ୍ରୀକୁଳ ଉତ୍ତମା । ୧୫୪ ।
ଅତଅନ୍ତ ଘନ ଯେ ଥନ ବେନଶୋଭା
ଅନଙ୍ଗ ଭଣ୍ଡାର କୁନ୍ଦନ କରି ଥୋଇଅଛି ଅଭା । ୧୫୫ ।
ତ୍ରିଭୁବନ ମୋହଇ ତାର ଅନ ବେନି ଦେଖନ୍ତେ
ବସ୍ତ୍ର ତାଂକଅଛି ସେ ସଂସାର ଜନହିତେ । ୧୫୬ ।
ସଂପୂର୍ଣ୍ଣ ଚନ୍ଦ୍ରମା ଯେ ପଟାନ୍ତର ବଦନକୁ
ତାହାର ମୁଖନନ୍ଦା କରଇ ଚନ୍ଦ୍ର ଦେବତାଂକୁ । ୧୫୭ ।
ପ୍ରେକାଦନେ କଳେ ସେ ଯେ ଚନ୍ଦ୍ରମା ସମ୍ପୂର୍ଣ୍ଣ
ପ୍ରଜାପତିର ଶାପେ ତନୁ ତାର କ୍ଷୀଣ । ୧୫୮ ।

ବଦନ କଳଂକ ସେ ବହିଲକ ଶଶୀ
ତାହାର ବଦନ ଗୋଟି ଅଟଇ ନର୍ଦ୍ଦୋଷୀ । ୧୫୯ ।
ସମସ୍ତ ଗୁଣେ ଲକ୍ଷଣ ସେ ଅଟଇ ଗୁଣବନ୍ତୀ
ଅବଶ୍ୟ ଗୁଣିକ ସେ କଲ୍ପକ ପ୍ରଜାପତି । ୧୬୦ ।
ହ୍ରଦୟ ବସ୍ତାର ତାହାର ଅତିଅନ୍ତ ପରିମଳ
ତଥି ଉପରକୁ ଭଗ୍ନ ଅଟେ କୁଚ ଯେ ଯୁଗଳ । ୧୬୧ ।
ଯେ଼ୁ ମହାଭାରକେଇଂ ଯେ ମଧ୍ୟ ତାର କ୍ଷୀଣ
ନ ପୁଣ ଭୁଟଇ ସେହୁ ବାତ ବଳାତେଣ । ୧୬୨ ।
କେତେକାଳ ବସି ତାକୁ ସ୍ତ୍ରି ଜନ୍ମ ବଧାତା
ତାର ନମନ୍ତେ ସୃଜନ୍ତି ନବସୃଷ୍ଟି ଚନ୍ତା ।୧୬୩।
ଅତିକ୍ଷୀଣ ମଧ୍ୟ ତାର ପଡିଲେ ଯିବ ଭୁଟି ।
ପୁଣି କେତେକାଳେ ଧାତା ସି ଜବ ସେ ପ୍ରତିମା ଗୋଟି । ୧୬୪ ।
ଶରଦ ଶିଶିର ହେମନ୍ତ, ବସନ୍ତ, ବରଷା
ଗ୍ରୀଷମ ଯେ଼ୁ ଷଡରତୁ ଭୋଗକରେ ବାରମାସା । ୧୬୫ ।
ହେମ ଶିଶିରେ ଯେ ତପଦ ତାର କାଯେ଼ୁ
ବସନ୍ତ ଗ୍ରୀଷମେ ଯେ ମଳୟାନଳ ପ୍ରାଯେ଼ୁ । ୧୬୬ ।
ବରଷା ଶରଦେ ତାର ବାଳଅର୍କ ତେଜ
ତୋତେହିଂ ପ୍ରାପତ ସେ ହୋଇବ ମନସିଜ । ୧୬୭ ।
ସେ ସ୍ତ୍ରି ଶ୍ରି ନାଯି଼କା ତୁ ପୁରୁଷ ରତ୍ନକାନ୍ତ
ଅରଣ୍ୟେ ଭବକଳ ଯେହ୍ନେ ମଧୁକର ମାଳତୀ । ୧୬୮ ।
ବାକୁ ହାରିକାକୁ, ଅଳଂକାର ଯୁଗତେ ଅଟଇ ସେହ୍ନ
ତେନ୍ୟାୟେଂ ପ୍ରଦ୍ୟୁମ୍ନ ହୋ ବେଗେ ଅଇଲୁ ତୋତେ କହି । ୧୬୯ ।
ବଶେଷେ ବରହୀତା ତୋତେ ସେ ପଶିଲି ଶରଣ
ସେ ସ୍ତ୍ରି ଶ୍ରି ନାଯି଼କାକୁ ତୁ ବହନ କରି ଆଣ । ୧୭୦ ।
ନାରଦେ କହିଲେ ତାର ରୂପଗୁଣ ଯେତେ
ସଞ୍ଚପି କହନ୍ତେ ନ ସରଇ ହବାସହେ । ୧୭୧ ।
ଲେଖନ୍ତେ ଘଟଣ ସେ ସୁସଞ୍ଚ କାମିନୀ
ପରଜାଯେ଼ୁ ନାମ ବହିଲ ତ୍ରିପୁରମୋହିନୀ । ୧୭୨ ।

ଶୁଣିଣ ଆରତ ହୋଇଲ୍ଲ ପୁରୁଷ ମନ୍ମଥ
କାମୋଦ ସାରଥିକ ବୋଇଲ୍ଲ ସାଜ ମୋର ରଥ । ୧୭୩ ।
ପଞ୍ଚଶର ନାରାଜ କରେଣ ପୁଷ୍ପଧନୁ
ପୁଷ୍ପକ ରଥେ ଆରୋହଣ କଲ୍ଲ ଶ୍ରୀକୃଷ୍ଣର ତନୁ । ୧୭୪ ।
କାମୋଦ ସାରଥି ସେ ଆକାଶେ ରଥ ବାହି
ଆଗେ କଳହପ୍ରିୟ ମୁନି ବାଟ ଯେ କଢାଇ । ୧୭୫ ।
ପଞ୍ଚୁଶିର ପର୍ବତେ ବିଜୟେ ହେବନ୍ଧର
ଯୁଧିଷ୍ଠି ଭୀମ ଅର୍ଜୁନ ନକୁଳ ସହଦେବ ଆଦିକର । ୧୭୬ ।
ନାରାୟଣଂକ ଅଗ୍ରତେ ସହଦେବ କହିଲ୍ଲ
ନାରଦଂକ ତୁଲେ ଦେଖ ଦେବ ପଦ୍ମନ ବିଜେକଲ୍ଲ । ୧୭୭ ।
ଯେତେବେଳେ ଯୁଧିଷ୍ଠିଂକର ବସିଲ୍ଲ ଆସନ
ପୁଷ୍ପକ ରଥ ତେଜ୍ୟାକଲ୍ଲକ ବୀର ଯେ ପଦ୍ମନ । ୧୭୮ ।
ଯୁଧିଷ୍ଠିଂକ ପାଦପଦ୍ମେ ପଦ୍ମନ ପ୍ରଣାମି
କୋଳକର ଧରି ମୁଖେ ଚୁମ୍ବନ ଦେଲେ ଯୁଧିଷ୍ଠି ଦେବସ୍ୱାମୀ । ୧୭୯ ।
ଗୋବନ୍ଦେ ପ୍ରଶଂସିଲେ ସାଧୁରେ ସହଦେବ
ଧନ୍ୟ ତୁ ପରମ ପଣ୍ଡିତ ଗତ ଆଗତ ଜାଣୁ ସବ । ୧୮୦ ।
ନାରଦେ ବୋଇଲେ ତୁମ୍ଭେ ଶୁଣ ଜଗୁପାଳ
ବଜ୍ରନାଭ ଦେଶ ରଜା ଅଛେ ମେରୁଶୃଙ୍ଗ । ୧୮୧ ।
ତାହାର ଦୋହିତା ନାମ ତ୍ରିଭୁବନମୋହିନୀ
ତାହାର ନିମନ୍ତେ ଆମ୍ଭେ ପଦ୍ମନକଇଂ ଯାଉଅଛୁଂ ଘେନି । ୧୮୨ ।
କାର୍ତ୍ତିକେଶ୍ୱରଂକୁ ଆଣି ଯାଇଛନ୍ତି ଦୁର୍ବାସା
ମୀନକେତନକଇଂ ସୁନ୍ଦରୀ ବଢାଇଛୁ ମନୀଷା । ୧୮୩ ।
ଯାଚଲାର କନ୍ୟା ପ୍ରାପତ ହୋଇଲାର ନିଧି
ସୁସଙ୍ଗ ସୁଫଳ ସୁବେଳ ସୁଜନ ସୁବୁଦ୍ଧି । ୧୮୪ ।
ନିଯୁତ ତପୀ ପଣ୍ଡିତ ତୀର୍ଥ ପ୍ରାପତ ଧର୍ମ ମଇତ୍ର
ପ୍ରସନ୍ନ ଦେବତା ଯେ ସୁପୁଣ୍ୟେ ପ୍ରାପତ । ୧୮୫ ।
ସୁହିଧାନ ଭୂମି ସୁଲକ୍ଷଣୀ ଯେ ଭାରିଯା
ପଣ୍ଡିତ ଭଗ୍ୟଂଲେକେ ସ୍ନେହା ନ କରନ୍ତି ପରତେଜ୍ୟା । ୧୮୬ ।

ଗୋବନ୍ଦେ ବୋଇଲେ ଯେହ୍ନା ଅଛଇ ଯୁଗତ
ଆମ୍ଭେହେଂ ଯିବୁ ଯୁଦ୍ଧେଷ୍ଟି ଠାକୁରଂକ ସହିତ । ୧୮୭ ।
ଜଗନ୍ନାଥେ ବୋଇଲେ ମୁନି ହେ ପଦ୍ମନକୁ ଘେନିଯାଅ
ସେ କନ୍ୟାର ଛୁଲେ ଯେହ୍ନାକୁ ମେଳ ଯେ କରାଅ । ୧୮୮ ।
ଯେମନ୍ତେ ପଦ୍ମନକୁ ଭଜାଇ ସେ କନ୍ୟା ଯେକା
ମାଷ୍ଟ୍ରିକେଳେ ନେଇ ପଦ୍ମନକୁ ସେ କନ୍ୟାକଇଂ ଦେଖା । ୧୮୯ ।
କାର୍ତ୍ତିକେଶ୍ୱର ଘେନ ଯେବେ ଆସିବେ ସଦାନନ୍ଦ
ତାହାଂକର ଛୁଲେ ପଦ୍ମ ନରେ ନ କରିବ ଦ୍ୱନ୍ଦ । ୧୯୦ ।
କନ୍ୟାକଇଂ ଘେନ ତୁମ୍ଭେ ଆସ ଅପସର
ଆମ୍ଭେ ସମର କରିବୁ ଅର୍ଜୁନକୁ ଘେନିକରି । ୧୯୧ ।
ଯେସନେକ ଆଜ୍ଞାଂ ପାଇଣ ମହାମୁନି
ଚଳିଲେ ଅନ୍ତରୀକ୍ଷେ ପଦ୍ମନକଇଂ ଘେନି । ୧୯୨ ।
ଦୁର୍ବାସାଯେ ଗଲେ ଯେଣେ କପିଳାସ ପୁରେ
ପ୍ରବେଶ ହୋଇଲେ ଯାଇଂ କାର୍ତ୍ତିକେଶ୍ୱର ସନ୍ନିଧିରେ । ୧୯୩ ।
ବାବୁ ମେରୁଶୃଙ୍ଗର ଦୋହିତା ତ୍ରିଭୁବନ ମୋହିନୀ
ନାହିଂ ନୋହିବ ପଞ୍ଚାନ୍ତର ସ୍ୱର୍ଗମର୍ତ୍ତ ପାତାଳ ପୁରନ୍ତନ । ୧୯୪ ।
ଦଇବେ ଅନ୍ତରସ୍ଥାନ ସେ ଅସହର ଭୂମି
ଅସୁର ଭୟେ ତହିଂକ କେହି ନୁଆରନ୍ତି ଗମି । ୧୯୫ ।
ତୋତେ ସେ ବହୁତ ଇଚ୍ଛା କଲକ ସୁନ୍ଦରୀ
ଉଠ ହୋ କାର୍ତ୍ତିକେଶ୍ୱର ଚଳ ଯିବା ବେଗେ ବଜେକରି । ୧୯୬ ।
ତୁ ଯେ ଆମ୍ଭନ୍ତ ବାବୁ ସଦାକରୁ ମାନନା
ତେଣୁକରି ତୋତେ ଆମ୍ଭେ ଭୁଆଇଲୁ ବରାଙ୍ଗନା । ୧୯୭ ।
ଦୁର୍ବାସାଂକ ବଚନେ କୁମର ଅନ୍ତବେଗେ
ପ୍ରଣପତ୍ୟ ହୋଇ କହିଲେ ସଦାଶିବଂକର ଆଗେ । ୧୯୮ ।
ସ୍ୱାମୀ ବଜଗିର ଦେଶର ମେରୁଶୃଙ୍ଗ ନୃପମଣି
ତାହାର ନନ୍ଦନୀ ନାମ ତ୍ରିଭୁବନ ମୋହିନୀ । ୧୯୯ ।
ହୋ ଦେବ ଦୁର୍ବାସାଂକ ଆଗେ ସେ କହିଲା ସନ୍ଦେଶ
ବୋଇଲା କାର୍ତ୍ତିକେଶ୍ୱରକଇଂ ମୁନି ହେ ବେଗେ ଘେନିଆସ । ୨୦୦ ।

କାର୍ତ୍ତିକେଶ୍ୱର ବୋଇଲା ସ୍ୱାମୀ ଯାଚଇଲାର କନ୍ୟା ଯେ ରଞ୍ଜିଲା ଭୋଜନ
ଯେହ୍ନେ ଉପେକ୍ଷା କରନ୍ତି ଅପଣ୍ଡିତ ଜନ । ୨୦୧ ।
ଈଶ୍ୱରେ ବୋଇଲେ ତୁମ୍ଭେ ଯାଅ ଯା ଦୁର୍ବାସା
କନ୍ୟାକଇଂ ଘେନ ତୁମ୍ଭେ ବହନ ଘେନଆସ । ୨୦୨ ।
ଶୁଣିଣ କୁମର ଯେ ସାନନ୍ଦ ହୋଇଲେକ ମନେ
ବିଜୟେ ଈଶାନସୁତ ମୟୂର ବାହାନେ । ୨୦୩ ।
ଯେବେକା କୁମାର ସଙ୍ଗେ ଦୁର୍ବାସା ମହର୍ଷି
ଅନ୍ତରୀକ୍ଷ ଭୁବନେ ବିଜେକଲେ ଆସି । ୨୦୪ ।
କାର୍ତ୍ତିକେଶ୍ୱର ବୋଇଲେ ମୁନ ହେ ମେରୁଶୃଙ୍ଗ ତାହାଂକ ପୁରକୁ ଯିବା
ରାଜାକଇଂ ଜଣାଇଂ କନ୍ୟାକଇଂ ପ୍ରଦାନ ହୋଇବା । ୨୦୫ ।
ଯଦ୍ୟପି ନ ଜାଣିମ ରାଜା ମେରୁଶୃଙ୍ଗ
ତଉର୍ଦ୍ଧକର୍ମ ପ୍ରାୟେ ହୋଇବନା ବଳ । ୨୦୬ ।
କୁମର ଘେନକରି ଦୁର୍ବାସ୍ୟା ମହାର୍ଷି
ମେରୁଶୃଙ୍ଗ ନୃପତିର ପୁରେ ଯାଇଂ ପଶି । ୨୦୭ ।
କାର୍ତ୍ତିକେଶ୍ୱରକଇଂ ବାହାର ଦ୍ୱାରେ ରୁହାଇ
ମେରୁଶୃଙ୍ଗକଇଂ ମୁନ ଜଣାଇଲେ ଯାଇଂ । ୨୦୮ ।
ବାବୁ ଯେ ତୋହୋର ଦୋହିତା ଯେ ତ୍ରିଭୁବନମୋହିନୀ
ତାହାର ନିମନ୍ତେ ଆମ୍ଭେ କାର୍ତ୍ତିକେଶ୍ୱରକଇଂ ଅଇଲୁ ଯେ ଘେନ ।୨୦୯।
ଶୁଣିଣ ସାନନ୍ଦ ସେ ଯେ ମେରୁଶୃଙ୍ଗ ରାଜା
ଦୁର୍ବାସ୍ୟା ମହର୍ଷିଂକ ସେ କଲାକ ପାଦପୂଜା । ୨୧୦ ।
ବଡ଼ାକଥା ଯେ ତ କହିଲ ତପୋନିଷ୍ଠ
ପୂର୍ବର ପୁଣ୍ୟେ ମୁହିଂ ଦୁର୍ଗରୁଦ୍ରକଇଂ ଭେଟି । ୨୧୧ ।
ଅତିଅନ୍ତ ପୁଣ୍ୟ ମୁହିଂ କରଥିଲି ପୂର୍ବେ
କାର୍ତ୍ତିକେଶ୍ୱର ପ୍ରାୟେ ଜାମାତା ପ୍ରାପତ ହେଲା ଯେବେ । ୨୧୨ ।
ଦୋହିତାର ମୋହୋର ଅଛଇ ଯେ ପୂର୍ବଭାଗ୍ୟ
ପୁଣ୍ୟନିଧି ପ୍ରାପତ ହୋଇଲା ଆସି ହୋଇଲାକ ମୋର ଆଗ । ୨୧୩ ।
ପୁରେଣ ଉତ୍ସବ ସେ କରାଇଲା ମେରୁଶୃଙ୍ଗ
ବିଭାର ଯୋଗାଡ଼ ଦିଆଇଲାକ ସକଳ । ୨୧୪ ।

ଆପଣେ ବିଜୟେ ତହିଂକ କଲକ ନୃପତି
ଯାଇଂ ଦେଖିଲ କାର୍ତ୍ତିକେଶ୍ୱର ମହାଯଷ୍ଠି । ୨୧୫ ।
ପାଦଧଉତ ଅର୍ଘ୍ୟପୂଜା ବିଧିମାନନ୍ତ ଦେଇ
ନବରେ ବିଜୟେ ଯେ କରାଇଲ ରାଜା ନେଇ । ୨୧୬ ।
ସନ୍ନିଧିକୁ ହକାରିଲ ଲକ୍ଷେକ ପୋଇଲି
ତାହାଂକ ମଧ୍ୟେ ମୁଖ୍ୟପାନ ମାତାଙ୍ଗୀ ବୋଲି ମୃଦୁସୁଲି । ୨୧୭ ।
ଅଲେଖ ଯୋଗାଡ଼ ଯେନ ଯାଅରେ ମାତାଙ୍ଗୀ
ହୋଇତାକୁ ବେଶ ବେଶନ କରାଇଆଣ ବେଗି । ୨୧୮ ।
ଧାମନ୍ତ ଚତୁର୍ଦ୍ଦଶେ ସେ ମେତର ଭିତରେ
ମାଗୋ ଦିଅ ଆମ୍ଭନ୍ତ ବଧାଇ ଅନେକ ସମ୍ଭରେ । ୨୧୯ ।
ମାଗୋ ଦୁଷ୍ଟ ଈଶ୍ୱର ଅଟନ୍ତି ଯେବଣ କାର୍ତ୍ତିକକୁମର
ତାରକା ବିଧ୍ୱଂସନ ସେ ତାକୁ ନାହିଂ ପଟାନ୍ତର । ୨୨୦ ।
ସେ ତୋତେ କାଲି ଯେ ହୋଇବେ ଗୋ ବର
ତୋହୋର ସାନ୍ଦ୍ର ଶେୟ ସେ ଦର୍ଶିଲକ ମହାଶୋଭା । ୨୨୧ ।
କେତଣ ମାଜଣା ତାକୁ କରିବନ୍ତି ବାଳୀ
ପଦ୍ମନ ଜନେ୍ୟଷ୍ଠ ବାଳୀ ହୃଦଗତେ ଭଲି । ୨୨୨ ।
କହି ଯେ ଗଲେ ମୋତେ କଲହପ୍ରିୟ ମୁନି
ମୀନକେତନ ସ୍ୱାମୀକି ତୋମାର ନଇଲେ ତ ଯେନ । ୨୨୩ ।
କାର୍ତ୍ତିକେଶ୍ୱରକଇଂ ନାହିଂ ମେର ଇଚ୍ଛା
ଷଡ଼ଗୋଟା ବଦନ ଶରୀରେ ତାର ସଞ୍ଚା । ୨୨୪ ।
ଯେହୁକଇ ବଦନ ମୋର ତ୍ରିଭୁବନ ମୋହିନୀ
ଶରୀର ଖଣ୍ଡ ଖଣ୍ଡ କରିବ ଷଡ଼ବଦନ ଯେନ । ୨୨୫ ।
ହେ ଦୁର୍ଗେ ନାରାୟଣୀ ଗୋ ପୂରାଅ ମନାଷା
ନାରଦଂକ ବଚନକୁ କଲଇଂ ମୁହିଂ ଆଶା । ୨୨୬ ।
ତାହାଂକୁ ଆଣକର କାର୍ତ୍ତିକେଶ୍ୱରଂକୁ ଭାଞ୍ଜିଲେ
କେହ୍ମଣସି କନ୍ତ ନୋହିବ ପଦ୍ମନ ନଇଲେ । ୨୨୭ ।
ଯେତେବୋଲି ଆଚଙ୍ଗ ଯେ ମେରୁଶୂଳ ଜେମା
ମନେ ଚିନ୍ତାକଲ ଦେବୀ ରଖ ମୋତେ ଉମା । ୨୨୮ ।

ଜୟତୁ ମାତାଙ୍ଗୀ ଗୋ ଭବାନୀ କାମକ୍ଷା କାମସେଣା
ଜୟତୁ ଜୟ ପ୍ରଜାପତିର ଦୁଲଣା । ୨୨୯ ।
ଶୁମ୍ଭ ନିଶୁମ୍ଭ ମୋହିନୀ ଗୋ ଅଟୁ ମହାମାୟେ
ଗାଇଘଣ୍ଟ ଗ୍ରମର ତୁ କଲୁ ମାତ କ୍ଷୟେ । ୨୩୦ ।
କାନ୍ତିମାଳା ଦଇତକୁ ମର୍ଦ୍ଦିଲୁ ପାଦେ ତୁହି
କାତ୍ୟାୟିନୀ ନାମ ଗୋ ବହିଲୁ ମହାମାୟି । ୨୩୧
ଜୟତୁ ମାତଙ୍ଗୀ ଗୋ ହିମଗିରିବାସୀ
ତିଗ୍ରିକୁଳ ମଣ୍ଡଣି ଗୋ ମଦନଧର ଫାସୀ । ୨୩୨ ।
ସହସ୍ରେ ଭୁଜ ଯେ ବିକାଶିଲ ଅନନ୍ତ
ବାଳୁତ ଖେଡକାଳେ ଗୋ ବାଗନଧି କଲୁ ଚନ୍ତ । ୨୩୩ ।
ମାଗୋ ନାରଦଂକ ବଚନେ ମୁଂ ପ୍ରତିଆଶ କଲି
ସପନ ନିଧିକ ମୁଂ ପଣନ୍ତ ପସାରିଲି । ୨୩୪ ।
କାଳେ ଅପ୍ରାପତ ମୋତେ ହୋଇଛି ଗୋ ମାୟେ
କି ଅବା ବାଟେ ମୁନିଂକ ପଡିଲି ଅପଚୟେ । ୨୩୫ ।
ତୁ ମୋତେ ପ୍ରସନ୍ନ ଗୋ ହୋଅସି କାମକ୍ଷୀ
ସ୍ତ୍ରିଗ୍ରିଲଙ୍ଗ ବେଦନାକୁ ଗୋ ହୋଅ ମୋତେ ସାକ୍ଷୀ । ୨୩୬ ।
ସଜ୍ଜନ ତାରଣୀ ମାଗୋ ସଯୁଳଜନ ଚନ୍ତା
ଜୟତୁ କାମସେଣୀ କାମକଷ୍ଟୁ ଉଦ୍ଧରନ୍ତା । ୨୩୭ ।
ବଶ୍ୟ ଉଚ୍ଚାଟନ ସ୍ତମ୍ଭନ ମୋହନ ଗୋଟିକ ଅଞ୍ଜନ
ତୁହି ସେ ଜାଣୁ ମାଗୋ ସମସ୍ତ ବିଧାନ । ୨୩୮ ।
ଗୋବନ୍ଦର ନନ୍ଦନ ଯେ ପଦ୍ମନ ମୋର ବର
ତାଂକ ବିନୁ ଆନଚିତ୍ତେ ନ ବଳଇ ମୋର । ୨୩୯ ।
ଅଲେଖ ମଣ୍ଡଣି ଗୋ ଶ୍ରୀ ସର୍ବମଙ୍ଗଳେ
ଶୃଦ୍ରମୁନି ସାରେଳୋ ଦାସ ଶତଦଣ୍ଡ ପ୍ରଳମ୍ବ ତବ ପଦ୍ମପାଦ ତଳେ । ୨୪୦ ।
ବହୁତ ବିନୋୟି ହୋଇ ବୋଇଲା ଯହୁଂ ମେରୁଶୂଳର ଦୁଲ୍ଲଭୀ
ପ୍ରଦ୍ମନହୁଂ ଆନେ ମନେ ନ ଭଜଇ ହିଆଳୀ । ୨୪୧ ।
ମାର୍ଗଶିର ମାସ କୃଷ୍ଣପକ୍ଷ ଯେ ଚଉଠୀ
ବୃହସ୍ପତିବାର ପୁନର୍ବସୁ ନକ୍ଷତ୍ର ଯେ ଘଟି । ୨୪୨ ।

ବାଣିଜ ନାମେ କରଣ ଶୁଭନାମେ ଯୋଗ
ସ୍ୱାସ୍ଥ୍ୟକଇଂ ଅନୁକୂଳ କରନ୍ତି ବେଗ ବେଗ । ୨୪୩ ।
ଚତୁର୍ଥ ଦଣ୍ଡ ଆଉଂ ପ୍ରବେଶ ମୀନଲଗ୍ନ ବେଳ
ପାପଗ୍ରହ ନାହିଂ ଯେ ନବମ ଭୂମେ ହେଲା ୨୪୪ ।
ବରବେଶ ହୋଇଣ ସେ କାର୍ତ୍ତିକ ମହାପତି
ସ୍ୱୀକାର କରଣ ସେ କରଇ ନୃପତ୍ତ । ୨୪୫ ।
ଆପଣେ ପୁରୋହିତ ମହର୍ଷି ଦୁର୍ବାସା
କାର୍ତ୍ତିକେଶ୍ୱର ତ୍ରିଭୁବନ ମୋହିମା ଯେମନ୍ତେ ପୂରେଇ ମନାଷା । ୨୪୬ ।
ଶୁଭ ଅନୁକୂଳେ ସେ ଧଇଲେ ତପନଷ୍ଟି
ମଙ୍ଗଳକର୍ମ ସାରଲେ ବେଳ ତେର ଘଡ଼ିରେ ଟି । ୨୪୭ ।
ସମରାଜ୍ୟ ଲୋକେ ସର୍ବେ ଅନେକ ପ୍ରଶଂସି
କନ୍ୟାକଇଂ ଅହିଗ୍ୟଂ ସ୍ନାନେ ନଅ ବୋଲି କହିଲେ
ଦୁର୍ବାସା ମହାଋଷି । ୨୪୮ ।
ସୁବର୍ଣ୍ଣ ହାଟନ୍ଦୋଳାରେ ବଜାୟେ ଝାବନୀ
କରେ ଦୀପାବଳୀ ଘେନ ମଙ୍ଗଳ ଗାବନ୍ତି କାମିନୀ । ୨୪୯ ।
ଉଡନ୍ତି ପାଟଛତ୍ର ଆଲମ୍ବ ପଞ୍ଚ ଲକ୍ଷୀ
ବହୁତ ସମ୍ଭ୍ରମରେ ବଜାୟେ ଶଶିମୁଖୀ । ୨୫୦ ।
ସାରତୂର ଟମକ ଢୋଲ ନିଶାଣ ବାଜଇ ଦାଉଣ୍ଡି
କୁତୂହୋଳେ ବହଉନ୍ତି ମଣୁଆଳ ନାଟଖଣ୍ଡି । ୨୫୧ ।
ମନ୍ଦରପର୍ବତ ଉପରେ ବଜାୟେ କାମାକ୍ଷୀ
ଚଳଇ ସୁନ୍ଦରୀ ଯେ ଗୋସାମଣିଂକ ଦେଖି । ୨୫୨ ।
ଯାଆନ୍ତେଣ ସୁନ୍ଦରୀ ଯେ ରବି ଅସ୍ତଗଲା
ଅନେକ ବହୁତ ମାଳହୁଳା ସେ ଲାଗିଲା । ୨୫୩ ।
ପ୍ରଥମ ଦଣ୍ଡେ ଯେ ପ୍ରବେଶ ହୋଇଲା ରାତି
ଦେଉଳ ଭିତରେ ସେ ପଶିଲା ମହାସତୀ । ୨୫୪ ।
ଦିବ୍ୟବେଶ ଅଳଂକାର ଉପରେଣି ଝୀନବାସ
ଶ୍ରୀକରେ ରତ୍ନ ଆଚଞ୍ଚାନ ଘେନ ଅଷ୍ଟରତ୍ନ କୋଶ । ୨୫୫ ।

କାମସେଣା କେଶାଂକର ସ୍ତମ୍ଭରେଣ ଥୋଇ
ଶୁଚିଲ୍ଲ ସୁନ୍ଦରୀ ଯେ ଦଣ୍ଡ ପ୍ରଳମ୍ବିତ ହୋଇ । ୨୫୬ ।
ବୋଇଲ୍ଲ ମାତା ଗୋ ପ୍ରସନ୍ନ ହୁଅସି ଅଭୟେ
ଭଗତ ମଙ୍ଗଳ ମାଗୋ ପ୍ରସନ୍ନ ବରଦାୟେ । ୨୫୭ ।
ମନ କାମନା ନିମନ୍ତେ ମୁହିଂ ତୋତେ ଖଟି
ବାଞ୍ଛା ପ୍ରାପତ କର ଗୋ ନିର୍ଗୁଣ ଗୁଣ ହେତି । ୨୫୮ ।
ଯାବତ ଜୀବେ ମାତ ଗୋ ଆଇତବ ଶକ୍ତି
ତ୍ରିଭୁବନ ମୋହନୀ ଗୋ ବାଞ୍ଛିତ ଫଳଦାତା । ୨୫୯ ।
ଯଦ୍ୟପି କାର୍ତ୍ତିକେଶ୍ୱରେ କରଲେ ମୋହୋର ପିଅର
ଗୋବନ୍ଦର ନନ୍ଦନ ଗୋ ବଲ୍ଲଭ ହୋଉ ମୋର । ୨୬୦ ।
ବ୍ରହ୍ମକୁ ଲଯେ଼କର ଚିନ୍ତଇ ଯେହ୍ନେ ଯୋଗୀ
ମୁହିଂ ସେହି ଇଚ୍ଛାକଲି ଗୋ ସମସ୍ତ ପରିତ୍ୟାଗୀ । ୨୬୧ ।
ମମ ବିନୟେ ଭଗତ ହେନ ଶୀଘ୍ରଗତି
ପ୍ରସନ୍ନେ ଅପର୍ଣ୍ଣା ଗୋ ମୋତେ ହୋଅସି ବରଦାତ୍ରୀ । ୨୬୨ ।
ସୁରବର ସୁନ୍ଦରୀ ଗୋ ଶରଣ ଉଦ୍ଧାରଣୀ
ମୁହିଂ ତୋହୋରେ ଶରଣ ମୋତେ ଉଦ୍ଧର ଗୋସାମଣି । ୨୬୩ ।
ବନ୍ଧୁତ ଅଜଯେ଼ ଗୋ ଯାହାକୁ ସୁମରନ୍ତେ ବିପଦ ହୋଇଯେ଼ ଖଣ୍ଡି
ଭଗତଜନ ମଙ୍ଗଳୀ ଗୋ ଶରଣ ମଙ୍ଗଳ ଚଣ୍ଡୀ । ୨୬୪ ।
ତବ ପଦ୍ମପାଦେ ମାଗୋ ମୋହୋର ଭଗତ ଅନୁବ୍ରତେ
ଶ୍ରୀକୃଷ୍ଣ ନନ୍ଦନ ମୀନକେତନକଇଂ ବରଦାନ ଦେବା ମୋତେ । ୨୬୫ ।
ସ୍ୱେ କାମକଷ୍ଟରୁ ମୋତେ ଉଦ୍ଧର କାମସେଣା
ମଯ଼ୂଣ ବାଣେ ମୋତେ ନକର ଗଞ୍ଜଣା । ୨୬୬ ।
ବଦଯ଼ନ୍ତ ଅଗସ୍ତି ବଇବସ୍ୱତ ମନୁ ଶୁଣ
ପ୍ରାପତ ସୁନ୍ଦରୀଙ୍କ ଶୁଭ ଯେ ଶଂକୁନ୍ୟ । ୨୬୭ ।
ମନାସନ୍ତେ ବାମନୟନ ତାର ଘନଘନ ଫୁରି
ଈଶାନ କୋଣେ ଶୁଭିଲ୍ଲ ସେ ଝିଙ୍ଗିଟି ରଡି । ୨୬୮ ।
ଆଗେଣ ପୁଚିଲ୍ଲ ଯେ ଶଙ୍ଖଚିଲ ବାଣୀ
ଉତ୍ତରେ ପୁରୁଷେ ଚ୍ଛିଂକିଲକ ପୁଣି । ୨୬୯ ।

ବାମଜାନୁ ତାହାର କମ୍ପଇ ଥରହର
ଶଂକୁନ୍ୟମାନ ଗୁଣି ବାଳୀ ହରଷ ମନର । ୨୭୦ ।
ଦେଖିଲୁ ଦେବାଂଙ୍କର ବଦନ ଦରହାସୀ
ଶୂନ୍ୟେ ଶୁଭିଲୁ ଯାଅ ତୁ ସୁନ୍ଦରୀ ପଦ୍ମନ ଭାର୍ଯ୍ୟା ହୁଅସି । ୨୭୧ ।
ଯେସନେକ ଭାବେଣ ସେ ପାଇଲୁ ପ୍ରାର୍ଥନା
ଦେଉଛୁଂ ବାହାର ଯେ ହୋଇଲୁ ବରାଙ୍ଗନା । ୨୭୨ ।
ହାରେଣ ଭଜଯେ ଯେ ତ୍ରିଭୁବନ ମୋହମା
ଦେଖିଲୁ ନାରଦେ ପଦ୍ମନଙ୍କୁ ଆସୁଛନ୍ତି ଯେନ । ୨୭୩ ।
ନାରଦେ ବୋଇଲେ ଗୋ ଶୁଣ ଶୁଭ୍ରକେଶୀ
ଯେ ସେ ମୀନକେତନ ବରଣମାଳା ଦେସି । ୨୭୪ ।
କାଳକାଳେ ଧ୍ୱଂସିଲୁ ଯେ ସୟମ୍ବର ପୁରୀ
ମାୟାବତୀର ବଲ୍ଲଭ ଯେ ପୁଷ୍ପ ଗୃପଧାରୀ । ୨୭୫ ।
ବେନ ନୟନ ଭେଦିଲୁ ପଦ୍ମନ ରୂପ ଦେଖି
ଭୟେଣ ସଂକୋଚେ ସେ ଲଜ୍ଜାକୁ ଉପେକ୍ଷି । ୨୭୬ ।
ହା ହା ନାଥ ବୋଲି ଆରତେ ଶୁଭ୍ରକେଶୀ
ବେନଭୁଜେ କୋଳକରି କଟିମେଖଳାକୁ ଜାନୁ ଭିଡି ବସି । ୨୭୭ ।
କଣୟ ଲଙ୍ଗେ ଯେସନେ ମାରଗମେଖଳ
ପଦ୍ମନ ଶରୀରକୁ ତେସନ ହର୍ଷିଲୁକ ବାଳୀ । ୨୭୮ ।
କନ୍ୟାର ରୂପଗୁଣ ପଦ୍ମନ ଗାର ଉପଲେଖି
ନାରଦକଇଂ କହୁତ ହନୋପଇ ଶଶୀମୁଖୀ । ୨୭୯ ।
ମାଳାଗୋଟି କଣ୍ଠେନେଇ ଲମ୍ବାଇଲା ସୁନ୍ଦରୀ
ରଥେ ନେଇ ପଦ୍ମନ ବସାଇଲୁ କୋଳାଗ୍ରତ କରି । ୨୮୦ ।
ପ୍ରଥମ ପ୍ରବେଶ ଯେ ବେନହଡି ରାତି
ଦେଖୁଂ ଦେଖୁ ବିମାନ ହୋଇଲୁ ଊର୍ଦ୍ଧ୍ୱଗତି । ୨୮୧ ।
ହାହୋଳ ଅଛୁ ଯେ ତହିଂ କନ୍ୟା ପୁଣ କାହିଂ
କନ୍ତୁତ ମାୟା ହେଲୁ ଯେଥୁ କନ୍ୟା ଗଲା କାହିଂ । ୨୮୨ ।
କନ୍ୟାର ରୂପଗୁଣ ଦେଖି ଅବା ହରିଲେ ଗନ୍ଧର୍ବେ
ଅଥବା ଚାମାକ୍ଷୀଦେବୀ ଭକ୍ଷଲୁକ ଲୋଭେ । ୨୮୩ ।

ମେରୁଶୃଙ୍ଗ ଅଗ୍ରତେ କହିଲେ ଗୁର ଯାଇଂ
ଅହଂରଂ ସ୍ରାନୁଂ ଦେବ କନ୍ୟାଗଣ କାହିଂ ।୨୮୪ ।
ଶୁଣିଣ ସେ ଅସୁରେଶ୍ୱରଙ୍କୁ ନ ପୁରଇ କଛୁ
ଅଦଭୁତେ କେ ନେଲାରେ ସମସ୍ତ ଅଛ ରକ୍ଷୀ ।୨୮୫ ।
ଅସୁର ଭୁବନେ ଶୁଭଇ ଅନ୍ତଗୋଳ
ମଥାରୁ କୁମାର କାଢ଼ି ପକାଇଲା ମୋଳ ।୨୮୬।
ବୋଲଇ କେରେ ଅଦଭୁତେ ହରିଲା ମୋହ ଯୁବଷ୍ଟ
ବଗେଣ କାର୍ତ୍ତିକେଶ୍ୱର ଘେନିଲା ଶୂଳ ଯେ ଶକତ । ୨
କାମାକ୍ଷୀ ଦେବୀଙ୍କର ଦେଉଳ ଭିତରେ
ମେଉଣ୍ଟ ଚଉକତ ବେଢିଣ ସମ୍ମୁଖରେ ।୨୮୮ ।
ନାରଦେ ବୋଇଲେ ବାବୁ ଶୁଣ ହୋ ଅନଙ୍ଗ
କନ୍ୟା ଘେନ ଚଳଯାସି ଶ୍ରୀକୃଷ୍ଣଙ୍କ ସଙ୍ଗ ।୨୮୯ ।
କେମନ୍ତ ଚରିତ ଉପୁଜଇ ମେରୁଶୃଙ୍ଗ ପୁରେ
ଦେଖିବା କଉତୁକ ଆମ୍ଭେ ରହିଣ ସ୍ୱେଚ୍ଛାଠାବରେ ।୨୯୦
ଚନ୍ଦନ ପଠିଆଇ ବାହୁଡ଼ିଲେ ତପୋନିଷ୍ଠି
କାମାକ୍ଷୀ ଦେବୀଙ୍କର ଦେଉଳ ସନ୍ନିଧିରେ ଯାଇଂ ଭେଟି ।୨୯୧ ।
ଦୁର୍ବାସାଙ୍କୁ ଦେଖି ପୁଚ୍ଛାକଲେ କଳ ଯେ କତର
ହଜିଲା ଦ୍ରବ୍ୟ ପରାପେତ କସ ତୁମ୍ଭେ ମୋଡ଼ ।୨୯୨ ।
ଦୁର୍ବାସାସ୍ତେ ବୋଇଲେ ଆକାଶ ଗଙ୍ଗାର ନିକଟେ
ତୁମ୍ଭନ୍ତ ଆମ୍ଭେ ଯାହା କହିଥିଲୁଂ ଯାଉଂ ଯାଉଂ ବାଟେ ।୨୯୩ ।
ମେରୁଶୃଙ୍ଗର ଦୋହିତା ତ୍ରିଭୁବନ ମୋହିନୀ
ତାହା ନିମନ୍ତେ ଅଇଲୁ ଆମ୍ଭେ କାର୍ତ୍ତିକେଶ୍ୱରଙ୍କଇଂ ଘେନ ।୨୯୪ ।
ଦିଗାରକାଳେ ଯେ ଅହଂରେଂ ଗଲକ କୁମାରୀ
କମ୍ନ ତ ମାୟା ଆମ୍ଭେ ଜାଣିତ ନୁଆର ।୨୯୫ ।
ସ୍ୱେଚ୍ଛାଠାରେ ଅଛନ୍ତି ଯେ ଅନେକ ଦୂତମାନେ
କେହି ନ ଦେଖିଲେ ସେ କନ୍ୟା କେଣେ ଗଲା ଅନ୍ତର୍ଦ୍ଧାନେ ।୨୯୬ ।

---

୨୮୬।୨ ମୋଳ — ଦୋଳ ମୁକୁଟ ।

ନାରଦେ ବୋଇଲେ ତୁମ୍ଭେ କହୁଛୁଂ ନଜାଣ
ଜାତକ ଯାହାଯୋଗେ ତୁମ୍ଭେ ଅନୁକୂଳ ନ ଗଣ । ୨୯୭ ।

କାର୍ତ୍ତିକେଶ୍ୱରର ଯେ କୃତ୍ତିକା ବୃଷରାଶି
ବୃହସ୍ପତି ଅଷ୍ଟମେ ବିବାହଯୋଗ ନୁଆସି । ୨୯୮ ।

ଅବଶ୍ୟଂ ଆସନ୍ତେ ଯେ ରାଜାର କୁମାରୀ
ଦିଗବିଜେ କରଇ ଯେ କୁମାର ସ୍ୱୟମ୍ବର ଅଇଶ । ୨୯୯ ।

କାମାକ୍ଷୀ ଦେବୀଙ୍କ ସେ ଦେଖିବା ନିମନ୍ତେ
ଦେଉଳ ଭିତରେ ପଶିଲା ସାର ମନୁମଥେ । ୩୦୦ ।

ତ୍ରିଭୁବନ ମୋହନୀ ପଦ୍ୟୁମ୍ନର ହସ୍ତଅନ୍ତେ ଭେଟାଭେଟି
ପଦ୍ୟୁମ୍ନର କଣ୍ଠେ ଲମ୍ବାଇଲା ସୁନ୍ଦରୀ ବରଣମାଳା ଗୋଟି । ୩୦୧ ।

ବୋଇଲା ହେ ନାଥ ମୁଂ ତୋହୋରେ ଶରଣ
ଯେତେ କାମକଷ୍ଟରୁ ମୋତେ ଉଦ୍ଧାର ମଯ୍ୟାଣ । ୩୦୨ ।
ତୁ ମୋହୋର ବଲ୍ଲଭ ହୋ ମୁଂ ତୋହୋରେ କଲଇଂ ବରଣ । ୩୦୩ ।
ବିଶେଷରେ ପଦ୍ୟୁମ୍ନ ବାକ୍ତୁତ ସ୍ୱବମନ୍ତ
କନ୍ୟାକଇଂ ଘେନିଣ ଗଲାକ ତତକ୍ଷଣାନ୍ତ । ୩୦୪ ।
ସଙ୍ଗେ ଆଠ ସଇନ୍ୟ ନାହିଂ ସର୍ବେ ଯେତେକା
ଆମ୍ଭେ ଦେଖି ଅଇଲୁଂ କନ୍ୟା ଘେନ ଗଲାନ ଦ୍ୱାରିକା । ୩୦୫ ।
ତାହାରେ ତାହାରେ ଯେ ପ୍ରିୟସ୍ୱଭାବ ଅଛୁ
ଅନର୍ଥର ଲଗ୍ନେ ନୋହିଲା କାର୍ଯ୍ୟ କିଛୁ । ୩୦୬ ।
ନାରଦ ବଚନେ କାର୍ତ୍ତିକ ଉଠିଲା ଗଳଗାଜି
ଆଜ ସେ ଦ୍ୱାରିକା ପୁର ମୁଂ ପକାଇବି ଭାଞ୍ଜି । ୩୦୭ ।
ନାରଦେ ବୋଇଲେ ଯେତେ ଅଟଇ ଅବିଗ୍ରର
ତୋହୋର କନ୍ୟା ନେମାକୁ ଆନେ ଦର୍ପ କାହାର । ୩୦୮ ।
ନଳେନ୍ଦ୍ରୀ କନ୍ୟା ହରଣ ପ୍ରାପ୍ତେ ହେଲା କାବୁ
ଶ୍ରୀକୃଷ୍ଣ ନନ୍ଦନଙ୍କୁ ଯେ ତୁ ମାରିଥିଲୁ ସବୁ । ୩୦୯ ।
ସେ କଥା ପାଶୋରି କ ଗଲା ତାର ମନୁଂ
ଯେତେବେ ତୋ ଭାରିଯାକୁ ପଦ୍ୟୁମ୍ନ ହରିଲା ଜାଣୁଂ ଜାଣୁଂ ୩୧୦ ।

ଯେବେକ ଭାରଯା ତୋହୋର ଆନନ୍ଦାନନ୍ଦ ନେଲ
ଯେବେ ତ୍ରିଭୁବନ ମୋହିନୀକି ପଦ୍ମନ ହରିଲା । ୩୧୧ ।
ଧିକ ଧିକ କାର୍ତ୍ତିକ ତୋର ଷଣ୍ଢ ଯେ ବଦନ
ଈଶ୍ୱର ନନ୍ଦନ ତୁ ତୋର ନାଶ ହରିନଯେ ଆନ । ୩୧୨ ।
ତାରକା ନଶୋଧନ ତୁ ଅଟୁକ ଦର୍ପଗଞ୍ଜା
ଶକ୍ତିଧର ନଶୋଧନ ତ୍ରିପୁର ବଳଭଞ୍ଜା । ୩୧୩ ।
ଅଗ୍ୟାନେ ବାଳୁତପଣେ ପଦ୍ମନ କଲାକ ଯେତେ କୃତ୍ୟ
ନାରାୟଣ ଦେଖନ୍ତେ ଯେହା କେ ସହିବାର ଯୁଗତ । ୩୧୪ ।
ପୁଣି ବୋଇଲେ ତୋତେ ବୋଲିବା ନାଁ କସ
ବଶ ହୋଇଲା କନ୍ୟା ତୋତେ କଲାକ ଅବିଶ୍ୱାସ । ୩୧୫ ।
ସାମାନ୍ୟ କଥା ସିନା ଶୁଣିବାକୁ ବଡ ଲଜ୍ଜା
ବଶ ହୋଇଲା ଠାବରୁ ଆନ ନେଲା ତୋ ଭାରଯା । ୩୧୬ ।
ଯେତେ ବୋଲି ହହ ହହ ହସିଲେ ମହାମୁନି
ଯେତେ ବଡମନ୍ଦ କଲା ସେ ମେରୁଶୃଙ୍ଗର ନନ୍ଦନୀ । ୩୧୭ ।
ଯଇଲ୍ଲୋକ୍ୟ କାର୍ତ୍ତିକ ତୋତେ ହୋଇଲା ଯେତେ ଲାଜ
କି ବୋଲି ବୋଲିବେ ତୋତେ ଦେବାଧି ଦେବରାଜ ! ୩୧୮ ।
ନାରଦଂକ ଉପହାସ ବହୁତ ବୋଲି ଶୁଣି
କୋପେଣ କୁମାର ଯେ ଉଠିଲା ଶିରଢୁଣି । ୩୧୯ ।
କୋପେ କୋହାବଇ ସେ ପ୍ରତାପୀ ମେରୁଶୃଙ୍ଗ
ଧାଇଂଲେ ବେନଯେ କୁଲେ ନାହିଂ ସନ୍ୟବଳ । ୩୨୦ ।
ପଦ୍ମନ ଯେ ଗଲା ତ୍ରିଭୁବନ ମୋହିନୀକଇଂ ଘେନ
କଳାଙ୍ଗୀ ନଦୀକୂଳେ ଭେଟିଲା ହରି ଅର୍ଜୁନ ବେନ । ୩୨୧ ।
କନ୍ୟାକୁ ଘେନଣ ସେ ମାୟାବନ୍ତର ବଲ୍ଲଭ
ପାଦ ପୂଜାକଲା ସେ ପାଥବ ପଦ୍ମନାଭ । ୩୨୨ ।
କନ୍ୟାକୁ ଦେଖି ଦେବ କରନ୍ତି ଧନ୍ୟ ଧନ୍ୟ
ବାହୁରେ ଦ୍ୱାରକା ମଣ୍ଡଣି ଯେ ଅଇଲୁ କନ୍ୟା ଘେନ । ୩୨୩ ।
ବଧୂଂକୁ ଘେନଯାଅ ବାବୁ ଦ୍ୱାରକା ଭୁବନକୁ
ଅସୁର ଥାଠ ପଲାଣିଲେ ଆମ୍ଭେ ଓଗାଳୁଂ ସିନା ତାହାଂକୁ । ୩୨୪ ।

ଅନେକ କଲ୍ୟାଣ ବାଞ୍ଛା କଲେକ ଚକ୍ରଧାରୀ
କନ୍ୟା ଘେନ ପ୍ରଦ୍ୟୁମ୍ନ ଗଲେ ଦ୍ୱାରବତୀ ପୁରୀ । ୩୨୫ ।
ମଳୟା ପର୍ବତେ ହରି ଅର୍ଜୁନ ଛନ୍ତି ରହି
କାର୍ତ୍ତିକ ମେରୁଶୃଳ ଦୁହେଁ ଆସୁଛନ୍ତି ବାହି । ୩୨୬ ।
କାର୍ତ୍ତିକ ଚଢିଅଛୁ ମୟୂର ପକ୍ଷୀ ଗୋଟି
ମେରୁଶୃଳ ବଜସ୍ୱେ ସଂପାତି ପକ୍ଷୀର ପିଠି । ୩୨୭ ।
କାର୍ତ୍ତିକ କରେ ଧରିଅଛୁ ଅମୋଘ ଶକତି ଶୂଳ
କୋଦାଳ ଆୟୁଧ ଯେ ଧରିଛୁ ମେରୁଶୃଳ । ୩୨୮ ।
ମନ୍ଦର ବଂଶଗିରି ଦୁହେଁ କ ଆସୁଛନ୍ତି ଉଠି
ଦେଖନ୍ତି ପର୍ବତେ ଥାଇଂ ଶ୍ରୀକୃଷ୍ଣ ଯେ କପାଟୀ । ୩୨୯ ।
ବଇନେତ୍ର ପିଠିରେ ବଜସ୍ୱେ ଦେବ ଯେ ଗୋବିନ୍ଦେ
ମୟୂର ଦେଖି ଗରୁଡ଼ କଲା ଘୋରନାଦେ । ୩୩୦ ।
ଦେଖିଣ ମୟୂର ଯେ ଯୋଜନେକ ଅପସରି
ମେରୁଶୃଳ ରହିଲା କରେ କୋଦାଳ ଆୟୁଧ ଧରି । ୩୩୧ ।
ସନ୍ଧ୍ୟା ଅବକାଶେ ଯେହ୍ନେ ଦିଶନ୍ତି ପର୍ବତେ
ମେରୁଶୃଳ ଦେହ ଯେ ଦିଶଇ ସେହିମତେ । ୩୩୨ ।
ସମ୍ପାତି ବାହାନେ ସେ ଚମ୍ପାଇ ମେରୁଶୃଳ
ନାରାୟଣଂକ ଅଗ୍ରତେ ସେ ବୁଲାଇ କୋଦାଳ । ୩୩୩ ।
ନାରଦେ ବୋଇଲେ ଭୁହୋ ଶୁଣସି ଦଇତା
ସେହିର ପୁଅ ହରିଲଟି ତୋହୋର ଦୋହିତା । ୩୩୪ ।
ଶୁଣିଣ କୋହାନଳ ସେ ଅସୁର ମେରୁଶୃଳ
ଗିରିବର ଉପାଡ଼ିଣ ସେ ଧଇଲା କରସ୍ଥଳ । ୩୩୫ ।
ଗଦାବର ପ୍ରାୟେକରି କୋପେଣ ବୁଲାଇ
ନାରାୟଣ ଉପରେ ପ୍ରହାରିଲା ନେଇ । ୩୩୬ ।
ଗିରି ପଡ଼ନ୍ତେ ପକ୍ଷୀ ପାଶିଲା ଖଗେଶ୍ୱର
ପକ୍ଷୀରେ ପର୍ବତ ପଡ଼ି ହୋଇଲା ଶତେଚୁର । ୩୩୭ ।
ନର୍ଦ୍ଧାତ ଶରେକ ଯେ ପେଷିଲା ଫାଲଗୁନ
ମେରୁଶୃଳ ଉପରକୁ ଶସ୍ତ୍ର ବନ୍ଧଇ କରେ ଘେନ । ୩୩୮ ।

ନାରଜ ପଡନ୍ତେ ଯେ ଦେଖିଲା ମେରୁଶୂଳ
ଅର୍ଜୁନ ନାରଜକୁ ଘାଉଲା ବକ୍ଷସ୍ଥଳ । ୩୩୯ ।
ବକ୍ଷସ୍ଥଳେ ନାରଜ ପଡ ହୋଇଲା ଶତଚୂନା
ବଜ୍ରଅଙ୍ଗ ଶରୀର ନାହିଂ ତାର ସେହ୍ନା । ୩୪୦ ।
ଦେଖିଣ ଅସୁର ଯେ ବୁଲାଇ କୋଦାଳ
ଅର୍ଜୁନ ଉପରେ ନେଇ ପିଟିଲା କୋହାନଳ । ୩୪୧ ।
ଶସ୍ତ୍ର ପଡନ୍ତେ ଅର୍ଜୁନ ଶରୀରେ ନ ଭେଦି
ପାଶୁପତ ନାରଜେ ବାସେବା ଛାହା ଛେଦି । ୩୪୨ ।
କୋପେ ମେରୁଶୂଳ ଆରେକ କୋଦାଳ ପ୍ରହାରିଲା
ମଳୟାଗିରି ପର୍ବତ କୋପେ ଛାଡଣ ଧଇଲା । ୩୪୩ ।
ସେ ପର୍ବତେ ଉପରେ ଛନ୍ତି ଜଗନ୍ନାଥ ଫାଲଗୁନ
ଗରୁଡ ସହିତେଣ ଅଛନ୍ତି ଜଣତିନ । ୩୪୪ ।
କୋଦାଳ ଘେନଣ ସେ ଦୁରନ୍ତେକ ରାକ୍ଷସ ପ୍ରତ୍ୟକ୍ଷ
କୁରଳଚକ୍ର ପ୍ରାୟେ ବୁଲାଇ ଅନ୍ତରୀକ୍ଷ । ୩୪୫ ।
ବୁଲାଇଣ ଫିଙ୍ଗି ଦେଲାକ ଦୁରନ୍ତେ
ପଞ୍ଚଯୋଜନ ଅନ୍ତେ ପଡଲେ କୃଷ୍ଣ ପାର୍ଥେ । ୩୪୬ ।
ପର୍ବତ ସହିତେ ଆବର ପକ୍ଷୀବର
ପଡଣ ଗିରିବର ହୋଇଲା ଶତେଚୂର । ୩୪୭ ।
ବନଚାରି ନନ୍ଦନ ଯେ ଅଞ୍ଜବେଗେ ଉଡି
ମେରୁଶୂଳ ଅଗ୍ରତେ ହେଲା ଘୋରରଡ଼ି । ୩୪୮ ।
ପୁଣ ପୁଣ ପ୍ରହାର ଯେ କଲାଇ ମେରୁଶୂଳ
ଗରୁଡ ପିଠିରେ ନେଇ ପିଟିଲା କୋଦାଳ । ୩୪୯ ।
ଦେଖିକରି ବଇନେତ୍ର ପାଉଲେକ ଅଣ୍ଟ
ବେନିଖଣ୍ଡ ହୋଇ ଭାଙ୍ଗିଲା କୋଦାଳର ବେଣ୍ଟ । ୩୫୦ ।
ଶୂନ୍ୟହାଥ ହୋଇକରି କୋପେଣ ଦୁରନ୍ତ
ଗରୁଡ ଉପରେ ନେଇ ପ୍ରହାରିଲା ବଜ୍ରମୁଖ । ୩୫୧ ।
ଦେଖିଣ ନାରଜ ଯେ ବନ୍ଧିଲା ଫାଲଗୁନ
ସେ ଶସ୍ତ୍ର ଅସୁର କରେ ଧାଇଂ ଦେନ । ୩୫୨ ।

ପୁଣି ଫାଲଗୁନ ଯେ ପର୍ବତା ଶସ୍ତ୍ର ମାରି
ମେରୁଶୂଳ ଉପରେ ହୋଇଲେକ ଚୂରି । ୩୫୩ ।
ପର୍ବତ ବ୍ୟର୍ଥ ଦେଖନ୍ତେ ପାଣ୍ଡବ ପଞ୍ଚାଣ
ଧାଡକାରେ ଅର୍ଜୁନ ବହିଲେ ଅଗ୍ନି ବାଣ । ୩୫୪ ।
ଦେଖିଣ ମେରୁଶୂଳ ଭୁଣ୍ଡ ଯେ ବିସ୍ତାରି
ସେ ମହା ଅନଳଶର ଦାନବ ଗର୍ଭରେ ସଞ୍ଚରି । ୩୫୫ ।
ସମର କରନ୍ତେଣ ଆଦିତ୍ୟ ଅସ୍ତଗଲେ
ବାହୁଡି ମେରୁଶୂଳ ନିଜ କଟକେ ମିଳିଲେ । ୩୫୬ ।
କୋଦାଳ ଆୟୁଧ ଘେନିଥିଲେକ ତାହାର
ଲୋହଗିରି ପର୍ବତ ଉପାଡିଲେ ମହାବୀର । ୩୫୭ ।
ଯୋଜନେକ ଆୟତନ ପଞ୍ଚଯୋଜନ ଯେ ସ୍ଥୂଳୀ
ସେ କୋଦାଳ ଆୟୁଧରେ ବେଣ୍ଟ ଦେଲେ ଭରି । ୩୫୮ ।
ପୁଣ ମୟୂର ଆରୋହିଣ କାର୍ତ୍ତିକେଶ୍ୱର ସଙ୍ଗତ
ମେରୁଶୂଳ ସନ୍ନିଧେ ସେ ମିଳିଲେ ତୁରନ୍ତ । ୩୫୯ ।
ମେରୁଶୂଳ ବୋଇଲେ ସ୍ୱାମୀ ଦୁଷ୍ଟ ଯେ ଈଶ୍ୱର
ତାହାକୁ ସମାନ ଯେ ନୋହେ ତୋ ସମର । ୩୬୦ ।
ସମରେ ନ ଯୁଝିଲେ ସେ ମୋହୋର ଶରଘାତେ
ଶରୀର କମ୍ପଇ ମୋର ତାଂକ ଶର ଘାତେ । ୩୬୧ ।
କାର୍ତ୍ତିକେଶ୍ୱର ବୋଇଲେ ଶୁଣସି ମହାରାଜ
ଉଭା ହୋଇଣ ସମର ଦେଖ ମୋହୋର ଆଜ । ୩୬୨ ।
ପୁଣ ସମରେ ସଜ ହୋଇଲେ କାର୍ତ୍ତିକେ ମେରୁଶୂଳ
ହରି ଅର୍ଜୁନ ଅଛନ୍ତି ତମାଳ ତରୁ ବୃକ୍ଷତଳ । ୩୬୩ ।
ଅର୍ଜୁନ ବୋଇଲେ ସ୍ୱାମୀ କାର୍ତ୍ତିକ ତୁଲେ ଯୁଝ
ମେରୁଶୂଳର ତୁଲେ ସମର ମୋର ବୁଝ । ୩୬୪ ।
ବିଜୟେ ନାରାୟଣ ଯେ ଖଗେଶ୍ୱର ପିଠି
ମେରୁଶୂଳ ତୁଲେ ଯେ ସମର କଶାଟି । ୩୬୫ ।
ଗର୍ଜିଣ ବଇନତେ ଯେ କଲେ ପକ୍ଷଘାତ
କାର୍ତ୍ତିକେଶ୍ୱରକଇଂ ଘେନି ମୟୂର ପଡିଲା ଯୋଜନ ସାତ । ୩୬୬ ।

ବାହାନ ତେଜ୍ୟା କରଣ ସଦାନନ୍ଦର ବଚ୍ଛି
ଦଣ୍ଡ କୋଦଣ୍ଡ ଘେନ ସମରେ ଆସି ପଶି । ୩୬୭ ।
ଯେବ୍କା ପାଦକରେ ଯେ ଶତେ ଯୋଜନ କ୍ଷେପି
ଛଡଶିର ଦ୍ୱାଦଶଭୁଜ ଅଭୟେ କାମରୂପୀ । ୩୬୮ ।
ଶୁକ୍ଳାମ୍ବର ଶରୀର ଶୁଦ୍ଧ ସଷ୍ଟିକ ପରାୟେ
ଧକଣ୍ଠ ବଣ୍ଡନେତ୍ର ଜମ୍ବୁପଟଳ ସୂର୍ଯ୍ୟତେଜ ଶୋଭେ । ୩୬୯ ।
ଶ୍ରୀଭୁଜେ ଶୋଭାବନ ପରଶୁ କୋଠାର ମୁଦୁଗର
ପିନାକ ପଶୁପତ୍ର ପରଘ ହାଥେ ଅସିବର । ୩୭୦ ।
ସାରବେଶ ଅଳଂକାର ସଦାନନ୍ଦ ଯେ ବଳା
ତାରକା ନଶୋଧନ କ୍ଷତି ଯୁ ଅର୍ଗଳା । ୩୭୧ ।
ଆଦିତ୍ୟ ପ୍ରଦୋଷେ ଯେହ୍ନେ ଦିଶନ୍ତି ଗିରିବର
ସେହ୍ନ ସାଦୃଶେ ଦିଶଇ ଯେବକକନ୍ଧ ଷଡଶିର । ୩୭୨ ।
କାର୍ତ୍ତିକ ପ୍ରତିଉତ୍ତର ନାରାୟଣ ଅଗ୍ରତେ
ଆହ୍ମଂ ଦୁର୍ବାସାଏ କନ୍ୟା ବରିଲେକ ମୋତେ । ୩୭୩ ।
ପାପପୁଣ୍ୟ ଦୁଇ ଗ୍ୟାନରେ କହୁହ୍ମଂ ନ ବିଚାରି
ଅହ୍ନିଗ୍ୟଂ ସ୍ଥାନରୁ ରେ କନ୍ୟା ନେଲ ବଳେକରି । ୩୭୪ ।
ଶିଶୁପାଳ ବିଭାକାଳେ ଯେହ୍ନେ ହରି ଆଣିଲୁ ରୁକ୍ମଣୀ
ପୁତ୍ରକଇଂ ସେହ୍ନମନ୍ତ କରାଇଲୁ ଚକ୍ରପାଣି । ୩୭୫ ।
ବେଳେ ବେଳେ ତୁମ୍ଭେମାନେ କର ଯେ ଚତୁର୍ଯ୍ୟ
ଚତୁର୍ଯ୍ୟପଣ କର୍ମ ତୁମ୍ଭର ଜାଣିମାକ ଆଜ । ୩୭୬ ।
ଗୋଲକୁଣ୍ଡା ପାଣ୍ଡବେ ଯେ ଯେ ତୋହୋର ସାଖା
ଆଜ କେହୁ ରକ୍ଷାକରି ପାରି ଯେ ତୋହୋର ଦ୍ୱାରକା । ୩୭୭ ।
ଜୀବନେ କାର୍ଯ୍ୟ ଯେବେ ଅଛଇ ତୁମ୍ଭର
ବନ୍ଧନକରି କନ୍ୟାଗୋଟିକ ଦିଅସି ମୋହୋର । ୩୭୮ ।
ଯଦ୍ୟପି କନ୍ୟାଗୋଟି ମୋର ନ ଦେବଟି ଅବା
କୃଷ୍ଣ ପାଣ୍ଡବ କେ ରକ୍ଷା କରିଯେ ପାରିବା । ୩୭୯ ।
କାର୍ତ୍ତିକ ପ୍ରତିଉତ୍ତରେ ବୋଲନ୍ତି ବାସୁଦେବେ
ଅପାର ଦୁର୍ଦ୍ଧର୍ଷ ବଚନ ରେ ତୁ ବୋଲୁ ମତ୍ତଗବେ । ୩୮୦ ।

ଉନ୍ମତ କନ୍ୟା ଯୁବା ବୟସ ତପ୍ତ
ନ ଚେତନ୍ତି ପରାପର ଏଣୁ ହୁଅନ୍ତି ଇଚ୍ଛାପୂର୍ଣ କର । ୩୮୧ ।
ତୁମ୍ଭେ ତପୋଧର୍ମ ନରକାର ଶିକ୍ଷା
ତପସ୍ୱୀଙ୍କ ବଳସନେ ତୁମ୍ଭର କସ ଇଚ୍ଛା । ୩୮୨ ।
ମାଗବ ପଞ୍ଚଭିକ୍ଷା ସାଧିବ ଯୋଗପଦ
ନ ଇଚ୍ଛିବ ଶୃଙ୍ଗାର ଯେ ଯୋଗ ପରମାଦ । ୩୮୩ ।
ନାଗପୁଣ ମୁଖେ ଏସନେକ ବାକ୍ୟ ଶୁଣି
କୋପେଣ ଗର୍ଜଇ କୁମାର କାଳସର୍ପ ଜାଣି । ୩୮୪ ।
ବାଟେ କଦଳୀପତ୍ର ଜାଣି କମ୍ପଇ ତାର ଅଙ୍ଗ
ନାଗଜ ପୂରେଇଲା ସେ ପିନାକ ଶାରଙ୍ଗ । ୩୮୫ ।
ଅନଳତେଜ ପ୍ରାୟେ ନାଗଜ ତୀକ୍ଷମୁନା
ସହସ ନାଗଜ ମେଷିଲା ହରର ବଜ୍ରସହ୍ନା । ୩୮୬ ।
ପୃଥିବୀ ବର୍ଷିଲା ଯେ ଉଲ୍କାପାତ ମଧ୍ୟେ
କମ୍ପନ୍ତି ଦିଗପାଳେ ଯେ ଯୁଗାନ୍ତକ କାଳପ୍ରାୟେ । ୩୮୭ ।
କାର୍ତ୍ତିକେଶ୍ୱର ଶରଘାତ ନାଗପୁଣ ଦେଖି
ସହସ୍ରଂକ ତେଜେ ହର ବୁଜିଲେ ବେନିଆଖି । ୩୮୮ ।
ଦେଖିଣ ଖଗେଶ୍ୱର ପାଞ୍ଚିଲା ପକ୍ଷୀଲଟା
ପଡ଼ିଣ ନାଗଜମାନ ହୋଇଲେ ଭଗନସ୍ତା । ୩୮୯ ।
କାର୍ତ୍ତିକ ସମର ଦେଖି ବଦଯୁନ୍ତି ଶ୍ରୀବତ୍ସ
ବହୁତ ଦ୍ୱନ୍ଦ ହୋଇଲେ ନୋହିବ କାର୍ଯ୍ୟ କିଛି । ୩୯୦ ।
ଦୁର୍ବାସାଦ୍ୟେ ଥିଲେ କାର୍ତ୍ତିକେଶ୍ୱର ତୁଲେ
କୈଳାସ କନ୍ଦରେ ଯାଇଂ ସଦାନନ୍ଦଂକୁ କହିଲେ । ୩୯୧ ।
ସ୍ୱାମୀ ଆମନ୍ତ୍ର ରାଇ କାର୍ତ୍ତିକେଶ୍ୱରକଇଂ ବରିଲା କୁମାରୀ
ପଦ୍ମନ ଚକ୍ରପଟ୍ଟ ନାରଦେ ଚେତେଣ କର । ୨୯୨ ।
ବରହିତା ବାମା ସେହୁ ମଦନେ ଆରତ
ପଦ୍ମନକୁ ଦେଖି ବାଳୀ ବଳାଇଲା ମତ । ୩୯୩ ।
କାର୍ତ୍ତିକେଶ୍ୱର ଚେତେଣେ ହରଙ୍କୁ ଅଛି ବସି
ଅହିରାଂ ସ୍ଥାନୁଂ ପଦ୍ମନ କନ୍ୟାକୁ ମିଳିଲାକ ଆସି । ୩୯୪ ।

ପଦ୍ମନକୁ ବରିଲା ସେ ତ୍ରିଭୁବନ 'ମୋହିନୀ'
କରେଣ ସୁନ୍ଦରୀ ସେ ମାଳାଟ୍ୟେକ ଘେନ । ୩୯୫ ।
କନ୍ୟା ଘେନ ପଦ୍ମନ ଦ୍ୱାରକାକୁ ଗଲେ
ମେରୁଶୃଳ କାର୍ତ୍ତିକେଶ୍ୱର ଦୁହେଂ ପଛେ ଗୋଡାଇଲେ । ୩୯୬ ।
ପାଣ୍ଡବନ୍ତ ଘେନ ହରି ବସିଥିଲେ ବାଟେ
ବଳାଙ୍ଗୀ ନଦୀତୀର ଉତ୍ତର ଆଡ଼ତଟେ । ୩୯୭ ।
ଗରୁଡ ପକ୍ଷୀଘାତେ ମୟୂର ଗଲା ଉଡ଼ି
ମୂର୍ଚ୍ଛାଗତ ହୋଇଣ ସେ ସାତ ଯୋଜନରେ ପଡ଼ି । ୩୯୮ ।
ଯେମନ୍ତେ ଅପ୍ରାଂଜୟେ ପାଇଲେ ବେଳ ଜିନ
ମେରୁଶୃଳ ଭୁଚଲେ ରଣ କରଇ ଫାଲଗୁନ । ୩୯୯ ।
ଦୁର୍ବାସାଙ୍କ ବଚନେ ସେ ନନ୍ଦୀ ମହାକାଳ
ପ୍ରଚଣ୍ଡ ଚଣ୍ଡ ବଣାଘ୍ୟେକ ଟିଣାଘ୍ୟେକ କ୍ଷେତ୍ରପାଳ । ୪୦୦ ।
ମହାବଳବନ୍ତ ସେ ରୁଦ୍ର ଯେ ଭୃକୁଟୀ
ଶିବଗଣମାନେ ଗର୍ଜନ୍ତି ଚତୁର୍ଦ୍ଦଶ କୋଟି । ୪୦୧ ।
କରେଣ ଖଡ୍ଗ ତ୍ରିଶୂଳ ବାଣ ସେ ପିନାକ
ମେଦିନୀ ଉଛୁଳଇ ଯେ ବମ୍ବମ୍ ଶବ୍ଦ ଡାକ । ୪୦୨ ।
ରୁଦ୍ରଗଣମାନେ ଯେ ହୋଇଲେ ସାରସଜ
ଦେଖି ପରମ ସାନନ୍ଦ ହୋଇଲେ ପ୍ରଭୁ ଦେବରାଜ । ୪୦୩ ।
ବିଜୟେ ମହେଶ୍ୱର ଯେ ବୃଷଭର ପିଠି
ଅନ୍ତରୀକ୍ଷେ ଡମ୍ବରୁ ବାଜଇ ନବକୋଟି । ୪୦୪ ।
କପିଳାସ କନ୍ଦର କରିଣ ଦେବ ତେଜ୍ୟା
ସମର ସନ୍ନିଧେଣ ବିଜୟେ ଦେବରାଜ । ୪୦୫ ।
ବୃଷଭ ଆରୋହଣ ମହେଶ୍ୱରଙ୍କଇଂ ଦେଖି
ଧାଡିକାରେ ଜଗନ୍ନାଥ ଗରୁଡ ଉପେକ୍ଷି । ୪୦୬ ।
ଶିବଗଣନ୍ତ ଘେନଣ ବିଜୟେ ସୁତଳେ
ଶ୍ରୀକୃଷ୍ଣ ପ୍ରଣପତ୍ୟ ବୃଷଭ ପାଦତଳେ । ୪୦୭ ।
ଦେଖିଣ ସାନନ୍ଦ ଦେବ ଯେ ଈଶାନ
କଚ ମହାପ୍ରସାଦ ହୋ ଉଠ ଉଠ ଜନାର୍ଦ୍ଦନ । ୪୦୮ ।

ସଦାଶିବର ବଚନେ ଶ୍ରୀଜଗନ୍ନାଥେ ଉଠି
ଅନ୍ତରେ ଗୋବିନ୍ଦ ଯେ ରହିଲେ ପୁରମେଣ୍ଟି । ୪୦୯ ।
ପଦ୍ମନ ଗଲେ ଯେ ଦ୍ୱାରିକା ଭୁବନେ
ଦେଖିଣ ସାନନ୍ଦ ଯେ ଯଦୁବୀରମାନେ । ୪୧୦ ।
କନ୍ତଶ ସହସ୍ର କନ୍ୟା କରେ ଘେନିଣ ଅର୍ଘ୍ୟସ୍ଥାଳୀ
ବରକନ୍ୟା ବନ୍ଦାପନା କରନ୍ତି ସର୍ବେ ମିଳି । ୪୧୧ ।
ନାରଦେ କହିଲେ ଯାଇଂ ଶୁଣ ହୋ ବଳରାମ
ମେରୁଶୂଳ ଭୁଲେ ବଡ଼ୁତ ହୋଇଛି ସଂଗ୍ରାମ । ୪୧୨ ।
କାର୍ତ୍ତିକେଶ୍ୱର ନିମନ୍ତେ ଅଭିମାନ କରି
ଆପଣେ ବିଜେ ଦେବ କଲେ ତ୍ରିପୁରାରି । ୪୧୩ ।
ଚଉଦକୋଟି ଯେ ଭୃଙ୍ଗୀଗଣନ୍ତ ଘେନି
ସର୍ବେ ପ୍ରେକା ଅଛନ୍ତି ସେ କୃଷ୍ଣ ଫାଲଗୁନି । ୪୧୪ ।
ଆସ୍ଥାନ ଉପରୁ ଡେଇଂଣ ପଡିଲେ ଦେବରାଜ
ଧାଅଂରେ ଯଦୁବୀରେ ଦଣ୍ଡ ବେଗେ ସାଜ । ୪୧୫ ।
ଶ୍ରୀଭୁଜେ ଶୋଭିବନ ସମର୍ଥିକ ସଉନନ୍ଦ ମୂଷଳ
ପାଦଗତି ଧାମନ୍ତି ଦେବ କାମପାଳ । ୪୧୬ ।
ତାଳଧ୍ୱଜ ରଥ ସାଜ ଦାରୁକ ସାରଥି
ଅଶ୍ୱବ୍ରତେକ ଶାର୍ଦ୍ଦୁଳ ଯୋଚିଣ ଧାମନ୍ତି ରାମଂକ ପଛକତି । ୪୧୭ ।
ଯଦୁବଂଶ ଭୋଜବଂଶ ହଇହୟ ବଂଶ କୁରୁବଳ ବଂଶ
ଆରତେ ଯୋଦ୍ଧାପ୍ରେ ଚଢି ନୁଆରନ୍ତି ବାରଣ । ୪୧୮ ।
ସମର୍ଥିକ ହଳ ବୁଲାଇ ଧାମନ୍ତି ଦେବ ହଳୀ
ଆଦିତ୍ୟ ଗୋପ୍ୟଗଲେ ଚରଣର ଧୂଳି । ୪୧୯ ।
ଯୁଧିଷ୍ଠି ଭୀମ ଅର୍ଜୁନ ନକୁଳ ସହଦେବ
ମେରୁଶୂଳ ସଙ୍ଗେ ଯୁଦ୍ଧ ପଞ୍ଚଇ ପାଣ୍ଡବ । ୪୨୦ ।
ବଚନେ ସମାର୍ଜନା କରନ୍ତି ଜଗନ୍ନାଥେ
ସଦାନନ୍ଦ ସ୍ୱାମୀଂକ ତୋଷନ୍ତି ଅନେକ ମତେ । ୪୨୧ ।
ପରମ ଶାନ୍ତି ବଚନ କହାନ୍ତି କାପାଳୀ
ସ୍ତ୍ରେମନ୍ତର ସମସ୍ତେ ବିଜେକଲେ ଦେବ ହଳୀ । ୪୨୨ ।

କୋଟିଏ ସିଂହର ପ୍ରାକ୍ରମ ଯେବଣ ବଳରାମ
ଶବଦକୁ ଭୟ ପର ସଉଜନନ୍ଦ ବନ୍ଧଇ ଅବଶ୍ରାମ । ୪୨୩ ।
ରେ ରେ କାର ଶବଦେ ରାମ ବଲେ ଯେତେକାଡାକେ
ତ୍ରିଭୁବନ କମ୍ପିଲ ବାସିଲେ ବ୍ରହ୍ମାଅର୍କେ । ୪୨୪ ।
ଐରାବତ ଆରୋହୀ ବଜଯେ ଦେବ ସୁନାସୀର
ମହାଶାନ୍ତ ବଚନେ ଭଜଲେ ଶ୍ରୀ ବଳରାମଂକ ପୟର । ୪୨୫ ।
ଯୁଦ୍ଧେଷ୍ଟି ବେଢ଼େ ପ୍ରଣପତ୍ୟ ହୋଇଲେ ବଳରାମ
ସ୍ୱାମୀ ହରହର ସମର ଯେବେ ହୋଇଅଛୁ ସାମ୍ୟ । ୪୨୬ ।
ତୁ ଯେବେ କୋପ ସଂହରଣ କର ଦେବହଳୀ
ଶାନ୍ତ ଭଜଲେନ ରୁଦ୍ର ନକଲେ କନ୍ଥି କଳ । ୪୨୭ ।
ବହୁତ ବନୋପ୍ସୀ ସେ ବଦୟନ୍ତ ଧର୍ମରାଯେ
ଶାନ୍ତକର ବଳରାମଂକୁ ବସାଇଲେ ସେହିଠାଏ । ୪୨୮ ।
ନାରାୟଣଂକ ଅଗ୍ରତେ ବଦୟନ୍ତ ନୃପାଳୀ
ଦୁର୍ବାସାଂକ ଅଗ୍ରତେ କାର୍ତ୍ତିକେୟକୁ ବରିଲକ ବାଳୀ । ୪୨୯ ।
ଭୃମ୍ବର ପୁଅକୁ ପଠିଆଇ ତାହାକୁ ନଆଇଲୁ ବନମାଳୀ
ଯେତେନେକ ଅନର୍ଥାପ କର୍ମେ କରିଲୁ ତୋହୋ ଭଳ । ୪୩୦ ।
ଗୋବନ୍ଦେ ବୋଇଲ ସ୍ୱାମୀ ନ କହିବାକ ମୋତେ
ସେ କନ୍ୟା ନାରଦଂକୁ ପଠିଆଇଲ ପଦ୍ମନ ନିମନ୍ତେ । ୪୩୧ ।
ସ୍ୱାମୀ ମୁହିଂ ଯେବେ ହାଦେ ଜାଣିଥାନ୍ତ ଯେଥିର ତତ୍ତ୍ୱ
ଯେତେକ ଚରିତ କମ୍ପା ହୁଅନ୍ତା ବିଶ୍ୱନାଥ । ୪୩୨ ।
ସ୍ୱାମୀ ଯେବେହେଂ ସମର୍ପଣ କରନ୍ତି ସେ କନ୍ୟା
ବରଣମାଳା ଦେଇ ହୋଇଲେନ ବରାଙ୍ଗନା । ୪୩୩ ।
ଜ୍ୟେଷ୍ଠ କାର୍ତ୍ତିକେଶ୍ୱର କନିଷ୍ଠ ପଦ୍ମନ
ବିଗ୍ରହର ପରମେଶ ଦେବ କୋପ କରିବା ସାମ୍ୟ । ୪୩୪ ।
ନାରାୟଣ ଶତସହସ୍ର ଦଣ୍ଡ ପ୍ରଣମିତ
ବିଗ୍ରହଣ କୋପ ଦେବ କରିବା ବିଶ୍ୱନାଥ । ୪୩୫ ।
ପ୍ରବୋଧ ବାକ୍ୟ ଯେ କହନ୍ତି ବନମାଳୀ
ଶୁଣିଣ ସାନନ୍ଦ ଯେ ହୋଇଲେ ଦେବଶୂଳୀ । ୪୩୬ ।

କାର୍ତ୍ତିକେଶ୍ୱରଙ୍କୁ ଦେବ ଧଇଲେକ କୋଳେ
ବୃଷଭ ପିଠିରେ ନେଇ ବସାଇଲେ ସୁଢୋଳେ । ୪୩୭ ।
ବାବୁ ବରହାତା କନ୍ୟା ସେହୁ କଲ୍ୟକ ବଡ଼ମନ୍ଦ
ଆମ୍ଭେ ହରହର ଯେବକଆମ୍ଭା କରିବା କଂପେ ଦ୍ୱନ୍ଦ । ୪୩୮ ।
ସ୍ଥୁର ପାମେଷା ସେ ଭଷ୍ମ ନିଲକ୍ଷଣୀ
କାର୍ତ୍ତିକଙ୍କୁ ସମ୍ବୋଧନା କରନ୍ତି ଶୂଳପାଣି । ୪୩୯ ।
ଭ୍ରୂକୁଟିଗଣନ୍ତ ଯେନ ଦେବ ଯେ ଈଶାନ
କପିଳାସ ସ୍ୱର୍ଗେ ଦେବ ବିଜୟେ ତ୍ରିଲୋଚନ । ୪୪୦ ।
ଆରମ୍ଭେ ଥିଲା ସେ ମେରୁଶୂଳର ମୁରଣ୍ଡ
ମୁଷଳ ବୁଲାଇ ସେ ଧାଇଂଲେ ହଳପଣ୍ଡ । ୪୪୧ ।
ବଜ୍ରହଳ ବୁଲାଇ ରାମ ପ୍ରହାରିଲେ କୋପେ
ଅସୁର ବଞ୍ଚାଇଲା ତାହା ପ୍ରତଗ୍ୟାଂ ମହାଦର୍ପେ । ୪୪୨ ।
ସମରେ ଅନବାରଣ ସେ ମହାଶୂଳର ନାଣ୍ଡ
ମୁଷଳ ପଡନ୍ତେ ତାର ଦୁଗୁଣ ତେଜ କାନ୍ତି । ୪୪୩ ।
ପୁଣ ପୁଣ ପ୍ରହାର କଲେ ରାମ ବଜ୍ରହଳେ
ନିର୍ଘାତ ଜାଣି ପଡ଼ିଲା ମେରୁଶୂଳ ବକ୍ଷସ୍ଥଳେ । ୪୪୪ ।
ଝଂଣାନ୍ତ ପ୍ରହାରେ ଯେ ଉଠିଲା ବହନ
ଦେଖିଣ ହସରିଲେ ଦେବ ହଳପାଣି । ୪୪୫ ।
ରେ ରେ କାର ଶବଦେ ଧାମଇଂ ମେରୁଶୂଳ
ବଳରାମଂକ ଉପରେ ନେଇ ପିଟିଲା କୋଦାଳ । ୪୪୬ ।
ମନ୍ଦର ଗିରି ଜାଣି ଅଙ୍ଗେ ଆସି ପଡ଼ି
ଦେଖିଣ ଘୂର୍ଣ୍ଣିଲେ ଯେ ଦେବ ହଳଧାରୀ । ୪୪୭ ।
ପୁଣି ଧାମନ୍ତେ ସେ କୋପେ ବୀର ମେରୁଶୂଳ
ଅର୍ଜୁନ ବଳରାମ ହୋଇଲେ ଯେକମେଳ । ୪୪୮ ।
ପୁଣି ମହାତେଜ ଅସୁର ଧଇଲା କୋଦାଳ
ଶ୍ରୀଭୁଜେ ଚକଯେନ ଟଗାଳିଲେ ଦେବଙ୍କୀର ବାଳ । ୪୪୯ ।
କଜମୋଦଙ୍କୀ ଗଦାଦେବ କୋପେଣ ବୁଲାଇ
ମେରୁଶୂଳ ଉପରେ ଯେ ପିଟିଲେ ନିଠିଆଇ । ୪୫୦ ।

ଦେଖିଣ ଦୁରନ୍ତକ ପାଞ୍ଚିଲା ବାମହାଥ
ପଡ଼ଣ ଗଦାବର ହୋଇଲା ବ୍ୟର୍ଥ । ୪୫୧ ।
କୋପେଣ କେଶବ ଯେ ସୁଦର୍ଶଣ ଚକ୍ରଧାରୀ
ମେରୁଶୂଳ ଉପରେ ପ୍ରହାର କଲେକ ଦେବହର । ୪୫୨ ।
ଚକ୍ର ପଡନ୍ତେଣ ଦେଖିଲା ମେରୁଶୂଳ
ନୋହୋଇ ନୋହୋଇ ବୋଲି ପାଞ୍ଚିଲା ବକ୍ଷସ୍ଥଳ । ୪୫୩ ।
ସେ ସୁଦର୍ଶଣ ଚକ୍ର ଯେ ପଡ଼ିଲା ଦୈତ୍ୟକାୟେ
ଝଲକଲା ବଦନ ଲଂକା ଦହନ ପରାୟେ । ୪୫୪ ।
ପୁଣ କୋଦାଳ ଆୟୁଧ ବୁଲାଇ ଦୁରନ୍ତ
ନାରାୟଣ ଉପରେ ନେଇ ପିଟିଲା ବଜ୍ରଘାତ । ୪୫୫ ।
ଅସୁରେଶ୍ୱର ଯତ୍ନଂ କୋଦାଳ ଶର ପ୍ରହାର କରି
ଦେଖିଣ ନାରାୟଣ ଉହୁଲେ ଅପସରି । ୪୫୬ ।
ନାରାୟଣ ବ୍ୟର୍ଥେ ସେ ପଣ୍ଡୁର ତନୟେ
ଆରେ ରହ ରହ ବୋଲି ଧାଇଁଲା ଧନୁର୍ଜୟେ । ୪୫୭ ।
ଅନିବାରଣ ଶର ଭେଦିଲା ତାର ସେନ୍ଧା
ଦୈତ୍ୟର ଦେହେ ପଡ଼ି ଶହସ୍ତ୍ରେ ହୋଇଲେ ଶତେଚୂନା । ୪୫୮ ।
ମନଭେଦୀ ନାରାଜ ବିନ୍ଧିଲା ଧନୁର୍ଜୟେ
ମେରୁଶୂଳ ଶରୀର ହୋଇଲା ଶସ୍ତ୍ରମୟେ । ୪୫୯ ।
ରୋମକେ ଶତେ ନାରାଜ ଯାଇଂ ପଡ଼ି
ଖଣ୍ଡିତର ପ୍ରାୟେ ହୋଇ ରୋମେ ରୋମକେ ରୁଧିର ଗଲା । ୪୬୦ ।
ଅବଛନେ ନାରାଜ ବିନ୍ଧଇଂ ବିବନ୍ଧ
ଘାୟେଣ ବଧ ସେହୁ ନୋହିଲା ରାକ୍ଷସ । ୪୬୧ ।
ଗୋବିନ୍ଦ ପୁଚ୍ଛାକଲେ ସହଦେବର ଆଗେ
ଏ ଦୁରନ୍ତେକ ନାଶଯାଇ କେବଣହିଂ ବାଗେ । ୪୬୨ ।
ସହଦେବ ବୋଇଲେ ଦେବ ବ୍ରହ୍ମାଂକର ବରଦାୟେ
କେଉଂଶେସି ଶସ୍ତ୍ରଭେଦ ନୋହିବ ତାର କାୟେ । ୪୬୩ ।
ସ୍ୱାମୀ ଯେବଣ କାଳେ ପିତାଂକୁ ଯେ ମାଗିଅଛି ବର
ଏଥୁକା ଘଡ଼କେ ମୁଂ ଭ୍ରମିବ ତିନପୁର । ୪୬୪ ।

ବ୍ରହ୍ମା ଈଶ୍ୱର ଯେ ଇନ୍ଦ୍ର ଦେବହର
ଗୃହଦେଂ ସମରେ ଯେ ନୋହିବେ ମୋତେ ସର । ୪୬୫ ।
ମନୁଷ୍ୟ ଗ୍ରୁର ବୋଲି ନ ମାଗିଲି ବର
ଗୃହ ହଗପାଳେ ଯେବେ ମାନୁଷ୍ୟେ ହେବେ ଅବତାର । ୪୬୬ ।
ତେବେ ସେ ପ୍ରାଣତ୍ୟାଜ ହୋଇବ ମେରୁଶୂଳ
ଗୋବନ୍ଧେ ବୋଇଲେ ସ୍ୱେ ତ ହୋଇଲ୍ ନିଷ୍ଫଳ । ୪୬୭ ।
ଯୁଝେଷ୍ଟି ଦେବ ଆଣ୍ଡିଜ ଯେ ସହଦେବ ବଚନେ
ଗୃହ ଦେବତାସ୍ୱେ ତ ନୋହିବେ ସ୍ୱେକଜଣେ । ୪୬୮ ।
ଅଥବା ସେ ଜନମ ହୋଇବ କେତେକାଳେ
ତେବେ ସେ ପ୍ରାଣତ୍ୟାଜ ହୋଇବ ମେରୁଶୂଳେ । ୪୬୯ ।
ଆରେ ବାବୁ ଭୀମସେନ ଯାଅ ଯା ବହନ
ଘୁଞ୍ଚାଇ କର ଘେନଆସ ମୋ ଅର୍ଜୁନ । ୪୭୦ ।
ସହଦେବ ବୋଇଲି ସ୍ୱାମୀ ଶୁଣଇ ସ୍ୱେମନ୍ତ
ଗୃହ ହଗପାଳେ ସ୍ୱେକା ହୋଇ ଅର୍ଜୁନ ହୋଇଅଛୁ ଜାତ ।୪୭୧।
ସ୍ୱାମି ବ୍ରହ୍ମାଂକର ଶିର ଯେ ଈଶ୍ୱର ବଭୂତି
ବାସୁଦେବ ରୁଧିର ସାର୍ଯଂଦାତା ସୁରପତି । ୪୭୨ ।
ବ୍ରହ୍ମାଂକର ମୁଣ୍ଡ ଈଶ୍ୱର ମୋଡଲେ ଯେତେବେଳେ
ତନ୍ତୁଂ ବ୍ରହ୍ମରାକ୍ଷସ ଜନ୍ମି ଗୋଡାଇଲା ସୁତଳେ । ୪୭୩ ।

---

୪୬୭।୧ "ତେବେ ସେ ପ୍ରାଣତ୍ୟାଜ ହୋଇବ ମେରୁଶୂଳ"—
ଏହି ପାଦାନ୍ତ ପରେ "ଖ" ପୋଥିରେ ପାଠ :—
ସ୍ୱେସନେକ ବର ପାଇଅଛୁ ମେରୁଶୂଳ
ତେଣୁ କର ସମରେ ସେ ଅଟେ ଅର୍ଗଳ ।
ସହଦେବର ମୁଖୁଂ ସ୍ୱେସନେକ ବାକ୍ୟ ଶୁଣି
ପ୍ରସ୍ମୀଭୂତ ହୋଇଲେ ଯେ ଦେବ ଚକ୍ରପାଣି ।
୪୬୮।୨ ଗୃହ ହଗପାଳେ ନୋହିବେ ସ୍ୱେକା ଜଣେ ।—ଛ, ଖ, ଞ

ବ୍ରହ୍ମ କପାଳ ଯେ ହର କରେ ଲଗିଅଛି
ଈଶ୍ୱରେ ବୋଇଲେ ଶରଣ ରଖ ହେ ଶ୍ରୀବଚ୍ଛି । ୪୭୪ ।
ଈଶ୍ୱର ବକଳେ ହରି ଚକ୍ର ଘେନି ବାମହସ୍ତ
ଦକ୍ଷିଣ ଭୁଜରେ ହରି କଲେକ ଶସ୍ତ୍ରଘାତ । ୪୭୫ ।
ସେ ରୁଧିର ପଡିଲା ଯାଇଂ ବ୍ରହ୍ମାର କପାଳେ
ଈଶ୍ୱରେ ବିଭୁତି ତହିଂ ମେଦିଲେ କୁତୂହଳେ । ୪୭୬ ।
ତହିଂରୁ ଅଦଭୁତେ ପୁରୁଷେକ ହୋଇଲେକ ଜାତ
ତାହାର ନାମଗୋଟି ଯେ ହରି ଦିଲେକ ପ୍ରଶସ୍ତ । ୪୭୭ ।
ଶସ୍ତ୍ର ନାମେ ଧାତାର ତହୁଂ ହେଲା ଜାଏ
ସେ ଦୁହିଂକ ସମର କରାଇଲେ ଦେବରାଏ । ୪୭୮ ।
ଏମନ୍ତେ ସହସ୍ରେ ବରଷ ବେନିଂକ ସମର ହୋଇଲା
କେହି ନ ଜିଣିଲା ସମରେ କେହୁ ତ ନ ହାରିଲା । ୪୭୯ ।
ତେଣୁ ସମର ରୁହାଇଲେ ଦେବ ବିଷ୍ଣୁ ନାଥ
ଦ୍ୱାପର ଯୁଗେ ତୁମ୍ଭେ ମାନୁଷ୍ୟେ ହୋଅ ଜାତ । ୪୮୦ ।
ବ୍ରହ୍ମାର ରୁଧିରେ ଯେ ହୋଇଲା ଉତପନ୍ନ
ଆଦିତ୍ୟେ ସଂହରିଲେ ଦ୍ୱାପରେ ମାନବେ ଜାତ କର୍ଣ୍ଣ । ୪୮୧ ।
ହରିହର ବ୍ରହ୍ମା ଶରୀରୁ ଯେବଣ ପୁରୁଷଂ ଉତପନ୍ନ
ବାସବେ ସଂହରିଲେ ସେ ଦ୍ୱାପରେ ଜାତ ଅରଜୁନ । ୪୮୨ ।
ସହଦେବ ବୋଇଲେ ତୁମ୍ଭେ ଶୁଣ ଦେବସ୍ୱାମୀ
ଗୃହ ଦିଗପାଳଙ୍କି ଏ ଏକା ବୀର ଫାଲଗୁନ । ୪୮୩ ।
ଆବର ଉତପତ୍ତି ଯେ ମାନୁଷ୍ୟର ଗର୍ଭେ
ତେବେ ମେରୁଶୂଳ ବଧ ଜାଣ ହୋଇବାକ ଏବେ । ୪୮୪ ।
ଶୁଣିଣ ପରମ ସାନନ୍ଦ ହୋଇଲେ ଯୁଧିଷ୍ଠି
ଏସନେକ ସମ୍ପଦ ମୋହୋର ସୋହୋଦ୍ର ଭାଇଗୋଟି । ୪୮୫ ।

---

୪୮୩।୧ ସହଦେବ ବୋଇଲେ ତୁମ୍ଭେ ଶୁଣ ରାମ କୃଷ୍ଣ ଦେବ ।
ତ, ଣ, ଜ, ଚ, ଝ, ନ, ଘ, ଠ

ଅନେକ ସମର ସେ କରଇ ମେରୁଶୂଳ
ସମରେ ନିର୍ଭୟ ସେ ବାସବର ବାଳ । ୪୮୬ ।
ଭ୍ରମ ହବସେଣ ମେ ସମର ଅଶ୍ୱଶ୍ରାମ
ସାତଦିନ ପର୍ଯ୍ୟନ୍ତେ ସମର ଉତକର୍ମ । ୪୮୭ ।
ନାଲବାଣ ଭୁଜବାଣ ବୋଲଣ ଯେବଣ ବାଣ ବେନ
କଣ୍ଠୋରେ ବସାଇଲେ ଗୁଣରେ ତାହା ପାଣ୍ଡବ ଫାଲଗୁନ । ୪୮୮ ।
ଅନନ୍ତ ରୁଦ୍ର ଅବତାର ସେ ଅଟନ୍ତ ବେନବାଣ
ବାନ୍ଧନ୍ତେଣ ଅବଶ୍ୟ ସେ ଯେନନ୍ତ ପଂରାଣ । ୪୮୯ ।
ଯାହାକଇଂ ପେଷିବ ସେ ନାଶ କରିବଟି ସଞ୍ଚୟେ
ତାହାକଇଂ ପେଷିଲା ସେ ପାଣ୍ଡବ ଧନୁର୍ଜ୍ଜୟେ । ୪୯୦ ।
ଅର୍ଜ୍ଜୁନ ଆଗ୍ୟାଂ ହିଲ ସେ ଯାଅ ବାଣ ବେନ
ଅସୁର ଦୁରନ୍ତକକୁ ପକାଅ ଭୂମେ ଛିନ୍ନି । ୪୯୧ ।
ପଞ୍ଚୁ କୋଟି କିରଣ ଦୁଇ ସହସ୍ର ଜ୍ୟୋତି
ବାନ୍ଧନ୍ତେଣ କମ୍ପିଲ ସେ ଆକାଶ ବସୁମତି । ୪୯୨ ।

---

୪୮୬।୨ "ସମରେ ନିର୍ଭୟ ସେ ବାସବର ବାଳ" ଏହି ପାଦାନ୍ତ ପରେ "ଖ" ପୋଥିରେ ଅଧିକା ପାଠ :—

ବୈଷ୍ଣବୀ ଚକ୍ରକୁ ପାଅ ନିଜ କରେ ଘେନ
କୋପେ ବୁଲାଇଲା ତାହା ବୀର ଫାଲଗୁନ ।
ମନ୍ତ୍ରିଣ ପେଷନ୍ତେ ଚକ୍ର ଚଳେ ଅନ୍ତରାଳ
ଦେଖି ମେରୁଶୂଳ ବେଗେ ପାଢିଲା କୋଦାଳ ।
ପଡିଲା ବୈଷ୍ଣବୀ ଚକ୍ର ହୋଇଲା ପରଚଣ୍ଡ
ମେରୁଶୂଳର କୋଦାଳ ହୋଇଲା ବେନିଖଣ୍ଡ ।
ଶୂନ୍ୟହସ୍ତ ହୋଇଲା ସେ ଦୈତ୍ୟ ମେରୁଶୂଳ
ଘେନ ମୁଖ ହଣ୍ଟାଇଣ ସେ ଧାଏଁ ନିଶାଚର ।
ପଶୁପତି ଶରକୁ ଧଇଲା ବୀର ପାଥ
ଧନୁରେ ବସାଇଣ ସେ ପେଷିଲା ତୁରିତ ।
କୋଟିଏ କିରଣ ଅଟେ ସେ ପଶୁପତି ଜ୍ୟୋତି
ଚଳନ୍ତେ ପାତାଳେ କମ୍ପୁ ଅଛି ବସୁମତୀ ।

ନାଗଜ ଆସନ୍ତେଣ ସେ ଲୁଚିଲେ ଦିଗପାଳେ
ଶୂନ୍ୟ ପୁରୁଷେ ରହି ନୁଆରିଲେ ଗଗନ ମଣ୍ଡଳେ । ୪୯୩ ।
ଆଦିତ୍ୟ ଦେବତା ଯେ ଯାଇଂ ମେରୁ ଉହାଡେ ଲୁଚିଲେ
ପବନ ଦେବତା ସହିତେ କେହି ରହି ନୁଆରିଲେ । ୪୯୪ ।
ଭୟେ ନିଶାଚର ସେ କୋଦାଳ ଆୟୁଧ ପାତି
କୋଦାଳ ଦହିଜ୍ୟ ହୋଇଲା ମାଳବାଣ ଭୁଜବାଣ ଜ୍ୟୋତି ।୪୯୫।
ଶୂନ୍ୟହସ୍ତ ହୋଇଲା ସେ ଦାନବ ମେରୁମୂଳ
ବେନିମୁଖ ଉଆଇଣ ଧାମଇଂ ମହାବଳ । ୪୯୬ ।
ମାଳବାଣ ପଡିଲା ଯାଇଂ ଦୈତ୍ୟ ନାଭିସ୍ଥଳେ
ଭୁଜବାଣ ପଡିଲା ଯାଇଂ ତାହାର କଣ୍ଠତଳେ । ୪୯୭ ।
ତିନିଖଣ୍ଡ ହୋଇ ଅସୁର କାୟେ ଛିଡି
ଖଣ୍ଡେକ ବିଂଝମାଳ ଜାଣି ପଡିଲା ଭୂମି ମାଡି । ୪୯୮ ।
ଅନେକ ଉଶ୍ୱାସ ଚିହ୍ନଂ ହୋଇଲା ମେଦିନୀ
ସାଧୂ ସାଧୂ ଅର୍ଜୁନ ବୋଲି ଶୁଭିଲାକ ଧୁନି । ୪୯୯ ।
କୋଦାଳ ବୁଲାଇ ଦଇତ ବିଶ୍ୱରୂପ କଲେ
ବସୁଧା ମୁଖରୁ ରୁଧିର ବହଇ ଉଆଇଲେ । ୫୦୦ ।
ଯେତେବେଳେ ଭାରି ଉଶ୍ୱାସ କଲୁ ଫାଲଗୁନି
ମାନବେ ଜାତ ହୋଇ ମହିମାଂ ତୋର ଧନି । ୫୦୧ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ସମସ୍ତେ ଯାହାକଇଂ ହାରି
ପୃଣିହିଂ ରେଳେ ହାରିଲେ ବଳରାମ ହରି । ୫୦୨ ।

---

୪୯୩।୧ ନାଗଜ ଆସନ୍ତେଣ ସେ କମ୍ପିଲେ ଦିଗପାଳେ ।—କ,ଣ,ଛ,ଘ,ନ
୪୯୪।୨ ପବନ ଦେବତା ସହିତେ ଶୂନ୍ୟମଣ୍ଡଳେ ଲୁଚିଲେ ।—କ
୪୯୪।୨ ପବନ ଦେବତା ସହିତେ କେହି ଫେଣି ନୁଆରିଲେ ।—ଣ,ନ,ଠ, ଖ
୪୯୭ { ଭୁଜବାଣ ପଡିଲା ଯାଇଂ ଦୈତ୍ୟ ନାଭିସ୍ଥଳେ
ମାଳବାଣ ପଡିଲା ଯାଇଣ ବକ୍ଷସ୍ଥଳେ ।—ଣ, ନ, କ, ଠ }
୪୯୮।୨ ଖଣ୍ଡଗିରି ବିଂଝଗିରି ଜାଣି ପଡିଲା ମୃହିଂମାଡି ।
୫୦୦।୨ ପୃଥୀ ମୁଖରୁ ରୁଧିର ବହଇ ଗ୍ଭଲିଲେ ।—ଡ, ଞ, ଣ

ତୋହୋର ସାଂଗ୍ରାମେ ପ୍ରାଣ ହାରିଲେକ ସେହ୍ନି
କ୍ଷଣୀବୃତ୍ତ ପ୍ରତଗ୍ୟାଂ ସାଧୁ ତୁମ୍ଭ ଦେହ୍ନି । ୫୦୩ ।
ଅନେକ ସାନନ୍ଦ ଯେ ହୋଇଲେ ଦିଗପାଳେ
ଅମରେ ଉତ୍ସବ କରାଇଲେ ଦେବ ଆଖଣ୍ଡଳେ । ୫୦୪ ।
ତୁହ୍ନି ସେ ଭାରଭର କରନ୍ତା ଉଶ୍ୱାସ
ତୋହୋରେ ରକ୍ଷାଗଲା ପାତାଳ ମଞ୍ଚ ଆକାଶ । ୫୦୫ ।
ଜମ୍ବୁରୁ ରୁଦ୍ର ଅବତାର ଦେବ ବଳରାମ
ନୀଳରତ୍ନର ନୀଳାମ୍ବର ଉଦ୍ଦତ କାମପାଳ ନାମ । ୫୦୬ ।
ମଣ୍ଡଳ ମୁକୁଟ ଯାର ସପତଫେଣି କୁଣ୍ଡଳୀ
ଅଦଭୁତେ ଅବତାର ପ୍ରସନ୍ନେ ଧବଳୀ । ୫୦୭ ।
ଜଳେ ସ୍ଥଳେ ଅନଳେ ଦେବ ଆନ ନାହ୍ନିଂ କେହ୍ନି
ପୃଥୀ ଆପ ତେଜ ବାଇବ ଆକାଶ ଦେବ ତୁହ୍ନି । ୫୦୮ ।
ସଚରାଚର ମେଦନୀ ତୁହ୍ନି ସେ ଦହନ୍ତା
ଅଣାକାର ପୁରୁଷ ତୋର ନାହ୍ନିଂ ପିତାମାତା । ୫୦୯ ।

---

୫୦୩ { ତୋହ୍ନୋର ପ୍ରସାଦେ ସିନା ମେରୁଶୁଳ ହତ
କ୍ଷେଣୀବର ପ୍ରତଗ୍ୟାଂ ସାଧୁ ସାଧୁ ବୀର ପାର୍ଥ ।—କ, ଞ

୫୦୩ { ତୋହ୍ନୋର ପ୍ରସାଦେ ଜବଣ୍ଡି ଗଲା ପୁଣ ସେହ୍ନୁ
ଢନପୁରେ ପ୍ରତଗ୍ୟାଂ ସାଧୁ ସାଧୁ ବୀର ରୁଦ୍ର ।—ଜ, ଚ, ଝ

୫୦୫।୨ "ତୋହ୍ନୋରେ ରକ୍ଷାଗଲା ପାତାଳ ମଞ୍ଚ ଆକାଶ" ପାଠ ପରେ
"ଟ" ପୋଥିରେ ଅଧିକା ପାଠ :—
ତେତିଶକୋଟି ଦେବେ ଅର୍ଜୁନକୁ ବିନୟେ
ତୋଷେ ବଳରାମଂକୁ ଅର୍ଜୁନ କରଇ ଲୟେ ।

୫୦୬।୨ ନୀଳ ରୁଚିର ନୀଳାମ୍ବର ଉଦ୍ଦତ କାମ ।—କ, ଜ

୫୦୬।୨ ନୀଳାମ୍ବର ପୁରୁଷ ରୁ ନୀଳବର୍ଣ୍ଣ ଶ୍ୟାମ ।—ଖ, ଣ, ଟ, ନ

୫୦୬।୨ ନୀଳଗିର ଶରୀର ଉଦ୍ଧତ କାମପାଳ ନାମ ।—ଝ

୫୦୭।୨ ଅଦଭୁତେ ପ୍ରସନ୍ନ ପୁରୁଷ ଦେବ ହଳୀ ।—ଝ, ଟ, ଛ

୫୦୭।୨ ଅଦଭୁତେ ପ୍ରସନ୍ନ ପୁରୁଷ ଦେବ ଶୂଳୀ ।—ଣ, ଖ, ନ

ସଉନଧ୍ୱ ମଣ୍ଡଳ ଅଲେଖ ପୁର ବାସୀ
ଅକାମ ପୁରୁଷ ଅନୁସର ଯେ ଉଦାସୀ । ୫୧୦ ।
ନମସ୍ତେ ନମସ୍ତେ ଦେବ ହଲମୂଷଳ ପାଣି
କୋଟିକଲ୍ପ ବଞ୍ଚାଇଲୁ ସ୍ୱାମି ଶିରେ ସପତଫେଣୀ । ୫୧୧ ।
ଶ୍ୱେତ ପୀତ ଲୋହିତ କୁଂକୁମ ନୀଳବର୍ଣ୍ଣ
ଶ୍ରୀକୃଷ୍ଣର ଜ୍ୟେଷ୍ଠ ସୋଦର ଶଙ୍ଖର ବର୍ଣ୍ଣ ଚିହ୍ନ । ୫୧୨ ।
ଦିଗମ୍ବର ନାଥ ଦେବ ତେଜ ଅନର୍ଗଳ
ଉନ୍ମତ୍ତ କାଦମ୍ବରୀ ପାନେ ରସମତ୍ତ ଭୋଳ । ୫୧୩ ।
ଅମ୍ବା କଦମ୍ବା ପ୍ରଳମ୍ବା ମୁଷ୍ଟିକ କନ୍ଦର୍ପ ଧ୍ୱଂସି
ଯାମଳା ଅର୍ଜୁନ ଯେ ଚୃଣୁର ହତ କେଶୀ । ୫୧୪ ।
ଭବବ୍ରାହ୍ମୀ ନାଥ କଇଛା ଜଗଜ୍ଜ୍ୟୋତି
ହୃଦଗତେ ବନ୍ଦସୁ ମୋର ତବ ନାମଗୋଟି । ୫୧୫ ।
ଶ୍ରୀ ଉତ୍ତରାଂକୁର ପାର୍ଥେ ଅବଭୂତେ ତୋର କାୟେ
କପିଳାସ ଦର୍ପ ଧ୍ୱଂସନ ନାଥ ତୁ ପୁରୁଷ ଅଭୟେ । ୫୧୬ ।

---

୫୧୦।୧ ସହନଧ୍ୱ ଭୁବନ ଅଷ୍ଟ ଦ୍ୱାଦେ ବାସୀ ।—କ
୫୧୦।୧ ସଉନଧ୍ୱ ପୁର ମଣ୍ଡନ କଲ୍ପବାସୀ ।—ଡ
୫୧୦।୧ ସଉନଧ୍ୱ ପୁର ମଣ୍ଡନ ନଜଳପୁର ବାସୀ ।—ଢ
୫୧୦।୨ ଅକାମ କଷ୍ଟଇ ଅନୁସର ଉଦାସୀ ।—ଢ
୫୧୦।୨ ଆଡଗମ୍ୟ, ଅନାଗତ, ଅଗମ୍ୟ ପୁରୁଷ ପଞ୍ଚମ ପାଠାନ୍ତର ଦେଖାଯାଏ ।
୫୧୧।୨ କୋଟିକଲ୍ପ ବଞ୍ଚାନ୍ତ, ସ୍ୱାମି ଶିରେ ସପତଫେଣି ।—କ, ଣ
୫୧୨।୧ ଶ୍ୱେତପଦ୍ମ ନୀଳ ଲୋହିତ କୁଂକୁମ ବର୍ଣ୍ଣ ।—କ, ଣ, ଡ, ଢ
୫୧୨।୨ ହଳ ମୁଷଳ ଯେ ଶ୍ରୀକରେ ଶୋଭାବନ ।—ଣ
୫୧୩।୧ ଦିଗମ୍ବର ମହଳା ତୋର ତେଜ ଅନର୍ଗଳ ।—କ, ଣ, ଙ, ଛ, ଘ
୫୧୩।୧ ଦିଗମ୍ବର ବେଶ ତୋର ତେଜ ଅନର୍ଗଳ ।—ଡ
୫୧୩।୨ ଅନୁବ୍ରତେ କାଦମ୍ବରୀ ପାନେ ମତ୍ତ ଭୋଳ ।—କ, ଣ, ଛ, ଜ, ଙ

ଦୁରପଦ ଦୁଷ୍କୃତ ସସୀର ଜନବାସୀ
ସେ ଭବ ସଂସାରେ ପଡି ଯାଉଅଛୁ ଗ୍ରସି । ୫୧୭ ।
ଶ୍ରୀ ରାମ ନାମ ମୋହୋର ଶରୀରକୁ ବଜ୍ର ସେନ୍ଧା
କାରଣକେଇଂ ଭବ ଅଗ୍ରକରୋଛି ମୋତେ ନେଇ ଚନ୍ଧା ।୫୧୮।

ଲୋଭ ମୋହ ସଂସାର ସେ କୁଟୁମ୍ବ ରଞ୍ଜନା
କ୍ଷଣ କ୍ଷଣକେ ଅମାନ୍ତ ସେ ଜଳବିମ୍ବ ପ୍ରାୟେ ସିନା । ୫୧୯ ।
ସ୍ୱାମୀ ଦେଖୁ ଦେଖୁ ବଣା ହୋଇ ପଡ଼ିଲି ଜଞ୍ଜାଳେ
ସେ କୋଧୁଂ ନାରାୟଣ ମୋତେ ଉଦ୍ଧର ସେତେବେଳେ ।୫୨୦।

ଅଦଭୁତେ ଦ୍ୱିଜବର ବେଦପୁର ବାସୀ
ଆକାଶର ବାରତା ମୋତେ କହିଲେ ଆସି । ୫୨୧ ।
ଶୁଣିଣ କୁଟୁମ୍ବ ଜଞ୍ଜାଳକୁ ମୋତେ ଲଗିଲା ମହାଭୟେ
ଘୁଞ୍ଚିଲି ସର୍ବଚନ୍ତା ହୋଇଲି କୋଧମୟେ । ୫୨୨ ।
କ୍ଷାଠିଏ ଲକ୍ଷ ପୁରାଣକୁ ଯେ ହୋଇବ ବକତା
ନାଶକର ଭୟରୁ ଭୁବ ସେ ଉଦ୍ଧରନ୍ତା । ୫୨୩ ।
ଅଭୟେ କାନ୍ତାନ ଗୋ ପ୍ରସନ୍ନ ହିଙ୍ଗୁଳା
ଅକାମ ବାସିନୀ ମାଗୋ ଶ୍ରୀସିଦ୍ଧ ସାରଳା । ୫୨୪ ।

ଲେଖନ ପଠନ ଯତ୍ନଂ କୁଟୁମ୍ବର ବିକଳେ
ସେ ମହାଦେବୀ ବଜସେ ଗଗନ ମଣ୍ଡଳେ । ୫୨୫ ।
ଆକାଶୁଂ ଆଣିଦଲେ ମୋତେ ସିଦ୍ଧ ପୁରାଣ ପୋଥି
ଦେଖାଇଲା ସରୂପ ସେ ଛଡାଇଲା ମନଭ୍ରାନ୍ତି । ୫୨୬ ।

---

୫୧୭।୧ ଦୁରପଦ ଦୁଷ୍କୃତ ଅଟଇ ମୋହଫାଶୀ ।—ଜ, ଣ, ଛ
୫୨୧।୧ ଅଦଭୁତ ପୁରୁଷ ଶୂନ୍ୟପୁର ବାସୀ ।—ଜ
୫୨୧।୧ ଅଦଭୁତେ ଦ୍ୱିଜବର ଅଭୟେ ପୁର ବାସୀ ।—ଞ, ଟ
୫୨୫ { ଲେଖନ ପଠନ ଯତ୍ନଂ ଶ୍ରଦ୍ଧା କରି ଚଢ଼ି
ସେ ମହାଦେବୀ ମୋତେ କରୁଣା ତୋଷ ଚଢ଼ି ।—ଛ

ଶବଦ କହିଲ ମୋର କୁଟୁମ୍ବ ପର ମୁଖେ
ଛୁଡ଼ମେଲ ମନଭ୍ରାନ୍ତ ଯେତେକେ ଲେଖନ କର ସୁଖେ । ୫୨୭ ।
ମମ ହାତେ ହଲେ ଆଣି ଲେଖନ ଗୋଟିଏ
ଯେହ୍ନା ଘେନ ଯାହା କହିବୁ ସେ ହୋଇବ ଶାସ୍ତ୍ରମୟେ । ୫୨୮ ।
ନ ପଢ଼ି ପଣ୍ଡିତ ମୁଂ ନ ଜାଣି ଶାସ୍ତ୍ରବାଣୀ
ବହୁତ ଅନ୍ୟାୟର ଛଡ଼ାଇ ମୋତେ ଆଣି । ୫୨୯ ।
ଅଭଗତେ ପ୍ରସନ୍ନ ମୋତେ ହୋଇଲେ କାତ୍ୟାୟିନୀ
ଆପଣେ ବସି କହିଲେ ବାକ୍ତୁତ ଭାବ ଘେନି । ୫୩୦ ।
ତେଣୁ ମୁହିଂ ଅଗ୍ୟାନେ ପଶିଲି ଅଗାଢ ସାଗର
ହେ ବୁଧଜନ ମୋତେ ନୋହଇ ଗୋଚର । ୫୩୧ ।
ସ୍ୱୟେଂ ଯାହା ମୋତେ କହି ଦଅନ୍ତି ସାରଳା
ସୁରଙ୍ଗ ମାଳା ପ୍ରାୟେ ମମହୃଦେ ହାର । ୫୩୨ ।
ଯେବଣ ଭାରଥ ଯେ ଦେବଗଣେ ଅସଂଖ୍ୟ
ଅଗାଧ ଜଳକଇଂ ଭେଳା ମୁନିଂକର ଦିବ୍ୟବାକ୍ୟ । ୫୩୩ ।
ଶ୍ରୀ ମହାଭାରଥ ଯେ ଆରଣ୍ୟକପର୍ବ ବାଣୀ
ଆଗ୍ୟାଂୟେ ଶାହାସ୍ତ୍ର ଯେ ଘଟଣ କଲି ଆଣି । ୫୩୪ ।
ଶ୍ରୀ ଚଣ୍ଡୀ ସାରଳା ଚରଣେ ପ୍ରଣପତ୍ୟ ନତ୍ୟେ
ଶୂଦ୍ରମୁନି ଶାରଳା ଦାସ ପୁରାଣ ସଙ୍ଗତେ । ୫୩୫ ।
ଶୁଣିମା ସୁଗ୍ୟଂଜନେ ଶ୍ରୀ ମହାଭାରଥ
ଯମ କାଳ ବଞ୍ଚାଇ ଶୁଣନ୍ତେ ଯେହୁ ଗ୍ରନ୍ଥ । ୫୩୬ ।
ସରସ୍ୱତୀ ସ୍ନାହାନେ ଯେହ୍ନେ ଛୁଡ଼ଇ କଳ୍ମଷ ଓଞ୍ଚ
ପ୍ରତ୍ୟକ୍ଷେ ପ୍ରାପତ ହୋଅଇ ଧର୍ମ ଅର୍ଥ କାମ ମୋକ୍ଷ । ୫୩୭ ।
ଧନ ସନ୍ମାନ ବର୍ଦ୍ଧିତ ହୋଅଇ ଆରଣ୍ୟକପର୍ବ ଶୁଣନ୍ତେ
ଆଷ୍ୟ ବର୍ଦ୍ଧିତ ହୋଅଇ ଆପାଦ ଖଣ୍ଡେ ନତ୍ୟେ । ୫୩୮ ।
ତ୍ରିବେଣୀ ସ୍ନାହାନେ ଯେ ଯେ ନର୍ମଳ ହୋୟେ ତାହ
ବନାଶଇ ପାତେକ କୁଟୁମ୍ବ ହୋଅଇ ବର୍ଦ୍ଧିତ । ୫୩୯ ।

---

୫୨୭ ଛୁଡ଼ଣ ମନ ଭ୍ରାନ୍ତ ଯେବେ ଲେଖନ କର ସୁଖେ ।—ଝ

ଯାହା ସେ କହିଲେ ଅଗସ୍ତି ବ୍ରହ୍ମବେତ୍ତା
ଯୁଗାନ୍ତେକ ପୁରୁଷ ବଇବସୁତ ମନୁ ଶ୍ରୋତା । ୫୪୦ ।
ପିଣ୍ଡ ପ୍ରାଣ ଯେତକ ହୋଇବାର ନିମନ୍ତେ
ମନଗତ୍ତ ପାଇଲ୍ ଚଇତନ କହନ୍ତେ । ୫୪୧ ।
ସବ୍ୟେ ଅସବ୍ୟେ  ସେ କହଇ ଯେଉଂ ବାଣୀ
କଉତୁକେ ଆପଣେ ଭାରଥ ସ୍ରିଜଲେ  ଚକ୍ରପାଣି । ୫୪୨ ।
ଶ୍ରୀ ପୁରୁଷୋତ୍ତମ ନାଥ ମମ ହୃଦଗତେ
କଳକାଳ ଧ୍ୱଂସିଲ୍ ନୀଳ ସୁନ୍ଦର ପର୍ବତେ । ୫୪୩ ।
ମଉଦଧି ଉତ୍ତର ଶ୍ୱେତଗଙ୍ଗା ତଳେ କଳପବଟ  ନିକଟେ
ତହିଂ ମମ ଆତ୍ମା ଲୁକ୍ତ ମନତୁଷ୍ଟେ ଶ୍ରୀ ଜଗନ୍ନାଥ ପାଦ ପୁଟେ ।୫୪୪।
ଭୁଳୁସାର ବଲ୍ଲଭ ଚରଣ ନତ୍ୟେ ଭାବେ
ଶୂଦ୍ରମୁନି ସାରୋଳା ଦାସ ରୁଦ୍ରଗଣ ପୂର୍ବେ । ୫୪୫ ।
। ୧୨୧୮୭ ।

---